ପୁ. ୨୨

# ମୋ ଓଡ଼ିଶା

(ସାରସ୍ୱତ ସଂକଳନ)

## ଦ୍ୱିତୀୟ ବର୍ଷ : ପ୍ରଥମ ଅର୍ଘ୍ୟ–୨୦୦୯



ମୁଖ୍ୟ ସଂପାଦକ :

ଅଭୟ ସାମନ୍ତରାୟ

ସହଯୋଗୀ :

ଶ୍ରୀମତୀ ଅନସୂୟା ନନ୍ଦ

ମୋ ଓଡ଼ିଶା
(ସାରସ୍ୱତ ସଂକଳନ)
ଦ୍ୱିତୀୟ ବର୍ଷ : ପ୍ରଥମ ଅର୍ଘ୍ୟ–୨୦୦୯

ପ୍ରକାଶକ :
ମୋ ଓଡ଼ିଶା
ସୂର୍ଯ୍ୟ ବିହାର, ଲିଙ୍କ୍ ରୋଡ୍,
କଟକ-୭୫୩୦୧୨

ଯୋଗାଯୋଗ :
ଅଭୟ ସାମନ୍ତରାୟ
ସଭାପତି ଓ ମୁଖ୍ୟ ସଂପାଦକ
'ମୋ ଓଡ଼ିଶା'
ସୂର୍ଯ୍ୟ ବିହାର, ଲିଙ୍କରୋଡ୍, କଟକ-୧୨
ଦୂରଭାଷ : ୦୬୭୧-୨୪୨୫୪୨୮ (ସକାଳେ)
୦୬୭୧-୨୩୧୨୭୬୬ (ସନ୍ଧ୍ୟାବେଳେ)
୯୮୬୧୨୭୩୭୬୫ (ସବୁବେଳେ)

ମୁଦ୍ରଣ :
ସଂସାର ପ୍ରେସ
ତଳ ତେଲେଙ୍ଗା ବଜାର, କଟକ-୭୫୩୦୦୯

ପ୍ରକାଶ କାଳ :
୨୦୦୯ ଜୁନ ୭, ଦେବସ୍ନାନ ପୂର୍ଣ୍ଣିମା

ମୂଲ୍ୟ : ୧୨୦.୦୦

MO ODISHA
2nd year 1st Edition-2009

*Published by :*
Mo Odisha
Suryavihar, Link Road
Cuttack-753012

*Contact :*
Abhaya Samantray
President & Chief Editor
MO ODISHA
Surya Vihar, Link Road
Cuttack-12
Phone : 0671-2425428 (Morn)
2312766 (Even)
9861273765 (Always)

*Printed at :*
Sansar Press
Talatelenga Bazar,
Cuttack-753009

*Time of Publication :*
7th June 2009
Devasnan Purnima

Price : Rs. 120.00




'ମୋ ଓଡ଼ିଶା' ୨୦୦୮ ଦ୍ୱିତୀୟ ସଂଖ୍ୟା (ବୈଷୟିକ ସଂକଳନ) ଭୁବନେଶ୍ୱର ସୂଚନା ଓ ଲୋକ ସମ୍ପର୍କ ନିର୍ଦ୍ଦେଶାଳୟ ପ୍ରେକ୍ଷାଳୟରେ ଉନ୍ମୋଚନ କରୁଛନ୍ତି ଭାରତର ଅନ୍ୟତମ ବିଜ୍ଞାନୀ, ଇମ୍ପା ଶିଳ୍ପଗୋଷ୍ଠୀର ଅଧ୍ୟକ୍ଷ ତଥା ସମ୍ମାନଜନକ ସାରଳା ପୁରସ୍କାର ଓ ଏକଲବ୍ୟ ପୁରସ୍କାରର ସ୍ରଷ୍ଟା ଡଃ ବଂଶୀଧର ପଣ୍ଡା । ଏହି ଲୋକାର୍ପଣ ସମାବେଶରେ ମୁଖ୍ୟ ଅତିଥି ଥିଲେ ଅନ୍ୟତମ ବୈଜ୍ଞାନିକ ପଦ୍ମଶ୍ରୀ ଡଃ ପ୍ରଫୁଲ୍ଲ କୁମାର ଜେନା (ଡାହାଣ), ଅଧ୍ୟକ୍ଷତା କରୁଛନ୍ତି ମୁଖ୍ୟ ସଂପାଦକ ଅଭୟ ସାମନ୍ତରାୟ (ବାମ) ।

# ଆଜିର ଆହ୍ୱାନ !!

ଆମେ ଭାରତୀୟ !

ଆମେ ବିଶ୍ୱ ମାନବଜାତିର ଜଣେ ଜଣେ ଅଂଶୀଦାର;

କିନ୍ତୁ ପ୍ରଥମେ ...

ଆମେ ଜଣେ ଜଣେ ଓଡ଼ିଆ !

**ଓଡ଼ିଶା ଆମର ଜନ୍ମଭୂମି – ଓଡ଼ିଆ ଆମର ମାତୃଭାଷା !**

ଆମେ ଯେତେବଡ଼ ହେଲେ ବି ନିଜ ମାତୃଭୂମି ଓ

ମାତୃଭାଷାକୁ ସବା ଆଗରେ ରଖିବା !

— ଏହାହିଁ ଆଜିର ଆହ୍ୱାନ !

— ମୋ ଓଡ଼ିଶା

# ସ୍ରଷ୍ଟା ଓ ସୃଷ୍ଟି



●●●

## କ୍ଷମା ଓ କୃତଜ୍ଞତା

'ମୋ ଓଡ଼ିଶା'ର ତୃତୀୟ ଅର୍ଘ୍ୟ (୨ୟ ବର୍ଷ ୧ମ ସଂଖ୍ୟା) ଯେଉଁମାନଙ୍କର ସୃଷ୍ଟିରେ ସମୃଦ୍ଧ ଓ ସୁଶୋଭିତ ହୋଇଛି, ସମଗ୍ର ଓଡ଼ିଶା ଓ ବାହାରେ ଥିବା ବୁଦ୍ଧିଜୀବୀ ଓଡ଼ିଆ ପାଠକ ଗୋଷ୍ଠୀଙ୍କ ନିକଟରେ ସେମାନେ ନିଜର ପ୍ରତିଭା ଯୋଗୁଁ ଅଭିନନ୍ଦନୀୟ ଏବଂ ସମ୍ମାନାସ୍ପଦ ଏହା କହିବା ବାହୁଲ୍ୟ ମାତ୍ର । ଏହି ସଂଖ୍ୟାଟିର ମାନ ପୂର୍ବଠାରୁ ଅଧିକ ଉନ୍ନତ କରିବାର ଲକ୍ଷ୍ୟରେ ଯଥେଷ୍ଟ ପରିଶ୍ରମ କରାଯାଇଥିଲେ ମଧ୍ୟ ନାନା କାରଣରୁ ତାହା ପୂର୍ଣ୍ଣାଙ୍ଗ ହୋଇଛି ବୋଲି କହି ହେବନାହିଁ । ଏଥର ମଧ୍ୟ ଅନେକ ପ୍ରତିଭାଧର ଆମ ପରିସର ବାହାରେ ରହିଯାଇଛନ୍ତି । ଆଗାମୀ ସଂଖ୍ୟାରେ ସେମାନଙ୍କ ସହଯୋଗ ଲାଗି ଯଥାସାଧ୍ୟ ଉଦ୍ୟମ କରିବାକୁ ନିର୍ଭର ପ୍ରତିଶ୍ରୁତି ଦେବା ସହିତ ଏହି ସଂଖ୍ୟାରେ ସହଯୋଗ କରିଥିବା ଲେଖକ ଲେଖିକା ଓ ବିଜ୍ଞାପନଦାତାମାନଙ୍କୁ ଆନ୍ତରିକ କୃତଜ୍ଞତା ଜଣାଉଛୁ ।

## ସମ୍ପାଦକୀୟ ...



# ସ୍ୱାଭିମାନ

'ସ୍ୱାଭିମାନ'ଶବ୍ଦଟି ବର୍ତ୍ତମାନ ସର୍ବତ୍ର ବ୍ୟବହୃତ ହେଉଥିବାର ଦେଖାଯାଉଛି । ରାଜନୈତିକ ବ୍ୟକ୍ତିମାନେ, ଶିକ୍ଷକ, ସମାଜସେବୀ (ତଥାକଥିତ)ଙ୍କ ସମେତ ବିଭିନ୍ନ ସ୍ତରର ବ୍ୟକ୍ତିବିଶେଷ ସେମାନଙ୍କ ବକ୍ତବ୍ୟରେ 'ସ୍ୱାଭିମାନ' ଶବ୍ଦଟିକୁ ବରାବର ବ୍ୟବହାର କରୁଥିବାର ଶୁଣାଯାଏ । ଆଶ୍ଚର୍ଯ୍ୟ ଲାଗେ ଯେ ଦିନକୁ ଦିନ ଆମ ସମାଜର ପ୍ରତ୍ୟେକ ସ୍ତରରେ ସ୍ୱାଭିମାନ ବଦଳରେ ବ୍ୟଭିଚାର ବଢ଼ିଚାଲିଛି । ଜଣେ ରାଜନୀତିକ ବ୍ୟକ୍ତି ତାଙ୍କ ଭାଷଣ ବା ବକ୍ତବ୍ୟରେ ଯାହା କରନ୍ତି, ସେହି ଅନୁସାରେ ଚଳୁଛନ୍ତି କି ? ଜଣେ ଶିକ୍ଷକ ତାଙ୍କ ବକ୍ତବ୍ୟରେ ଯାହା କହନ୍ତି, ନିଜ କର୍ତ୍ତବ୍ୟରେ ତାହା ଅନୁସରଣ କରନ୍ତି କି ? ଜଣେ ସମାଜସେବୀ ସମାଜ ସେବା ନାମରେ ନିଜର ପତିଆରା ଯେତିକି ବୃଦ୍ଧି କରୁଛନ୍ତି, ପ୍ରକୃତରେ ସେହି ଅନୁସାରେ ସେ ସମାଜର ସେବା କରୁଛନ୍ତି କି ? ଜଣେ ବ୍ୟବସାୟୀ ବା ବୃତ୍ତିଧାରୀ ବ୍ୟକ୍ତି ବ୍ୟବସାୟ ବା ବୃତ୍ତିରେ ଯେପରି ସାଧୁତା ଓ ନିଷ୍ଠା ରଖିବା କଥା, ତାହା ରଖୁଛନ୍ତି କି ? ଜଣେ ଚିକିତ୍ସକ ସେବାକୁ ଅଗ୍ରାଧିକାର ଦେଇପାରିଲେ ସେବାରେ ଆଦୃତ ହେବା ସହିତ ଆୟରେ ଅସୁବିଧା ହେବନାହିଁ । ସେମାନେ କିନ୍ତୁ କାର୍ଯ୍ୟ କୁଶଳତାକୁ ଗୁରୁତ୍ୱ ନ ଦେଇ ଆୟ ପ୍ରତି ଦୃଷ୍ଟି ଦେବା ଫଳରେ ଭଲ ଚିକିତ୍ସକଟିଏ ତ ହୋଇପାରୁ ନାହାନ୍ତି, ଅନ୍ୟପକ୍ଷରେ ଲୋକପ୍ରିୟତା ହରାଉଛନ୍ତି । ଆଇନଜୀବୀମାନଙ୍କୁ ରାଷ୍ଟ୍ରର ପ୍ରକୃତ ବୁଦ୍ଧିଜୀବୀ କୁହାଯାଏ । ୧ମ ଶ୍ରେଣୀର ନାଗରିକ ବା ପ୍ରଥମ ଶ୍ରେଣୀର ବୁଦ୍ଧିଜୀବୀ କହିଲେ ଆଇନ୍‌ଜୀବୀମାନଙ୍କୁ ହିଁ ବୁଝାଇଥାଏ । ଅତୀତରେ ଦେଶର ସ୍ୱାଧୀନତା ଆନ୍ଦୋଳନ, ଓଡ଼ିଶାର ସ୍ୱତନ୍ତ୍ରତା ଆନ୍ଦୋଳନରେ ଭାଗ ନେଇଥିବା ଦେଶସେବୀମାନଙ୍କ ମଧ୍ୟରେ ଅଧିକାଂଶ ଆଇନଜୀବୀ ଥିଲେ ଓ ଆନ୍ଦୋଳନର କର୍ଣ୍ଣଧାରମାନେ ମୁଖ୍ୟତଃ ଆରମ୍ଭରେ ଆଇନ୍ ବ୍ୟବସାୟରୁ ଜୀବିକା ଆରମ୍ଭ କରିଥିଲେ । ଏବେ ଆମେ ସେମାନଙ୍କୁ 'ସ୍ୱାଭିମାନୀ'ବୋଲି ଆମ ଭାଷଣରେ କହିଥାଉ । ସେହି ସ୍ୱାଭିମାନୀ ବ୍ୟକ୍ତିମାନଙ୍କ ପାଇଁ ଆମ ଦେଶ ସ୍ୱାଧୀନ ହୋଇ ପାରିଲା, ଆମ ରାଜ୍ୟ ସ୍ୱତନ୍ତ୍ର ହୋଇପାରିଲା, ଅଥଚ ଏକାଳର ତଥାକଥିତ ସ୍ୱାଭିମାନୀଙ୍କ କାର୍ଯ୍ୟକଳାପ ସମାଜକୁ କୁପଥରେ ନେଉଛି କାହିଁକି ? ଏ ସମାଜର ପ୍ରତ୍ୟେକ ସ୍ତରର ଅଧିବାସୀଙ୍କର କ୍ରମ ଅଧଃପତନ ଘଟୁଛି କାହିଁକି ? ଏମାନେ କହନ୍ତି ପ୍ରକାରେ, କରନ୍ତି ପ୍ରକାରେ । ଅଜ୍ଞାନ ଶିଶୁକୁ ମଧ୍ୟ ଆମେ କପଟତା, ମିଥ୍ୟା କହିବାକୁ ତାଲିମ ଦେଇଥାଉ, ହାତରେ ଜିନିଷଟି ରଖି ହାତ ହଲାଇ ଦେଇ 'କୁଆ ନେଇଗଲା' କହିଲା ବେଳେ ଘୃଣାକ୍ଷରେ ବି ଆମ ବିବେକ ଆମକୁ ବାରଣ କରେନାହିଁ ଯେ ଆମେ ଶିଶୁଟିକୁ ଅନୈତିକତାର ପ୍ରଥମ ପାହାଚ ଚଢ଼ାଉଛୁ ବୋଲି ।

'ସ୍ୱାଭିମାନ' ନିମ୍ନଲିଖିତ କେତୋଟି ବିଷୟ ଉପରେ ଆଧାରିତ । ସେଗୁଡ଼ିକ ହେଉଛି ସତ୍ୟପ୍ରତି ଆଗ୍ରହ, ନ୍ୟାୟ ପରାୟଣତା, ମର୍ଯ୍ୟାଦା ବୋଧ, ଅଙ୍ଗୀକାରବଦ୍ଧତା ବା ଦାୟିତ୍ୱବୋଧ, ନିର୍ଭୀକତା, କର୍ତ୍ତବ୍ୟ

ନିଷ୍ଠା । କେବଳ ଶିକ୍ଷିତ ବା ବୁଦ୍ଧିଜୀବୀମାନେ ହିଁ ସ୍ୱାଭିମାନୀ ହେବେ ଓ ଅନ୍ୟମାନେ ହୋଇ ପାରିବେ-ନାହିଁ — ଏଭଳି ଚିନ୍ତା ଭ୍ରମାତ୍ମକ । ଓଡ଼ିଆ ଜାତିଟା ସ୍ୱାଭିମାନୀ ଜାତି । କୃଷକ, ଶିଳ୍ପୀ ବା କାରିଗର ନିଜେ ନିଜ ପେଶାରେ ବ୍ୟାପୃତ ବ୍ୟକ୍ତିମାନେ ବି ସ୍ୱାଭିମାନୀ ହୋଇପାରିବେ । ଆମେ ଜାଣୁ ଓଡ଼ିଶା ଗୋଟିଏ କୃଷି ପ୍ରଧାନ ଦେଶ ଓ ଓଡ଼ିଆମାନେ କୃଷି ସହିତ ଯୁଦ୍ଧବିଦ୍ୟା ଶରୀର ଚର୍ଯ୍ୟା , ନିଜନିଜ କୁଳବେଉଷା ସହିତ ନୌଚାଳନାରେ ଅତ୍ୟନ୍ତ ଦକ୍ଷ । ଓଡ଼ିଶାର ଅଧିବାସୀମାନେ ନାନା ପ୍ରକାର ଋତୁକାଳୀନ ଫସଲ ଉତ୍ପାଦନରେ ଯେତିକି ଧୂରୀଣ, କୃଷିକାର୍ଯ୍ୟ ନ ଥିବା ସମୟରେ କୁସ୍ତିକସରତ, ମଲ୍ଲଯୁଦ୍ଧ ଓ ଅସ୍ତ୍ରଚାଳନାରେ ସମୟ ଅତିବାହିତ କରିବାରେ ସେତିକି ଅଭ୍ୟସ୍ତ । ରାଜ୍ୟଜୟ ଅଭିଯାନ ବା ଶତ୍ରୁ ଆକ୍ରମଣର ପ୍ରତିରୋଧ ବ୍ୟତୀତ ଅନ୍ୟ ସମସ୍ତ ସମୟକୁ କୃଷିକାର୍ଯ୍ୟ କିମ୍ବା ନିଜ ନିଜର କୌଳିକ ବୃତ୍ତିର ଲଗାଇବାରେ ସେମାନେ ନିଜର ସ୍ୱାଭିମାନର ପ୍ରତୀକ ବୋଲି ଭାବିଥା'ନ୍ତି । ଭିକ୍ଷାବୃତ୍ତି କେବଳ ଦୁଇଟି ସମ୍ପ୍ରଦାୟଙ୍କ ମଧ୍ୟରେ ସୀମାବଦ୍ଧ ଥିଲା । ଗୋଟିଏ ହେଉଛି ଯୋଗୀ ସମ୍ପ୍ରଦାୟ ଓ ଅନ୍ୟଟି ହେଉଛି ଭାଟ ସମ୍ପ୍ରଦାୟ । ଯୋଗୀମାନେ ପ୍ରତ୍ୟେକ ଗୃହସ୍ଥର ଦ୍ୱାରରେ ପହୁଞ୍ଚି ଛାନ୍ଦ, ଚମ୍ପୁଗୁଡ଼ିକୁ କେନ୍ଦରା ବାଦ୍ୟ ସାହାଯ୍ୟରେ ସୁଲଳିତ କଣ୍ଠରେ ଗାନ କରି ପରିବାରକୁ ଶୁଣାଇ ଭିକ୍ଷା ସଂଗ୍ରହ କରୁଥିଲେ ଏବଂ ଭାଟମାନେ ଧନୀ ଗୃହସ୍ଥ ଦ୍ୱାରରେ ପହୁଞ୍ଚି ତା'ର ସମସ୍ତ କରଣୀକୁ ଅଧିକ ଚିତ୍ରଣକରି ଗୁଡ଼ାଏ ସ୍ତୁତିଗାନ କରି କିଛିକିଛି ଭିକ୍ଷା ସଂଗ୍ରହ କରୁଥିଲେ । ଏହି ଭିକ୍ଷାବୃତ୍ତିରେ ମଧ୍ୟ ସେମାନେ ମୌଳିକତା ରକ୍ଷା କରିବା ସହିତ ଗାୟନ ବା ଗୁଣକୀର୍ତ୍ତନ ଦ୍ୱାରା ଭିକ୍ଷା ସଂଗ୍ରହ ସେମାନଙ୍କର ମର୍ଯ୍ୟାଦା ବୃଦ୍ଧି କରୁଥିଲା । ବର୍ତ୍ତମାନ ଆମ ସମାଜର ପରିବର୍ତ୍ତିତ ପରିସ୍ଥିତିରେ ଏହି ଚଳଣିର ବିଲୁପ୍ତି ଘଟିଲାଣି । ଯେକୌଣସି ଶ୍ରେଣୀର ବ୍ୟକ୍ତି ଅନୈତିକତାକୁ ଆଧାର କରି ବିନା ଶ୍ରମରେ କେତେ ଅଧିକ ଉପାର୍ଜନ କରିପାରିବେ, ଏଥିପାଇଁ ଏକ ପ୍ରକାର ପ୍ରତିଯୋଗିତା ବୃଦ୍ଧି ପାଇଛି ।

ଗୋଟିଏ ଛୋଟ ଉଦାହରଣ ଦେଇ ଆମେ ଏହି ଲେଖାକୁ ସମାପ୍ତ କରୁଛୁ । ଆମ ରାଷ୍ଟ୍ରରେ ପ୍ରତ୍ୟେକ ରାଜ୍ୟ ନିଜର ଗୋଟିଏ ଗୋଟିଏ ସ୍ୱତନ୍ତ୍ର ଭାଷା ଅଛି । ଏହି ଭାଷାକୁ ଆଞ୍ଚଳିକ ଭାଷା ବା ମାତୃଭାଷା କୁହାଯାଏ । ଆମ ରାଜ୍ୟ ଓଡ଼ିଶାର ମାତୃଭାଷା ଓଡ଼ିଆ । ଆମର ପଡ଼ୋଶୀରାଜ୍ୟ ବଙ୍ଗର ମାତୃଭାଷା ବଙ୍ଗଳା; ଛତିଶଗଡ଼ ଓ ଝାଡ଼ଖଣ୍ଡର ମାତୃଭାଷା ହିନ୍ଦି, ଆନ୍ଧ୍ରର ମାତୃଭାଷା ତେଲଗୁ । ଏ ଜଗତୀକରଣ ଯୁଗରେ ରାଜ୍ୟ ରାଜ୍ୟ, ଦେଶ ଦେଶ ମଧ୍ୟରେ ନିଯୁକ୍ତି, ବ୍ୟବସାୟ, ଶିକ୍ଷା ଓ ଶାସନ ତଥା ରାଜନୀତିକ କ୍ଷେତ୍ରରେ ସମ୍ପର୍କ ଅଧିକ ବୃଦ୍ଧିପାଇବା ହେତୁ ଆନ୍ତର୍ଜାତିକ ବାସ ବିଶ୍ୱଭାଷା ଇଂରାଜୀ ଉପରେ ଅଧିକ ଗୁରୁତ୍ୱ ଦିଆଯାଉଛି । କିନ୍ତୁ ଏହା ଆମେ ଭୁଲିଯିବା ଉଚିତ୍ ନୁହେଁ ଯେ ଆମର ହେତୁ ପାଇବା ମାତ୍ରେ ଆମ ମାଆ, ବାପା, ପରିବାର ଓ ପ୍ରତିବେଶୀଙ୍କ ମୁଖରୁ ଯେଉଁ ଭାଷା ଆମେ ଶୁଣି, ଶିକ୍ଷା କରି ତା ସାହାଯ୍ୟରେ ବଡ଼ ହୋଇଛୁ, ତାହା ହେଉଛି ଆମରି ମାତୃଭାଷା, ମୂଳ ଉତ୍ସ ଆମ କଥନିର । ଆମର ପଡ଼ୋଶୀ ରାଜ୍ୟସମୂହ ଓ ଦେଶର ଅନ୍ୟାନ୍ୟ ରାଜ୍ୟ ସେମାନଙ୍କର ମାତୃଭାଷାକୁ ଯଥେଷ୍ଟ ଗୁରୁତ୍ୱ ଦେଉଥିଲା ବେଳେ ଆମେ ଯେପରି ଉଦାସୀନତା ପ୍ରକାଶ କରୁଛୁ, ଏହା ବାସ୍ତବରେ ଆମ ସ୍ୱାଭିମାନ ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରୁନାହିଁ କି ?

ଅଭୟ ସାମନ୍ତରାୟ

# ଖ୍ରୀଷ୍ଟ ଯୁଗର ପ୍ରଥମ ପାଦରେ କଳିଙ୍ଗ

ପ୍ରଫେସର ଡକ୍ଟର ମନ୍ମଥ ନାଥ ଦାସ

*ଉତ୍କଳର କିମ୍ବଦନ୍ତୀ ପୁରୁଷ ଶିକ୍ଷାବିତ୍, ଐତିହାସିକ, ଦେଶସେବକ, ପ୍ରାଂସଦ ଡଃ ମନ୍ମଥନାଥ ଦାସ ଗତ ଥର ଆମ ଅନୁରୋଧରେ "ଉତ୍କଳଖଣ୍ଡରେ ଦ୍ରାବିଡ଼ୀୟ ପ୍ରଭାବ" ଶୀର୍ଷକ ଯେଉଁ ନିବନ୍ଧଟି ପଠାଇଥିଲେ, ତାହା ଆଶାତୀତ ପାଠକୀୟ ପ୍ରଶଂସା ଲାଭ କଲା ପରେ ଏଥର ଆମ ଅନୁରୋଧରେ ତାଙ୍କ ପୁତ୍ର ସିଦ୍ଧାର୍ଥ ଦାସ ଡଃ ଦାସଙ୍କର ଅନ୍ୟ ଏକ ଲେଖା "ଖ୍ରୀଷ୍ଟ ଯୁଗର ପ୍ରଥମ ପାଦରେ କଳିଙ୍ଗ" ଲେଖାଟି ପଠାଇଛନ୍ତି ଆପଣମାନଙ୍କ ଅବଗତି ପାଇଁ....*

ଚେତ ସାମ୍ରାଜ୍ୟର ପତନ ପାଖରୁ ଗୁପ୍ତଯୁଗର ଆରମ୍ଭ ପର୍ଯ୍ୟନ୍ତ କଳିଙ୍ଗ ଇତିହାସ ଅନ୍ଧକାରାଚ୍ଛନ୍ନ । ଦୀର୍ଘ ପଞ୍ଚଶତ ବର୍ଷବ୍ୟାପୀ ଏହି ଅନ୍ଧକାରାଚ୍ଛନ୍ନ ଯୁଗ ମଧ୍ୟରେ କଳିଙ୍ଗର ରାଜନୈତିକ ଏବଂ ସାଂସ୍କୃତିକ ମଣ୍ଡଳରେ କେତେ ପରିବର୍ତ୍ତନ ସଂଘଟିତ ହୋଇଥିବ । ଐତିହାସିକ ବିଷୟବସ୍ତୁ ଅଭାବରେ ଏହି ସମସ୍ତ ପରିବର୍ତ୍ତନର ରୂପରେଖ ନିର୍ଣ୍ଣୟ କରିବା ଅସମ୍ଭବ ।

ଏହି ଯୁଗରେ ଭାରତର ଉତ୍ତର-ପଶ୍ଚିମ ଖଣ୍ଡରେ ଏକ ତୁମୁଳ ରାଜନୈତିକ ଏବଂ ସାଂସ୍କୃତିକ ବିପ୍ଳବ ଚାଲିଥାଏ । ଏ ବିପ୍ଳବ ହେଉଛି ଭାରତର ଉତ୍ତର-ପଶ୍ଚିମାଞ୍ଚଳରେ ବୈଦେଶିକ ଜାତିମାନଙ୍କର ଶକ୍ତି ବିସ୍ତାର ଏବଂ ଏହା ଫଳରେ ବୈଦେଶିକ ସଭ୍ୟତା ସହ ଭାରତୀୟ ସଭ୍ୟତାର ସଂଘର୍ଷ ଓ ମିଳନ । ଉତ୍ତର-ପଶ୍ଚିମାଞ୍ଚଳରେ ସଂଘଟିତ ହୋଇଥିବା ଏହି ବିପ୍ଳବର ପ୍ରଭାବ କଳିଙ୍ଗ ଉପରେ ଲଣାଅଧିକେ ଛାୟାପାତ କରିଥାଇପାରେ ବୋଲି ଅନୁମାନ କରାଯାଏ । ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀରେ ମଧ୍ୟଏସିଆର ଯାଯାବର, ଶକ ଏବଂ ପଲ୍ଲବ ଜାତିର ଆକ୍ରମଣ ସ୍ରୋତ ଭାରତ ଉପରକୁ ମାଡ଼ି ଆସିଥିଲା । ଅକ୍ଷୁ ନଦୀତଟରୁ ଶକ ଆକ୍ରମଣକାରୀମାନେ ଇରାନ୍, ଆଫଗାନିସ୍ଥାନ ଓ ଭାରତର ଉତ୍ତର-ପଶ୍ଚିମ ସୀମାନ୍ତ ଉପରେ ଆକ୍ରମଣ ଚଳାଇ କାଳକ୍ରମେ ସେହିସବୁ ଅଞ୍ଚଳ ଉପରେ ଅଧିକାର ବିସ୍ତାର କରିଥିଲେ । ଭାରତବର୍ଷର ପ୍ରଥମ ଶକ ରାଜାଙ୍କର ନାମ ଥିଲା ମୋଗ ଏବଂ ଏହି ପରାକ୍ରମଶାଳୀ ରାଜା ଗ୍ରୀକ୍‌ମାନଙ୍କ ନିକଟରୁ ତକ୍ଷଶିଳା ଅଞ୍ଚଳ ଅଧିକାର କରି ନେଇଥିଲେ । ଏହାଙ୍କ ପରେ ଶକମାନେ କ୍ରମେ କ୍ରମେ ମଥୁରା, ଉଜ୍ଜୟିନୀ ଏବଂ ସୁରାଷ୍ଟ୍ର ଅଞ୍ଚଳରେ ମଧ୍ୟ ଶକ ସାମ୍ରାଜ୍ୟ ବିସ୍ତାର କରିଥିଲେ । ଶକମାନଙ୍କ ସଙ୍ଗେ ସଙ୍ଗେ କାସ୍ପିୟାନ୍ ସାଗର କୂଳରୁ ଓ ଉତ୍ତର ପାରସ୍ୟଖଣ୍ଡରୁ ଯାଯାବର ପଲ୍ଲବ ବା ପାର୍ଥିୟାନ ଜାତି ମଧ୍ୟ କାନ୍ଦାହାର ଓ ସୀମାନ୍ତ ଅଧିକାର କରି ପଞ୍ଜାବ ପର୍ଯ୍ୟନ୍ତ ବିସ୍ତାର ଲାଭ କରି ଯାଇଥିଲେ । ଶକ ଏବଂ ପଲ୍ଲବମାନଙ୍କର ରାଜନୈତିକ ପ୍ରତିପତ୍ତି ବିସ୍ତାର ଲାଭ କରୁଥିଲାବେଳେ ସେମାନଙ୍କ ସହିତ ପାରସ୍ୟ ଦେଶର ସଭ୍ୟତା ଓ ଧର୍ମ ଭାରତର ପଶ୍ଚିମାଞ୍ଚଳ

ଉପରେ ପ୍ରଭାବ ବିସ୍ତାର କରୁଥାଏ । ଶକ-ପଲ୍ଲବମାନଙ୍କ ପରେ ପରେ ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀର ପ୍ରଥମ ଭାଗରେ ଆସିଲେ କୁଶାନମାନେ । କୁଶାନମାନେ ଥିଲେ ପ୍ରସିଦ୍ଧ ଇଉ-ଚି ଜାତିର ଗୋଟିଏ ଶାଖା । ଚୀନ୍ ସାମ୍ରାଜ୍ୟର ସୁଦୂର ଉତ୍ତର-ପଶ୍ଚିମ ସୀମାନ୍ତ ଅଞ୍ଚଳ ହେଉଛି ଇଉ-ଚି ଜାତିର ଆଦିଗୃହ । କାଳକ୍ରମେ ହୁଂ ନୋ ନାମକ ଏକ ଦୁର୍ଦ୍ଧର୍ଷ ଯାଯାବର ଜାତିଦ୍ୱାରା ବିତାଡ଼ିତ ହୋଇ ଇଉ-ଚି ଜାତି ମଧ୍ୟଏସିଆ ଖଣ୍ଡକୁ ପଳାଇ ଆସିଥିଲା ଏବଂ ସେଠାରେ ମଧ୍ୟଏସିଆ ଖଣ୍ଡରୁ ଇଉ-ଚି ଜାତିର ଏକ ଶକ୍ତିଶାଳୀ ଶାଖା ଭାରତ ମଧ୍ୟକୁ ପ୍ରବେଶ କରିଥିଲା । ଏହି ଶାଖା କୁଶାନ ନାମରେ ବିଖ୍ୟାତ । ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀର ପ୍ରାୟ ମଧ୍ୟଭାଗରେ କୁଶାନମାନଙ୍କର ଏକ ପରାକ୍ରମଶାଳୀ ନେତା, କୁଜଳ କାଡ଼ଫିସ ଭାରତର ଗାନ୍ଧାର ଅଞ୍ଚଳ ଅଧିକାର କରି କୁଶାନ ସାମ୍ରାଜ୍ୟର ମୂଳପତ୍ତନ ପ୍ରତିଷ୍ଠା କରିଥିଲେ । ତାହାଙ୍କ ସାମ୍ରାଜ୍ୟ ପାରସ୍ୟ ସୀମାରୁ ବିତସ୍ତା ନଦୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ତାହାଙ୍କ ପୁତ୍ର ଭୀମ କାଡ଼ଫିସ୍‌ଙ୍କ ନେତୃତ୍ୱରେ କୁଶାନମାନେ ଗାନ୍ଧାର ନିକଟରୁ କାଶୀ ପର୍ଯ୍ୟନ୍ତ ଏକବିସ୍ତୃତ ଭୂଖଣ୍ଡ କୁଶାନ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ କରିଥିଲେ । କୁଶାନମାନଙ୍କର ଭାରତ ଆଗମନ ଫଳରେ ଏ ଦେଶର ଉତ୍ତର-ପଶ୍ଚିମାଞ୍ଚଳରେ ତିନି ମହାସଭ୍ୟତାର ମିଳନ ହୋଇଥିଲା ।

କୁଶାନମାନଙ୍କର ପ୍ରଥମ ଗୃହ ଥିଲା ଚୀନ, ଦ୍ୱିତୀୟ ଗୃହ ମଧ୍ୟଏସିଆ ଏବଂ ତୃତୀୟ ଗୃହ ହେଲା ଭାରତ । ତେଣୁ ସେହିମାନଙ୍କ ସଙ୍ଗରେ ଚୀନ ଏବଂ ମଧ୍ୟଏସିଆର ସଭ୍ୟତା ଭାରତରେ ପ୍ରବେଶ କଲା । କିନ୍ତୁ ଅନତିବିଳମ୍ବେ ଭାରତୀୟ ସଭ୍ୟତା କୁଶାନମାନଙ୍କର ଚୀନ ଓ ମଧ୍ୟ ଏସିଆର ସଭ୍ୟତାଦ୍ୱୟକୁ ଗର୍ଭସାତ୍ କରିଦେଇଥିଲା । କୁଶାନମାନେ ଥିଲେ ବିଦେଶୀ । ସେମାନଙ୍କର ଧର୍ମ ଥିଲା ଭାରତୀୟ ଧର୍ମମାନଙ୍କଠାରୁ ପୃଥକ୍ । କିନ୍ତୁ ଭାରତମାଟିରେ ପଦାର୍ପଣ କରିବା ସଙ୍ଗେ ସଙ୍ଗେ ଭାରତୀୟ ଧର୍ମ କୁଶାନମାନଙ୍କୁ ସ୍ୱ କକ୍ଷକୁ ଟାଣି ନେଇଥିଲା । କୁଶାନମାନେ ଅତି ଅଳ୍ପ ସମୟ ମଧ୍ୟରେ ଭାରତୀୟ ଧର୍ମରେ ଦୀକ୍ଷିତ ହୋଇଥିଲେ । ଏହା ସନାତନ ହିନ୍ଦୁଧର୍ମର ଏକ ବିଶେଷତ୍ୱ । ଆଦିମ କାଳରୁ ଭାରତ ମଧ୍ୟରୁ କେତେ ଅଗଣିତ ବୈଦେଶିକ ଜାତି ଆସିଛନ୍ତି ; କିନ୍ତୁ ହିନ୍ଦୁ ସଭ୍ୟତା ଓ ହିନ୍ଦୁଧର୍ମ ମଧ୍ୟରେ ସେମାନଙ୍କର ଅସ୍ତିତ୍ୱ ଚିରଦିନ ଲୋପପାଇଛି । କୁଶାନମାନେ ମଧ୍ୟ ଅଳ୍ପ ସମୟ ମଧ୍ୟରେ ଭାରତ ଗର୍ଭରେ ସେମାନଙ୍କର ଅସ୍ତିତ୍ୱ ହରାଇଥିଲେ । ଦ୍ୱିତୀୟ କୁଶାନସମ୍ରାଟ ଭୀମ କାଡ୍‌ଫିସଙ୍କ ମୁଦ୍ରାରେ ବୃଷଭ ବାହନ ଶିବଙ୍କ ମୂର୍ତ୍ତି ଦେଖିବାକୁ ମିଳେ । ଅର୍ଥାତ୍ ଏହି କୁଶାନସମ୍ରାଟ ଭାରତରେ ପ୍ରବେଶ କଲା ମାତ୍ରକେ ବ୍ରାହ୍ମଣ୍ୟ ଧର୍ମ ଦ୍ୱାରା ପ୍ରଭାବିତ ହୋଇ ଶିବ ଉପାସକରୂପେ ଜୀବନ ଯାପନ କରିଥିଲେ । ଏହାଙ୍କ ପରେ କୁଶାନ ବଂଶର ସର୍ବଶ୍ରେଷ୍ଠ ସମ୍ରାଟ କନିଷ୍କ ସିଂହାସନ ଆରୋହଣ କରିଥିଲେ । ଏହାଙ୍କ ଅମଳରେ କୁଶାନ ସାମ୍ରାଜ୍ୟ ତାହାର ଦୀର୍ଘତମ ସୀମା ସ୍ପର୍ଶ କରିଥିଲା ଏବଂ କୁଶାନ ସଭ୍ୟତା ଉନ୍ନତିର ଶୀର୍ଷ ସୀମାରେ ପହଞ୍ଚିଥିଲା । ତୁରସ୍କ ଦେଶର କାଶ୍‌ଗର୍, ଇୟାରଖଣ୍ଡ ଏବଂ ଖୋଟାନ ପ୍ରଭୃତି ସ୍ଥାନ କନିଷ୍କ ଅଧିକାର କରିଥିଲେ । କାଶ୍ମୀର ମଧ୍ୟ ଏହାଙ୍କ ପଦାନତ ହୋଇଥିଲା । ମଧ୍ୟଏସିଆ ପାଖରୁ କାଶୀ ପର୍ଯ୍ୟନ୍ତ ଭୂଭାଗ ଏ ସମୟରେ କୁଶାନ ସାମ୍ରାଜ୍ୟର ସ୍ଥାୟୀ ଅଙ୍ଗ ଥିଲା । ଏହାଛଡ଼ା କନିଷ୍କ ପାଟଳୀପୁତ୍ର ଆକ୍ରମଣ କରିଥିବାର ଜଣାଯାଏ । ଭାରତ ଏବଂ ମଧ୍ୟଏସିଆ ବାହାରେ କନିଷ୍କ ଚୀନ ସାମ୍ରାଜ୍ୟ ବିରୋଧରେ ମଧ୍ୟ ଯୁଦ୍ଧ ଘୋଷଣା କରିଥିଲେ । କଥିତ ଅଛି, ଚୀନ ସମ୍ରାଟଙ୍କୁ ପରାସ୍ତ କରି କନିଷ୍କ କନୈକ ଚୀନ ରାଜକୁମାରଙ୍କୁ ରାଜବନ୍ଦୀ ରୂପେ ଅଟକ କରି

ରଖିଥିଲେ ଏବଂ ପରେ ଏହି ରାଜବନ୍ଦୀଙ୍କୁ ପୂର୍ବ ପଞ୍ଜାବର ଖାନାଭୁକ୍ତି ନାମକ ଜିଲ୍ଲା ଭୋଗ କରିବାକୁ ଦେଇଥିଲେ। ଖ୍ରୀଷ୍ଟଯୁଗର ପ୍ରଥମ ପାଦରେ କନିଷ୍କଙ୍କୁ ହିଁ ଭାରତରେ ଏକ ବିଶାଳ ସାମ୍ରାଜ୍ୟ ନିର୍ମାଣ କରିଥିବାର ଦେଖାଯାଏ। ବର୍ତ୍ତମାନ ପ୍ରଶ୍ନ ହେଉଛି, କନିଷ୍କଙ୍କ କୁଶାନ ସାମ୍ରାଜ୍ୟ କଳିଙ୍ଗ ଦେଶକୁ ସ୍ୱ-ଅନ୍ତର୍ଭୁକ୍ତ କରିଥିଲା କି ନାହିଁ। କଳିଙ୍ଗର ବିଭିନ୍ନ ସ୍ଥାନରୁ; ବିଶେଷତଃ ପୁରୀ, ଗଞ୍ଜାମ ଏବଂ ମୟୂରଭଞ୍ଜ ଜିଲ୍ଲାମାନଙ୍କର ଅନେକ ସ୍ଥାନରୁ କୁଶାନ ସମ୍ରାଟମାନଙ୍କର ବହୁମୁଦ୍ରା ପ୍ରତ୍ନତତ୍ତ୍ୱବିତ୍‌ମାନଙ୍କ ଦ୍ୱାରା ଆବିଷ୍କୃତ ହୋଇଛି। ପୁରୀ ଜିଲ୍ଲାର ମାଣିକପାଟଣାଠାରେ ଅନେକଗୁଡ଼ିଏ କୁଶାନ ମୁଦ୍ରା ଆବିଷ୍କୃତ ହୋଇଥିବାରୁ ଡକ୍ଟର ହୋଏର୍ଣ୍ଣଲ ଏହି ମୁଦ୍ରାମାନଙ୍କର ନାମ ରଖିଥିଲେ 'ପୁରୀ-କୁଶାନ'।

୧୮୫୮ ଖ୍ରୀଷ୍ଟାବ୍ଦରେ ଗଞ୍ଜାମ ଜିଲ୍ଲାର ପୁରୁଷୋତ୍ତମପୁରଠାରେ ଏହି ମୁଦ୍ରା ବହୁସଂଖ୍ୟାରେ ଆବିଷ୍କୃତ ହୋଇଥିଲା। ୧୯୧୭ ସାଲରେ ପୁନର୍ବାର ସିଂହଭୂମ ଜିଲ୍ଲାର ରକ୍ ପାହାଡ଼ର ଉତ୍ତର ପାର୍ଶ୍ୱରୁ କୁଶାନ ଯୁଗର ମୁଦ୍ରା ଆବିଷ୍କାର କରାଯାଇଥିଲା। ଏହାପରେ ମୟୂରଭଞ୍ଜର କୌଣସି ସ୍ଥାନରୁ ବହୁସଂଖ୍ୟକ କୁଶାନ ମୁଦ୍ରା ଆବିଷ୍କାର କରାଯାଇଛି। ମୟୂରଭଞ୍ଜରୁ ଆବିଷ୍କୃତ ହୋଇଥିବା ମୁଦ୍ରାମାନଙ୍କ ମଧ୍ୟରୁ ୧୭୦ଟି ମୁଦ୍ରା ହେଉଛି 'ପୁରୀ-କୁଶାନ' ଢଙ୍ଗର ଏବଂ ୧୧୨ଟି ହେଉଛି ସମ୍ରାଟ କନିଷ୍କ ଏବଂ ହବିଷ୍କଙ୍କର ମୁଦ୍ରା। ଉତ୍କଳର ଅନ୍ୟାନ୍ୟ ସ୍ଥାନରୁ ମଧ୍ୟ କୁଶାନ ଯୁଗର ମୁଦ୍ରା ମିଳୁଛି। ସିଂହଭୂମଠାରୁ ଗଞ୍ଜାମ ପର୍ଯ୍ୟନ୍ତ କଳିଙ୍ଗର ଏହି ଅଂଶରେ କୁଶାନ ମୁଦ୍ରାର ଏପରି ପ୍ରାଚୁର୍ଯ୍ୟ ଦେଖି କେତେକ ଐତିହାସିକ ମତପୋଷଣ କରିଛନ୍ତି ଯେ କଳିଙ୍ଗ କୁଶାନ ସାମ୍ରାଜ୍ୟର ଏକ ଅଂଶ ଥିଲା। ଐତିହାସିକ ରାଖାଲ ଦାସ ବେନାର୍ଜି ତାହାଙ୍କର ପ୍ରସିଦ୍ଧ 'ଓଡ଼ିଶା ଇତିହାସ'ରେ କଳିଙ୍ଗରେ କୁଶାନ ରାଜତ୍ୱ ସପକ୍ଷରେ ମତ ଦେଇଛନ୍ତି। ତାହାଙ୍କ ଭାଷାରେ, "ଏହା ଅତି ସମ୍ଭବ ଯେ ଯେତେବେଳେ ଉତ୍ତର ଏବଂ ଦକ୍ଷିଣ ବିହାରକୁ କୁଶାନ ସାମ୍ରାଜ୍ୟ ସହ ମିଶାଇ ଦିଆଯାଇଥିଲା, ସେତେବେଳେ ଓଡ଼ିଶା ଏବଂ ଭାରତର ପୂର୍ବ ଉପକୂଳରେ ଋଷିକୂଲ୍ୟା ଓ ଲାଙ୍ଗୁଲ୍ୟା ନଦୀ ପର୍ଯ୍ୟନ୍ତ ଅଞ୍ଚଳ ମଧ୍ୟ ଅଧିକୃତ ହୋଇଥିଲା।" ଐତିହାସିକ ବିଷୟବସ୍ତୁ ଦୃଷ୍ଟିରୁ ରାଖାଲ ଦାସ ବେନାର୍ଜିଙ୍କର ଉକ୍ତ ମତ ସମ୍ପୂର୍ଣ୍ଣ ଭୁଲ ବୋଲି କୁହାଯାଇପାରେ। ମୋ ମତରେ, କଳିଙ୍ଗ କୁଶାନ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହୋଇ ନ ଥିଲା କିମ୍ବା କଳିଙ୍ଗ ଉପରେ କୁଶାନ ସମ୍ରାଟମାନଙ୍କର କୌଣସିପ୍ରକାର ରାଜନୈତିକ ପ୍ରଭାବ ପଡ଼ି ନ ଥିଲା। କାରଣ କଳିଙ୍ଗରୁ କୁଶାନ ମୁଦ୍ରା ମିଳିବା ବ୍ୟତୀତ ଅନ୍ୟକୌଣସି ପ୍ରକାର ଐତିହାସିକ ପ୍ରମାଣ ନାହିଁ, ଯାହାଦ୍ୱାରା କଳିଙ୍ଗ କୁଶାନ ସାମ୍ରାଜ୍ୟର ଏକ ଅଂଶ ଥିଲା ବୋଲି ବିଶ୍ୱାସ କରାଯାଇପାରିବ। କଳିଙ୍ଗରୁ କୁଶାନ ମୁଦ୍ରା ମିଳୁଛି ବୋଲି କଳିଙ୍ଗକୁ କୁଶାନ ସାମ୍ରାଜ୍ୟର ଏକ ଅଂଶ ବୋଲି ଘୋଷଣା କରିବା ସମ୍ପୂର୍ଣ୍ଣ ଅନ୍ୟାୟ। କାରଣ କୁଶାନ ଯୁଗର ମୁଦ୍ରା କୁଶାନ ସାମ୍ରାଜ୍ୟ ନିକଟରୁ ବହୁ ଦୂରସ୍ଥିତ ସ୍ଥାନମାନଙ୍କରୁ ମଧ୍ୟ ମିଳୁଛି। ଏପରିକି ସୁଦୂର ସ୍କ୍ୟାଣ୍ଡିନେଭିୟା ଏବଂ ୱେଲ୍‌ସରେ ମଧ୍ୟ କନିଷ୍କ ମୁଦ୍ରା ଭୂଗର୍ଭରୁ ଆବିଷ୍କୃତ ହୋଇଛି। ଏହାର ଅର୍ଥ ନୁହେଁ ଯେ କନିଷ୍କ ସ୍କ୍ୟାଣ୍ଡିନେଭିୟା ଏବଂ ୱେଲ୍‌ସ ଉପରେ ଶାସନ କରୁଥିଲେ। ଦାକ୍ଷିଣାତ୍ୟର ବିଭିନ୍ନ ସ୍ଥାନରୁ ରୋମାନ୍ ସମ୍ରାଟମାନଙ୍କର ସ୍ୱର୍ଣ୍ଣମୁଦ୍ରା ଆବିଷ୍କୃତ ହୋଇଛି ; କିନ୍ତୁ ସେଥିରୁ ରୋମାନ୍ ସମ୍ରାଟମାନେ ଦାକ୍ଷିଣାତ୍ୟ ଉପରେ ରାଜତ୍ୱ କରୁଥିଲେ ବୋଲି ଧାରଣା କରିବା ସମ୍ପୂର୍ଣ୍ଣ ଅସଙ୍ଗତ। ମୋଟ୍ ଉପରେ କଳିଙ୍ଗର ବିଭିନ୍ନ ସ୍ଥାନରୁ କୁଶାନମୁଦ୍ରା ବାହାରି ଥିବାରୁ କଳିଙ୍ଗ ଉପରେ କୁଶାନ ରାଜତ୍ୱ

ଚାଲିଥିଲା ବୋଲି କୌଣସି ମତେ କୁହାଯାଇ ନ ପାରେ । ସେପରି ସିଦ୍ଧାନ୍ତକୁ ଆସିବା ପାଇଁ ଅନ୍ୟ ଉପାଦାନ ଆବଶ୍ୟକ; କିନ୍ତୁ ସେପରି ଉପାଦାନର ଅସ୍ତିତ୍ୱ ସୁଦ୍ଧା ନାହିଁ । କୁଶାନ ମୁଦ୍ରାମାନଙ୍କର ବହୁଳ ସଂଖ୍ୟାରୁ ରାଖାଲ ଦାସ ବେନାର୍ଜି କଳିଙ୍ଗ କୁଶାନ ସାମ୍ରାଜ୍ୟର ଅଂଶରୂପେ ବିଶ୍ୱାସ କରିନେଇ ସେ ବିଷୟଟିକୁ ନିଶ୍ଚିତରୂପେ ପ୍ରମାଣ କରିବା ପାଇଁ ଅପର ଉପାଦାନ ଖୋଜି ବୁଲିଛନ୍ତି ; କିନ୍ତୁ କୌଣସି ଉପାଦାନ ନ ପାଇ ଶେଷରେ ମାଦଳାପାଞ୍ଜିର କୌଣସି ଅଂଶ ଉପରେ ଆଶ୍ରୟ ନେଇଛନ୍ତି ।

ମାଦଳାପାଞ୍ଜିରେ ଲିଖିତ ଅଛି ଯେ "କଳିଯୁଗର ପ୍ରଥମ ଭାଗରେ ଯୁଧିଷ୍ଠିରଙ୍କୁ ଧରି ୧୮ ଜଣ ରାଜା ୩୬୮୧ ବର୍ଷ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଏହି ବଂଶର ସପ୍ତଦଶ ରାଜା ଶୋଭନଦେବଙ୍କ ରାଜତ୍ୱରେ ଦିଲ୍ଲୀର ମୁଗଲପାତିଶାଙ୍କ ଅମୁରା (ମୋଗଲ ବାଦଶାହଙ୍କ ଅମୀର) ରକ୍ତବାହୁ ଓଡ଼ିଶା ଆକ୍ରମଣ କରିଥିଲେ ।" ଏହି ତଥାକଥିତ ମୁଗଲ ଆକ୍ରମଣକୁ ରାଖାଲ ଦାସ ବେନାର୍ଜି କୁଶାନ ଆକ୍ରମଣ ବୋଲି ପ୍ରମାଣ କରିବାକୁ ଯଥେଷ୍ଟ ଚେଷ୍ଟା କରିଛନ୍ତି । ସେହି ସ୍ୱନାମଧନ୍ୟ ଐତିହାସିକଙ୍କ ପ୍ରତି ଯଥେଷ୍ଟ ସମ୍ମାନ ସହ ମୁଁ ଏତିକି କହିବାକୁ ବାଧ୍ୟ ହେଉଛି ଯେ ମାଦଳାପାଞ୍ଜିର କୌଣସି ଏକ ଅସ୍ପଷ୍ଟ ବିବରଣୀରୁ 'ରକ୍ତବାହୁ' 'ମୁଗଲପାତିଶା' ଇତ୍ୟାଦି ନାମକୁ କେନ୍ଦ୍ରକରି କଳିଙ୍ଗ ଉପରେ କୁଶାନ ଆକ୍ରମଣ ହୋଇଥିଲା ବୋଲି ଅନୁମାନ କରିବା ତାହାଙ୍କର ଉଚିତ ହୋଇନାହିଁ । ଭାରତ ଇତିହାସରେ ଏ ପର୍ଯ୍ୟନ୍ତ କୁଶାନଯୁଗ ସମ୍ବନ୍ଧୀୟ ଯେତେସବୁ ଉପାଦାନ ମିଳିଛି, ସେଥିରୁ ଏହାହିଁ ପ୍ରମାଣ ହେଉଛି ଯେ ଭାରତର ଉତ୍ତର-ପଶ୍ଚିମାଞ୍ଚଳରେ ହିଁ କୁଶାନ ସାମ୍ରାଜ୍ୟ ପ୍ରତିଷ୍ଠିତ ହୋଇଥିଲା । କନିଷ୍କଙ୍କ ସମୟରେ ପୁରୁଷପୁର ବା ପେଶୋୟାରକୁ କେନ୍ଦ୍ରକରି ମଧ୍ୟ-ଏସିଆ ଖଣ୍ଡରୁ କାଶୀ ପର୍ଯ୍ୟନ୍ତ ଏହି ବିସ୍ତୃତ ଭୂଭାଗ ଉପରେ କୁଶାନ ସାମ୍ରାଜ୍ୟ ଠିଆ ହୋଇଥିଲା । ଅତି ବେଶୀରେ ପାଟଳିପୁତ୍ର ପର୍ଯ୍ୟନ୍ତ ତାହାଙ୍କ ସାମ୍ରାଜ୍ୟ ବିସ୍ତୃତି ଲାଭ କରିଥିବ, କାରଣ ପାଟଳିପୁତ୍ରର ରାଜା କନିଷ୍କଙ୍କ ନିକଟରେ ପରାସ୍ତ ହୋଇଥିବାର ଜଣାଯାଏ । କନିଷ୍କଙ୍କ ପରେ କୁଶାନ ସାମ୍ରାଜ୍ୟ ଆଉ ବିସ୍ତୃତି ଲାଭ କରିନାହିଁ । ତେଣୁ ଋଷିକୁଲ୍ୟା ନଦୀ ପର୍ଯ୍ୟନ୍ତ କଳିଙ୍ଗ ଉପରେ କୁଶାନ ରାଜତ୍ୱ ପ୍ରତିଷ୍ଠିତ ହୋଇଥିଲା ବୋଲି ବିଶ୍ୱାସ କରାଯାଇ ନ ପାରେ । ଏଠାରେ ପ୍ରଶ୍ନ ହୋଇପାରେ ଯେ କଳିଙ୍ଗ ଉପରେ ଯଦି କୁଶାନ ରାଜତ୍ୱ ପ୍ରତିଷ୍ଠିତ ହୋଇ ନ ଥିଲା, ତେବେ କଳିଙ୍ଗର ସ୍ଥାନେ ସ୍ଥାନେ ବହୁସଂଖ୍ୟାରେ କୁଶାନ ମୁଦ୍ରା ମିଳୁଛି କିପରି ? ଏ ପ୍ରଶ୍ନର ଉତ୍ତର ଅତି ସହଜ । ଭାରତ ଇତିହାସରେ କୁଶାନ ସଭ୍ୟତା ହେଉଛି ଏକ ଅତି ଉନ୍ନତ ସଭ୍ୟତା । ସମଗ୍ର ଭାରତ ଉପରେ କୁଶାନମାନଙ୍କର ରାଜନୈତିକ ପ୍ରଭାବ ବିସ୍ତାରିତ ହୋଇ ନ ଥିଲେ ମଧ୍ୟ ସେମାନଙ୍କ ସଭ୍ୟତାର ପ୍ରଭାବ ଭାରତର ସମସ୍ତ ଅଞ୍ଚଳ ଉପରେ ଅଳ୍ପ ବହୁତମାତ୍ରାରେ ବିସ୍ତାର ଲାଭ କରିଥିଲା । କଳିଙ୍ଗ ଉପରେ କୁଶାନ ସଭ୍ୟତାର ପ୍ରଭାବ ଅତିମାତ୍ରାରେ ପଡ଼ିଥିଲା । କାରଣ, କୁଶାନ ଯୁଗ ଥିଲା ଅତି ସମୃଦ୍ଧିଶାଳୀ ଏବଂ କୁଶାନ ସାମ୍ରାଜ୍ୟ ଥିଲା ଅତିଶୟ ଧନଶାଳୀ । ତେଣୁ ଏ ଯୁଗରେ ଭାରତର ବହିର୍ବାଣିଜ୍ୟ ଓ ଅନ୍ତର୍ବାଣିଜ୍ୟ ଉଭୟର ପ୍ରଭୂତ ଉନ୍ନତି ସାଧିତ ହୋଇଥିଲା । ବହିର୍ବାଣିଜ୍ୟ ଦୃଷ୍ଟିରୁ କୁଶାନ ସାମ୍ରାଜ୍ୟର ପାଶ୍ଚାତ୍ୟ ଜଗତ ସହିତ ସମ୍ପର୍କ ଇତିହାସରେ ସୁବିଦିତ । ସ୍ଥଳପଥରେ ଆଫଗାନିସ୍ଥାନ ଏବଂ ମଧ୍ୟଏସିଆ ରାସ୍ତାରେ କୁଶାନମାନେ ଏକ ଦିଗରେ ସୁଦୂର ରୋମ ସାମ୍ରାଜ୍ୟ ସହ ଏବଂ ଅପରଦିଗରେ ସୁଦୂର ଚୀନ୍ ସାମ୍ରାଜ୍ୟ ସହ ବାଣିଜ୍ୟଗତ ସମ୍ପର୍କ ଲଗାଇ ରଖିଥିଲେ । ଅନ୍ତର୍ବାଣିଜ୍ୟ

ଦୃଷ୍ଟିରୁ ଏହି ଯୁଗରେ ସାରା ଭାରତ ମଧ୍ୟରେ ଶିଳ୍ପ ବାଣିଜ୍ୟର ଆଦାନପ୍ରଦାନ ଅତି ଜୋରସୋରରେ ଚାଲିଥିଲା । ପ୍ରାଚୀନ ଭାରତରେ କଳିଙ୍ଗ ଯେ ଏକ ପ୍ରସିଦ୍ଧ ବାଣିଜ୍ୟ କେନ୍ଦ୍ର ଥିଲା, ଏହା ନିଃସନ୍ଦେହ ରୂପେ ପ୍ରମାଣିତ ହୋଇଛି । ଖ୍ରୀଷ୍ଟୀୟ ଯୁଗର ପ୍ରଥମ ପାଦରେ ଯେଉଁ ବିଖ୍ୟାତ ଗ୍ରୀକ୍ ଓ ରୋମୀୟ ପରିବ୍ରାଜକ ଓ ଭୌଗୋଳିକମାନେ ଭାରତ ଉପରେ ଦୃଷ୍ଟିପାତ କରିଥିଲେ, ସେମାନେ କଳିଙ୍ଗକୁ ପ୍ରାଚ୍ୟର ଏକ ବିଖ୍ୟାତ ବାଣିଜ୍ୟ କେନ୍ଦ୍ର ରୂପେ ଦେଖିବାକୁ ପାଇଥିଲେ । ଏପରି ଏକ ବାଣିଜ୍ୟ କେନ୍ଦ୍ର ସହ କୁଶାନ ସାମ୍ରାଜ୍ୟର ବାଣିଜ୍ୟିକ ସମ୍ପର୍କ ଲାଗି ରହିଥିଲା ଏଥିରେ ସନ୍ଦେହ ନାହିଁ । ଏହି ବାଣିଜ୍ୟଗତ ସମ୍ପର୍କ ପାଇଁ କଳିଙ୍ଗରେ କୁଶାନ ମୁଦ୍ରାର ବହୁଳ ବିସ୍ତାର ହୋଇଥିଲା । ଆଜି କଳିଙ୍ଗର ଭୂଗର୍ଭରୁ ଯେଉଁ କୁଶାନ ମୁଦ୍ରା ବାହାରୁଛି, ତାହା କଳିଙ୍ଗ ସହ କୁଶାନ ସାମ୍ରାଜ୍ୟର ଯେଉଁ ପଣ୍ୟ ବିନିମୟ ଚାଲିଥିଲା, ତାହାହିଁ ପ୍ରମାଣ କରୁଛି । ଦକ୍ଷିଣ ଭାରତର ବିବିଧ ପଣ୍ୟଦ୍ରବ୍ୟ କଳିଙ୍ଗର ବାଣିଜ୍ୟ କେନ୍ଦ୍ରମାନଙ୍କରୁ କୁଶାନ ସାମ୍ରାଜ୍ୟ ମଧ୍ୟକୁ ଗତି କରୁଥିଲା ଏବଂ କୁଶାନମାନେ ସେହି ପଣ୍ୟଦ୍ରବ୍ୟ ସୁଦୂର ରୋମୀୟ ସାମ୍ରାଜ୍ୟ ଉଦ୍ଦେଶ୍ୟରେ ପଠାଇ ଦେଉଥିଲେ । ଏହାଛଡ଼ା କୁଶାନ ସାମ୍ରାଜ୍ୟର ବହିର୍ବାଣିଜ୍ୟ କେବଳ ସ୍ଥଳପଥରେ ବହିର୍ଦ୍ଦେଶକୁ ନ ଯାଇ ଜଳପଥରେ ମଧ୍ୟ ଯାଉଥିଲା । ଏହାର ଭୁରି ଭୁରି ପ୍ରମାଣ ସେ କାଳର ବିଦେଶୀ ପରିବ୍ରାଜକମାନଙ୍କ ବିବରଣୀରୁ ମିଳେ । ଭାରତର ପଶ୍ଚିମ ଉପକୂଳ ଏବଂ ପୂର୍ବ ଉପକୂଳର ବନ୍ଦରମାନଙ୍କ ମଧ୍ୟ ଦେଇ କୁଶାନ ବାଣିଜ୍ୟ ଦ୍ରବ୍ୟ ପାଶ୍ଚାତ୍ୟ ଏବଂ ପ୍ରାଚ୍ୟ ଉଦ୍ଦେଶ୍ୟରେ ଯାଉଥିଲା । ଏପରିସ୍ଥଳେ କଳିଙ୍ଗ ବିଖ୍ୟାତ ବନ୍ଦରମାନଙ୍କରୁ ମଧ୍ୟ କୁଶାନ ସାମଗ୍ରୀ ବିଦେଶକୁ ଯାଇଥିବ । ଏହିପରି ଭାବେ କୁଶାନ ସାମ୍ରାଜ୍ୟ ସହ କଳିଙ୍ଗର ଅର୍ଥନୈତିକ ଯୋଗାଯୋଗ ଅତି ଘନିଷ୍ଠ ଥିଲା, ଯାହାଫଳରେ କୁଶାନ ମୁଦ୍ରା କଳିଙ୍ଗ ମଧ୍ୟକୁ ଯଥେଷ୍ଟ ମାତ୍ରାରେ ଆସିଯାଇଥିଲା । ମୋଟ୍‌ଉପରେ କୁଶାନ ଯୁଗର ରାଜନୈତିକ ପ୍ରଭାବ କଳିଙ୍ଗ ଉପରେ ପଡ଼ି ନ ଥିଲେ ସୁଦ୍ଧା ଅନ୍ୟ ପ୍ରଭାବମାନ ପଡ଼ିଥିଲା । ଏହା ଅତି ସ୍ୱାଭାବିକ । କୁଶାନ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ନ ହୋଇ ମଧ୍ୟ କଳିଙ୍ଗବାସୀମାନେ ସେହି ସାମ୍ରାଜ୍ୟ ସହ ଭାବ ବିନିମୟ କରିପାରିଥିଲେ । ଅନ୍ତତଃ କଳିଙ୍ଗର କୁଶାନ ମୁଦ୍ରାମାନଙ୍କରୁ ଏତିକି କଥା ଉତ୍ତମ ରୂପେ ପ୍ରମାଣିତ ହେଉଛି ।

କିପରି ଥିଲା ଏହି କୁଶାନ ସଭ୍ୟତାର ରୂପ ? ଭାରତ ଇତିହାସରେ ମୌର୍ଯ୍ୟ-ସଭ୍ୟତା ପରେ ଏବଂ ଗୁପ୍ତ ସଭ୍ୟତା ପୂର୍ବରୁ କୁଶାନ ସଭ୍ୟତା ହିଁ ଥିଲା ଏକମାତ୍ର ଉଲ୍ଲେଖଯୋଗ୍ୟ ନିଖିଳ ଭାରତୀୟ ସଭ୍ୟତା । କୁଶାନମାନେ ଥିଲେ ବିଦେଶୀ; କିନ୍ତୁ ସେମାନଙ୍କର ବିଶେଷତ୍ୱ ହେଉଛି ଭାରତମାଟିରେ ବସତି ସ୍ଥାପନ କରିବା ସଙ୍ଗେ ସଙ୍ଗେ ସେମାନେ ନିଜକୁ ଭାରତର ସନ୍ତାନ ବୋଲି ପରିଚିତ କରାଇଥିଲେ ଏବଂ ଭାରତୀୟ ସଭ୍ୟତାର ବିକାଶ ଓ ବୃଦ୍ଧି ପାଇଁ ପ୍ରାଣପଣ ଚେଷ୍ଟା କରିଥିଲେ । ପ୍ରଥମେ ଭାରତୀୟ କୁଶାନମାନେ ହିନ୍ଦୁଧର୍ମ ଗ୍ରହଣ କରିଥିଲେ, ତା'ପରେ ବୌଦ୍ଧଧର୍ମ ସେମାନଙ୍କ ଉପରେ ଯଥେଷ୍ଟ ପ୍ରଭାବ ବିସ୍ତାର କରିଥିଲା ଏବଂ ଶେଷରେ ପୁଣି ସେମାନେ ହିନ୍ଦୁଧର୍ମକୁ ଫେରିଆସିଥିଲେ । ଏକ କଥାରେ ସେମାନଙ୍କର ଆଦିଧର୍ମ ପରିତ୍ୟାଗ କରି କୁଶାନମାନେ ଭାରତୀୟ ଧର୍ମକୁ ସ୍ୱଧର୍ମରୂପେ ସାଦରେ ଗ୍ରହଣ କରି ନେଇଥିଲେ ଏବଂ ଭାରତୀୟ ଧର୍ମର ଉନ୍ନତି କଳ୍ପେ ତଥା ପ୍ରଚାରାର୍ଥେ ବହୁ ଚେଷ୍ଟା କରିଥିଲେ । ଏ ଦିଗରେ ମହାମତି କନିଷ୍କଙ୍କ ଦୃଷ୍ଟାନ୍ତ ଇତିହାସ ପ୍ରସିଦ୍ଧ । ସମ୍ରାଟ କନିଷ୍କ ପ୍ରଥମେ ହିନ୍ଦୁ ଧର୍ମାବଲମ୍ବୀ ଥିଲେ ବୋଲି ତାହାଙ୍କର ମୁଦ୍ରାଙ୍କିତ

ହିନ୍ଦୁ ଦେବମୂର୍ତ୍ତିମାନଙ୍କରୁ ଜଣାଯାଏ । ସୂର୍ଯ୍ୟ, ଚନ୍ଦ୍ର ଏବଂ ଅନ୍ୟାନ୍ୟ ହିନ୍ଦୁ ଦେବତା ପ୍ରଥମେ ତାହାଙ୍କ ଦ୍ୱାରା ପୂଜିତ ହେଉଥିଲେ । ତା'ପରେ କନିଷ୍କ ବୌଦ୍ଧଧର୍ମ ଗ୍ରହଣ କରିଥିଲେ ଏବଂ ଧର୍ମର ପରମ ପୃଷ୍ଠପୋଷକ ହୋଇପଡ଼ିଥିଲେ । ବୌଦ୍ଧଜଗତରେ କନିଷ୍କଙ୍କ ସ୍ଥାନ ଅଶୋକଙ୍କ ଠିକ୍ ତଳେ । କନିଷ୍କଙ୍କ ପୂର୍ବରୁ ବୌଦ୍ଧଧର୍ମ ହୀନଯାନ ଏବଂ ମହାଯାନ ନାମକ ଦୁଇଗୋଟି ପୃଥକ୍ ସମ୍ପ୍ରଦାୟରେ ବିଭକ୍ତ ହୋଇ କ୍ରମେ କ୍ରମେ ନିଷ୍ପ୍ରଭ ହୋଇଆସୁଥିଲା । କନିଷ୍କ ବୌଦ୍ଧଧର୍ମକୁ ଏହି ଅଧୋଗତି ମୁଖରୁ ରକ୍ଷା କରିବା ପାଇଁ ଏବଂ ବୌଦ୍ଧମାନଙ୍କ ମଧ୍ୟରୁ ବିରୋଧ ଭାବ ଦୂର କରିବା ଉଦ୍ଦେଶ୍ୟରେ ଭାରତର ସମସ୍ତ ପ୍ରାନ୍ତରୁ ବୌଦ୍ଧପଣ୍ଡିତମାନଙ୍କୁ ଆମନ୍ତ୍ରିତ କରି ଏକ ଧର୍ମ ମହାସମ୍ମିଳନୀ ଅନୁଷ୍ଠିତ କରାଇଥିଲେ । କନିଷ୍କଙ୍କ ଆହୂତ ଏହି ସମ୍ମିଳନୀ ହେଉଛି ବୌଦ୍ଧଧର୍ମର ଚତୁର୍ଥ ଏବଂ ଶେଷ ମହାସଭା ।

ଏହି ମହାସଭାରେ ବହୁ ଆଲୋଚନା ପରେ ଶେଷରେ ମହାଯାନ ମତବାଦ ଗ୍ରହଣ କରାଯାଇଥିଲା । ଏହି ମତବାଦର ପୃଷ୍ଠପୋଷକ ରୂପେ କନିଷ୍କ ଭାରତ ଭିତରେ ତଥା ବାହାରେ ବୌଦ୍ଧଧର୍ମର ଏକ ନୂତନ ମାର୍ଗ ପ୍ରଚାର କରିଥିଲେ । ଅଶୋକଙ୍କ ପରି ଏହି କୁଶାନ ସମ୍ରାଟ ଭାରତର ବହୁସ୍ଥାନରେ ବହୁ ସ୍ତୂପ, ମଠ ଏବଂ ବିହାର ଇତ୍ୟାଦି ନିର୍ମାଣ କରାଇଥିଲେ । ତାହାଙ୍କ ରାଜଧାନୀ ପୁରୁଷପୁରଠାରେ ବୁଦ୍ଧଦେବଙ୍କ ଅସ୍ଥିଖଣ୍ଡ ଉପରେ କନିଷ୍କ ଯେଉଁ ବିରାଟ ସ୍ତୂପ ନିର୍ମାଣ କରାଇଥିଲେ, ତାହା ବହୁ ଶତାବ୍ଦୀ ପର୍ଯ୍ୟନ୍ତ କୁଶାନ ସ୍ଥାପତ୍ୟର ଶ୍ରେଷ୍ଠ ନିଦର୍ଶନ ରୂପେ ଦର୍ଶକମାନଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରିଥିଲା । କନିଷ୍କ ଭାରତର ଶ୍ରେଷ୍ଠତମ ପଣ୍ଡିତମାନଙ୍କ ମଧ୍ୟରୁ ଅନ୍ୟତମ । ତାହାଙ୍କ ଧମନୀରେ ବୈଦେଶିକ ରକ୍ତ ପ୍ରବାହିତ ହେଉଥିଲେ ସୁଦ୍ଧା ତାହାଙ୍କ ମନପ୍ରାଣରେ ଭାରତୀୟ ସଂସ୍କୃତି ଓ ଭାରତୀୟ ଚିନ୍ତାଧାରା ପୂର୍ଣ୍ଣମାତ୍ରାରେ ଆଧିପତ୍ୟ ବିସ୍ତାର କରିଥିଲା । ସେଥିପାଇଁ କନିଷ୍କଙ୍କ ପୃଷ୍ଠପୋଷକତାରେ ଭାରତୀୟ ଦର୍ଶନ, ସାହିତ୍ୟ ଏବଂ ବିଜ୍ଞାନ ଇତ୍ୟାଦିର ପ୍ରଭୂତ ଉନ୍ନତି ସାଧିତ ହୋଇଥିଲା । କନିଷ୍କଙ୍କ ପୃଷ୍ଠପୋଷକତାରେ ବିଖ୍ୟାତ ବୌଦ୍ଧ କବି ଓ ସଙ୍ଗୀତଜ୍ଞ ଅଶ୍ୱଘୋଷ ତାହାଙ୍କର 'ବୁଦ୍ଧ ଚରିତ' ରଚନା କରିଥିଲେ । ଏହି ଗ୍ରନ୍ଥ ବୌଦ୍ଧ ସାହିତ୍ୟର ଏକ ଉଜ୍ଜ୍ୱଳ ରତ୍ନ । ଅଶ୍ୱଘୋଷ ପ୍ରଥମେ ଥିଲେ ବ୍ରାହ୍ମଣ ଏବଂ ପରେ ହୋଇଯାଇଥିଲେ ବୌଦ୍ଧ; କିନ୍ତୁ ସେ ହେଉଛନ୍ତି ସେ ଯୁଗର ଶ୍ରେଷ୍ଠ ସଂସ୍କୃତ କବି । ତାହାଙ୍କ ବୁଦ୍ଧଚରିତ ଏକ ମହାକାବ୍ୟ ଧରଣରେ ଲିଖିତ । ଏହି ଗ୍ରନ୍ଥ ବ୍ୟତୀତ ଅଶ୍ୱଘୋଷ ସୌନ୍ଦରାନନ୍ଦ କାବ୍ୟ, ସୂତ୍ରାଳଙ୍କାର, ବଜ୍ରସୂଚୀ, ସାରିପୁତ୍ର ପ୍ରକରଣ ଇତ୍ୟାଦି ପୁସ୍ତକମାନ ପ୍ରଣୟନ କରିଥିଲେ । ଅଶ୍ୱଘୋଷଙ୍କ ଲେଖା ଅତି ଉନ୍ନତ ଧରଣର ଥିଲା ଏବଂ ସେପରି ଉନ୍ନତ ଲେଖା ଖ୍ରୀଷ୍ଟଯୁଗର ଆରମ୍ଭକାଳରେ ଦେଖିବାକୁ ମିଳେ ବୋଲି ପଣ୍ଡିତମଣ୍ଡଳୀ ଆଶ୍ଚର୍ଯ୍ୟ ହୋଇଛନ୍ତି । ତାହାଙ୍କ ସମ୍ବନ୍ଧରେ ସୁବିଖ୍ୟାତ ଫରାସୀ ପଣ୍ଡିତ ସିଲ୍‌ଭା ଲେଭି ନିମ୍ନଲିଖିତ ରୂପେ ଲେଖିଛନ୍ତି । "ଖ୍ରୀଷ୍ଟୀୟ ଶତାବ୍ଦୀର ପ୍ରାରମ୍ଭରେ ଯେ ସମସ୍ତ ମହାନ୍ ଚିନ୍ତାଧାରା ଭାରତବର୍ଷକୁ ସଞ୍ଜୀବୀତ ଓ ପରିବର୍ତ୍ତିତ କରିଛି, ଅଶ୍ୱଘୋଷ ତାହାରି ଉତ୍ପତ୍ତି ସ୍ଥଳରେ ଦଣ୍ଡାୟମାନ । ଭାବର ସମ୍ପଦ ଓ ବୈଚିତ୍ର୍ୟରେ ସେ ମିଲ୍‌ଟନ୍, ଗେଟେ, କ୍ୟାଣ୍ଟ ଓ ଭଲ୍‌ଟେୟାରଙ୍କ କଥା ସ୍ମରଣ କରାଇଦିଅନ୍ତି ।"

ଏପରି ଏକ ପଣ୍ଡିତଙ୍କୁ ନିଜ ରାଜଦରବାରରେ ଆଶ୍ରୟ ଦେଇ କନିଷ୍କ ନିଜ ପ୍ରଗାଢ଼ ପାଣ୍ଡିତ୍ୟର ପରିଚୟ ଦେଇଥିଲେ । ଅଶ୍ୱଘୋଷଙ୍କ ବ୍ୟତୀତ ସୁପ୍ରସିଦ୍ଧ ବୌଦ୍ଧ ଦାର୍ଶନିକ ଓ ବୈଜ୍ଞାନିକ ନାଗାର୍ଜୁନ ଓ

ବସୁମିତ୍ର ଏବଂ ଚିକିତ୍ସାଶାସ୍ତ୍ର ପ୍ରଣେତା ମହାମନୀଷୀ ଚରକ ପ୍ରଭୃତି ସେ ଯୁଗର ଶ୍ରେଷ୍ଠ ପଣ୍ଡିତମାନେ ମଧ୍ୟ କନିଷ୍କଙ୍କ ରାଜଦରବାର ମଣ୍ଡନ କରିଥିଲେ। ଖ୍ରୀଷ୍ଟୀୟ ଯୁଗର ଆରମ୍ଭରେ ଏହି ମହାମନୀଷୀମାନେ ହିଁ ଭାରତୀୟ ଚିନ୍ତାଧାରାର କର୍ଣ୍ଣଧାର ରୂପେ କାର୍ଯ୍ୟ କରିଥିଲେ ଏବଂ କୁଶାନ ଯୁଗର ସଭ୍ୟତାକୁ ଭାରତର ଏକ ଶ୍ରେଷ୍ଠ ସଭ୍ୟତାରେ ପରିଣତ କରାଇଥିଲେ। ଶିଳ୍ପ ଓ ସ୍ଥାପତ୍ୟ କ୍ଷେତ୍ରରେ ଭାରତକୁ କୁଶାନ ଯୁଗର ବିଶିଷ୍ଟ ଦାନ ହେଉଛି 'ଗାନ୍ଧାର ଶିଳ୍ପ'। ଭାରତୀୟ ଶିଳ୍ପକଳା ସହ ଗ୍ରୀକ୍ ଓ ରୋମାନ୍ ଶିଳ୍ପକଳାର ଅପୂର୍ବ ମିଳନ ମଧ୍ୟରୁ 'ଗାନ୍ଧାର ଶିଳ୍ପ'ର ଜନ୍ମ। କୁଶାନ ଯୁଗରେ ଭାରତୀୟ ସାମ୍ରାଜ୍ୟର ସୀମା ପଶ୍ଚିମ ଏସିଆର ବହୁଦୂର ପର୍ଯ୍ୟନ୍ତ ବିସ୍ତୃତି ଲାଭ କରିଥିଲା। ପଶ୍ଚିମ ଏସିଆର ସେହି ଅଞ୍ଚଳ ସହିତ ଗ୍ରୀକ୍ ଏବଂ ରୋମାନ୍ ଜଗତର ଘନିଷ୍ଠ ସମ୍ପର୍କ ଥିଲା। ଏତଦ୍ୱାରା କୁଶାନ ସାମ୍ରାଜ୍ୟ ମଧ୍ୟକୁ ଗ୍ରୀକ୍ ଏବଂ ରୋମାନ୍ ସଭ୍ୟତାର ପ୍ରଭାବ ଅଳ୍ପବହୁତ ମାତ୍ରାରେ ମାଡ଼ି ଆସିଥିଲା। ଏହି ପ୍ରଭାବର ସର୍ବଶ୍ରେଷ୍ଠ ଅଂଶଟିକକ ଥିଲା କଳା। କିନ୍ତୁ ଗ୍ରୀକ୍ ଓ ରୋମୀୟ ଜଗତର କଳା ଭାରତରେ ପ୍ରବେଶ କଲା ପରେ ସେହି କଳା ଉପରେ ଭାରତୀୟ କଳା ନିଜର ପ୍ରାଧାନ୍ୟ ସ୍ଥାପନ କରିଥିଲା। କୁଶାନମାନେ ଭାରତୀୟ କଳାର ଯେଉଁ ପୃଷ୍ଠପୋଷକତା କରିଥିଲେ, ତାହାଦ୍ୱାରା ପଶ୍ଚିମ ଏସିଆଖଣ୍ଡରେ ଭାରତୀୟ କଳାର ପ୍ରାଧାନ୍ୟ ବିସ୍ତାର ହୋଇପାରିଥିଲା। ତଥାପି ଭାରତୀୟ କଳା ଅଙ୍ଗରେ ଗ୍ରୀକ୍-ରୋମାନ୍ କଳାର ଆଭାସ ଟିକକ ଭାରତର ପଶ୍ଚିମାଞ୍ଚଳରେ ଏବଂ ପଶ୍ଚିମ-ଏସିଆ ଖଣ୍ଡରେ ଦେଖିବାକୁ ମିଳିଥିଲା। ଭାରତୀୟ କଳାର ପ୍ରାଧାନ୍ୟ ସଙ୍ଗେ ଗ୍ରୀକ୍-ରୋମାନ୍ କଳାର ଆଭାସ– ଏହାର ନାମ ହେଉଛି 'ଗାନ୍ଧାର ଶିଳ୍ପ'। ଗାନ୍ଧାର ଶିଳ୍ପର ଏକ ବିଶିଷ୍ଟ ଦାନ ହେଉଛି ବୁଦ୍ଧଦେବଙ୍କର ଏକପ୍ରକାର ପୂର୍ଣ୍ଣାଙ୍ଗ ପ୍ରସ୍ତର ମୂର୍ତ୍ତି, ଯାହାକି ଗାନ୍ଧାର ଅଞ୍ଚଳରୁ ଆରମ୍ଭ କରି ମଧ୍ୟଏସିଆ, ପଶ୍ଚିମଏସିଆ, ଚୀନ, ତିବ୍ବତ ଏବଂ ଜାପାନ ପର୍ଯ୍ୟନ୍ତ ଦେଖିବାକୁ ମିଳେ ଏବଂ ଯେଉଁ ଶିଳ୍ପର ଅନୁକରଣରେ ହଜାର ହଜାର ବୁଦ୍ଧ ମୂର୍ତ୍ତି ନିର୍ମିତ ହୋଇଛି ଏବଂ ଉପରଲିଖିତ ଅଞ୍ଚଳମାନଙ୍କରେ ଛାଇ ଯାଇଛି। ଭାରତୀୟ ଛାଞ୍ଚରେ ନିର୍ମିତ ହୋଇଥିବା ଗ୍ରୀକ୍ କଳାର ନିଦର୍ଶନ କୁଶାନ ଯୁଗର ସ୍ଥାପତ୍ୟ ଦେହରେ ଦେଖିବାକୁ ମିଳୁଛି। ଗାନ୍ଧାର ଶିଳ୍ପର ନିଦର୍ଶନ ମଥୁରା ଏବଂ ସାରନାଥ ପର୍ଯ୍ୟନ୍ତ ସ୍ଥାନମାନଙ୍କରେ ଦେଖିବାକୁ ମିଳେ; କିନ୍ତୁ ଅଳ୍ପ ସମୟ ମଧ୍ୟରେ ଭାରତୀୟ କଳା ଗ୍ରୀକ୍ ପ୍ରଭାବରୁ ସମ୍ପୂର୍ଣ୍ଣରୂପେ ମୁକ୍ତିଲାଭ କରିଥିଲା ଏବଂ ଏପରିକି ସେହି କୁଶାନଯୁଗରେ ମଧ୍ୟ ଗ୍ରୀକ୍ କଳାକୁ ଭାରତରୁ ବହିଷ୍କୃତ କରିଦେବାକୁ ଚାହୁଁଥିଲା । କାରଣ ଭାରତୀୟ କଳା ଏତେ ଉନ୍ନତ ଏବଂ ଏତେ ବିରାଟ ଯେ ଅପର କଳାମାନଙ୍କର ପ୍ରଭାବ ଗ୍ରହଣ କରିବା ତା' ପକ୍ଷରେ ଆବଶ୍ୟକ ହୋଇନାହିଁ। କୁଶାନ ସମ୍ରାଟମାନଙ୍କର ପୃଷ୍ଠପୋଷକତାରେ ସାରନାଥ, ଶ୍ରାବସ୍ତୀ ଏବଂ ମଥୁରାରେ ବୋଧିସତ୍ତ୍ୱମାନଙ୍କର ପ୍ରକାଣ୍ଡ ପ୍ରସ୍ତର ମୂର୍ତ୍ତିମାନ ନିର୍ମିତ ହୋଇଥିଲା। ଏହି ଯୁଗରେ ସୂକ୍ଷ୍ମ କାରୁକାର୍ଯ୍ୟ ଏବଂ ଚାରୁକଳା ମଧ୍ୟ ଏକ ଉନ୍ନତ ସ୍ତରରେ ପହଞ୍ଚିଥିଲା। ସେ ସବୁର ନିଦର୍ଶନ ଅନେକ ସ୍ଥାନରେ ମିଳିଛି। କୁଶାନ ଯୁଗରେ ଭାରତୀୟ ଶିକ୍ଷା ମୌର୍ଯ୍ୟଯୁଗର ଶିକ୍ଷାପରି ଉତ୍କର୍ଷ ଲାଭ କରିଥିଲା। ତକ୍ଷଶିଳା ବିଶ୍ୱବିଦ୍ୟାଳୟ ଏହି ଯୁଗରେ ପୂର୍ବଠାରୁ ଅଧିକତର ପ୍ରସିଦ୍ଧି ଲାଭ କରିଥିଲା। କୁଶାନ ଯୁଗର ପ୍ରତିଭା ବିକାଶ ଦିଗରେ ଏକ ବିଶେଷତ୍ୱ ହେଉଛି କୁଶାନମାନେ ପ୍ରଥମେ ମଙ୍ଗୋଲିୟ ଥିବାରୁ ସେମାନଙ୍କର ସେହି ଅଞ୍ଚଳ ସହିତ ସମ୍ବନ୍ଧ ଲାଗି ରହୁଥିଲା ଏବଂ ଫଳରେ ଚୀନଦେଶ ମଧ୍ୟକୁ ବୌଦ୍ଧଧର୍ମର

ସ୍ରୋତ ପୁନର୍ବାର ପ୍ରବଳ ଗତିରେ ମାଡ଼ି ଯାଇଥିଲା । ଭାରତରେ କୁଶାନ ଯୁଗ ଆରମ୍ଭ ବେଳକୁ ପାଶ୍ଚାତ୍ୟଖଣ୍ଡରେ ଖ୍ରୀଷ୍ଟଧର୍ମ ଜନ୍ମଗ୍ରହଣ କରିସାରିଥିଲା ସତ୍ୟ; କିନ୍ତୁ ସେତେବେଳେ ଖ୍ରୀଷ୍ଟଧର୍ମ ଏକ ଦୁଗ୍‌ଧପୋଷ୍ୟ ଶିଶୁମାତ୍ର । ଯେତେବେଳେ କୁଶାନ ସମ୍ରାଟମାନେ ପଶ୍ଚିମ-ଏସିଆଖଣ୍ଡରେ ବୌଦ୍ଧଧର୍ମ ଓ ଭାରତୀୟ ସଭ୍ୟତା ନବ ଉଦ୍ୟମରେ ପ୍ରସାର କରାଉଥାଆନ୍ତି, ସେତେବେଳେ ଶିଶୁ-ଖ୍ରୀଷ୍ଟଧର୍ମ ବୌଦ୍ଧ ଆଧ୍ୟାତ୍ମିକତା ଓ ରୀତିନୀତି ମଧ୍ୟରୁ ଯଥେଷ୍ଟ ଖାଦ୍ୟଗ୍ରହଣ କରି ନିଜର ପୁଷ୍ଟି ସାଧନ କରିଥିବ ବୋଲି ଐତିହାସିକ ହ୍ୟାଭେଲ୍ ବିଶ୍ୱାସ କରନ୍ତି ।

କୁଶାନ ସଭ୍ୟତାର ବିଶେଷ ପରିଚୟ ଦେବା ସ୍ଥାନ ଦୃଷ୍ଟିରୁ ଅସମ୍ଭବ । କଳିଙ୍ଗ ସହ ଏ ସଭ୍ୟତାର ସମ୍ପର୍କ ବିଷୟରେ କେବଳ ଏତିକି କହିଲେ ଯଥେଷ୍ଟ ହେବ ଯେ ଯେଉଁ ସଭ୍ୟତାର ପ୍ରଭାବ ଦିନେ ସମଗ୍ର ପଶ୍ଚିମ-ଏସିଆଖଣ୍ଡରେ ବିସ୍ତାର ଲାଭ କରିଥିଲା ଏବଂ ଯେଉଁ ସଭ୍ୟତାର ଆଲୋକ ସୁଦୂର ଚୀନ ସାମ୍ରାଜ୍ୟର ଶେଷସୀମା ପର୍ଯ୍ୟନ୍ତ ଦେଖାଯାଇଥିଲା ଏବଂ ଯେଉଁ ସଭ୍ୟତା ଭାରତର ଉତ୍ତର-ପଶ୍ଚିମାଞ୍ଚଳରେ ଏକ ସୁଦୃଢ଼ ଭିତ୍ତି ସ୍ଥାପନ କରିପାରିଥିଲା ସେ ସଭ୍ୟତାର ପ୍ରଭାବ ଯେ କଳିଙ୍ଗ ଉପରେ ପଡ଼ି ନ ଥିବ, ଏହା ଭାବିବା ପ୍ରାୟ ଅସମ୍ଭବ । କୁଶାନ ସାମ୍ରାଜ୍ୟର ଦକ୍ଷିଣ-ପୂର୍ବ ବିସ୍ତୃତ ଥିଲା ମଗଧ ପର୍ଯ୍ୟନ୍ତ । ସୁତରାଂ ମଗଧ ପର୍ଯ୍ୟନ୍ତ ଭୂଭାଗ କୁଶାନ ସଭ୍ୟତା ତଳେ ବୁଡ଼ି ରହିଥିଲା, ଏଥିରେ ସନ୍ଦେହ କରାଯାଇ ନପାରେ । କଳିଙ୍ଗ ସୀମାକୁ ସ୍ପର୍ଶ କରି କୁଶାନ ସାମ୍ରାଜ୍ୟର ବିସ୍ତୃତି ଥିବା ସ୍ଥଳେ କୁଶାନ ସଭ୍ୟତା ନିଶ୍ଚୟ କଳିଙ୍ଗ ଉପରେ ଯଥେଷ୍ଟ ପ୍ରଭାବ ବିସ୍ତାର କରିଥିଲା । ସେ ପ୍ରଭାବ ପଡ଼ି ନ ଥିଲେ କଳିଙ୍ଗ ଦେଶର ସିଂହଭୂମ ନିକଟରୁ ଗଞ୍ଜାମ ପର୍ଯ୍ୟନ୍ତ ଭୂଖଣ୍ଡର ବିଭିନ୍ନ ସ୍ଥାନରେ କୁଶାନ ମୁଦ୍ରା ଦେଖିବାକୁ ମିଳୁ ନ ଥା'ନ୍ତା । ଅତଏବ ଖ୍ରୀଷ୍ଟୀୟ ଯୁଗର ପ୍ରଥମ ପାଦରେ ଉତ୍କଳୀୟ ସଭ୍ୟତା ଉପରେ କୁଶାନ ସଭ୍ୟତା ତାହାର ପଟୁ ନିକ୍ଷେପ କରି ଉତ୍କଳୀୟ ସଭ୍ୟତାର ଅଙ୍ଗ ବୃଦ୍ଧି ଦିଗରେ ସାହାଯ୍ୟ କରିଥିଲା ।

କିନ୍ତୁ କୁଶାନ ଯୁଗରେ କଳିଙ୍ଗର ଧର୍ମ ସମ୍ବନ୍ଧରେ ଏତିକି ଅନୁମାନ କରାଯାଇପାରେ ଯେ ନବପ୍ରବର୍ତ୍ତିତ ମହାଯାନ ମତବାଦ କଳିଙ୍ଗ ଉପରେ ପ୍ରାଧାନ୍ୟ ବିସ୍ତାର କରିପାରି ନ ଥିଲା । କାରଣ ଶେଷପର୍ଯ୍ୟନ୍ତ ଉତ୍କଳରେ ହୀନଯାନ ମତବାଦର ପ୍ରାଧାନ୍ୟ ପରିଲକ୍ଷିତ ହୋଇଛି । ଖ୍ରୀଷ୍ଟଯୁଗର ଆରମ୍ଭରେ ଉତ୍କଳରେ ବୌଦ୍ଧଧର୍ମ, ଜୈନଧର୍ମ ଏବଂ ବ୍ରାହ୍ମଣ୍ୟଧର୍ମ ପରସ୍ପର ପ୍ରତି ବିଦ୍ୱେଷଭାବ ପୋଷଣ ନ କରି ଯେ ଯାହା ଉପାୟରେ ତିଷ୍ଠି ରହିଥିଲେ । ଏହି ସମୟରେ ଉତ୍କଳରେ କେଉଁ ଧର୍ମ ପ୍ରାଧାନ୍ୟ ଲାଭ କରିଥିଲା, ତାହା ଅନୁମାନ କରିବା କଷ୍ଟକର । ଅଶୋକ କିମ୍ବା ଖାରବେଳଙ୍କ ପରି ବୌଦ୍ଧ କିମ୍ବା ଜୈନଧର୍ମର ପୃଷ୍ଠପୋଷକତା କରିବାପାଇଁ ଏ ସମୟରେ କେହି ନ ଥିଲେ । ତେଣୁ ରାଜକୀୟ ଧର୍ମ ହିସାବରେ ଏହି ଯୁଗରେ କୌଣସି ଧର୍ମ ପ୍ରାଧାନ୍ୟ ଲାଭ କରିବାର ସୁଯୋଗ ପାଇ ନ ଥିଲା । କିନ୍ତୁ ଉତ୍ତର ଭାରତରେ ଏହି ସମୟରେ ପୁନର୍ବାର ବୌଦ୍ଧଧର୍ମ ପ୍ରବଳ ହୋଇଉଠିଥିଲା । ନାଗାର୍ଜୁନ ଏବଂ ଆର୍ଯ୍ୟଦେବ ପ୍ରଭୃତି ବୌଦ୍ଧ ଦାର୍ଶନିକମାନେ ବୌଦ୍ଧଧର୍ମ ପ୍ରଚାର କରି ବୁଲିଥିଲେ । କନିଷ୍କ ବୌଦ୍ଧଧର୍ମକୁ ତାହାଙ୍କ ସାମ୍ରାଜ୍ୟର ରାଜକୀୟ ଧର୍ମ କରିବା ଦ୍ୱାରା ମଧ୍ୟ ସେ ଧର୍ମ ବଳପ୍ରାପ୍ତ ହୋଇଥିଲା । ଉତ୍ତରଭାରତରେ ଯେତେବେଳେ ଏହିପରି ବୌଦ୍ଧଧର୍ମର ଉତ୍‌ଥାନ, ଦାକ୍ଷିଣାତ୍ୟରେ ଆନ୍ଧ୍ର ସାତବାହନ ସମ୍ରାଟମାନେ ମଧ୍ୟ ବୌଦ୍ଧଧର୍ମର ପୃଷ୍ଠପୋଷକତା କରିଥିଲେ । ସୁତରାଂ ଭାରତବ୍ୟାପୀ

ବୌଦ୍ଧ ପ୍ରାଧାନ୍ୟ ସମୟରେ କଳିଙ୍ଗରେ ସେ ଧର୍ମ କିଛିମାତ୍ରାରେ ଉତ୍‌ଥାନମୁଖୀ ହୋଇଥାଇପାରେ ବୋଲି ଅନୁମାନ ।

ଏହିଠାରେ ଅପର ଏକ ବିଷୟ ପ୍ରତି ଦୃଷ୍ଟି ଦେବା ଉଚିତ । ଖ୍ରୀଷ୍ଟଯୁଗର ପ୍ରଥମ ପର୍ବରେ ଭାରତୀୟ ଧର୍ମ ଜଗତରେ ଏକ ନୂତନ ବିପ୍ଳବର ଆରମ୍ଭ ହୋଇଯାଇଥିଲା । ଏହି ବିପ୍ଳବ ହେଉଛି ବ୍ରାହ୍ମଣ୍ୟଧର୍ମ ସହ ବୌଦ୍ଧଧର୍ମର ସଂମିଶ୍ରଣ ପାଇଁ ଏକ ପରୋକ୍ଷ ଉଦ୍ୟମ । ବୌଦ୍ଧଧର୍ମ ମଧ୍ୟରେ ମତଭେଦ, ମହାଯାନ ମତବାଦର ସୃଷ୍ଟି ଏବଂ ବୈଦେଶିକ କୁଶାନମାନଙ୍କର ବ୍ରାହ୍ମଣ୍ୟଧର୍ମ ଓ ବୌଦ୍ଧଧର୍ମ ଉଭୟ ପ୍ରତି ସମଭକ୍ତି କ୍ରମେ ବୌଦ୍ଧଧର୍ମର ଜ୍ୟୋତି ମ୍ଳାନ କରି ଆଣିଥିଲା । ଇତିହାସ ଯୁଗର ଆରମ୍ଭରେ ଭାରତରେ ବୌଦ୍ଧ ଓ ଜୈନ ବିପ୍ଳବ ଆରମ୍ଭ ହୋଇଥିଲା । ସେହି ସମୟରୁ ଖ୍ରୀଷ୍ଟଯୁଗର ଆରମ୍ଭ ପର୍ଯ୍ୟନ୍ତ ଦୀର୍ଘ ଛଅଶହ ବର୍ଷ କାଳ ମଧ୍ୟରେ ବୌଦ୍ଧ ଓ ଜୈନଧର୍ମ ନିଜ ନିଜର ସ୍ୱର୍ଣ୍ଣଯୁଗ ଭୋଗ କରି ସାରିଥିଲେ । ଯେଉଁସବୁ ତ୍ରୁଟି ପାଇଁ ହିନ୍ଦୁଧର୍ମ ବିରୋଧରେ ବିପ୍ଳବ ହୋଇଥିଲା କାଳକ୍ରମେ ସେହି ତ୍ରୁଟିମାନ ବୌଦ୍ଧ ଓ ଜୈନଧର୍ମକୁ ଗ୍ରାସ କରିବାକୁ ବସିଥିଲା । ପରୋକ୍ଷ ଭାବେ ବ୍ରାହ୍ମଣ୍ୟଧର୍ମର ପ୍ରାଧାନ୍ୟକୁ ବୌଦ୍ଧ ଓ ଜୈନମାନେ ସ୍ୱୀକାର କରି ନେଇଥିଲେ । ଖ୍ରୀଷ୍ଟଯୁଗ ଆରମ୍ଭ ବେଳକୁ ତିନି ଧର୍ମ ପରସ୍ପରର ଏତେଦୂର ନିକଟବର୍ତ୍ତୀ ହୋଇସାରିଥିଲେ ଯେ ସାଧାରଣ ଚକ୍ଷୁରେ ସେମାନଙ୍କ ମଧ୍ୟରେ ଯେଉଁ ପାର୍ଥକ୍ୟ ଥିଲା, ତାହା ଦେଖାଯାଉ ନ ଥିଲା । କୁଶାନ ସମ୍ରାଟମାନେ ଥିଲେ ଏକାଧାରରେ ହିନ୍ଦୁ ଓ ବୌଦ୍ଧ । କାରଣ ହିନ୍ଦୁଧର୍ମରୁ ବୌଦ୍ଧଧର୍ମ ଗ୍ରହଣ କରିବା କିମ୍ବା ବୌଦ୍ଧଧର୍ମରୁ ହିନ୍ଦୁଧର୍ମ ଗ୍ରହଣ କରିବା ସେମାନଙ୍କ ପକ୍ଷରେ ବିଶେଷ କିଛି ପରିବର୍ତ୍ତନ ଆଣି ନ ଥିଲା । ଅବଶ୍ୟ କନିଷ୍କ ଜୀବନର ପରବର୍ତ୍ତୀ କାଳରେ ବୌଦ୍ଧଧର୍ମର ଉନ୍ନତି ପାଇଁ ବହୁ ପରିଶ୍ରମ କରିଥିଲେ । ସେଥିପାଇଁ ତାହାଙ୍କ ରାଜତ୍ୱକାଳରେ ବୌଦ୍ଧଧର୍ମ ପୁଣିଥରେ ନିଜର ବିଶେଷତ୍ୱ ରକ୍ଷାକରି ବହୁ ଉପରକୁ ଉଠିପାରିଥିଲା । କିନ୍ତୁ କନିଷ୍କଙ୍କ ଯୁଗ ଦେଖିଥିଲା ବୌଦ୍ଧଧର୍ମର ଶେଷ ଉତ୍‌ଥାନ । ଏହାପରେ ବୌଦ୍ଧଧର୍ମ କ୍ରମେ କ୍ରମେ ଅବନତି ପଥରେ ଯାତ୍ରା କରିଥିଲା ଏବଂ ଶେଷରେ ଅନ୍ତିମ ଶଯ୍ୟା ଧାରଣ କରିଥିଲା । ସମ୍ରାଟ ହର୍ଷବର୍ଦ୍ଧନ ଶେଷଥର ପାଇଁ ମୃତ୍ୟୁମୁଖୀ ବୌଦ୍ଧଧର୍ମ ଦେହରେ ନବପ୍ରାଣ ସଞ୍ଚାର କରିବାକୁ ଚେଷ୍ଟା କରିଥିଲେ; କିନ୍ତୁ ସେ ଥିଲା କେବଳ ଅନ୍ତିମ ଶୁଶ୍ରୁଷା । ସେ ଯାହାହେଉ, କୁଶାନ ଯୁଗ ପାଖରୁ ଭାରତର ତିନି ମୁଖ୍ୟ ଧର୍ମ ପରସ୍ପରକୁ କୋଳାକୋଳି କରିବା ପାଇଁ ଆରମ୍ଭ କରି ଦେଇଥିଲେ । ଉତ୍କଳର ଧର୍ମ ଇତିହାସରେ ମଧ୍ୟ ଏହି ସମୟ ପାଖରୁ ଏପରି ଏକ ପରିବର୍ତ୍ତନ ଆରମ୍ଭ ହୋଇଥିବାର ସମ୍ଭାବନା । ଅବଶ୍ୟ ସୁଦୂର ସପ୍ତମ ଶତାବ୍ଦୀରେ ମଧ୍ୟ ଉତ୍କଳରେ ବୌଦ୍ଧଧର୍ମ ଓ ଜୈନଧର୍ମର ଯଥେଷ୍ଟ ପ୍ରଭାବ ଦେଖିବାକୁ ମିଳେ । ତଥାପି ଖ୍ରୀଷ୍ଟଯୁଗର ପ୍ରଥମ ପାଦରୁ ବିଶେଷତଃ କୁଶାନ ଯୁଗର ଦ୍ୱିତୀୟାର୍ଦ୍ଧ ପାଖରୁ ଯେଉଁ ଧର୍ମ ସଂମିଶ୍ରଣର ଆନ୍ଦୋଳନ ସାରା ଭାରତକୁ ଆଲୋଡ଼ିତ କରିଥିଲା, ତାହାର ପ୍ରଭାବ କଳିଙ୍ଗଖଣ୍ଡରେ ମଧ୍ୟ ଯଥାସମୟରେ ଦେଖାଦେଇଥିଲା । କଳିଙ୍ଗର ଏହି ଅନ୍ଧକାରାଚ୍ଛନ୍ନ ଯୁଗରେ ଯେତେବେଳେ କଳିଙ୍ଗର ରାଜନୈତିକ ଇତିହାସ ସମ୍ବନ୍ଧରେ କୌଣସି ବିଷୟ ଜାଣି ହେଉନାହିଁ, ସେତେବେଳେ କଳିଙ୍ଗର ରାଜକୀୟ ଧର୍ମ କ'ଣ ଥିଲା କିମ୍ବା କେଉଁ ଧର୍ମ କେଉଁ ଦିଗରୁ କିପରି ଭାବରେ ପୃଷ୍ଠପୋଷକତା ଲାଭ କରିଥିଲା, ଏ ସମସ୍ତ କଥା ଅନୁମାନ କରିବା ଅତି ଦୁରୂହ ବ୍ୟାପାର ।

ଏହି ଯୁଗରେ କଳିଙ୍ଗର ରାଜନୈତିକ ଏକତା ଥିଲା କି ନାହିଁ, ତାହା ଜଣାଯାଇନାହିଁ। ଖୁବ୍ ସମ୍ଭବତଃ ଚେତ ସାମ୍ରାଜ୍ୟର ପତନ ପରେ ପ୍ରାଚୀନ କଳିଙ୍ଗ ସାମ୍ରାଜ୍ୟ ଖଣ୍ଡ ଖଣ୍ଡ ହୋଇଯାଇଥିଲା। ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ବିଖ୍ୟାତ ରୋମୀୟ ଭୌଗୋଳିକ ପ୍ଲିନି କଳିଙ୍ଗ ଦେଶକୁ ଦୁଇଭାଗରେ ବିଭକ୍ତ ଥିବାର ଦେଖିଥିଲେ। ପ୍ଲିନିଙ୍କ ଭାଷାରେ ପ୍ରଥମ ଖଣ୍ଡର ନାମ ଥିଲା 'ଗଙ୍ଗାରିଡ଼ାଇ (ଗଙ୍ଗ) କଳିଙ୍ଗ' ଏବଂ ଦ୍ୱିତୀୟ ଖଣ୍ଡର ନାମ ଥିଲା 'ମାକୋ କଳିଙ୍ଗ' (ମୁଖ କଳିଙ୍ଗ)। ହୁଏତ ଗଙ୍ଗା ପର୍ଯ୍ୟନ୍ତ କଳିଙ୍ଗର ଉତ୍ତର ପୂର୍ବଭାଗର ନାମ ଥିଲା ଗଙ୍ଗା କଳିଙ୍ଗ ଏବଂ କଳିଙ୍ଗର ଦକ୍ଷିଣ ଭାଗର ନାମ ଥିଲା ମୁଖ କଳିଙ୍ଗ। ପ୍ଲିନି କଳିଙ୍ଗର କେବଳ ଏହି ଦୁଇ ମୁଖ୍ୟ ଅଂଶ ଦେଖିପାରିଥିଲେ; କିନ୍ତୁ ଏହା ବ୍ୟତୀତ କଳିଙ୍ଗରେ ଅନ୍ୟ ରାଜନୈତିକ ବିଭାଗମାନଙ୍କର ମଧ୍ୟ ସୃଷ୍ଟି ହୋଇପାରିଥିଲା। ଏହି ବିଭାଗମାନଙ୍କର ନାମ ଯଥାକ୍ରମେ ଉତ୍କଳ, କଙ୍ଗୋଦ, କଳିଙ୍ଗ, କୋଶଳ, ତ୍ରିକଳିଙ୍ଗ ଇତ୍ୟାଦି। ଏହି ମୁଖ୍ୟ ବିଭାଗ ମଧ୍ୟରେ ପୁଣି କ୍ଷୁଦ୍ର କ୍ଷୁଦ୍ର ବିଭାଗମାନଙ୍କର ସୃଷ୍ଟି ହୋଇଥିବାର ଯଥେଷ୍ଟ ସମ୍ଭାବନା। ଯେତେବେଳେ ଅଶୋକ କଳିଙ୍ଗ ଆକ୍ରମଣ କରିଥିଲେ, ସେତେବେଳେ ସମଗ୍ର କଳିଙ୍ଗ ସାମ୍ରାଜ୍ୟ ଏକ ରାଜନୈତିକ ଶକ୍ତି ରୂପେ ତାହାଙ୍କ ବିରୋଧରେ ଯୁଦ୍ଧ କରିଥିଲା। ଯେତେବେଳେ ଖାରବେଳ ଭାରତ ଦିଗ୍‌ବିଜୟ କରୁଥିଲେ, ସେତେବେଳେ ସମଗ୍ର କଳିଙ୍ଗର ସମ୍ରାଟରୂପେ ସେ ଏପରି ଦିଗ୍‌ବିଜୟ ପାଇଁ ଆଗେଇ ପାରିଥିଲେ; କିନ୍ତୁ ଖ୍ରୀଷ୍ଟଯୁଗର ଆରମ୍ଭରେ ବିଶାଳ କଳିଙ୍ଗର ରାଜନୈତିକ ଏକତା ଖଣ୍ଡ ଖଣ୍ଡ ହୋଇଯାଇଥିଲା। ଗୁପ୍ତଯୁଗର ଆରମ୍ଭରେ ସମୁଦ୍ରଗୁପ୍ତ ଯେତେବେଳେ କଳିଙ୍ଗ ଆକ୍ରମଣ କଲେ ସେତେବେଳେ ସମଗ୍ର କଳିଙ୍ଗ ଅଶୋକଙ୍କ ବିରୋଧରେ ଯୁଦ୍ଧ କଲା ପରି ସମୁଦ୍ରଗୁପ୍ତଙ୍କ ବିରୋଧରେ ଛିଡ଼ା ହୋଇପାରି ନ ଥିଲା। ସମୁଦ୍ରଗୁପ୍ତ ଖଣ୍ଡବିଖଣ୍ଡ କଳିଙ୍ଗରେ ବହୁ କ୍ଷୁଦ୍ର କ୍ଷୁଦ୍ର ରାଜାଙ୍କୁ ଭେଟିଥିଲେ ଏବଂ ସେମାନଙ୍କୁ ଅନାୟାସରେ ପରାଜିତ କରିଥିଲେ। ଏ ବିଷୟରେ ଆମ୍ଭେମାନେ ପରେ ଆଲୋଚନା କରିବୁ । ମୋଟ ଉପରେ କଳିଙ୍ଗରେ ପୁନର୍ବାର ଏକ ବିରାଟ ରାଜଶକ୍ତିର ଅଭ୍ୟୁଦୟ ପର୍ଯ୍ୟନ୍ତ କଳିଙ୍ଗକୁ ଭାଗ ଭାଗ ହୋଇ ରହିବାକୁ ପଡ଼ିଥିଲା। ଅନ୍ତତଃ ଖ୍ରୀଷ୍ଟଯୁଗର ପ୍ରଥମ ଶତାବ୍ଦୀରେ କଳିଙ୍ଗର ରାଜନୈତିକ ଅବସ୍ଥା ଉପରେ ଏପରି ଅନୁମାନ କରିବାର ଯଥେଷ୍ଟ କାରଣ ଅଛି।

ଏହି ଯୁଗରେ କଳିଙ୍ଗର ରାଜନୈତିକ ଏକତା ନ ଥିଲେ ମଧ୍ୟ କଳିଙ୍ଗବାସୀଙ୍କ ଜାତୀୟ ଏକତା କୌଣସି ପ୍ରକାରେ ନିସ୍ତେଜ'ହୋଇ ନ ଥିଲା। କଳିଙ୍ଗ ଇତିହାସରେ ଦେଖିବାକୁ ମିଳେ ଯେ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ଏହି ସୁବିସ୍ତୃତ ଭୂଖଣ୍ଡ ବାରମ୍ବାର ରାଜନୈତିକ ଏକତା ହରାଇ କ୍ଷୁଦ୍ରବୃହତ୍ ରାଜ୍ୟଗୁଡ଼ିର ସମଷ୍ଟିରେ ପରିଣତ ହୋଇଛି। କିନ୍ତୁ ରାଜନୈତିକ ଏକତା ହରାଇ ସୁଦ୍ଧା କଳିଙ୍ଗ କେବେହେଲେ ଜାତୀୟ ନିମ୍ବା ସାଂସ୍କୃତିକ ଏକତା ହରାଇନାହିଁ। ଏପରି ଏକ ବିଶେଷତ୍ୱପୂର୍ଣ୍ଣ ଘଟଣା ଆମ୍ଭମାନଙ୍କୁ ପ୍ରାଚୀନ୍ ଗ୍ରୀକ୍ ସଭ୍ୟତା କଥା ମନେପକାଇଦିଏ। ଅତୀତ କାଳରେ ଗ୍ରୀସ୍ ଦେଶ ବହୁଧା ବିଭକ୍ତ ରହି ଅନେକ ସ୍ୱାଧୀନ ରାଜ୍ୟକୁ ଗର୍ଭରେ ଧରିଥାଏ। ସେ ସମସ୍ତ କ୍ଷୁଦ୍ର କ୍ଷୁଦ୍ର ଗ୍ରୀକ୍ ରାଜ୍ୟ ସଦାସର୍ବଦା ପରସ୍ପର ମଧ୍ୟରେ ଯୁଦ୍ଧରତ ଥିଲେ ମଧ୍ୟ ସେମାନଙ୍କ ସାଂସ୍କୃତିକ ଏକତା କେବେହେଲେ ଭାଙ୍ଗିଯାଇ ନ ଥିଲା। ଅର୍ଥାତ୍ ସମଗ୍ର ଗ୍ରୀସ୍ ଭୂଖଣ୍ଡ ମଧ୍ୟରେ ବହୁସଂଖ୍ୟକ କ୍ଷୁଦ୍ର କ୍ଷୁଦ୍ର ସ୍ୱାଧୀନ ରାଜ୍ୟର ଅବସ୍ଥିତି ଥିଲେ ମଧ୍ୟ ସମଗ୍ର ଗ୍ରୀସ୍ ଭୂଖଣ୍ଡ

ଏକ ବିରାଟ ସଭ୍ୟତା ଗଠନ କରିବାକୁ ସମର୍ଥ ହୋଇଥିଲା ଏବଂ ଏହି ସଭ୍ୟତା ଥିଲା ଗ୍ରୀକ୍ ସଭ୍ୟତା । ଏହି ବିଶାଳ ସଭ୍ୟତା ତଳେ ସମଗ୍ର ଚୀନ୍ ଜାତି ନିଜ ପାଇଁ ଏକ ଜାତୀୟ ଜୀବନ, ଧର୍ମ ଓ ସଂସ୍କୃତି ଗଠନ କରିନେଇଥିଲା । ସେହିପରି କଳିଙ୍ଗ ବହୁବାର ନିଜର ରାଜନୈତିକ ଏକତା ହରାଇଥିଲେ ମଧ୍ୟ କେବେହେଲେ ନିଜର ଜାତୀୟ ଏକତା ହରାଇ ନ ଥିଲା । ଏହି ଜାତୀୟ ଏକତାରେ ଅନୁପ୍ରାଣିତ ହୋଇ କଳିଙ୍ଗବାସୀ ସବୁବେଳେ ସେମାନଙ୍କର ସଭ୍ୟତା ସଂସ୍କୃତିର ଅଗ୍ରଗତି ରଖିପାରିଥିଲେ । ଖ୍ରୀଷ୍ଟୀୟ ଯୁଗର ପ୍ରଥମ ପାଦରେ କଳିଙ୍ଗ ସାମ୍ରାଜ୍ୟର ରାଜନୈତିକ ଏକତା ନ ଥିଲେ ମଧ୍ୟ କଳିଙ୍ଗ ଜାତିର ଜାତୀୟ ପ୍ରେରଣା ପୂର୍ବପରି ରହୁଥିଲା ଏବଂ ସେଥିପାଇଁ ଆମ୍ଭେମାନେ ଦେଖିବାକୁ ପାଉ ଯେ ସେହିଯୁଗରେ ସେମାନେ ସେମାନଙ୍କର ସାଗର କୃତିତ୍ୱର ଯଥେଷ୍ଟ ପରିଚୟ ଦେଇଥିଲେ । ଖ୍ରୀଷ୍ଟଯୁଗର ପ୍ରଥମ ପାଦ ସେମାନଙ୍କ ସାଗରପାରି କୃତିତ୍ୱର ସୁଦିନ । ଅବଶ୍ୟ କଳିଙ୍ଗ ଦେଶର ଔପନିବେଶିକମାନେ ଖ୍ରୀଷ୍ଟଙ୍କ ଜନ୍ମର ବହୁପୂର୍ବରୁ ଜାଭା, ସୁମାତ୍ରା, ବୋର୍ଣ୍ଣିଓ ଓ ବାଲି ପ୍ରଭୃତି ଦ୍ୱୀପରେ ଭାରତୀୟ ସଭ୍ୟତା ବିସ୍ତାର କରିଥିଲେ ; କିନ୍ତୁ ସେ ସମସ୍ତ ପ୍ରାଗ୍ ଖ୍ରୀଷ୍ଟୀୟ ଉପନିବେଶ ସ୍ଥାପନର ଇତିବୃତ୍ତ ଗଭୀର ଅନ୍ଧକାରାଚ୍ଛନ୍ନ । ଖ୍ରୀଷ୍ଟଜନ୍ମ ପୂର୍ବରୁ ଏପରି ଉପନିବେଶ ସ୍ଥାପନ ବ୍ୟବସ୍ଥା ଚାଲିଆସିଥିଲା ବୋଲି ଖ୍ରୀଷ୍ଟଜନ୍ମ ପରେ ସେ ସବୁର ପରିଷ୍କାର ଛବି ଦେଖିବାକୁ ମିଳେ ।

ଖ୍ରୀଷ୍ଟଯୁଗର ଆରମ୍ଭରେ 'ପେରିପ୍ଲାସ୍ ଅଫ୍ ଦି ଏରିଥ୍ରୀୟାନ୍ ସି' ନାମକ ସୁବିଖ୍ୟାତ ପୁସ୍ତକର ନାମହୀନ ଲେଖକ ଯେତେବେଳେ ପ୍ରାଚ୍ୟଖଣ୍ଡର ଜଳଯାତ୍ରା ଉପରେ ଦୃଷ୍ଟି ପକାଇଥିଲେ, ସେତେବେଳେ ସେ ଦେଖିଥିଲେ ଯେ ଭାରତର ପୂର୍ବ ଉପକୂଳରୁ ଅର୍ଥାତ୍ କଳିଙ୍ଗତଟରୁ କ୍ରମାଗତ ଭାବରେ ବୋଇତଭେଳା ମାଳୟ ଦୀପପୁଞ୍ଜ ଆଡ଼କୁ ବାଣିଜ୍ୟ ବ୍ୟବସାୟ ପାଇଁ ବାହାରି ଯାଉଥିଲେ । ଖ୍ରୀଷ୍ଟଯୁଗ ପୂର୍ବରୁ କଳିଙ୍ଗ ଏବଂ ମାଳୟ ଦ୍ୱୀପପୁଞ୍ଜ ମଧ୍ୟରେ ଯେଉଁ ସମ୍ବନ୍ଧ ସୃଷ୍ଟି ହୋଇଥିଲା, ସେ ସବୁର ବିବରଣୀ ଆଜି ସେହି ଦ୍ୱୀପପୁଞ୍ଜ ମାନଙ୍କରେ ଜନଶ୍ରୁତି ଆକାରରେ ଶୁଣିବାକୁ ମିଳେ । ଜାଭା ବା ଜବ ଦ୍ୱୀପର ଏକ ପ୍ରସିଦ୍ଧ ଏବଂ ବହୁ ପ୍ରଚାରିତ ଜନଶ୍ରୁତିରୁ ଜଣାଯାଏ ଯେ, "କ୍ଲିଙ୍ଗ୍ (କଳିଙ୍ଗ) ଦେଶର ରାଜା ଜବ ଦ୍ୱୀପକୁ ବିଂଶ ସହସ୍ର ପରିବାର ପଠାଇ ଦେଇଥିଲେ । ଏହି ପରିବାରଗୁଡ଼ିକର ସଂଖ୍ୟା କାଳକ୍ରମେ ବଢ଼ିଯାଇଥିଲା ଏବଂ ସେମାନେ ଉନ୍ନତି କରିବାରେ ଲାଗିଥିଲେ । ସେମାନେ ଜବଦ୍ୱୀପରେ ୨୮୯ଅବ୍ଦ ପର୍ଯ୍ୟନ୍ତ ଅନୁନ୍ନତ ଅବସ୍ଥାରେ ବାସ କରିଥିଲେ, ଯେତେବେଳେ କି ସର୍ବଶକ୍ତିମାନ ଈଶ୍ୱର ସନ୍ତୁଷ୍ଟ ହୋଇ ସେମାନଙ୍କୁ କାନୋ ନାମକ ଏକ ରାଜାଙ୍କୁ ଅର୍ପଣ କରିଥିଲେ ।" ଏକ ଜନଶ୍ରୁତି ଅନୁସାରେ କାନୋଙ୍କ ବଂଶଧରମାନେ ସେଠାରେ ରାଜତ୍ୱ କରିଥିଲେ । ଜବଦ୍ୱୀପରେ ଏହି ପ୍ରାଚୀନ ଓ ବହୁଜନବିଦିତ ଜନଶ୍ରୁତି ଅତି ଅନ୍ଧକାରାଚ୍ଛନ୍ନ ଏକ ଅତୀତ ମଧ୍ୟରୁ ଅନ୍ତତଃ ଗୋଟିଏ ଐତିହାସିକ ଇଙ୍ଗିତ ବାହାର କରି ଆଣେ ଯେ ପ୍ରାଗ୍ ଖ୍ରୀଷ୍ଟୀୟ କାଳରେ ଦିନେ କଳିଙ୍ଗଦେଶର ରାଜା ବହୁସଂଖ୍ୟକ ଔପନିବେଶିକଙ୍କୁ ଜବ ଦ୍ୱୀପକୁ ପଠାଇଥିଲେ ଏବଂ ସେହି ଔପନିବେଶିକମାନେ ଜବଦ୍ୱୀପରେ ବସବାସ କରି ରହିଯାଇଥିଲେ । କଳିଙ୍ଗ ଔପନିବେଶିକମାନଙ୍କର ମାଲୟ ଯାତ୍ରା ସେହି ଅନ୍ଧକାରାଚ୍ଛନ୍ନ ଯୁଗରୁ ଖ୍ରୀଷ୍ଟଯୁଗର ବହୁ ଶତାବ୍ଦୀ ପର୍ଯ୍ୟନ୍ତ ଲାଗି ରହିଥିଲା ।

ଯେତେବେଳେ ସୁବିଖ୍ୟାତ ପାଶ୍ଚାତ୍ୟ ଭୌଗୋଳିକ ଟୋଲେମି ଦକ୍ଷିଣ-ପୂର୍ବ ଏସିଆର ଭୌଗୋଳିକ

ବିବରଣୀ ଲେଖୁଥିଲେ, ସେତେବେଳେ ମଧ୍ୟ ସେ ଦେଖିଥିଲେ ଯେ କଳିଙ୍ଗର ସୁବିଦିତ ପାଲୁର ବନ୍ଦରରୁ ମାଲୟ ଦ୍ୱୀପପୁଞ୍ଜ ଅଭିମୁଖେ ସଦାସର୍ବଦା ଔପନିବେଶକମାନଙ୍କର ଯାତାୟାତ ଲାଗି ରହିଥାଏ । ପାଲୁର ହେଉଛି ପ୍ରାଚୀନ କଳିଙ୍ଗ ତଥା ପ୍ରାଚୀନ ଭାରତର ଏକ ଅତି ପ୍ରସିଦ୍ଧ ବନ୍ଦର । ପ୍ରାଚୀନ ଭାରତରେ ପାଲୁର ପରି ଗୋଟିଏ ସମୃଦ୍ଧିଶାଳୀ ବନ୍ଦର ପ୍ରାୟ ଅନ୍ୟକୌଣସି ସ୍ଥାନରେ ନ ଥିଲା । ବହୁ ଶତାବ୍ଦୀ ଯାବତ୍ ଭାରତର ସୁଦୂର ପ୍ରାଚ୍ୟ ବାଣିଜ୍ୟ ବ୍ୟବସାୟ ଏହି କଳିଙ୍ଗ ବନ୍ଦର ମଧ୍ୟ ଦେଇ ଗତି କରୁଥିଲା । ଅଧ୍ୟାପକ ସିଲଭାଁ ଲେଭି କଳିଙ୍ଗରେ ଦନ୍ତପୁର ବୋଲି ଯେଉଁ ପ୍ରାଚୀନ ବନ୍ଦର ଥିବାର ଖ୍ୟାତି ଅଛି, ସେହି ବନ୍ଦରକୁ ପାଲୁର ବୋଲି ମତପ୍ରକାଶ କରନ୍ତି ; କିନ୍ତୁ ଅନ୍ୟାନ୍ୟ କେତେକ ଐତିହାସିକଙ୍କ ମତରେ ପାଲୁର ହେଉଛି ଋଷିକୁଲ୍ୟା ନଦୀର ମୁହାଣରେ ଅବସ୍ଥିତ ଏକ ବନ୍ଦର ।

ଖ୍ରୀଷ୍ଟୀୟ ଯୁଗର ପ୍ରଥମ ଶତାବ୍ଦୀରେ ଏହି ପାଲୁର ବନ୍ଦରରୁ କ୍ରମାଗତଭାବେ ଜଳଯାତ୍ରା ଲାଗି ରହିଥିଲା । କଳିଙ୍ଗବାସୀଙ୍କର ଏପରି ଯିବାଆସିବା ଏବଂ ମାଳୟ ଦ୍ୱୀପପୁଞ୍ଜରେ ଉପନିବେଶ ସ୍ଥାପନ ଫଳରେ କ୍ରମେ କ୍ରମେ ସମଗ୍ର ଦ୍ୱୀପପୁଞ୍ଜରେ ସେମାନଙ୍କର ପ୍ରଭାବ ଏବଂ ପ୍ରତିପତ୍ତି ପ୍ରବଳ ହୋଇ ଉଠିଥିଲା । ଏ ପ୍ରଭାବ ଏତେଦୂର ପ୍ରବଳ ହୋଇପଡ଼ିଥିଲା ଯେ ଚୀନ ଦେଶର ଅଧିବାସୀମାନେ ଏହି ସମୟରେ ମାଳୟ ଦ୍ୱୀପପୁଞ୍ଜକୁ କ୍ଲିଙ୍ଗ୍ ନାମରେ ଡାକିବାକୁ ଆରମ୍ଭ କରିଥିଲେ । ଚୀନ୍ ଅଧିବାସୀଙ୍କର ଏହି କ୍ଲିଙ୍ଗ୍ ନାମ ଯେ ନିଶ୍ଚୟ କଳିଙ୍ଗ ଶବ୍ଦର ଅପଭ୍ରଂଶ, ଏଥିରେ ଐତିହାସିକମାନେ ନିଃସନ୍ଦେହ । ଚୀନ ଭାଷାରେ କଳିଙ୍ଗ ଶବ୍ଦର ପ୍ରତିଶବ୍ଦ ହେଉଛି, ହୋ-ଲିଙ୍ଗ୍ । ଖ୍ରୀଷ୍ଟଯୁଗର ଆରମ୍ଭରେ ଚୀନ୍ ଅଧିବାସୀମାନେ ଜବଦ୍ୱୀପକୁ ଏହି ହୋ-ଲିଙ୍ଗ୍ ନାମରେ ଆଖ୍ୟାତ କରିଥିଲେ । କାରଣ ଜବଦ୍ୱୀପରେ ସେତେବେଳେ କଳିଙ୍ଗ ଉପନିବେଶ ସୁଦୃଢ଼ ହୋଇସାରିଥିଲା । ଯେହେତୁ କଳିଙ୍ଗବାସୀମାନେ ଦଳ ଦଳ ହୋଇ ମାଳୟ ଦ୍ୱୀପପୁଞ୍ଜର ସ୍ଥାନେ ସ୍ଥାନେ ଉପନିବେଶ ସ୍ଥାପନ କରି ସେଠାରେ ବସବାସ କରୁଥିଲେ ଏବଂ ସେ ସବୁ ସ୍ଥାନରେ ଭାରତୀୟ ସଭ୍ୟତା ଓ ଭାରତୀୟ ଧର୍ମ ବିସ୍ତାର କରୁଥିଲା, ସେଥିପାଇଁ ସାଧାରଣତଃ ପ୍ରାଚ୍ୟଖଣ୍ଡର ଅପର ଦେଶମାନଙ୍କ ଆଗରେ କଳିଙ୍ଗ ଦେଶ ସେହିସବୁ ଉପନିବେଶମାନଙ୍କର ଜନନୀ ରୂପେ ପ୍ରତୀୟମାନ ହୋଇଥିଲା । ସେଥିପାଇଁ ସ୍ୱାଭାବିକ ଭାବରେ ଚୀନ୍‌ବାସୀମାନେ ମାଳୟ ଦ୍ୱୀପପୁଞ୍ଜକୁ 'କ୍ଲିଙ୍ଗ' ନାମରେ ଆଖ୍ୟାତ କରିପାରିଥିଲେ କିମ୍ବା ଜବଦ୍ୱୀପକୁ 'ହୋ-ଲିଙ୍ଗ୍' ବୋଲି ଡାକିଥିଲେ । ଖ୍ରୀଷ୍ଟୀୟ ଦ୍ୱିତୀୟ ଶତାବ୍ଦୀ ଶେଷ ହେଲାବେଳକୁ କେବଳ ଜବଦ୍ୱୀପ ଯେ 'କଳିଙ୍ଗ' ବା 'ହୋ-ଲିଙ୍ଗ' ନାମରେ ବିଖ୍ୟାତ ହୋଇସାରିଥିଲା । ତା' ନୁହେଁ, ଏହାଛଡ଼ା ସୁମାତ୍ରା ଦ୍ୱୀପରେ 'ଶ୍ରୀ ବିଜୟ' ନାମକ ରାଜ୍ୟ ସଂସ୍ଥାପିତ ହୋଇସାରିଥିଲା, ବୋର୍ଣ୍ଣିଓ ଦ୍ୱୀପରେ ପ୍ରାଚୀନ ହିନ୍ଦୁମନ୍ଦିରମାନଙ୍କର ନିର୍ମାଣ ଓ ଗୁହାମାନଙ୍କର ଖନନ କାର୍ଯ୍ୟ ଅନେକ ଆଗେଇ ଯାଇଥିଲା ଏବଂ ବାଲିଦ୍ୱୀପରେ ହିନ୍ଦୁଧର୍ମର ବହୁଳ ପ୍ରଚାର ମଧ୍ୟ ହୋଇସାରିଥିଲା ।

ଖ୍ରୀଷ୍ଟୀୟ ଦ୍ୱିତୀୟ ଶତାବ୍ଦୀ ପାଖରୁ କଳିଙ୍ଗ ଦେଶର ଉପନିବେଶ ସ୍ଥାପନ ସମ୍ବନ୍ଧରେ ବହୁଳ ଐତିହାସିକ ତଥ୍ୟ ରହିଛି । ବିଶେଷତଃ ଚୀନ ଓ ଆରବ ଐତିହାସିକମାନଙ୍କ ଲେଖନୀରୁ ବହୁ ବିଷୟ ଜାଣିବାକୁ ମିଳେ । ଏହାଛଡ଼ା ବିସ୍ତୀର୍ଣ୍ଣ ମାଳୟ ଦ୍ୱୀପପୁଞ୍ଜର ବିଭିନ୍ନ ସ୍ଥାନରୁ ଯେଉଁସବୁ ପ୍ରତ୍ନତତ୍ତ୍ୱର ଆବିଷ୍କାର ହୋଇଛି, ସେସବୁରୁ ଅନେକ ଐତିହାସିକ ତତ୍ତ୍ୱ ଜଣାପଡ଼େ ।



# ଏକ ରାଜ୍ୟ, ଯାହାର
# ଗାଁ ଗୁଡ଼ିକ ଏବେ ସମୃଦ୍ଧି ପଥରେ ...

## ବିକାଶୋନ୍ମୁଖୀ ଓଡ଼ିଶା ପାଇଁ
## ଉଦ୍ୟୋଗ ପ୍ରତିଷ୍ଠା ଓ ଗୋଷ୍ଠୀ ସଶକ୍ତିକରଣ







ଟାଟା ଷ୍ଟିଲ ଓ ଏହାର ସହଯୋଗୀ କମ୍ପାନୀଗୁଡ଼ିକ ଓଡ଼ିଶାର ପ୍ରାୟ ୫୦୦ ଗାଁରେ ୨୫ ହଜାରରୁ ଅଧିକ ପରିବାର ପାଇଁ ଶିକ୍ଷା, ସ୍ୱାସ୍ଥ୍ୟସେବା ଓ ଜୀବିକା କ୍ଷେତ୍ରରେ ସହାୟତା କରି ଆସିଛନ୍ତି । ଓଡ଼ିଶାରେ ଇସ୍ପାତ କାରଖାନା, ଧାମରା ବନ୍ଦର, ଟାଟା କନସଲଟାନ୍‌ସି ସର୍ଭିସ, ଗୋପାଳପୁର ଏସ.ଇ.ଜେଡ୍, କୋଲଡ ରୋଲଡ, ପ୍ରସେସିଂ ୟୁନିଟ୍ ଏବଂ ଅନ୍ୟାନ୍ୟ ପ୍ରକଳ୍ପରେ ୩୫ ହଜାର କୋଟି ଟଙ୍କା ବିନିଯୋଗ ଯୋଗୁଁ ରାଜ୍ୟର ଆହୁରି ଅଧିକ ଅଞ୍ଚଳରେ ଉନ୍ନତି ଘଟିବ । ଓଡ଼ିଶା ସହ ସଂପର୍କର ଶହେବର୍ଷ ଅତିକ୍ରମ କରିଥିବା ବେଳେ ଟାଟାଷ୍ଟିଲ ରାଜ୍ୟବାସୀଙ୍କ ସର୍ବବିଧ ବିକାଶ ପାଇଁ ନିଜ ଅଙ୍ଗୀକାରବଦ୍ଧତାକୁ ଅବ୍ୟାହତ ରଖିଛି ।




**TATA STEEL**

ଗୋଷ୍ଠୀ କଲ୍ୟାଣ ଆମର ଲକ୍ଷ୍ୟ,
ଇସ୍ପାତ କେବଳ ମାଧ୍ୟମ

# ଓଡ଼ିଶା ଅର୍ଥନୀତିର ସ୍ଥିତି କ'ଣ ?

ପ୍ରଫେସର ଡକ୍ଟର ବୈଦ୍ୟନାଥ ମିଶ୍ର

*ଦେଶର ଦକ୍ଷ ଅର୍ଥନୀତିଜ୍ଞମାନଙ୍କ ମଧ୍ୟରେ ପ୍ରଫେସର ଡକ୍ଟର ବୈଦ୍ୟନାଥ ମିଶ୍ର ଏକ ସ୍ୱତନ୍ତ୍ର ସ୍ଥାନର ଅଧିକାରୀ । ଅର୍ଥନୀତି ଉପରେ ତାଙ୍କ ଦ୍ୱାରା ଲିଖିତ ସହସ୍ରାଧିକ ପ୍ରବନ୍ଧ ଦେଶ ତଥା ବିଦେଶରେ ବହୁ ଆଗଧାଡ଼ିର ପତ୍ରପତ୍ରିକାରେ ସ୍ଥାନିତ କରାଯାଇଛି । ଏଭଳି ଏକ ପୋଖତ ଅର୍ଥନୀତି ବିଶାରଦ ସନ୍ତାନ ପାଇ ଉତ୍କଳଜନନୀ ନିଶ୍ଚିତ ଭାବେ ଗୌରବାନ୍ୱିତ । 'ମୋ ଓଡ଼ିଶା'ର ୨୦୦୮ ସାରସ୍ୱତ ସଂକଳନରେ ତାଙ୍କ ଦ୍ୱାରା ଲିଖିତ ଏକ ଭିନ୍ନସ୍ୱାଦର ନିବନ୍ଧ "ସଭ୍ୟତା, ସଂସ୍କୃତି ଓ ଧର୍ମ ଭିତରେ କେତେ ସଂପର୍କ" ଶୀର୍ଷକ ପ୍ରବନ୍ଧଟି ପ୍ରକାଶିତ ହୋଇଥିଲା । ଏଥରକ ଆମ ଅନୁରୋଧରେ ତାଙ୍କର ସ୍ୱାଭାବିକ ସୃଷ୍ଟି "ଓଡ଼ିଶା ଅର୍ଥନୀତିର ସ୍ଥିତି କ'ଣ ?" ଶୀର୍ଷକ ପ୍ରବନ୍ଧଟି ପ୍ରକାଶ କରୁଛୁ ଆମ ବୁଦ୍ଧିଜୀବୀ ପାଠକମାନଙ୍କ ଉଦ୍ଦେଶ୍ୟରେ.....*

ଓଡ଼ିଶା କଥା ଚିନ୍ତା କଲାବେଳେ ଅନେକ ଥର ମନକୁ ଆସୁଛି ଗତ ୬୦/୭୦ ବର୍ଷ ଭିତରେ ଓଡ଼ିଶାର କ'ଣ କ'ଣ ପରିବର୍ତ୍ତନ ହୋଇଛି, ଗତାନୁଗତିକ ସମାଜର କିଛି ଆଧୁନିକୀକରଣ ହୋଇଛି କି ନାହିଁ, ଶାସନରେ କିଛି ଶୃଙ୍ଖଳା ଅଛି କି ନାହିଁ, ରାଜନୀତିରେ କିଛି ଦୃଢ଼ତା ଅଛି କି ନାହିଁ ? ଏସବୁ ବିଷୟରେ ବିଚାର କରି ବସିଲେ ଅନେକ କଥା ଲେଖିବାକୁ ହେବ । କାରଣ ଏସବୁ ବିଷୟରେ ବ୍ୟକ୍ତିଗତ ଭାବରେ ମୋର ଯେଉଁ ଅନୁଭୂତି ଅଛି; ଏଠାରେ ମୁଁ ସେସବୁ ଲେଖିବାକୁ ସାହସ କରୁନାହିଁ । କାରଣ ସେସବୁ ଲେଖିଲେ ଲେଖାଟି ଅତ୍ୟନ୍ତ ବଡ଼ ହୋଇଯିବ, ଯାହାକି ପାଠକ ଗୋଷ୍ଠୀ ଧୈର୍ଯ୍ୟର ସହିତ ପଢ଼ିପାରିବେ ନାହିଁ । ପୁଣି ସବୁ କଥା ତ ଏକାସାଙ୍ଗରେ ଲେଖି ହେବନାହିଁ, ତେଣୁ ଓଡ଼ିଶାର ଅର୍ଥନୈତିକ ସ୍ଥିତି ବିଷୟରେ କିଛି ଲେଖିବି । କାରଣ ସେହି ବିଷୟଟି ମୋର ପାଠ । ସେ ବିଷୟରେ ମୁଁ କିଛି ଅଧ୍ୟୟନ କରିଛି । ଭଲ ହେଉ, ମନ୍ଦ ହେଉ ଏ ପର୍ଯ୍ୟନ୍ତ ଛାଡ଼ିପାରିନାହିଁ । ମୁଁ ଜାଣିଛି ଏଇଟି ଭାରି ନିରସ ବିଷୟ । ନିରସ ହେଉ, ସରସ ହେଉ, ଯାହାକୁ ଜଣେ ଜୀବନର ବ୍ରତ ହିସାବରେ ଗ୍ରହଣ କରିଥାଏ, ତାକୁ ସେ ସହଜରେ ଛାଡ଼ିପାରେ ନାହିଁ । ଥାଉ ସେ କଥା । ଲେଖୁଛି ଓଡ଼ିଶାର ଅର୍ଥନୀତି ବିଷୟରେ କିଛି ।

ଅନେକ ଲୋକ କହୁଛନ୍ତି— ଓଡ଼ିଶାରେ ତ ପ୍ରଚୁର ବିଭବ ଅଛି, ଓଡ଼ିଶା କାହିଁକି ଏତେ ଦରିଦ୍ର ହୋଇ ରହିଛି ? ସରକାରୀ ହିସାବ ଅନୁଯାୟୀ ୨୦୦୪-୦୫ ରେ ମୋଟ ୪୬.୪ ଭାଗ — ଏ ହେଉଛି ଖାଲି କାଲୋରୀର ହିସାବ । ଅର୍ଥାତ୍ ଯେଉଁମାନେ ଦୈନିକ ମଫସଲରେ ୨୪୦୦ କାଲୋରୀ ଓ ସହରରେ ୨୧୦୦ କାଲୋରୀର ଖାଦ୍ୟ ଖାଇବାକୁ ପାଉ ନଥିବେ, ସେମାନେ ଦାରିଦ୍ର୍ୟ ସୀମାରେଖାର ନିମ୍ନରେ

ରହନ୍ତି ଓ ସେମାନଙ୍କ ସଂଖ୍ୟା ଓଡ଼ିଶାରେ ୪୬ ଭାଗରୁ ଅଧିକ; ଅଥଚ ସାରା ଭାରତରେ ହାରାହାରି ମୋଟ ସେହି ବର୍ଷ ୨୭.୫ ଭାଗ। ଏକ ସମୟରେ ବିହାରରେ ଦାରିଦ୍ର୍ୟ ସଂଖ୍ୟା ଥିଲା ଓଡ଼ିଶାଠାରୁ ଅଧିକ, ଏବେ କମ୍ ୪୧.୪ ଭାଗ। ଭାରତର ସବୁ ରାଜ୍ୟଠାରୁ ଓଡ଼ିଶାର ଦାରିଦ୍ର୍ୟ ହାର ଅଧିକ। ସବୁଠାରୁ କମ୍ ହେଉଛି ପଞ୍ଜାବରେ - ମୋଟେ ୮.୪ ଭାଗ। ଆମେ ସିନା ଏଠାରେ କାଲୋରୀର ହିସାବ ଦେଲୁ, ଆମେ ଏହା ସହିତ ଜୀବନର ଅନ୍ୟାନ୍ୟ ଆବଶ୍ୟକୀୟ କିନିଷର ଅଭାବ କଥା ଯଦି ବିଚାର କରିବୁ, ଯଥା - ଶିକ୍ଷା, ସ୍ୱାସ୍ଥ୍ୟ, ଚିକିତ୍ସା, ପିଇବା ପାଣି ଇତ୍ୟାଦି, ତାହାହେଲେ ଓଡ଼ିଶାରେ ଦରିଦ୍ରଙ୍କ ସଂଖ୍ୟା ୭୦/୭୫ ଭାଗରୁ କମ୍ ହେବନାହିଁ। ଏହାର କାରଣ କ'ଣ ? ଏଥିର କ'ଣ କିଛି ପ୍ରତିକାର ନାହିଁ ?

କୌଣସି ଦେଶ ବା ରାଜ୍ୟର ଅର୍ଥନୈତିକ ଉନ୍ନତି ସାଧାରଣତଃ ମୋଟ ଆୟର ବୃଦ୍ଧିହାର ଉପରେ ଅନେକାଂଶରେ ନିର୍ଭର କରେ। ଦୁଃଖର କଥା ଯେ ନାନା କାରଣ ଯୋଗୁ ଯେଉଁ ଅନୁପାତରେ ଆୟ ବୃଦ୍ଧି ହେବା କଥା, ସେହି ପରିମାଣରେ ଆୟ ବୃଦ୍ଧି ହୋଇପାରୁନାହିଁ। ୨୦୦୭-୦୮ର ଓଡ଼ିଶା ସରକାରଙ୍କ ଅର୍ଥନୈତିକ ସମୀକ୍ଷାରୁ ଦେଖାଯାଉଛି ଯେ ୧୯୯୯-୨୦୦୦ ମସିହାର ମୂଲ୍ୟସୂଚୀ ଅନୁସାରେ ୧୯୯୯-୨୦୦୦ ଠାରୁ ୨୦୦୬-୨୦୦୭ ଭିତରେ ଅର୍ଥନୈତିକ ବୃଦ୍ଧିହାର ଚକ୍ରବୃଦ୍ଧି ହାରରେ ମୋଟେ ୫.୯୬ ଭାଗ ହିସାବରେ ବାର୍ଷିକ ଅଧିକ ହୋଇଛି। ସେହି ସମୀକ୍ଷାରେ ୨୦୦୧-୦୨ ଠାରୁ ୨୦୦୬-୦୭ ପ୍ରତ୍ୟେକ ବର୍ଷର ବୃଦ୍ଧିହାର ଉଲ୍ଲେଖ କରାଯାଇଛି। ୨୦୦୬-୦୭ର ବାର୍ଷିକ ବୃଦ୍ଧିହାର ହେଉଛି ପ୍ରାୟ ୬ ଭାଗ (୬.୦୨)। ସେହି ବର୍ଷ ଭାରତର ବୃଦ୍ଧିହାର ହେଉଛି ୯.୪ ଗୁଣ। ଏହି ପ୍ରଭେଦ ପାଇଁ ସମୀକ୍ଷା ରିପୋର୍ଟରେ ଦୁଇଟି ପ୍ରଧାନ କାରଣ ଉଲ୍ଲେଖ କରାଯାଇଛି। ପ୍ରଥମ କାରଣ ହେଉଛି ଯେ ଓଡ଼ିଶାରେ କୃଷିପ୍ରଧାନ ଜୀବିକା। ସେଥିରୁ ଆମେ ପ୍ରାୟ ୨୫ ଭାଗ ରାଜ୍ୟର ଆୟ ସଂଗ୍ରହ କରୁଛୁ। କୃଷିରେ ଯେଉଁସବୁ ଅସୁବିଧା ଅଛି, ତାକୁ ପରେ ଆମେ ବିଶଦ ଭାବରେ ଆଲୋଚନା କରିବୁ। ଏଠାରେ ଏତିକି କହିହେବ ଯେ ପୁନଃପୁନଃ ପ୍ରାକୃତିକ ବିପଦ ଯୋଗୁଁ କୃଷିର ଉତ୍ପାଦନ ହାର ଯେତିକି ବୃଦ୍ଧି ହେବା କଥା, ସେତିକି ବୃଦ୍ଧି ହୋଇପାରୁନାହିଁ। ଏହି ବିପଦ ଓଡ଼ିଶାରେ ଲାଗି ରହିଛି। ଅନ୍ୟ ଏକ କାରଣ ହେଉଛି ଯେ ଧାରାବାହିକ ଭାବରେ ଶିଳ୍ପର ଅଗ୍ରଗତି ହୋଇପାରିନାହିଁ। ଚକ୍ରୀୟ ହ୍ରାସ ବୃଦ୍ଧି ଯୋଗୁଁ ଓଡ଼ିଶାର ପ୍ରଗତିରେ ଶିଳ୍ପ ଯେତିକି ସାହାଯ୍ୟ କରିବା କଥା, ସେତିକି ସାହାଯ୍ୟ କରିପାରିନାହିଁ। ଏହାର ବୃଦ୍ଧିହାର ୨୦୦୪-୦୫ ଠାରୁ ୨୦୦୬-୦୭ ଭିତରେ ପ୍ରାୟ ୨୪ ଭାଗରୁ ୧୩ ଭାଗ ହୋଇଛି। ଓଡ଼ିଶାର ଉନ୍ନତି କ୍ଷେତ୍ରରେ କୃଷି ଓ ଶିଳ୍ପ ପ୍ରଧାନ ଭୂମିକା ଗ୍ରହଣ କରିବା କଥା। ଦୁଃଖର କଥା, ତାହା ସମ୍ଭବ ହୋଇନାହିଁ।

ରାଜ୍ୟର ଆୟ ବୃଦ୍ଧି ହାର କମ୍ ହେବା ଯୋଗୁଁ ବ୍ୟକ୍ତିଗତ ଆୟରେ ଅନେକ ପ୍ରଭେଦ ଦେଖିବାକୁ ମିଳୁଛି। ୧୯୯୯-୨୦୦୦ ମୂଲ୍ୟସୂଚୀ ଅନୁସାରେ ୨୦୦୫-୦୬ ରେ ଓଡ଼ିଶାର ବ୍ୟକ୍ତିଗତ ଆୟ ୧୩,୬୪୮ ଟଙ୍କା; ଅଥଚ ସେହି ବର୍ଷ ସାରା ଭାରତର ହାରାହାରି ବ୍ୟକ୍ତିଗତ ଆୟ ୨୦,୬୩୪ ଟଙ୍କା। ପ୍ରଭେଦ ହେଉଛି ପ୍ରାୟ ୭୦୦ ଟଙ୍କା। ଆମେ ଏଠାରେ କେବଳ ହାରାହାରି ଭାବରେ ଭାରତର ବ୍ୟକ୍ତିଗତ ଆୟ ଉଲ୍ଲେଖ କରିଛୁ; କିନ୍ତୁ ମହାରାଷ୍ଟ୍ରରେ ୨୯,୦୦୦ ରୁ ଅଧିକ, ହରିଆନାରେ ପ୍ରାୟ ୩୦,୦୦୦, ଗୁଜୁରାଟରେ ୨୬,୫୦୦ରୁ ଅଧିକ। ଆମର ପଡ଼ୋଶୀ ଆନ୍ଧ୍ରପ୍ରଦେଶର ବ୍ୟକ୍ତି ପିଛା ଆୟ ୨୦,୦୦୦ରୁ

ଅଧିକ ଓ ପଶ୍ଚିମବଙ୍ଗଳାର ପ୍ରାୟ ୨୧,୦୦୦। କେବଳ ଉତ୍ତର ପ୍ରଦେଶ ଓ ମଧ୍ୟପ୍ରଦେଶର ଆୟ ଆମଠାରୁ ସାମାନ୍ୟ କମ୍। ଅର୍ଥନୈତିକ ସମୀକ୍ଷାରେ ୨୦୦୫-୦୬ର ବିହାରର ବ୍ୟକ୍ତିଗତ ଆୟ ଉଲ୍ଲେଖ କରାଯାଇନାହିଁ। ବୋଧହୁଏ ଆମଠାରୁ କମ୍ ହେବ। ଏହା ହେଉଛି ଓଡ଼ିଶାର ଆୟଭିତ୍ତିକ ଅର୍ଥନୈତିକ ଚିତ୍ର। ଭାରତର ବିଭିନ୍ନ ରାଜ୍ୟ ଭିତରେ ଏତେ ପ୍ରଭେଦ ହେବାର କାରଣ କ'ଣ ? କାହିଁକି ଓଡ଼ିଶା ଏତେ ପଛରେ ପଡ଼ିଛି ? ସେଥିପାଇଁ ତ ଅନେକ କାରଣ ଅଛି। ଆମେ ପ୍ରଧାନ କେତୋଟି କାରଣ ଉଲ୍ଲେଖ କରିବୁ। ପ୍ରଧାନ ଏକ କାରଣ ହେଉଛି କୃଷିର ଅବନତି। କୃଷି ଆମର ପ୍ରଧାନ ଜୀବିକା। ସେଥିରେ ୬୦ ଭାଗ ଶ୍ରମଜୀବୀ କାମ କରୁଛନ୍ତି। ଏହା ବ୍ୟତୀତ ଗାଁଗହଳରେ ଯେଉଁ ୬୫/୬୬ ଭାଗ ଲୋକ ବାସ କରୁଛନ୍ତି, ସେମାନଙ୍କ ଭିତରୁ ଅଧିକାଂଶ କୃଷି ଉପରେ ନିର୍ଭର କରି ରହିଛନ୍ତି। ଏକ ସମୟରେ ଆମେ କୃଷିରୁ ପ୍ରାୟ ୫୯/୬୦ ଭାଗ ଆୟ ସଂଗ୍ରହ କରୁଥିଲୁ। ଏବେ ମୋଟେ ୨୫/୨୬ ଭାଗ ଆୟ କୃଷିରୁ ସଂଗୃହୀତ ହେଉଛି। ଓଡ଼ିଶାରେ ଯେତେ ଚାଷ ଜମି ଅଛି, ସେଥିରୁ ଅଧାରୁ ଅଧିକ ଜମିରେ କ୍ଷୁଦ୍ର ଚାଷୀ ଓ ନାମକୁ ମାତ୍ର ଚାଷୀ ଫସଲ ଉତ୍ପାଦନ କରୁଛନ୍ତି। କୃଷିର ଉନ୍ନତି ପାଇଁ ସେମାନେ ଉନ୍ନତଧରଣର ଚାଷ ପ୍ରଣାଳୀ ପ୍ରୟୋଗ କରିପାରୁନାହାନ୍ତି। ଏହି କ୍ଷୁଦ୍ର ଚାଷୀ ଓ ନାମକୁ ମାତ୍ର ଚାଷୀଙ୍କ ସଂଖ୍ୟା ପ୍ରାୟ ୮୪ ଭାଗ। ସେମାନଙ୍କ ପାଖରେ ଏତେ ବିଭବ ନାହିଁ ଯେ ସେମାନେ ଅଧିକ ଖର୍ଚ୍ଚ କରି ଜମିରେ ଉନ୍ନତ ଧରଣର ଚାଷ ପ୍ରଣାଳୀ ପ୍ରୟୋଗ କରିପାରିବେ। ବ୍ୟକ୍ତି ପିଛା ଚାଷ ଜମିର ପରିମାଣ ଆସ୍ତେ କମିବାରେ ଲାଗିଛି। ୧୯୫୦-୫୧ରେ ବ୍ୟକ୍ତି ପିଛା ଚାଷ ଜମିର ପରିମାଣ ୦.୩୯ ହେକ୍ଟର ଥିଲା। ଏବେ ଏହା କମି ୦.୧୪ ହେକ୍ଟରକୁ ଆସିଛି। ଏତେ ଲୋକ ଚାଷ ଉପରେ ନିର୍ଭର କଲେ, ଚାଷ ଜମିର ପରିମାଣ ବ୍ୟକ୍ତି ପିଛା କମିବାକୁ ବାଧ୍ୟ।

ଓଡ଼ିଶା ଚାଷ ପ୍ରଣାଳୀର ଅନ୍ୟ ଏକ ବଡ଼ ଅସୁବିଧା ହେଉଛି ଯେ ଏଥିରେ ବେଶୀ କିଛି ବିବିଧୀକରଣ ନାହିଁ। ଚାଉଳ ଆମର ପ୍ରଧାନ ଫସଲ। ମୋଟ ଚାଷ ଜମିର ପ୍ରାୟ ୬୬ ଭାଗ ଜମିରେ ଚାଉଳ ଉତ୍ପାଦନ କରାଯାଉଛି ; କିନ୍ତୁ ସେହି ଉତ୍ପାଦନର ମାତ୍ରା ବହୁତ କମ୍, ହେକ୍ଟର ପିଛା ମୋଟେ ୧୫ କୁଇଣ୍ଟାଲରୁ ଅଧିକ। ଆମର ପଡ଼ୋଶୀ ଆନ୍ଧ୍ରପ୍ରଦେଶରେ ୩ ଟନ୍ ଓ ପଶ୍ଚିମବଙ୍ଗରେ ୨.୧/୨ ଟନ୍ । ଏତେ କମ୍ ଉତ୍ପାଦନ ହେଲେ ଚାଷୀମାନଙ୍କର ଆର୍ଥିକ ସ୍ଥିତିରେ ଉନ୍ନତି ହେବ କିପରି ? ଏସବୁ ୨୦୦୩-୦୪ର ହିସାବ। ଏହା ଭିତରେ ବେଶୀ କିଛି ପରିବର୍ତ୍ତନ ହୋଇଛି ବୋଲି କହି ହେବନାହିଁ। ଆମେ ସବୁ ଏଠାରେ ସରକାରୀ ହିସାବ ପ୍ରଦାନ କରୁଛୁ। ୨୦୦୬-୦୭ର ହିସାବ ଅନୁସାରେ ଆମର ସିରିଆଲ ଓ ରବିକାତୀୟ ଫସଲ ପ୍ରାୟ ୯୪ ଭାଗ ବର୍ଷରେ ଉତ୍ପାଦନ କରାଯାଉଛି। ତେଣୁ ପନିପରିବା, ମାଛ, ଅଣ୍ଡା, ଏ ସବୁ ଆନ୍ଧ୍ରରୁ ଆମଦାନୀ କରି ଆଣୁଛୁ। କୃଷିର ଉତ୍ପାଦିକା ଶକ୍ତି ବୃଦ୍ଧି କରିବା ସହିତ ବିବିଧୀକରଣ ପାଇଁ ଯଦି ଯଥେଷ୍ଟ ଉଦ୍ୟମ କରାଯାଇପାରିବ, ତାହାହେଲେ ଚାଷ ଉପରେ ଯେଉଁମାନେ ନିର୍ଭର କରୁଛନ୍ତି, ସେମାନଙ୍କର ଆର୍ଥିକ ସ୍ଥିତିରେ କିଛି ଉନ୍ନତି ହୋଇପାରିବ। ଏ ଦିଗରେ ତ ଅନେକ କାମ କରିବାକୁ ଅଛି। ପ୍ରଥମ ହେଉଛି ଗାଁଗହଳିର ଭିତ୍ତିଭୂମିର ଉନ୍ନତି ପାଇଁ ସରକାରୀ ସ୍ତରରେ ଅଧିକ ଇନଭେଷ୍ଟମେଣ୍ଟ ହେବା ଉଚିତ୍। ଭିତ୍ତିଭୂମିର ଉନ୍ନତି ଉଭୟ ଫିଜିକାଲ୍ ଓ ସାମାଜିକ ବିଭାଗ ଉପରେ ନିର୍ଭର କରେ। ଫିଜିକାଲ୍ ହେଉଛି ଜଳସେଚନ, ରାସ୍ତାଘାଟ, ବିଦ୍ୟୁତଶକ୍ତି ଓ ସାମାଜିକ ହେଉଛି ଶିକ୍ଷା, ସ୍ୱାସ୍ଥ୍ୟ, ଚିକିତ୍ସା ପ୍ରଭୃତିର ଉନ୍ନତି।

ଏସବୁ କ୍ଷେତ୍ରରେ ଆମେ ବହୁତ ପଛରେ ଅଛୁ । ସେସବୁ ହିସାବ ଦେଲେ ଏକ ବିରାଟ ଗ୍ରନ୍ଥ ହେବ । ଦ୍ୱିତୀୟ ହେଉଛି ଗାଁଗହଳରେ ଅଧିକ କୃଷିଭିତ୍ତିକ ଶିଳ୍ପର ଉନ୍ନତି ପାଇଁ ଯଥେଷ୍ଟ ଉଦ୍ୟମ କରିବାକୁ ପଡ଼ିବ । ତାହାହେଲେ ଯେଉଁମାନେ କୃଷିରେ ଯଥେଷ୍ଟ ନିଯୁକ୍ତି ପାଇପାରୁ ନାହାନ୍ତି , ସେମାନେ ଅଧିକ ନିଯୁକ୍ତି ପାଇପାରିବେ ଓ ଚାଷୀମାନଙ୍କର ଆୟର ଉନ୍ନତି ହୋଇପାରିବ । ବିଶ୍ୱବ୍ୟାଙ୍କର ହିସାବ ଅନୁସାରେ, କୃଷିର ଉନ୍ନତି ଦାରିଦ୍ର୍ୟ ଯେତେ ଦୂର କରିପାରିବ, ଅନ୍ୟ କୌଣସି ସଂସ୍ଥା ସେତେ ଦୂର କରିପାରିବ ନାହିଁ । ତୃତୀୟରେ, ଏବେ ଅନେକ ଲୋକ ଚାଷ ଉପରେ ନିର୍ଭର କରୁଛନ୍ତି । କୃଷି ଏତେ ଲୋକଙ୍କର ଭାର ସହଜରେ ସମ୍ଭାଳିପାରିବ ନାହିଁ । ଉନ୍ନତ ଦେଶମାନଙ୍କରେ ଶତକଡ଼ା ୨/୩ ଭାଗ ଚାଷୀ କୃଷିକୁ ନିଜର ଜୀବିକା ଭାବରେ ଗ୍ରହଣ କରିଛନ୍ତି । ତେଣୁ ଗାଁଗହଳରେ ରହୁଥିବା ଲୋକମାନଙ୍କୁ ବୈଷୟିକ ଶିକ୍ଷାରେ ଯୋଗ୍ୟ କରିପାରିଲେ, ସେମାନେ ଖୁବ୍ ସହଜରେ ଅନ୍ୟାନ୍ୟ ଧନ୍ଦା ଗ୍ରହଣ କରିବାକୁ ସକ୍ଷମ ହୋଇପାରିବେ । ସମାଜ ସ୍ଥାଣୁ ନୁହେଁ । ଅର୍ଥନୀତି ମଧ୍ୟ ଗତାନୁଗତିକ ଧାରାରେ ଚାଲିନାହିଁ । ସମାଜ ବଦଳୁଛି, ଅର୍ଥନୀତିରେ ପରିବର୍ତ୍ତନ ହେଉଛି, ନୂଆ ନୂଆ ଧନ୍ଦା ସୃଷ୍ଟି ହୋଇଛି । ଏଥିରେ ଚାଇନା ଓ ଜାପାନ ଅନେକ ଉନ୍ନତି କରିଛନ୍ତି । ଆମେ ସେଥିପାଇଁ ଲୋକମାନଙ୍କୁ ପ୍ରସ୍ତୁତ କରିବା ଦରକାର ।

ଏଠାରେ ମଧ୍ୟ କହି ରଖିବା ଦରକାର ଯେ କୃଷି ଓ ଶିଳ୍ପ ଭିତରେ ପ୍ରତିଯୋଗିତା ହେବା ଉଚିତ ନୁହେଁ । କୃଷିର ଉନ୍ନତି ପାଇଁ ସାର, ବିଦ୍ୟୁତଶକ୍ତି, ପାୱାର ଟିଲର୍ ଓ ଅନ୍ୟାନ୍ୟ ଯନ୍ତ୍ରପାତି ଦରକାର । ଶିଳ୍ପର ଉନ୍ନତି ପାଇଁ କଞ୍ଚାମାଲ ଦରକାର । କୃଷି ସାହାଯ୍ୟରେ ଏହି କଞ୍ଚାମାଲ ଉତ୍ପାଦନ କରାଯାଇପାରିବ । ପୁଣି ଆମେ ଯାହା ଦେଖୁଛୁ, ଓଡ଼ିଶାରେ କ୍ଷୁଦ୍ର ଶିଳ୍ପ ଉଧେଇ ପାରୁନାହିଁ । କ୍ଷୁଦ୍ର ଶିଳ୍ପ ପ୍ରତିଷ୍ଠା କରିବା ପାଇଁ ଓଡ଼ିଶାର ବିଭିନ୍ନ ସରକାର ଅନେକ ଉଦ୍ୟମ କରିଥିଲେ ; କିନ୍ତୁ ସେ ସବୁ ଉଦ୍ୟମ ସଫଳ ହୋଇପାରିନାହିଁ । ୬୦/୭୦ ଭାଗ କ୍ଷୁଦ୍ରଶିଳ୍ପ ରୁଗ୍‌ଣ ହୋଇ ରହିଛି ବୋଲି ହିସାବ ପ୍ରକାଶ ପାଉଛି ; କିନ୍ତୁ ଯେଉଁସବୁ ମେଗାଶିଳ୍ପ ହୋଇଛି, ସେହି ମେଗା ଶିଳ୍ପ ଅଞ୍ଚଳରେ ଅନେକ ସହକାରୀ ସହାୟକ ଶିଳ୍ପର ଉନ୍ନତି ହୋଇଛି । ଗାଁଗହଳିର ଯେଉଁମାନେ ବେକାର ହୋଇ ରହିଛନ୍ତି, ସେମାନେ ଏବେ ସହରକୁ କର୍ମ ଅନ୍ୱେଷଣରେ ଆସୁଛନ୍ତି; କିନ୍ତୁ କିଛି କାମ ନ ପାଇ ବସ୍ତି ଅଞ୍ଚଳ ସୃଷ୍ଟି କରୁଛନ୍ତି । ସେଥିପାଇଁ କୁହାଯାଉଛି, ଗ୍ରାମାଞ୍ଚଳର ଦାରିଦ୍ର୍ୟ ସହରକୁ ରପ୍ତାନି ହେଉଛି । ସେଥିପାଇଁ ଆମେ କହିବୁ ଯେ କିଛି ମେଗା ଶିଳ୍ପ ଦରକାର । ରାଉରକେଲା, ଅନୁଗୁଳ, ପାରାଦ୍ୱୀପ ପ୍ରଭୃତିରେ ଯେଉଁସବୁ ମେଗାଶିଳ୍ପ ପ୍ରତିଷ୍ଠିତ ହୋଇଛି, ସେଥିଯୋଗୁଁ ଅନେକ ସହାୟକ ଶିଳ୍ପ ପ୍ରତିଷ୍ଠିତ ହୋଇପାରିଛି ଏବଂ ତାହା ଫଳରେ କର୍ମସଂସ୍ଥାନର କିଛି ସୁବିଧା ହୋଇଛି । ଶିଳ୍ପକ୍ଷେତ୍ରରେ ଓଡ଼ିଶା ବହୁତ ପଛରେ ଅଛି । ଓଡ଼ିଶାରେ କାରଖାନାରେ କାମ କରୁଥିବା ଶ୍ରମଜୀବୀଙ୍କର ହାର ମୋଟେ ୧.୬୨; ଅଥଚ ମହାରାଷ୍ଟ୍ରରେ ୧୨.୬୨, ତାମିଲନାଡୁରେ ୧୫.୫୬ ଓ ଆନ୍ଧ୍ରରେ ୧୧.୮୬ । ଅଧିକ କାରଖାନା ନ ହେଲେ ଓଡ଼ିଶାର ଆର୍ଥିକ ସ୍ଥିତିରେ କେବେ ଉନ୍ନତି ହୋଇପାରିବ ନାହିଁ । ତେବେ ଶିଳ୍ପର ଉନ୍ନତି ଅର୍ଥ କେବଳ ଖଣିଜ ଶିଳ୍ପର ଉନ୍ନତି ନୁହେଁ । ଆମର ଅଧିକ ଖଣିଜ ସମ୍ପଦ ଅଛି । ସେଥିପାଇଁ କିଛି ଖଣିଜ ଶିଳ୍ପ କରିବା ଦରକାର ପଡ଼ିବ । କାରଣ ଖଣିଜ ପଦାର୍ଥ ମାଟିରେ ପୋତିହୋଇ ରହିଲେ କିଛି ଲାଭ ହେବନାହିଁ କି ବିଦେଶକୁ ବେଶୀ ରପ୍ତାନି କଲେ ଓଡ଼ିଶାର କିଛି ଉନ୍ନତି ହେବନାହିଁ ; କିନ୍ତୁ ଖଣିଜ ଶିଳ୍ପ କଲେ ଖାଲି ବାୟୁମଣ୍ଡଳ ଦୂଷିତ ହେବନାହିଁ, ଓଡ଼ିଶାବାସୀ ଭବିଷ୍ୟତରେ ପିଇବାକୁ ମୁନ୍ଦେ ପାଣି ପାଇବେ

ନାହିଁ । ବିଦ୍ୟୁତଶକ୍ତିର ମଧ୍ୟ ଅଭାବ ହେବ । ଖଣିଜପଦାର୍ଥର ମଧ୍ୟ ସୀମା ଅଛି । ଆମର ଧାରଣା ଶିଳ୍ପ କ୍ଷେତ୍ରରେ ମାନୁଫାକ୍ଚରିଙ୍ଗ ଶିଳ୍ପର ଉନ୍ନତି ଉପରେ ବେଶୀ ଗୁରୁତ୍ୱ ଦେବାକୁ ପଡ଼ିବ । ଚାଇନାର ଉନ୍ନତି ଏହାରି ଉପରେ ବେଶୀ ନିର୍ଭର କରିଛି ।

ତେବେ ଗୋଟିଏ ବଡ଼ ପ୍ରଶ୍ନ ହେଉଛି କୃଷି, ଶିଳ୍ପ କି ଭିତ୍ତିଭୂମିର ଉନ୍ନତି କେବେହେଲେ ସବ୍‌ସିଡି ଦ୍ୱାରା ସମ୍ଭବ ହେବନାହିଁ । ସେଥିପାଇଁ ସରକାରଙ୍କ ତରଫରୁ ଅଧିକ ଇନ୍‌ଭେଷ୍ଟମେଣ୍ଟ ଦରକାର ପଡ଼ିବ । ବିଶେଷକରି କୃଷି ଓ ଭିତ୍ତିଭୂମିର ଉନ୍ନତିରେ ସରକାରୀ ଇନ୍‌ଭେଷ୍ଟମେଣ୍ଟ୍ ବେଶୀ ଦରକାର । କୃଷିରୁ ହଠାତ ବେଶୀ କିଛି ଲାଭ ମିଳିପାରିବ ନାହିଁ । ତେଣୁ ବ୍ୟବସାୟୀମାନେ ସେଥିରେ ଇନଭେଷ୍ଟମେଣ୍ଟ କରିବାକୁ ଚାହିଁବେ ନାହିଁ । କୃଷିର ଅବସ୍ଥା ଏବେ ଯେତେ ଖରାପ ଅଛି, ତାକୁ ଉନ୍ନତି କରିବାକୁ ହେଲେ ଅନେକ ଇନଭେଷ୍ଟମେଣ୍ଟ ଦରକାର । ଯଥା - ଜଳସେଚନ, ରାସ୍ତାଘାଟ, ବିଦ୍ୟୁତଶକ୍ତି ଇତ୍ୟାଦି । ଏସବୁ ଫିଜିକାଲ ଭିତ୍ତିଭୂମି । ଫିଜିକାଲ ଭିତ୍ତିଭୂମିରେ କେବଳ ଅଧିକ ପୁଞ୍ଜି ବିନିଯୋଗ ହେବନାହିଁ । ତା'ର ସୁବିଧା ବା ଉପକାରର ପ୍ରସାରଣ ପ୍ରଭାବ ଅଛି । ସେଥିରୁ ଜଣେ ସୁବିଧା ପାଏନାହିଁ, ଅନେକ ପା'ନ୍ତି । ଅନେକଙ୍କ ପାଇଁ ଜଣେ କାହିଁକି ଅର୍ଥ ଲଗାଇବ ?

ସେହିପରି ସାମାଜିକ ଭିତ୍ତିଭୂମିରେ ସାଧାରଣତଃ ଯେଉଁ ପୁଞ୍ଜି ବିନିଯୋଗ ହୁଏ, ସେଥିରେ ଜନସାଧାରଣଙ୍କର ଜୀବନର ଗୁଣାତ୍ମକ ବିକାଶ ହୁଏ । ଶିକ୍ଷା, ସ୍ୱାସ୍ଥ୍ୟ, ଚିକିତ୍ସା— ଏସବୁ ଅର୍ଥନୈତିକ ପ୍ରଗତି ପାଇଁ ଯେତିକି ଦରକାର, ସେହିପରି ଲୋକମାନଙ୍କର ଜୀବନର ଗୁଣାତ୍ମକ ବିକାଶ ପାଇଁ ସେତିକି ଦରକାର । ଜଣେ ଶିକ୍ଷିତ ହେଲେ ସେ କୃଷିର କିପରି ଉନ୍ନତି କରିବ, ତାହା ସହଜରେ ଜାଣିପାରିବ । ଭିନ୍ନ ଭିନ୍ନ ଫସଲ ପାଇଁ କେତେ ସାର ଦରକାର, କେତେ ପାଣି ଦରକାର — ଏସବୁ ପାଇଁ ଶିକ୍ଷା ଦରକାର, ସଚେତନତା ଦରକାର । ସ୍ୱାସ୍ଥ୍ୟର ଉନ୍ନତି ହେଲେ ଜଣଙ୍କର କାମ କରିବାର ଦକ୍ଷତା ବୃଦ୍ଧି ହୋଇପାରିବ । ଜଣେ ସୁସ୍ଥ ନ ହେଲେ ସେ କାମ କରିବାକୁ ଶକ୍ତି ପାଇବ କିପରି ? ଅମର୍ତ୍ତ୍ୟ ସେନ ସେଥିପାଇଁ ଶିକ୍ଷା ଓ ସ୍ୱାସ୍ଥ୍ୟ ଉପ- ଏବେ ଅନେକ ଗୁରୁତ୍ୱ ଦେଇଛନ୍ତି । ଏହାବ୍ୟତୀତ ସରକାରୀ ଦକ୍ଷତା ମଧ୍ୟ ବୃଦ୍ଧି ହେବା ଦରକାର । ଦାରିଦ୍ର୍ୟ ଦୂର କରିବା ପାଇଁ ସରକାର ଏବେ ଅନେକ ଅର୍ଥ ଖର୍ଚ୍ଚ କରୁଛନ୍ତି; କିନ୍ତୁ ଦୁଃଖର କଥା ଯେ ତା'ର ଅନେକ ଭାଗ ସାଧାରଣ ଲୋକଙ୍କ ପାଖରେ ପହଞ୍ଚି ପାରୁନାହିଁ । ତେଣୁ ସରକାରୀ ଇନ୍‌ଭେଷ୍ଟମେଣ୍ଟର ସୁବିଧା ଯଦି ଲୋକମାନେ ପାଇପାରିବେ ନାହିଁ, ତାହାହେଲେ ସେ ଇନ୍‌ଭେଷ୍ଟମେଣ୍ଟର ମୂଲ୍ୟ କ'ଣ ?

ଅକ୍ସଫୋର୍ଡ଼ର ଜଣେ ଗବେଷକ ବବ୍ କ୍ୟୁରି କଳାହାଣ୍ଡି ଓ ନୂଆପଡ଼ାର ଦାରିଦ୍ର୍ୟ ବିଷୟରେ ଗବେଷଣା କରି ଲେଖିଥିଲେ ଯେ ଯେତେ ଟଙ୍କା ଦାରିଦ୍ର୍ୟ ଦୂରୀକରଣ ପାଇଁ ଆସୁଛି, ସ୍ଥାନୀୟ ରାଜନୀତିଜ୍ଞ, ସରକାରୀ କର୍ମଚାରୀ ଓ ଠିକାଦାର ମିଶି ତା'ର ୭୦/୭୫ ଭାଗ ନିଜ ଭିତରେ ବାଣ୍ଟିକରି ନେଉଛନ୍ତି । ସେ ଏହା ଏକ ପୁସ୍ତିକା ଆକାରରେ ପ୍ରକାଶ କରିଛନ୍ତି । ସେହି ପୁସ୍ତକ ବଜାରରେ ବିକ୍ରି ହେଉଛି । ତଥାପି ସେଥିରେ କିଛି ପରିବର୍ତ୍ତନ ହେବା ଦେଖାଯାଉନାହିଁ । ଏବେ ପୁଣି ସରକାରଙ୍କ ତରଫରୁ ଯେଉଁ ନିଯୁକ୍ତି ଗ୍ୟାରେଣ୍ଟି ସ୍କିମ୍ ପ୍ରସ୍ତୁତ ହେଉଛି, ସେ ବିଷୟରେ କେତେକ ତଥ୍ୟ ପ୍ରକାଶ ପାଉଛି । ଏହି ସ୍କିମ୍‌କୁ କେହି ସମାଲୋଚନା

କରିପାରିବେ ନାହିଁ । ବେକାର ଲୋକମାନଙ୍କୁ ନିଯୁକ୍ତି ଦେବାପାଇଁ ଏହି ସ୍କିମ୍ ପ୍ରସ୍ତୁତ କରାଯାଇଛି । ଏବେ ଯେଉଁସବୁ ସର୍ଭେ ହୋଇଛି, ସେଥିରୁ ଦେଖାଯାଉଛି— ଅନେକ ଲୋକ ନିଯୁକ୍ତି କାର୍ଡ ପାଇଛନ୍ତି; କିନ୍ତୁ ନିଯୁକ୍ତି ପାଇନାହାନ୍ତି । ଯେଉଁ କେତେକଣ ନିଯୁକ୍ତି ପାଇଛନ୍ତି, ସେମାନେ ସେମାନଙ୍କର ପୂରା ମଜୁରୀ ପାଇନାହାନ୍ତି । ପୁଣି ଏହିସବୁ ହେଉଛି ଆଦିବାସୀ ଅଞ୍ଚଳରେ— କୋରାପୁଟ, କନ୍ଧମାଳ ଇତ୍ୟାଦି । ତେଣୁ ସ୍କିମ୍ କରି ଲାଭ କ'ଣ? — ଯଦି ସେଥିରୁ ସାଧାରଣ ଦରିଦ୍ର ଲୋକମାନେ ସୁବିଧା ନ ପାଇବେ ! ସମସ୍ତେ ଆଶା କରୁଥିଲେ ଯେ ରାଜନୀତିଜ୍ଞ ଲୋକମାନେ ସାଧାରଣ ଲୋକମାନଙ୍କ ଭିତରେ ସଚେତନତା ସୃଷ୍ଟି କରି ଏହିସବୁ ବ୍ୟବସ୍ଥାକୁ କାର୍ଯ୍ୟକାରୀ କରିବେ । ଏକ ସମୟରେ ସେମାନଙ୍କ ଉପରେ ଲୋକଙ୍କର ଅନେକ ବିଶ୍ୱାସ ଥିଲା ; କିନ୍ତୁ ଏବେ ଦେଖାଯାଉଛି ଯେ ସେମାନଙ୍କ ଭିତରୁ ଅନେକେ ଦୁର୍ନୀତିରୁ ମୁକ୍ତ ହୋଇପାରୁନାହାନ୍ତି । ମାୟାବତୀ ଜଣେ ସ୍କୁଲ ମାଷ୍ଟର ଥିଲେ । ସ୍କୁଲ ମାଷ୍ଟରମାନଙ୍କ ଦରମା କେତେ ସମସ୍ତେ ଜାଣନ୍ତି ; କିନ୍ତୁ ମୁଖ୍ୟମନ୍ତ୍ରୀ ହେବା ପରେ ତାଙ୍କର ଆୟ ୫୦ କୋଟିକୁ ବୃଦ୍ଧି ପାଇଛି । ତଥାପି ସେ ନିର୍ବାଚନରେ ଜିଣୁଛନ୍ତି । ଏହିପରି ଅନେକ ରାଜନୀତିଜ୍ଞ ଅଛନ୍ତି, ସମସ୍ତଙ୍କ କଥା ତ ଲେଖିବା ସମ୍ଭବ ନୁହେଁ । ଯେଉଁ ରାଜନୀତିଜ୍ଞମାନେ ଜନସାଧାରଣଙ୍କ ପ୍ରତିନିଧି, ସେମାନେ ଯଦି ରାଜନୀତିକୁ ଏକ ବ୍ୟବସାୟ କରି ସେଥିରୁ ଅର୍ଥ ରୋଜଗାର କରିବେ, ତାହାହେଲେ ସେମାନେ ସମାଜରେ ସଚେତନତା ଆଣିବେ କିପରି ଓ ଦୁର୍ନୀତିକୁ ଦୂର କରିବେ କିପରି ?

ପୁଣି ସରକାରଙ୍କ ତରଫରୁ ଯେଉଁସବୁ ଲୋକହିତକର ଅନୁଷ୍ଠାନ ଗଢ଼ାଯାଇଛି, ସେମାନେ କ'ଣ କରୁଛନ୍ତି ? ଓଡ଼ିଶାର ଦୁଇଟି ଅନୁଷ୍ଠାନ କଥା ଏବେ ଖୁବ୍ ଚର୍ଚ୍ଚାକୁ ଆସିଛି । ଗୋଟିଏ ହେଉଛି ଓଡ଼ିଶା ଗ୍ରାମ୍ୟ ଗୃହନିର୍ମାଣ ଓ ଉନ୍ନୟନ ନିଗମ । ସେହି ଉନ୍ନୟନ ନିଗମର ତିନିଜଣ ଏ ପର୍ଯ୍ୟନ୍ତ ଧରାପଡ଼ିଛନ୍ତି । ଜଣେ ଆଇ.ଏ.ଏସ୍. ଅଫିସର ଜେଲରେ, ଅନ୍ୟ ଦୁଇଜଣ ଯେଉଁମାନେ ଫେରାର ହୋଇଥିଲେ, ଏବେ ଆତ୍ମସମର୍ପଣ କରିଛନ୍ତି । ସେମାନେ କେତେ କୋଟି ଟଙ୍କା ବାଟମାରଣା କରିଛନ୍ତି, ତା'ର ହିସାବ ଆସ୍ତେ ଆସ୍ତେ ବାହାରୁଛି । ଏହାଫଳରେ ସେମାନଙ୍କର ଓ ସେମାନଙ୍କର ଆତ୍ମୀୟମାନଙ୍କର ଗୃହ ଅବଶ୍ୟ ନିର୍ମାଣ ହୋଇଛି; କିନ୍ତୁ ଯେଉଁମାନଙ୍କ ପାଇଁ ଏ ଅନୁଷ୍ଠାନ ଗଢ଼ା ହୋଇଥିଲା, ସେମାନେ ସେଥିରୁ କାଣିଚାଏ ବି ନାହାନ୍ତି । ସେହିପରି ଇପିକଲକୁ ଯେଉଁସବୁ ଅର୍ଥ ଦିଆଯାଇଥିଲା, ସେଥିରେ କୃଷିର କିଛି ଉନ୍ନତି ହେବାର କଥା; କିନ୍ତୁ ସେହିସବୁ ଅର୍ଥ କୁଆଡ଼େ ଯାଇଛି, ତା'ର ପତ୍ତା ସରକାର ବି ପାଉନାହାନ୍ତି । ଏତିକି ଜଣାପଡୁଛି ଯେ କୃଷି ଭାଗରେ କିଛି ପଡ଼ିନାହିଁ । ଅନେକ ସରକାରୀ ଅନୁଷ୍ଠାନ ଅଛି, ଯେଉଁମାନେ କି ଏହି ସ୍ଥିତି ଭିତରେ ବୁଡ଼ି ରହିଛନ୍ତି । ଉଦାହରଣ ଦେଲେ ଅନେକ ଲେଖିବାକୁ ପଡ଼ିବ । ଆମର ଖାଲି ଏତିକି କହିବାର କଥା ଯେ ସରକାରୀ ଧନ ଯଦି ଏହିପରି ଭାବରେ ଅପବ୍ୟୟ ହୁଏ, ଯେତେ ଅର୍ଥନୈତିକ ପ୍ରଗତି ହେଲେ ମଧ୍ୟ ସାଧାରଣ ଜନସାଧାରଣଙ୍କର ଅବସ୍ଥାରେ ବେଶିକରି ଉନ୍ନତି ହୋଇପାରିବ ନାହିଁ । ଖାଲି ଦେଶରେ ବିଭେଦ ଓ ବ୍ୟବଧାନ ବୃଦ୍ଧି ହେବ । ସେଥିପାଇଁ ଇନ୍‌ଭେଷ୍ଟମେଣ୍ଟ ସହିତ ସରକାରୀ ଦକ୍ଷତା କିପରି ବୃଦ୍ଧି ହେବ, ସେ ଦିଗରେ ଅଧିକ ଉଦ୍ୟମ କରିବାକୁ ପଡ଼ିବ ।



# ଓଡ଼ିଆଭାଷୀ ଅଞ୍ଚଳରେ ଇଂରେଜ ବିରୋଧୀ ଆନ୍ଦୋଳନ ଓ ବିପ୍ଳବର କାହାଣୀ

ଅଧ୍ୟାପକ ଶ୍ରୀ ପଠାଣି ପଟ୍ଟନାୟକ

ଓଡ଼ିଆ ଗଦ୍ୟ ସାହିତ୍ୟର ଜଣେ ଅନନ୍ୟ ଶିଳ୍ପୀ ପ୍ରାବନ୍ଧିକ ଅଧ୍ୟାପକ ପଠାଣି ପଟ୍ଟନାୟକ ଗତଥର ୨୦୦୮ 'ମୋ ଓଡ଼ିଶା' ସାରସ୍ୱତ ସଂକଳନରେ "ଉତ୍କଳ ସମ୍ମିଳନୀ ଓ ଓଡ଼ିଆ ଜାତୀୟ ସଂଗୀତ" ଶୀର୍ଷକ ପ୍ରବନ୍ଧରେ ଓଡ଼ିଆ 'ଜାତୀୟ ଆନ୍ଦୋଳନ ଓ ଜାତୀୟ ସଙ୍ଗୀତ' ଉପରେ ଗୋଟିଏ ତଥ୍ୟପୂର୍ଣ୍ଣ ଉପାଦେୟ ନିବନ୍ଧ ଦେଇଥିଲେ । ଏଥରର ୨୦୦୯ ସାରସ୍ୱତ ସଂକଳନରେ ଅଧ୍ୟାପକ ପଟ୍ଟନାୟକ ଉତ୍ପୀଡ଼ିତ ଓଡ଼ିଆ ଅଞ୍ଚଳରେ ଦେଖାଦେଇଥିବା ଇଂରେଜ ବିରୋଧି ଜାଗରଣର ସମ୍ୟକ ଆଲୋକପାତ କରିଛନ୍ତି ଉପରୋକ୍ତ ଶୀର୍ଷକରେ ଆପଣମାନଙ୍କ ଅବଗତି ପାଇଁ.....

ବିଶାଳ ଭାରତୀୟ ମହାଦେଶର ଅନେକ ଅଞ୍ଚଳରେ ଯେତେବେଳେ ବିଦେଶାଗତ ଗ୍ରୀକ୍, ପାର୍ଥିଆନ୍, ହୁନ୍, ପାର୍ସି, ଆଫଗାନ, ମୋଗଲ ଓ ମୁସଲମାନ ଆକ୍ରମଣକାରୀ ବାରମ୍ବାର ଅଭିଯାନ କରି ଏହି ଦେଶରେ ନରସଂହାର ଓ ଲୁଟତରାଜ ଜାରି ରଖିଥିଲେ, ସେତେବେଳେ କୌଣସି କୈନ୍ଦ୍ରିକ ଶକ୍ତି ଏହି ବହିଶତ୍ରୁମାନଙ୍କର ଅତ୍ୟାଚାରର ସମ୍ମୁଖୀନ ହେଲେନାହିଁ । ପରସ୍ପର ମଧ୍ୟରେ କଳହରତ ସ୍ୱାର୍ଥ ନ୍ୱେଷୀ ରାଜଶକ୍ତିଗଣଙ୍କର ଦେଶଦ୍ରୋହୀ ଆଚରଣ ଯୋଗୁ କାଳକ୍ରମେ ବିଦେଶୀ ଶକ୍ତି ଏ ଦେଶରେ ଶାସନ ପ୍ରତିଷ୍ଠା କଲେ । ଆଶ୍ଚର୍ଯ୍ୟ ଯେ ଏହି କ୍ଷେତ୍ରରେ ଓଡ଼ିଆଭାଷୀ ଅଞ୍ଚଳ ଥିଲା ଏକ ବ୍ୟତିକ୍ରମ । ଏଠାରେ ସ୍ୱାଭିମାନୀ, ସ୍ୱାଧୀନତାପ୍ରେମୀ ଶାସକମାନଙ୍କର ଇତିହାସ ଥିଲା ଅନନ୍ୟସାଧାରଣ । ଉତ୍ତରଭାରତରେ ବିଦେଶାଗତ ଅଭିଯାନକାରୀ ରାଜତ୍ୱ ପ୍ରତିଷ୍ଠା କଲା ପରେ ରାଜ୍ୟବିସ୍ତାର ଉଦ୍ଦେଶ୍ୟରେ ବାରମ୍ବାର ଓଡ଼ିଶା ବିରୋଧରେ ଅଭିଯାନ କରି ଅପଦସ୍ଥ ହୋଇ ଫେରିଯାଇଥିଲେ । ଓଡ଼ିଆଭାଷୀ ଅଞ୍ଚଳରେ ଭୌମକର ରାଜବଂଶ, ସୋମବଂଶ, ଗଙ୍ଗ ରାଜବଂଶ ଓ ସୂର୍ଯ୍ୟବଂଶର ରାଜାମାନେ ଥିଲେ ଅତ୍ୟନ୍ତ ଶକ୍ତିଶାଳୀ ଏବଂ ସେମାନଙ୍କର ଅପୂର୍ବ ରଣକୌଶଳ ଓ ସାମରିକ ନୈପୁଣ୍ୟ ନିକଟରେ ବାହ୍ୟ ଆକ୍ରମଣକାରୀ ଶାସକଗଣ ବାରମ୍ବାର ଅପଦସ୍ଥ ହୋଇ ଫେରିଯାଇଥିଲେ । କିନ୍ତୁ ଏ ସୌଭାଗ୍ୟରବି ଅସ୍ତମିତ ହୋଇଗଲେ ଓଡ଼ିଶାର ଶେଷ ସ୍ୱାଧୀନ ରାଜା ମୁକୁନ୍ଦଦେବଙ୍କ ରାଜତ୍ୱ କାଳରେ ।

ରାଜବଂଶରେ ଭ୍ରାତୃବିବାଦ, ସେନାପତିମାନଙ୍କର ହୀନଚକ୍ରାନ୍ତ ଓ ବିଶ୍ୱାସଘାତକତା ଯୋଗୁଁ ରାଜା ମୁକୁନ୍ଦଦେବ ଭଦ୍ରକ ନିକଟସ୍ଥ ଗୋହିରାଟିକିରି ରଣକ୍ଷେତ୍ରରେ ୧୫୬୮ ଖ୍ରୀଷ୍ଟାବ୍ଦରେ ବନ୍ଦୀ ଓ ଶେଷରେ ନିହତ ହେଲେ । ଏଣିକି ଓଡ଼ିଆଭାଷୀ ଅଞ୍ଚଳରେ ଆଫଗାନ, ମୋଗଲ, ମୁସଲମାନ ଓ ମରହଟ୍ଟାଙ୍କ ସହିତ

ସର୍ବଶେଷରେ ଇଂରେଜମାନେ ଓଡ଼ିଶାର ଶାସକ ହୋଇ ବସିଲେ । ଓଡ଼ିଆଭାଷୀ ଅଞ୍ଚଳ ଖଣ୍ଡବିଖଣ୍ଡ ହୋଇ ପରପଦାନତ ହେଉଥିବାରୁ ଏହି ଅଞ୍ଚଳର ଜାତୀୟ ସଂହତି ଓ ଜାତୀୟ ଐକ୍ୟବୋଧ ଥିଲା ସୁଦୂରପରାହତ । ଏହିପରି ଗ୍ଲାନିକର ଅବକ୍ଷୟ  ମଧ୍ୟରେ ଓଡ଼ିଆ ପ୍ରାଣ ସନ୍ତୁଳିତ ହେଉଥାଏ ଏବଂ ବିଭିନ୍ନ ଅଞ୍ଚଳରେ ସାମୟିକ ବିଦ୍ରୋହର ଅଗ୍ନି ପ୍ରଜ୍ଜ୍ୱଳିତ ହୋଇ ନିର୍ବାପିତ ହୋଇଯାଉଥାଏ । ସେହି କାରଣରୁ ପ୍ରବାସୀ ରାଜଶକ୍ତି ଶାନ୍ତିରେ ନିଃଶ୍ୱାସ ନେଇପାରୁ ନ ଥିଲେ । ସେମାନେ ଆତ୍ମରକ୍ଷାପାଇଁ ନିର୍ମମ ଭାବରେ ଦମନଲୀଳା ଚଳାଉଥଲେ ହେଁ ସ୍ୱାଧୀନତାକାମୀ ଓଡ଼ିଆମାନଙ୍କୁ ନିରସ୍ତ ବା ନିବୃତ୍ତ କରିପାରି ନ ଥିଲେ ।

**ପାଶ୍ଚାତ୍ୟ ଆଧିପତ୍ୟ ବିରୋଧରେ ବିଦ୍ରୋହ :**

୧୭୫୭ ସାଲରେ ପଲାସୀ ଯୁଦ୍ଧରେ ଇଂରେଜମାନେ ଜୟଲାଭ କରି ବଙ୍ଗ, ବିହାର ଏବଂ ଓଡ଼ିଶାର ଦେବାନୀ ଅଧିକାର କଲେ । ଏଠାରେ ଓଡ଼ିଶା କହିଲେ କେବଳ ମେଦିନୀପୁର ଅଞ୍ଚଳକୁ ବୁଝାଉଥିଲା । ତେଣେ ଦକ୍ଷିଣ ଭାରତରେ ଫରାସୀ ଓ ଇଂରେଜମାନେ ନାନା ଅଞ୍ଚଳକୁ ଅଧିକାର କରି ଶୋଷଣ ଓ ଉତ୍ପୀଡ଼ନ କରୁଥିଲେ । ଏହି ସମୟରେ ମରହଟ୍ଟାମାନେ କଟକ, ପୁରୀ, ବାଲେଶ୍ୱର ଅଞ୍ଚଳରେ ନିଜର ଆଧିପତ୍ୟ ବିସ୍ତାର କରି ଶୋଷଣ କରୁଥାଆନ୍ତି । ତେଣେ ଦକ୍ଷିଣ ଓଡ଼ିଶାରେ ଫରାସୀମାନେ କିଛିକାଳ ଶାସନ କରିବାର ସୁଯୋଗ ଲାଭ କରିଥିଲେ । ସେମାନେ ଅତ୍ୟନ୍ତ ବଳପ୍ରୟୋଗ କରି ଗଞ୍ଜାମ ଅଞ୍ଚଳର ରାଜା ଓ ଜମିଦାରମାନଙ୍କଠାରୁ ରାଜସ୍ୱ ଆଦାୟ କରିବାରୁ ଭୀଷଣ ପ୍ରତିରୋଧର ସମ୍ମୁଖୀନ ହେଲେ । ପ୍ରଥମେ ଘୁମୁସର ରାଜା ଫରାସୀ ଶାସନକୁ ସ୍ୱୀକାର କଲେନାହିଁ । ସେମାନଙ୍କ ବିରୋଧରେ ଘୁମୁସରର ବୀର ପାଇକବାହିନୀ ରାଜାଙ୍କ ନେତୃତ୍ୱରେ ପ୍ରାଣମୂର୍ଚ୍ଛା ସଂଗ୍ରାମ କରି ୩୦ ଜଣ ଇଉରୋପୀୟ ସୈନ୍ୟ ଏବଂ ବହୁସଂଖ୍ୟକ ସିପାହୀଙ୍କୁ ହତ୍ୟା କଲେ । ତେବେ ଆଧୁନିକ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ୟୁରୋପୀୟ ବାହିନୀ ନିକଟରେ ଘୁମୁସର ସୈନ୍ୟବାହିନୀ ଆତ୍ମସମର୍ପଣ କରିବା ବ୍ୟତୀତ ଅନ୍ୟ ଉପାୟ ନ ଥିଲା ।

ଏ ହେଉଛି ୧୭୫୭ ମସିହାର ଘଟଣା । ମାତ୍ର ଦଶବର୍ଷ ପରେ ଇଂରେଜମାନେ ଫରାସୀମାନଙ୍କୁ ୧୭୬୭ ସାଲରେ ବିତାଡ଼ିତ କରି ହେଲେ ଗଞ୍ଜାମ ଅଞ୍ଚଳର ଶାସକ; କିନ୍ତୁ ସ୍ୱାଧୀନତାପ୍ରେମୀ ଗଞ୍ଜାମ ଅଞ୍ଚଳର ରାଜା ଓ ଜମିଦାରମାନେ ଇଂରେଜ ଆଧିପତ୍ୟକୁ ସହଜରେ ସ୍ୱାଗତ କରିପାରିଲେ ନାହିଁ । ସେମାନେ ସୁଯୋଗ ଦେଖି ଇଂରେଜଙ୍କ ବିରୋଧରେ ଅସ୍ତ୍ର ଉତ୍ତୋଳନ କରୁଥିଲେ । ପ୍ରଥମେ ପାରଳାମହାରାଜା ଇଂରେଜଙ୍କ ବିରୋଧରେ ପ୍ରବଳ ଯୁଦ୍ଧ କଲେ ଏବଂ ପରାସ୍ତ ହୋଇ ନିଘଞ୍ଚ ଅରଣ୍ୟରେ ଆଶ୍ରୟ ନେଲେ ପଛକେ ବିଦେଶୀଶକ୍ତି ନିକଟରେ ଆତ୍ମସମର୍ପଣ କଲେନାହିଁ । ବିଦେଶୀ ଇଂରେଜବାହିନୀ ଅତ୍ୟାଧୁନିକ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ । ସେମାନଙ୍କ ସମ୍ମୁଖରେ କେତେକାଳ ଅବା ଏକାକୀ ଯୁଦ୍ଧ କରିପାରନ୍ତେ ପାରମ୍ପରିକ ଅସ୍ତ୍ରଶସ୍ତ୍ର ସାହାଯ୍ୟରେ ! ପରିଶେଷରେ ସେ ଆତ୍ମସମର୍ପଣ କରିବାପାଇଁ ବାଧ୍ୟ ହେଲେ । ଏହି ଘଟଣାର ଦୁଇବର୍ଷ ପରେ ଖଲିକୋଟ ରାଜା ୧୭୬୯ ଖ୍ରୀଷ୍ଟାବ୍ଦରେ ଇଂରେଜ କର୍ତ୍ତୃତ୍ୱକୁ ଅସ୍ୱୀକାର କରି ଯୁଦ୍ଧ କଲେ । ଦୀର୍ଘଦିନ ଯୁଦ୍ଧରେ ଚବିଶ ଜଣ ଇଂରେଜ ସୈନ୍ୟ ପ୍ରାଣବଳି ଦେଲେ ଏବଂ ଆହତ ହୋଇଥିଲେ ଅଠେଇଶ ଜଣ । ଶେଷରେ ଖଲ୍ଲିକୋଟ ରାଜା ଅତ୍ୟାଧୁନିକ ଅସ୍ତ୍ରଶସ୍ତ୍ରର ସମ୍ମୁଖୀନ ହୋଇ ନ ପାରି ବାଧ୍ୟ ହୋଇ ଇଂରେଜ

ରାଜଶକ୍ତି ନିକଟରେ ମୁଣ୍ଡ ନୁଆଁଇଲେ। ଦକ୍ଷିଣ ଓଡ଼ିଶାରେ କ୍ରମାନ୍ୱୟରେ ୧୭୬୨ ଖ୍ରୀଷ୍ଟାବ୍ଦରେ ବିଜୟନଗର, ୧୭୬୮-୬୯ ମଧ୍ୟରେ ପୁନର୍ବାର ଘୁମୁସର ରାଜା ବିଦ୍ରୋହ କରି ଇଂରେଜଶାସକମାନଙ୍କ ସ୍ଥିତିକୁ କିଛିକାଳ ପାଇଁ ଟହଲାଇ ଦେଇଥିଲେ। ଏକ ଶକ୍ତିଶାଳୀ ସାମରିକ ଶକ୍ତି ନିକଟରେ ଏମାନେ ଅବା କେତେକାଳ ପ୍ରତିପକ୍ଷ ହୋଇ ଯୁଦ୍ଧ କରି ପାରିଥାଆନ୍ତେ ! ଦକ୍ଷିଣ ଓଡ଼ିଶାରେ ପୁନର୍ବାର ପାରଳାଖେମିଣ୍ଡି ରାଜା ବିଦ୍ରୋହ କଲେ ୧୭୯୮-୯୯ ସାଲ ଦୀର୍ଘ ଦୁଇ ବର୍ଷ କାଳ। ଇଂରେଜମାନେ ଏହି ବିଦ୍ରୋହର ଗୁରୁତ୍ୱ ଉପଲବ୍ଧି କରି ପଦାତିକ ବାହିନୀ, ଅଶ୍ୱାରୋହୀବାହିନୀ ଓ ତୋପଧାରୀ ସୈନ୍ୟଙ୍କୁ ମୁତୟନ କଲେ କର୍ଣ୍ଣେଲ ଫଦରିଙ୍ଗହାମ୍ ନେତୃତ୍ୱରେ। ଲେଫ୍‌ନାଣ୍ଟ ୟଙ୍ଗସନ୍ ବନ୍ଦୀ ହେଲେ। ଇଂରେଜମାନେ ଦାରୁଣ ବିପର୍ଯ୍ୟୟର ସମ୍ମୁଖୀନ ହୋଇ ଅତ୍ୟନ୍ତ କଠୋର ଭାବରେ ଦମନ କଲେ ଏହି ବିଦ୍ରୋହକୁ; ମାତ୍ର ତାହା ଥିଲା ଅଳ୍ପକାଳ ସ୍ଥାୟୀ। ପୁନର୍ବାର ୧୮୦୧ ସାଲରେ ଏହି ବିଦେଶୀ ଶକ୍ତିର ପ୍ରତିରୋଧ କରି ପାରଳା ମହାରାଜା ଇଂରେଜଙ୍କ ବିରୋଧରେ ଯୁଦ୍ଧ ଘୋଷଣା କଲେ। ତେଣେ ଉତ୍ତର ଓଡ଼ିଶାରେ ମୟୁରଭଞ୍ଜ ମହାରାଜା ଦାମୋଦର ଭଞ୍ଜ ଇଂରେଜମାନଙ୍କ ବିରୋଧରେ ଅସ୍ତ୍ର ଉତ୍ତୋଳନ କଲେ ୧୭୮୧ ଖ୍ରୀଷ୍ଟାବ୍ଦରେ। ଏହି ସଂଗ୍ରାମ ଏପରି ଭୟଙ୍କର ଥିଲା ଯେ ୧୭୯୬ ପର୍ଯ୍ୟନ୍ତ ଇଂରେଜମାନେ ମୟୁରଭଞ୍ଜକୁ ଆୟତ୍ତ କରିପାରିଲେ ନାହିଁ। ରାଜା ଦାମୋଦର ମୃତ୍ୟୁବରଣ କଲା ପର୍ଯ୍ୟନ୍ତ ଆତ୍ମସମର୍ପଣ କରି ନ ଥିଲେ।

୧୮୦୩ ସାଲରେ ଖୋର୍ଦ୍ଧାରାଜାଙ୍କ ସହିତ ଏକ କପଟ ଚୁକ୍ତି କରି ଇଂରେଜମାନେ ଖୋର୍ଦ୍ଧା ମଧ୍ୟରେ ସୈନ୍ୟଚାଳନାର ସୁଯୋଗପ୍ରାପ୍ତ ହେଲେ ଏବଂ ଚିଲିକାବାଟେ ପୁରୀ ସହର ଦଖଲ କରି କଟକରେ କାଠଯୋଡ଼ି ନଦୀ ପାର ହୋଇ ଅକ୍ଳେଶରେ ବାରବାଟୀ ଦୁର୍ଗ ଦଖଲ କଲେ। ଦୁର୍ଗ ମଧ୍ୟରେ ଥିବା ମରହଟ୍ଟା ସୈନ୍ୟମାନେ ମହାନଦୀ ପାର ହୋଇ ଆଠଗଡ଼ ଜଙ୍ଗଲକୁ ପଳାୟନ କଲେ। ତେବେ କ୍ଷୁଦ୍ର ସର୍ପର ବିଷ ଉତ୍କଟତର ବୋଲି କଥା ଅଛି। ଓଡ଼ିଶାର ଉପକୂଳରେ କ୍ଷୁଦ୍ର ଅଞ୍ଚଳର ହରିଶପୁର ରାଜା ନୀଳକଣ୍ଠ ମର୍ଦ୍ଦରାଜ ଇଂରେଜଙ୍କ ଅଧିକାରକୁ ଅସ୍ୱୀକାର କରି ବିଦ୍ରୋହୀ ହେଲେ ଏବଂ ସବୁଦିନ ପାଇଁ ନିଜର ଜମିଦାରୀରୁ ବଞ୍ଚିତ ହେଲେ।

ଖୋର୍ଦ୍ଧାରାଜାଙ୍କ ସହିତ କପଟ ଚୁକ୍ତିକୁ ବେଖାତିର କରି ଇଂରେଜମାନେ ଖୋର୍ଦ୍ଧାରେ ନିଜର ଅଧିକାର ସାବ୍ୟସ୍ତ କଲେ। ଖୋର୍ଦ୍ଧାର ଅଧିକାଂଶ ଅଞ୍ଚଳରେ ଓଡ୍ରବାହିନୀ ପୁରୁଷାନୁକ୍ରମେ ସ୍ଥାୟୀ ବାସିନ୍ଦା। ଏମାନେ ରଣରଙ୍ଗ ପାଇକ କୁଳ। ସେମାନଙ୍କ ନାମାନୁସାରେ ଏହି ରାଜ୍ୟର ନାମ ଓଡ଼ିଶା। ଖୋର୍ଦ୍ଧା ଅଞ୍ଚଳର ଚତୁର୍ଦ୍ଦିଗରେ ଅନେକ ସୁଦୃଢ଼ ଦୁର୍ଗ ନିର୍ମାଣ କରାଯାଇଥିଲା। ଏହି ଦୁର୍ଗଗୁଡ଼ିକୁ ନିୟନ୍ତ୍ରଣ କରୁଥିଲେ ଗଡ଼ନାୟକ, ଦଳବେହେରା, ଦଳେଇ ଓ ସର୍ଦ୍ଦାରମାନେ। ସେମାନଙ୍କ ଅଧୀନରେ ଖୋର୍ଦ୍ଧାର ପାଇକବାହିନୀ ଯୁଦ୍ଧବିଦ୍ୟାରେ ପାରଙ୍ଗମ ଥିଲେ ଏବଂ ସର୍ବଦା ପ୍ରସ୍ତୁତ ରହିଥିଲେ ଦେଶର ସ୍ୱାଧୀନତା ଓ ସ୍ୱାର୍ଥ ରକ୍ଷା ପାଇଁ। ଖୋର୍ଦ୍ଧା ରାଜାଙ୍କର ପ୍ରଧାନ ସେନାପତି ଥିଲେ ବକ୍ସି ଜଗବନ୍ଧୁ ବିଦ୍ୟାଧର ମହାପାତ୍ର। ଖୋର୍ଦ୍ଧାରାଜାଙ୍କ ସେନାବାହିନୀରେ ଖଣ୍ଡାୟତମାନେ ଜାଗିରି ଭୋଗ କରି ପୁରୁଷାନୁକ୍ରମେ କାର୍ଯ୍ୟକରି ଆସୁଥିଲେ ହେଁ ପ୍ରତ୍ୟେକ ଜାତିର ଲୋକ ଏଥିରେ ଅଂଶଗ୍ରହଣ କରିବା ଥିଲା ଏକ ବିଧିବଦ୍ଧ ପରମ୍ପରା। ଇଂରେଜମାନଙ୍କ ବଞ୍ଚକତାପୂର୍ଣ୍ଣ ଚୁକ୍ତିଭଙ୍ଗ ଏବଂ ବିଶ୍ୱାସଘାତକତା ଯୋଗୁଁ ସ୍ୱାଧୀନ ଖୋର୍ଦ୍ଧା ରାଜ୍ୟ ହେଲା ବିଦେଶୀ ଶକ୍ତିର ପରାଧୀନ

୧୮୦୩ ସାଲରେ । ସେହି ସମୟରେ ଖୋର୍ଦ୍ଧାର ରାଜା ମୁକୁନ୍ଦଦେବ ଥିଲେ ନାବାଳକ । ତାଙ୍କର ପ୍ରଧାନମନ୍ତ୍ରୀ ଜୟୀ ରାଜଗୁରୁ ରାଜାଙ୍କ ତରଫରୁ ରାଜ୍ୟ ପରିଚାଳନା କରୁଥିଲେ । ଇଂରେଜମାନଙ୍କ ଦୂରଭିସନ୍ଧି ବୁଝି ନ ପାରି ମନ୍ତ୍ରୀ ଜୟୀ ରାଜଗୁରୁ ଯେଉଁ ଚୁକ୍ତି କରିଥିଲେ, ତାହା ଭଙ୍ଗ କରି ଇଂରେଜମାନେ ଖୋର୍ଦ୍ଧା ରାଜ୍ୟରେ ଆଧିପତ୍ୟ ବିସ୍ତାର କଲେ। ସ୍ୱାଧୀନ ଖୋର୍ଦ୍ଧାର ପ୍ରଧାନମନ୍ତ୍ରୀ ରାଜଗୁରୁ ଏହା କିପରି ଅବା ବରଦାସ୍ତ କରନ୍ତେ ! ସେ ବିଦ୍ରୋହ କରିବାକୁ ବାଧ୍ୟ ହେଲେ; କିନ୍ତୁ ତାଙ୍କ ସହିତ ସେନାପତି ବକ୍ସି ଜଗବନ୍ଧୁ ନ ଥିଲେ। ସେ ଇଂରେଜଙ୍କ ସହିତ ଏକ ବୁଝାମଣା କରିବା ଅବସ୍ଥାରେ ଥିଲେ । ଏହି ସଂଘର୍ଷରେ ଖୋର୍ଦ୍ଧାର ଅଭେଦ୍ୟଦୁର୍ଗ ବରୁଣେଇ ଧ୍ୱଂସପ୍ରାପ୍ତ ହେଲା । ୧୮୦୫ ଖ୍ରୀଷ୍ଟାବ୍ଦରେ ଏହି ବିଦ୍ରୋହରେ ଖୋର୍ଦ୍ଧାରାଜା ବାରବାଟୀ ଦୁର୍ଗରେ ବନ୍ଦୀ ହେଲେ ଏବଂ ଜୟୀ ରାଜଗୁରୁଙ୍କୁ ଫାଶୀଦଣ୍ଡ ମିଳିଲା । ରାଜାଙ୍କ ଶାସନ ପରିବର୍ତ୍ତେ ଖୋର୍ଦ୍ଧା ଇଂରେଜମାନଙ୍କ ପ୍ରତ୍ୟକ୍ଷ ଶାସନରେ ରହି ଖାସ୍ ହେଲା ।

**ପାଇକ ବିଦ୍ରୋହର ସୁଦୂର ପରିଣତି :**

ଜଗବନ୍ଧୁ ବିଦ୍ୟାଧର ମହାପାତ୍ର ଭ୍ରମରବର ରାୟ ଥିଲେ ଖୋର୍ଦ୍ଧା ରାଜବଂଶର ବଂଶାନୁକ୍ରମିକ ପ୍ରଧାନ ସେନାପତି। କର୍ଣ୍ଣେଲ୍ ହାର୍‌କୋର୍ଟଙ୍କ ନେତୃତ୍ୱରେ ଇଂରେଜବାହିନୀ ଯେତେବେଳେ ଖୋର୍ଦ୍ଧା ଅଞ୍ଚଳବାଟେ ସୈନ୍ୟଚାଳନା କରିବାପାଇଁ ଚୁକ୍ତି କଲେ, ସେତେବେଳେ ବକ୍ସି ଜଗବନ୍ଧୁ ତାହାକୁ ସମର୍ଥନ କରିଥିଲେ। ରାଜାଙ୍କ ଅମଳରୁ ବକ୍ସି ଜଗବନ୍ଧୁ ପୁରୁଷାନୁକ୍ରମିକ ଜାଗିରିଜମି ଭୋଗ କରିବା ଥିଲା ଏକ ବିଧି । ମାତ୍ର ଇଂରେଜ ରାଜତ୍ୱର ପ୍ରାରମ୍ଭରୁ ସେ ହେଲେ କଲିକତାଆଗତ ବଙ୍ଗୀୟ ରାଜକର୍ମଚାରୀଙ୍କର ଚକ୍ରାନ୍ତର ଶିକାର। ସେ ନିୟମିତ ଭାବରେ ରାଜସ୍ୱ ଦାଖଲ କରୁଥିଲେ ହେଁ ଏହି ଅସାଧୁ କର୍ମଚାରୀ ହାତ ସୈଠ କରି ସରକାରୀ ଟ୍ରେଜେରୀରେ ତାହା ଦାଖଲ କଲେନାହିଁ । ରାଜସ୍ୱ ସୈଠ ନ କରିବା ଅପରାଧରେ ତାଙ୍କର ଜମିଦାରୀ ନିଲାମ ହେଲା କଲିକତା ରାଜଧାନୀରେ ଏବଂ ଏହି ଅସାଧୁ ରାଜକର୍ମଚାରୀଙ୍କ ଆତ୍ମୀୟ ନିଲାମ ଧରି ଜମିଦାରୀ ଦଖଲ କଲେ। ରାତି ପାହିଲାବେଳକୁ ବକ୍ସି ଜଗବନ୍ଧୁ ସର୍ବହରା ହୋଇଗଲେ। ଇଂରେଜ ପ୍ରଶାସନଠାରୁ ନ୍ୟାୟ ପାଇବା ପାଇଁ ବାରମ୍ବାର ସରକାରଙ୍କ ଦ୍ୱାରସ୍ଥ ହୋଇ ସୁଦ୍ଧା ଏହି ବଙ୍ଗୀୟ କର୍ମଚାରୀଙ୍କ କୁପରାମର୍ଶ ଯୋଗୁ ନ୍ୟାୟ ପାଇଲେ ନାହିଁ। ସମ୍ମାନ ଓ ବିଭବରେ ଯେଉଁ ପରିବାର ରାଜାଙ୍କଠାରୁ ଦ୍ୱିତୀୟ ସ୍ଥାନରେ ଥିଲେ, ସେ ହେଲେ ଦାଣ୍ଡର ଭିକାରୀ। ନିଷ୍ପତ୍ତି କଲେ ଯୁଦ୍ଧ କରି ନିଜର ହକ୍ ଆଦାୟ କରିବେ, ନଚେତ୍ ଅପମାନିତ ଜୀବନ ଧରି ବଞ୍ଚିବେ କାହିଁକି ?

ଆରମ୍ଭ ହେଲା ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ଇଂରେଜଶାସନ ବିରୋଧରେ ପାଇକ ବିଦ୍ରୋହ। ପ୍ରଧାନ ସେନାପତି ବକ୍ସି ଜଗବନ୍ଧୁଙ୍କର ପାଇକକୁଳ ଥିଲେ ଅତ୍ୟନ୍ତ ଅନୁଗତ। ସେମାନେ ଏପରି ଅନ୍ୟାୟକୁ କିପରି ଅବା ବରଦାସ୍ତ କରନ୍ତେ ?

ପାଇକ ବିଦ୍ରୋହ ସଂପର୍କରେ ଐତିହାସିକ ଟୟନବି କେତେକ ଚମତ୍କାର ବିବରଣୀ ତାଙ୍କ ଲିଖିତ ଓଡ଼ିଶା ଇତିହାସରେ ଲିପିବଦ୍ଧ କରିଛନ୍ତି। ଓଡ଼ିଶା ଡିଭିଜନର ରାଜଧାନୀ ଥିଲା ସୁଦୂର କଲିକତା ସହର। ସେଠାକୁ ଯିବା ପାଇଁ ଯାତାୟାତର କୌଣସିପ୍ରକାର ସୁବିଧାଜନକ ବ୍ୟବସ୍ଥା ନ ଥାଏ। ଓଡ଼ିଶାର ଜମିଦାରଗଣ

ନିଜ ଜମିଦାରୀର ଯେଉଁ ରାଜସ୍ୱ ସ୍ଥାନୀୟ କଚେରୀରେ ଦାଖଲ କରୁଥିଲେ, ପ୍ରବାସୀ ବଙ୍ଗୀୟ ରାଜକର୍ମଚାରୀଗଣ ତାହା ଆତ୍ମସାତ୍ କରୁଥିଲେ । ସେମାନଙ୍କ ପରାମର୍ଶରେ ଓଡ଼ିଶାର ଜମିଦାରୀ କଲିକତାରେ ନିଲାମ ହେଲା । ଏପରି ଖବର ମଧ୍ୟ ଜମିଦାରମାନେ ପାଇଲେ ନାହିଁ । ସୁଦୂର କଲିକତାରେ ଓଡ଼ିଶା ଜମିଦାରମାନଙ୍କର ଏହି ପ୍ରତିନିଧି ନ ଥିଲେ ଏହି ବିଷୟରେ ପଦକ୍ଷେପ ଗ୍ରହଣ କରିବା ପାଇଁ । ସୂର୍ଯ୍ୟାସ୍ତ ଆଇନ ଅନୁସାରେ କଲିକତାରେ ଶାଗମାଛ ମୂଲ୍ୟରେ ଜମିଦାରୀ ନିଲାମ ହୋଇଗଲା ଏବଂ ରାଜଧାନୀର ବଙ୍ଗୀୟ ଅମଲାମାନେ ନିଲାମ ଧରି ରାତାରାତି ଓଡ଼ିଶାର ଜମିଦାର ହୋଇଗଲେ । ଟୟନବୀଙ୍କ ଭାଷାରେ– "At least two thirds of the old Oriya proprietors were ruined by such measures and transfers of their estates to rich absentee Bangalees and to the Amalas of the Court of Bengal."

ଇଂରେଜ ଶାସନର ଆରମ୍ଭରୁ ବାରମ୍ବାର ନୂତନ ବନ୍ଦୋବସ୍ତ କରି ଜମିଜମାର ଖଜଣା ବୃଦ୍ଧି କରାଯାଉଥିଲା । ପ୍ରଜାକୁଳ ହନ୍ତସନ୍ତ ହେଲେ ମଧ୍ୟ ଆପତ୍ତି ଶୁଣିବା ପାଇଁ କାହାର ସମୟ ନ ଥିଲା । ପ୍ରଧାନମନ୍ତ୍ରୀ ଜୟୀ ରାଜଗୁରୁଙ୍କ ଜୀବନଦାନ ପରେ ୧୮୦୬ ଖ୍ରୀଷ୍ଟାବ୍ଦରୁ ୧୮୧୭ ସାଲ ମଧ୍ୟରେ ଓଡ଼ିଶାର ୩୫୦ ଜମିଦାରୀ ବଙ୍ଗାଳୀ ଅମଲାମାନେ ଚକ୍ରାନ୍ତ କରି ହସ୍ତଗତ କଲେ । ପ୍ରଜାକୁଳ ଏବଂ ଓଡ଼ିଶା ଜମିଦାରମାନଙ୍କର ଆର୍ଥିକ ଦୁର୍ଗତି ଥିଲା ବର୍ଣ୍ଣନାତୀତ । ଐତିହାସିକ ଡବ୍ଲ୍ୟୁ ଡବ୍ଲ୍ୟୁ ହଣ୍ଟର ସାହେବ୍ଙ୍କ ଓଡ଼ିଶା ଇତିହାସ ଏ ସଂପର୍କରେ ବିଶେଷ ବିବରଣୀ ପ୍ରଦାନ କରିଥାଏ । ସେ ଲେଖିଥିଲେ– "ଇଂରେଜ ସରକାରଙ୍କର ମୁଦ୍ରାନୀତି ପ୍ରଜାମାନଙ୍କର ବିଶେଷ ଅସୁବିଧା ସୃଷ୍ଟି କରିଥିଲା । ପୂର୍ବରୁ ଏଠାରେ କଉଡ଼ି ମୁଦ୍ରା ପ୍ରଚଳନ ଥିଲା । ବର୍ତ୍ତମାନ ରୂପାଟଙ୍କାର ପ୍ରଚଳନ ଓ ବ୍ୟବହାରରେ ସେମାନେ ଅଭ୍ୟସ୍ତ ନ ଥିଲେ । ଲୁଣ ଉପରେ ମୋଟା ଟିକସ ବ୍ୟବସ୍ଥା ପ୍ରଜାକୂଳକୁ ହନ୍ତସନ୍ତ କରିଥାଏ । କଲିକତା ଆଗତ ବଙ୍ଗାଳୀ ଜମିଦାରମାନଙ୍କର ଅତ୍ୟାଚାର ଓ ଶୋଷଣ ସେମାନଙ୍କର ଦୁଃଖର ଆଉ ଏକ କାରଣ ହେଲା ।" ସେଦିନର ଅବସ୍ଥା ହଣ୍ଟର୍ଙ୍କ ନିଜ ଭାଷାରେ ଏହିପରି –

"Unfortunately however we had filled our courts and public offices with highly educated, but unscrupulous subordinates from Bengal whom the Oriyas regarded as foreigners just as much as if they had been Marhattas. Indeed under the Marhatta, peasantry could always put a limit to their miseries. The jungles afforded a safe retreat from Marhattas violence, no asylam could be found to shelter the unhappy Oriyas from the dexterous extortious and chicanery of our Bengali underlings."

ହଣ୍ଟର୍ ସାହେବଙ୍କ ଭାଷାରେ ଏହି ବଙ୍ଗୀୟ ଅମଲାମାନେ ଅତ୍ୟନ୍ତ ଚତୁର ଏବଂ ଧୂର୍ତ୍ତ ଥିଲେ । ସେମାନେ ଓଡ଼ିଶାର ଅଧିବାସୀଙ୍କୁ ବିଦେଶୀ ପରି ବ୍ୟବହାର କରୁଥିଲେ । ବାସ୍ତବିକ ମରହଟ୍ଟା ଶାସନରେ ଓଡ଼ିଶାର ପ୍ରଜାକୁଳ ଅତ୍ୟାଚାରରୁ ରକ୍ଷା ପାଇବା ପାଇଁ ଜଙ୍ଗଲରେ ଆଶ୍ରୟ ଗ୍ରହଣ କରି ରକ୍ଷା ପାଇ

ଯାଉଥିଲେ ସିନା, ଏହି ବଙ୍ଗୀୟ ଅମଲାମାନଙ୍କ ଶୋଷଣ ଅତ୍ୟାଚାରରୁ ବଣ ଜଙ୍ଗଲରେ ମଧ୍ୟ ରକ୍ଷା ନ ଥିଲା । ଏହି ଅଧସ୍ତନ ବଙ୍ଗାଳୀ ଅମଲାମାନଙ୍କର ଚତୁରତା, ପ୍ରବଞ୍ଚନା ଓ କ୍ଷମତାର ଅପପ୍ରୟୋଗ ବିରୋଧରେ ଇଂରେଜ ସରକାରଙ୍କ ଦୃଷ୍ଟି ଆକର୍ଷଣ ସଂଘବଦ୍ଧ ପ୍ରଚେଷ୍ଟା ଅଶିକ୍ଷିତ ଓ ଅତ୍ୟାଚାରିତ ଓଡ଼ିଶାବାସୀଙ୍କୁ ଜଣା ନ ଥିଲା । ଅତ୍ୟାଚାର ଅସହ୍ୟ ହେବାରୁ ବକ୍ସି ଜଗବନ୍ଧୁଙ୍କ ବିଦ୍ରୋହ ଥିଲା ଅତ୍ୟନ୍ତ ସ୍ୱାଭାବିକ ପରିଣତି ।

ଖୋର୍ଦ୍ଧା ରାଜ୍ୟ ଓ ତା'ର ବନ୍ଧୁ ରାଜ୍ୟମାନଙ୍କର ପାଇକବାହିନୀ ପ୍ରଧାନ ସେନାପତି ଜଗବନ୍ଧୁଙ୍କୁ ସମର୍ଥନ କଲେ ଏହି ସଂଗ୍ରାମରେ । ବିଦ୍ରୋହୀମାନେ ପ୍ରଥମେ ବାଣପୁରରେ ଧ୍ୱଂସଲୀଳା ଓ ଲୁଟତରାଜ କରି ସରକାରୀ ଅନୁଷ୍ଠାନକୁ ଅଗ୍ନିସଂଯୋଗ କରି ଭସ୍ମ କରିଦେଲେ । ସରକାରୀ ଟ୍ରେଜେରୀ ଲୁଟ୍ କଲେ । ଲବଣ ଏଜେଣ୍ଟଙ୍କ ନୌକାଗୁଡ଼ିକୁ ଧ୍ୱଂସକରି ଅଗ୍ରସର ହେଲେ ଖୋର୍ଦ୍ଧା ଆଡ଼କୁ । ଇଂରେଜମାନଙ୍କର ବିଶ୍ୱସ୍ତ ରାଜକର୍ମଚାରୀ ଓ ସରବରାକାର ବକ୍ସି ଜଗବନ୍ଧୁଙ୍କ ବିରୋଧରେ ବିଭ୍ରାନ୍ତିକର ରିପୋର୍ଟ ପ୍ରଦାନ କରି ତାଙ୍କର ଅଶେଷ କ୍ଷତିସାଧନ କରିଥିଲେ । ବିଦ୍ରୋହୀମାନେ ପ୍ରଥମେ ଚରଣ ପଟ୍ଟନାୟକଙ୍କୁ ହତ୍ୟାକରି ବିଶ୍ୱାସଘାତକତାର ପ୍ରତିଶୋଧ ନେଲେ । ଭୟଙ୍କର ଯୁଦ୍ଧରେ ଇଂରେଜ ସୈନ୍ୟ ବିଦ୍ରୋହୀମାନଙ୍କ ହସ୍ତରେ ପରାଭବ ସ୍ୱୀକାର କରି ପଳାୟନ କଲେ । ଖୋର୍ଦ୍ଧାରେ ଏକପ୍ରକାର ଅରାଜକତା ସୃଷ୍ଟି ହେଲା । ଶାସନ କଳ କିଛି କାଳ ପାଇଁ ଭୁଷୁଡ଼ି ପଡ଼ିଲା । ବିଦ୍ରୋହୀମାନଙ୍କୁ ଦମନ କରିବା ପାଇଁ ଲେଫ୍‌ଟନାଣ୍ଟ ପ୍ରିଡ଼ିଅକ୍ସ ଓ ଲେଫ୍‌ଟନାଣ୍ଟ ଫାରିସଙ୍କ ନେତୃତ୍ୱରେ ତିନିଦଳରେ ବିଭକ୍ତ ଇଂରେଜବାହିନୀ ଖୋର୍ଦ୍ଧା ଆଡ଼କୁ ଅଗ୍ରସର ହେଲେ ବିଦ୍ରୋହୀମାନଙ୍କୁ ବିତାଡ଼ିତ କରିବା ପାଇଁ । କଟକର ମାଜିଷ୍ଟ୍ରେଟ୍ ଇମ୍ପେ ଲେଫ୍‌ଟନାଣ୍ଟ ଟ୍ରାଫିସଙ୍କ ନେତୃତ୍ୱରେ ଖୋର୍ଦ୍ଧା ଆଡ଼କୁ ଅଗ୍ରସର ହୋଇ, ଗଙ୍ଗପଡ଼ାଠାରେ ଦୁର୍ଦ୍ଧର୍ଷ ପାଇକମାନଙ୍କ ହାତରେ ପରାସ୍ତ ହୋଇ ଜୀବନ ଧରି ବାଲକାଟିକୁ ପଛଘୁଞ୍ଚା ଦେଲେ । ସେହି ଗଙ୍ଗପଡ଼ା ଯୁଦ୍ଧରେ ବିଦ୍ରୋହୀମାନେ ଲେଫ୍‌ଟନାଣ୍ଟ ଫାରିସଙ୍କୁ ହତ୍ୟା କଲେ । ଏଥିରେ ଇଂରେଜମାନେ ବିଚଳିତ ଓ ହତାଶ ହୋଇପଡ଼ିବା ସ୍ୱାଭାବିକ । କ୍ୟାପଟେନ୍ ଓୟେଲିଙ୍ଗଟନ୍‌ଙ୍କ ନେତୃତ୍ୱରେ ୫୫୦ ଜଣ ବନ୍ଧୁକଧାରୀ ଇଂରେଜସୈନ୍ୟ ଖୋର୍ଦ୍ଧା ଆଡ଼କୁ ଅଗ୍ରସର ହେଲେ ଏବଂ ପ୍ରବଳ ଯୁଦ୍ଧ କରି ଖୋର୍ଦ୍ଧାକୁ ଦଖଲ କଲେ । ୧୮୧୭ ମସିହା ଏପ୍ରିଲ ୧୨ ତାରିଖରେ ପ୍ରବଳ ସାମରିକ କାର୍ଯ୍ୟାନୁଷ୍ଠାନ ପରେ ସାମରିକ ଆଇନ ଲାଗୁକରିବା ବ୍ୟତୀତ ଅନ୍ୟ ଉପାୟ ନ ଥିଲା । ଏହି ଆଇନ ପ୍ରସାରିତ ହେଲା ପୁରୀ, ପିପିଲି, ଲେମ୍ବାଇ ଓ କୋଟଦେଶ ପର୍ଯ୍ୟନ୍ତ । ପୁରୀ ସହରରେ ବିଦ୍ରୋହୀମାନେ ସରକାରୀ କଚେରୀରେ ଅଗ୍ନି ସଂଯୋଗ କଲେ । ଇଂରେଜ ହାକିମମାନଙ୍କ ବାସଗୃହକୁ ସେମାନେ ଜାଳିଦେଲେ । ଏହି ବିଦ୍ରୋହରେ ପୁରୀ ଶ୍ରୀମନ୍ଦିରର ପଣ୍ଡା ପଡ଼ିହାରୀ ଓ ସହରବାସୀ ସାମିଲ ହୋଇଥିଲେ । ଏହି ଭୟଙ୍କର ଯୁଦ୍ଧର ସମ୍ମୁଖୀନ ହୋଇ ନ ପାରି ପୁରୀ ସହରରେ ଅବସ୍ଥାପିତ ଇଂରେଜ ପ୍ରଶାସକ ମେସରସ୍ କିଙ୍ଗ୍, ବେକହର୍ ଓ କଲେକ୍ଟର ମି. ବୃସ୍‌ବି ଜୀବନ ବିକଳରେ କଟକକୁ ପଳାୟନ କଲେ । କଟକରୁ କ୍ୟାପଟେନ୍ ଲିଫବରିଙ୍କ ନେତୃତ୍ୱରେ ଅତ୍ୟାଧୁନିକ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ଏକ ସୈନ୍ୟଦଳ ପୁରୀରେ ପହଞ୍ଚି ବିଦ୍ରୋହୀମାନଙ୍କୁ ଘଉଡ଼ାଇ ଦେଲେ, ପୁରୀରେ ଅବସ୍ଥାନ କରୁଥିବା ଖୋର୍ଦ୍ଧା ରାଜାଙ୍କୁ ବନ୍ଦୀ କରି କଟକ ନେଇଗଲେ । ଖୋର୍ଦ୍ଧା ରାଜା ଏହି ବିଦ୍ରୋହକୁ ଉତ୍ସାହିତ କରୁଥିଲେ ବୋଲି ଇଂରେଜମାନଙ୍କର ସନ୍ଦେହ

ହୋଇଥିଲା । ପୁରୀରେ ଶାନ୍ତିଶୃଙ୍ଖଳା ରକ୍ଷା କରିବା ପାଇଁ ଇଂରେଜମାନେ ମେଜର ହାମିଲ୍ଟନଙ୍କୁ ଅବସ୍ଥାପିତ କଲେ । ଖୋର୍ଦ୍ଧା ରାଜା କଟକରେ ବନ୍ଦୀ ଅବସ୍ଥାରେ ଶେଷନିଃଶ୍ୱାସ ତ୍ୟାଗ କରିବାରୁ ତାଙ୍କର ତେରବର୍ଷର ନାବାଳକ ପୁଅ ଦ୍ୱିତୀୟ ରାମଚନ୍ଦ୍ରଙ୍କୁ ଇଂରେଜମାନେ ରାଜା କଲେ ଏବଂ ପୁରୀ ସହରରେ ନଜରବନ୍ଦୀ କରି ରଖିଲେ । ତାଙ୍କୁ ଖୋର୍ଦ୍ଧା ଯିବା ପାଇଁ ଅନୁମତି ମିଳିଲା ନାହିଁ । ପୁରୀ ବଡ଼ଦାଣ୍ଡରେ ବିରାଟ ରାଜମହଲରେ ସେ ଆଶ୍ରୟ ଗ୍ରହଣ କରିବାକୁ ବାଧ୍ୟ ହେଲେ ।

ଖୋର୍ଦ୍ଧା ବିପ୍ଳବକୁ ସମର୍ଥନ କରି କନିକା ଓ କୁଜଙ୍ଗ ଜମିଦାରୀରେ ବିଦ୍ରୋହ ଅଗ୍ନି ଜଳିଉଠିଲା । ଇଂରେଜମାନେ ନିର୍ମମ ଭାବରେ ଏହି ବିଦ୍ରୋହକୁ ଦମନ କଲେ । ଏହି ବିଦ୍ରୋହରେ ନେତୃତ୍ୱ ଗ୍ରହଣ କରିଥିବା ନାରାୟଣ ପରମଗୁରୁ, ବାମଦେବ ପଟ୍ଟଯୋଷୀ ଓ କୁଜଙ୍ଗ ରାଜା ବନ୍ଦୀ ହେଲେ ।

ଖୋର୍ଦ୍ଧା ବିଦ୍ରୋହକୁ ସାମରିକ ବଳପ୍ରୟୋଗ କରି ଦମନ କରାଯାଇଥିଲେ ହେଁ ଏହାର କାରଣ ଜାଣିବା ପାଇଁ ଇଂରେଜମାନେ ଇଓ୍ୱେର ସାହେବଙ୍କ ନେତୃତ୍ୱରେ ଏକ କମିଶନ୍ ବସାଇଲେ । ତାଙ୍କର ସୁପାରିଶରେ ଖୋର୍ଦ୍ଧାର ପାଇକକୁଳକୁ ସର୍ବହରାରେ ପରିଣତ କରିଦିଆଗଲା । ସେମାନେ ଭୋଗ କରୁଥିବା ପୁରୁଷାନୁକ୍ରମିକ ଜାଗିରି ଜମିକୁ ବାଜ୍ୟାପ୍ତ କରି ଦିଆଗଲା । ଅସୁମାରି ବିଦ୍ରୋହୀ ନେତା ଫାଶୀ ପାଇଲେ, କଳାପାଣିରେ ବନ୍ଦୀ ହେଲେ ଓ ସମସ୍ତ ପ୍ରକାର ଅସ୍ତ୍ରଶସ୍ତ୍ର ବ୍ୟବହାର କରିବାରୁ ବଞ୍ଚିତ ହେଲେ । ମାତ୍ର କେତେ ବର୍ଷ ମଧ୍ୟରେ ସେମାନେ ସମ୍ପୂର୍ଣ୍ଣ ଆତ୍ମବିସ୍ମୃତ ହୋଇ ଅବହେଳିତ ଜୀବନଯାପନ କଲେ । ଖୋର୍ଦ୍ଧା ବିପ୍ଳବର ଭୟଙ୍କର ପରିଣତି ବିଷୟରେ ଐତିହାସିକ ଟୟନବୀ ଲେଖଥିଲେ— " It was not long, however before we had to encounter a storm, which burst with such sudden fury as to threaten our expulsion, if not from the whole of Orissa, atleast from the two territory of Khurda."

ଖୋର୍ଦ୍ଧା ବିପ୍ଳବ ଏପରି ଭୟଙ୍କର ଥିଲା ଯେ ସମଗ୍ର ଓଡ଼ିଶାରୁ ନ ହେଲେ ମଧ୍ୟ ଖୋର୍ଦ୍ଧା ରାଜ୍ୟରୁ ଶାସନ ରାଜତ୍ୱ ସମ୍ପୂର୍ଣ୍ଣ ଲୋପ ହୋଇଯିବାର ଆଶଙ୍କା ଉପୁଜିଥିଲା । ଯଦି ସମଗ୍ର ଓଡ଼ିଶାରେ ରାଜା, ଜମିଦାର ଓ ସେନାପତିମାନେ ଏକ ମନରେ ବିପ୍ଳବ କରିଥାଆନ୍ତେ, ତାହାହେଲେ ଓଡ଼ିଶା ଭୂଖଣ୍ଡର ଇତିହାସ ଭିନ୍ନରୂପ ଗ୍ରହଣ କରିଥାଆନ୍ତା । ଏହାକୁ ଭାଗ୍ୟର ବିଡ଼ମ୍ବନା ବ୍ୟତୀତ ଆଉ କ'ଣ କୁହାଯାଇପାରିବ ! ତେବେ ଖୋର୍ଦ୍ଧା ବିପ୍ଳବ ପରେ ଇଂରେଜମାନେ ସାବଧାନ ହେଲେ । ନିଜର ଯଥେଚ୍ଛାଚାର ଶାସନ ଆଉ ବରଦାସ୍ତ କରାଯିବ ନାହିଁ ବୋଲି ସେମାନେ ଅନୁଭବ କଲେ । ଏହି ସଂପର୍କରେ ଐତିହାସିକ ରାଖାଲ ଦାସ ବାନାର୍ଜୀ ତାଙ୍କ ଲିଖିତ ଓଡ଼ିଶା ଇତିହାସର ଦ୍ୱିତୀୟ ଖଣ୍ଡରେ ଅଭିମତ ପ୍ରକାଶ କରିଥିଲେ ଏହିପରି —

"He served a noble purpose as his rising, opened the eyes of the British masters of Orissa to some extent. In any country other than India Jagabandhu Bidyadhar would have been regarded as a great national hero and benefactor of his own people because of his rising in rebellion and sacrificing his own self, he saved the nobility of Orissa from the total extinction at the hands of Bengali adventures and common people from longer oppression.

ଭାରତବର୍ଷ ବାହାରେ ଅନ୍ୟ କେଉଁ ଦେଶ ହୋଇଥିଲେ ବକ୍ସି ଜଗବନ୍ଧୁ ବିଦ୍ୟାଧର ମହାପାତ୍ର ମହାନ୍ ଜାତୀୟ ବୀର ଭାବରେ ସ୍ମରଣୀୟ ହୋଇ ପୂଜା ପାଇଥାଆନ୍ତେ । ତାଙ୍କର ନେତୃତ୍ୱରେ ବିପ୍ଳବ ଯୋଗୁ ଅବିଶ୍ୱାସୀ, ଅତ୍ୟାଚାରୀ ପ୍ରପଞ୍ଚକ ପ୍ରବାସୀ ବଙ୍ଗାଳୀ ରାଜକର୍ମଚାରୀଙ୍କ ଅତ୍ୟାଚାର ଓ ଉତ୍ପୀଡ଼ନରୁ ଦେଶବାସୀ ରକ୍ଷା ପାଇଲେ । ଦେଶର ସାମନ୍ତ ଓ ଅଭିଜାତ ପରିବାର ମଧ୍ୟ ନିଶ୍ଚିହ୍ନ ହେବା ଆଗରୁ ବଞ୍ଚିଗଲେ । ବକ୍ସି ଜଗବନ୍ଧୁଙ୍କର ଆତ୍ମବଳିଦାନ ଓ ଦେଶପ୍ରେମ ଇତିହାସ ପୃଷ୍ଠାକୁ ଗୌରବାନ୍ୱିତ କରିଅଛି । ୧୮୧୭ ସାଲରୁ ୧୮୨୬ ସାଲ ପର୍ଯ୍ୟନ୍ତ ନିଘଞ୍ଚ ଅରଣ୍ୟ ମଧ୍ୟରେ ରହି ସେ ଗରିଲା ଯୁଦ୍ଧ ଚଳାଇ ରଖିଲେ ପ୍ରବଳପ୍ରତାପୀ ଇଂରେଜ ରାଜଶକ୍ତି ବିରୋଧରେ । ତାଙ୍କୁ ପଦାନତ କରିବା ପାଇଁ ବକ୍ସିଙ୍କର ପରିବାରକୁ ବାରବାଟୀ ଦୁର୍ଗରେ ବନ୍ଦୀ କରି ରଖାଗଲା ଅତ୍ୟନ୍ତ ଦୟନୀୟ ଅବସ୍ଥାରେ । ଯାହାକିଛି ଜମିଦାରୀ ଥିଲା, ତାହା ହେଲା ବାଜ୍ୟାପ୍ତ । ଏହି ଦୁଃଖଦ ଖବର ପାଇ ମଧ୍ୟ ବକ୍ସି ଜଗବନ୍ଧୁ କାପୁରୁଷ ପରି ଆତ୍ମସମର୍ପଣ କରି ନ ଥିଲେ । ଇଂରେଜମାନେ ଶେଷରେ ବାଧ୍ୟ ହୋଇ ତାଙ୍କର ଜୀବନ ରକ୍ଷାକରି ସମ୍ମାନର ସହ କଟକରେ ରହିବା ପାଇଁ ବିଶ୍ୱସ୍ତ କର୍ମଚାରୀ ହାତରେ ପ୍ରସ୍ତାବ ପ୍ରେରଣ କଲେ । ଶେଷରେ ବକ୍ସି ଜଗବନ୍ଧୁ ଆତ୍ମସମର୍ପଣ କରି ଉପଯୁକ୍ତ ଭରଣପୋଷଣ ନିର୍ଭରତା ସହ ଆଜୀବନ କଟକ ବକ୍ସି ବଜାରରେ ଅବସ୍ଥାନ କରିଥିଲେ । ତାଙ୍କୁ ଖୋର୍ଦ୍ଧାକୁ ଫେରିଯିବାକୁ ଅନୁମତି ମିଳିଲା ନାହିଁ । କାରଣ ତାଙ୍କର ଉପସ୍ଥିତିରେ କାଳେ ଖୋର୍ଦ୍ଧା ରାଜ୍ୟର ପାଇକକୁଳ ପୁନର୍ବାର ବିପ୍ଳବ ପାଇଁ ଜାଗ୍ରତ ହୋଇଉଠିବେ । ବକ୍ସି ଜଗବନ୍ଧୁଙ୍କ ଦେହାନ୍ତ ପରେ ଇଂରେଜ ପ୍ରଶାସନ ବକ୍ସିଙ୍କ ପରିବାରକୁ ତାଙ୍କର ଜମିଦାରୀ ଅର୍ପଣ କରି ନିଜ ବାସସ୍ଥାନରେ ରହିବା ପାଇଁ ଅନୁମତି ପ୍ରଦାନ କରିଥିଲେ ।

ଖୋର୍ଦ୍ଧା ରାଜ୍ୟର ବିପ୍ଳବ ସମୟରେ ବକ୍ସି ଜଗବନ୍ଧୁଙ୍କୁ ସମର୍ଥନ କରି ଦକ୍ଷିଣ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ରାଜା ଓ ଖଣ୍ଡାୟତ ବାହିନୀ ଇଂରେଜଶାସନ ବିରୋଧରେ ଅସ୍ତ୍ର ଉତ୍ତୋଳନ କରିଥିଲେ । ଏହି ସଂଗ୍ରାମରେ ଘୁମୁସର, ପାରଳାଖେମୁଣ୍ଡି, ସାନଖେମଣ୍ଡି, ମହୁରୀ, ଖିଡ଼ିସିଙ୍ଗି, ଖଲିକୋଟର ରାଜା ଓ ଜମିଦାରମାନଙ୍କର ବିପ୍ଳବ ଥିଲା ଅନନ୍ୟସାଧାରଣ । ଏଥିରେ ଘୁମୁସରର ଭୂମିକା ଥିଲା ଅତ୍ୟନ୍ତ ଭୟଙ୍କର । ଦେଶିଆ କନ୍ଧଙ୍କର ନେତା କମଳା ଲୋଚନ ଦୋରା ବିଷୋୟୀ ଓ ଚକରାବିଷୋୟୀଙ୍କ ନେତୃତ୍ୱରେ ରଣରଙ୍ଗ କନ୍ଧମାନେ ଇଂରେଜ ଶାସନକୁ ଅସ୍ୱୀକାର କରି ଯୁଦ୍ଧ କଲେ । ଏହି ସଂଗ୍ରାମ କେବଳ ଘୁମୁସର ଅଞ୍ଚଳରେ ସୀମିତ ନ ରହି ବ୍ୟାପିଯାଇଥିଲା ବୌଦ, ଅନୁଗୁଳ, ସୋନପୁର, ମଦନପୁର, ଭରତପୁର, ତେଲନଦୀ ଉପତ୍ୟକା, କଳାହାଣ୍ଡି, ଜୟପୁର ଇତ୍ୟାଦି ବିସ୍ତୃତ ଅଞ୍ଚଳକୁ । ଇଂରେଜମାନେ ପ୍ରବଳ ଯୁଦ୍ଧ କରି ଘୁମୁସରକୁ ଦଖଲ କଲେ ହେଁ ବିଦ୍ରୋହ ଅଗ୍ନି ନିର୍ବାପିତ ହୋଇ ନ ଥିଲା । ୧୮୩୫-୧୮୪୪ ସାଲ ପର୍ଯ୍ୟନ୍ତ ଦୋରା ବିଷୋୟୀ ଓ ୧୮୪୪-୧୮୫୬ ସାଲ ପର୍ଯ୍ୟନ୍ତ ଚକରା ବିଷୋୟୀଙ୍କ ନେତୃତ୍ୱରେ ଏହି ସଂଗ୍ରାମ ଅତୁଟ ରହିଥିଲା । ଏପରିକି ୧୮୫୬-୧୮୬୬ ସାଲ ପର୍ଯ୍ୟନ୍ତ କନ୍ଧ ପାଇକ, ନାୟକ ଓ ସର୍ଦ୍ଦାରମାନେ ଇଂରେଜ ଶାସନକୁ ସ୍ୱୀକାର ନ କରି ପ୍ରବଳ ସଂଗ୍ରାମ ଚଳାଇ ରଖିଥିଲେ । ଏହି ବିପ୍ଳବର ନେତୃତ୍ୱ ଗ୍ରହଣ କରିଥିଲେ କୁଲାଡ଼ ସେନାଧ୍ୟକ୍ଷ ହରି ଭଞ୍ଜ, ଜଗନ୍ନାଥ ପ୍ରସାଦ ସର୍ଦ୍ଦାର ସଂଗ୍ରାମ ସିଂହ, ବିଂଝଗିରି ନାୟକ ଯୋଜର

ସିଂ, ବୁଗୁଡ଼ା ଓ କରଚୁଲି ସର୍ଦ୍ଦାର ସୁନ୍ଦରରାୟ ବିଷୋୟୀ, ବନୁମଲ୍ଲୀ ସର୍ଦ୍ଦାର ହାର୍ଡାଡ଼ାମ, ଅଣଗିରିମୁଠା ସର୍ଦ୍ଦାର ବାହୁବଳେନ୍ଦ୍ର, ଯୁଝିଆ ସିଂ, କୋକଳବା ଓ ଉତ୍ତରଗଡ଼ ତଳ ସର୍ଦ୍ଦାର କାମ ଉଦଣ୍ଡରା, ଗାଲେରୀ ସର୍ଦ୍ଦାର ଅଭୟ ବଳିୟାର ସିଂ, କୁରୁମଙ୍ଗିଆ ବଙ୍ଗ ମଳିକ ତଥା ବିକ୍ରମସୁନ୍ଦର ଓ ଛତ୍ରାଣ ସିଂ ପ୍ରମୁଖ।

ଭାରତର କୌଣସି ଅଞ୍ଚଳରେ ଏତେ ଦୀର୍ଘକାଳ ଇଂରେଜମାନେ ବିଦ୍ରୋହର ସମ୍ମୁଖୀନ ହୋଇ ନ ଥିଲେ। ଗଞ୍ଜାମ ଅଞ୍ଚଳର ଜମିଦାର ଓ ଖଣ୍ଡାୟତ ସର୍ଦ୍ଦାରଗଣ ୧୭୫୩ ଠାରୁ ୧୮୬୬ ସାଲ ପର୍ଯ୍ୟନ୍ତ ଦୀର୍ଘ ୧୧୩ ବର୍ଷ କାଳ ବିଦେଶୀ ଫରାସୀ ଓ ଇଂରେଜ ଆଧିପତ୍ୟ ବିରୋଧରେ ସଂଗ୍ରାମରେ ଲିପ୍ତ ରହିଥିଲେ। ଏହି ସଂଗ୍ରାମରେ ପାରଳାଖେମିଣ୍ଡିର ଭୂମିକା ଥିଲା ଅତ୍ୟନ୍ତ ସ୍ମରଣୀୟ। ଇଂରେଜ ଶାସକବର୍ଗ ନିର୍ମମ ଭାବେ ବିଦ୍ରୋହ ଦମନ କରି ଅନେକ ବିଦ୍ରୋହୀ ନେତାଙ୍କୁ ମୃତ୍ୟୁଦଣ୍ଡ ପ୍ରଦାନ କରିଥିଲେ। ୧୮୫୭ର ସିପାହୀ ବିଦ୍ରୋହରେ ଅଂଶଗ୍ରହଣ କରିଥିବା ରାଣୀ ଅହଲ୍ୟାବାଇଙ୍କ ଇତିହାସ ସ୍ମରଣକୁ ଆସୁଅଛି। ଓଡ଼ିଶା ଭୂଖଣ୍ଡରେ ଏହିପରି ଜଣେ ବିପ୍ଲବିଣୀ ନାରୀନେତ୍ରୀଙ୍କୁ ଇତିହାସ ସ୍ଥାନିତ କରିପାରିନାହିଁ। ପାରଳାଖେମିଣ୍ଡି ଅଞ୍ଚଳରେ ଗୁମ୍ମା ଦୁର୍ଗର ରକ୍ଷକ କୃଷ୍ଣଚନ୍ଦ୍ର ବିଷୋୟୀ ଇଂରେଜଙ୍କ ସହିତ ପ୍ରବଳ ଯୁଦ୍ଧ କରି ପ୍ରାଣବଳି ଦେଇଥିଲେ। ଏଥିରେ ତାଙ୍କର ପତ୍ନୀ ଆତ୍ମସମର୍ପଣ ନ କରି ଇଂରେଜଙ୍କ ବିରୋଧରେ ଦୀର୍ଘ ଦଶବର୍ଷ କାଳ ଜଙ୍ଗଲ ଯୁଦ୍ଧରେ ଇଂରେଜ ସେନାବାହିନୀକୁ ଲଣ୍ଡଭଣ୍ଡ କରିଦେଇଥିଲେ। ଏହି ବୀରା ରମଣୀ ହେଲେ ବିଷାଣୀ। ପାରଳାଖେମିଣ୍ଡିର ଗାଏବା ବିପ୍ଳବ ହେଉଛି ଅନ୍ୟ ଏକ ସ୍ମରଣୀୟ ଘଟଣା। ୧୮୫୬ ସାଲ ପର୍ଯ୍ୟନ୍ତ ଗାଏବା ଅଞ୍ଚଳର ସ୍ୱାଧୀନତାପ୍ରେମୀ ଶବରମାନେ ଇଂରେଜ ଶାସନକୁ ସ୍ୱୀକାର କଲେନାହିଁ। ଭୟଙ୍କର ଯୁଦ୍ଧରେ ନେତୃତ୍ୱ ନେଇଥିଲେ ରାଧାକୃଷ୍ଣ ଦଣ୍ଡସେନା। ଗଞ୍ଜାମ ଅଞ୍ଚଳର ଅନ୍ୟ ଏକ ଜମିଦାରୀ ମହୁରୀ ଅଞ୍ଚଳରେ ଇଂରେଜଙ୍କ ବିରୋଧରେ ଭୟଙ୍କର ଯୁଦ୍ଧ ହୋଇଥିଲା। ଏଥିରେ ନେତୃତ୍ୱ ନେଇଥିଲେ ସର୍ଦ୍ଦାର ସୁରସିଂହ ମହାରଥୀ। ଅସରନ୍ତି ଏ ସଂଗ୍ରାମର କାହାଣୀ। ଖୋର୍ଦ୍ଧାର ପାଇକ ବାହିନୀ ଓ ସେମାନଙ୍କର ନେତା ଦଳବେହେରା, ଦଳେଇ ଓ ଗଡ଼ନାୟକମାନଙ୍କ ବିଷଦାନ୍ତ ଭାଙ୍ଗିଦେବା ଉଦ୍ଦେଶ୍ୟରେ ୧୮୧୭ ସାଲର ଇଓ୍ୱେର କମିଶନ୍‌ର ରିପୋର୍ଟ ଥିଲା ଅତ୍ୟନ୍ତ ଭୟଙ୍କର ଓ ଲୋମହର୍ଷଣକାରୀ। ସେହି ରିପୋର୍ଟକୁ ପଣ୍ଡିତ ଗୋଦାବରୀଶ ମିଶ୍ର ଓଡ଼ିଆ ଭାଷାରେ "କଙ୍କାଳର ଆର୍ତ୍ତନାଦ" ଶୀର୍ଷକରେ ଅନୁବାଦ କରିଛନ୍ତି। ପାଇକ କୁଳ ପ୍ରତି କିପରି କୁଟନୀତି ଅତ୍ୟନ୍ତ ନିର୍ମମ ଭାବରେ ପ୍ରୟୋଗ କରାଯାଇଥିଲା, ତାହାର କିଞ୍ଚିତ୍ ନମୁନା ଏହିପରି—

"ଖୋର୍ଦ୍ଧାରେ ଆଉ ପାଇକମାନଙ୍କର ସାହାଯ୍ୟ ଦରକାର ହେଉନାହିଁ। ସୈନ୍ୟବିଭାଗରେ ସେମାନଙ୍କୁ ରଖିବା ବିପଜ୍ଜନକ। ପୋଲିସ ବିଭାଗରେ ସେମାନେ ହୁଏତ ରହିପାରନ୍ତି। କିନ୍ତୁ ସେମାନଙ୍କ ସଂଖ୍ୟା ଏତେ ବେଶୀ ଯେ ତାଙ୍କୁ ପୋଲିସ ସାହ୍ୟାରେ ରଖିଲେ, ରାଜ୍ୟଟାଯାକ ପୋଲିସ୍ ହିଁ ରହିବେ। ଅତଏବ ତାଙ୍କୁ ସାଧାରଣ ରୟତଙ୍କ ଅବସ୍ଥାକୁ ପେଲିଦେଇ, ତାଙ୍କଠାରୁ ପ୍ରଚଳିତ ହାରରେ ଖଜଣା ଅସୁଲ କରିବା ଦରକାର। ଅବଶ୍ୟ ପାଖେ ପାଖେ କେତେଜଣ ଦଳବେହେରାଙ୍କୁ ପୂର୍ବ ଜାଗିରିରୁ ଖଣ୍ଡେ ଖଣ୍ଡେ ଦେଇ ରଖିବାକୁ ହେବ; କିନ୍ତୁ ପାଇକମାନଙ୍କୁ ସେ ସୁବିଧା ଦିଆଯାଇ ନ ପାରେ। ଅନେକ ସ୍ଥାନରେ ଏହି ଅଳ୍ପ ସମୟରେ ପାଇକନାମ

ପ୍ରାୟ ଲୋପ ପାଇଗଲାଣି ; କିନ୍ତୁ ଏବେ ମଧ୍ୟ ଯେଉଁଠାରେ ପାଇକମାନେ ଅଛନ୍ତି, ପୂର୍ବ ଦୁର୍ଦ୍ଧାନ୍ତ ସ୍ୱଭାବ ଆହୁରି ଛାଡ଼ିନାହାନ୍ତି । ସେମାନଙ୍କର ବିଷଦାନ୍ତ ଭାଙ୍ଗିବା ପାଇଁ ପୋଲିସକର୍ମଚାରୀମାନଙ୍କ ଦ୍ୱାରା ଅନେକ କାଳ ସେମାନଙ୍କୁ ଜବତରେ ରଖିବାକୁ ହେବ । ପାଇକକୁଳକୁ ସମୂଳ ଧ୍ୱଂସ ନ କଲେ ମଙ୍ଗଳ ନାହିଁ । ଗଲା ବିଦ୍ରୋହରେ କେତେକ ଖଣ୍ଡାୟତ ଓ ଦଳବେହେରା ମରିଯାଇଛନ୍ତି । ଆଉ କେତେକ ଖୋର୍ଦ୍ଧା ଛାଡ଼ି ପଳାଇଯିବାକୁ ବାଧ୍ୟ ହୋଇଛନ୍ତି । ବିଦ୍ରୋହ କରିବା ଅପରାଧରେ ଅନେକଙ୍କୁ ଜେଲଦଣ୍ଡ ଦିଆଯାଇଛି । ସେମାନଙ୍କ ଜୀବଦଶାରେ ଯେ ଜେଲରୁ ମୁକ୍ତ ହେବେ, ଏ ଆଶା ଛାଡ଼ିବାକୁ ହେବ । ତାହାହେଲେ ଭବିଷ୍ୟତ ପାଇଁ ଆଉ ନେତା କାହାନ୍ତି ? ନେତା ରହିବେ ନାହିଁ । ପାଇକମାନଙ୍କର ପୂର୍ବ ଏକତାର ବନ୍ଧନ ତୁଟାଇ ଦିଆଯିବ । ତାହାହେଲେ ଭବିଷ୍ୟତକୁ ଆଉ ବିପଦ ଆଶଙ୍କାରୁ ଆମେ ପାର ପାଇଯିବା ।" *(କଙ୍କାଳର ଆର୍ତ୍ତନାଦ - ପରଭାଗ - ପୃ.୬୫-୧୯୪୮)*

ରଣରଙ୍ଗ କଳିଙ୍ଗୀ ସାହସିକା ଓଡ଼ିଆ ଜାତିକୁ କିପରି ନିଷ୍ଠୁର ଭାବରେ ଏକ କାପୁରୁଷ ଓ ଆତ୍ମବିସ୍ମୃତ ଜାତିରେ ପରିଣତ କରି ଦିଆଗଲା, ଏହି ରିପୋର୍ଟ ତାହାର ମୂକସାକ୍ଷୀ । କେବଳ ସେତିକି ନୁହେଁ, ଇଂରେଜ ଐତିହାସିକମାନେ ମଧ୍ୟ ଏହି ଐତିହ୍ୟସମ୍ପନ୍ନ ବୀରଜାତିକୁ ନିନ୍ଦିତ କରି ଇତିହାସରେ ପ୍ରଚାର କରିଯାଇଛନ୍ତି । ହଣ୍ଟର୍‌ସାହେବ ତାଙ୍କ ଲିଖିତ ଓଡ଼ିଶା ଇତିହାସର ପ୍ରଥମ ଅଧ୍ୟାୟରେ ଆମ ଜାତି ବିରୋଧରେ ଏହିପରି ନିନ୍ଦାଗାନ କରିଥିଲେ :

"To the world's call-roll of heroes it will add not one name. The people of whom it ıreats have fought no great battle for human liberty, nor have they succeeded even in more primary task of subdiving the forces of nature to the control of man. To them the world stands indebted for not a single discovery which arguments the comforts or mitigates the calamities of life. Even in literature the peculiar glory of the Indian race they have over no triumph. They have written no famous epic, they have struck out no separate school of philosophy; they have elaborated no new system of law.

ହଣ୍ଟର୍ ସାହେବଙ୍କ ବାଚାଳତାର ଉତ୍ତର ଦେବା ପାଇଁ ଆଲୋଚ୍ୟ ପ୍ରବନ୍ଧରେ ସୁଯୋଗ ନାହିଁ । ଖ୍ରୀଷ୍ଟପୂର୍ବରେ ଯେତେବେଳେ ଇଂରେଜମାନେ ଏକ ଅସଭ୍ୟ ବିଚରଣ ଜାତି ବା ନୋମାଡ଼ ଭାବରେ ଜୀବନ ଅତିବାହିତ କରୁଥିଲେ, ଠିକ୍ ସେହି ସମୟରେ ମଗଧସମ୍ରାଟ ଅଶୋକଙ୍କ ବିରୋଧର ଦୀର୍ଘକାଳ ପ୍ରାଣମୂର୍ଚ୍ଛା ସଂଗ୍ରାମ ଅଥବା ଚେତବଂଶର କଳିଙ୍ଗ ସମ୍ରାଟ ଖାରବେଳଙ୍କ ଭାରତ ଦିଗ୍‌ବିଜୟର କାହାଣୀ ହଣ୍ଟର ଇଚ୍ଛାକରି ବିସ୍ମୃତ ହୋଇଛନ୍ତି । ଏକ ସମୟରେ ଦୀର୍ଘ ଏକହଜାର ବର୍ଷ କାଳ ଭାରତର ଅଧିକାଂଶ ଅଞ୍ଚଳ ମୁସଲମାନମାନଙ୍କର କରଗତ ହୋଇଥିଲେ ହେଁ ଓଡ଼ିଶାର ରାଜାମାନେ ଦୀର୍ଘ ଦୁଇଶତବର୍ଷ କାଳ ମୁସଲମାନ ଶାସକମାନଙ୍କର ଆତଙ୍କର କାରଣ ହୋଇଥିଲେ ନିଜର ସ୍ୱାଧୀନତାର ପତାକାକୁ ଉଡ୍ଡୀନ କରି । ସଂସ୍କୃତ ସାହିତ୍ୟକୁ ଓଡ଼ିଶାର ଅପରିସୀମ ଅବଦାନ ବିଷୟରେ ହଣ୍ଟର୍ ଇଚ୍ଛାକରି ଭୁଲିଯାଇଛନ୍ତି । ଦୀର୍ଘ ପାଞ୍ଚଶତ ବର୍ଷର ଓଡ଼ିଆ ସାହିତ୍ୟର ଗୌରବମୟ ପରମ୍ପରା ବିଷୟରେ ଜ୍ଞାତ ନ ହେବା ଜଣେ ଐତିହାସିକ ପକ୍ଷରେ ଭୟଙ୍କର ଅପରାଧ ।

**୧୮୨୭ ସାଲରେ ଖୋର୍ଦ୍ଧାରେ ତାପଙ୍ଗ ଦଳବେହେରାଙ୍କ ବିଦ୍ରୋହ :**

ଖୋର୍ଦ୍ଧାର ପାଇକମାନଙ୍କର ଇଂରେଜଙ୍କ ବିରୋଧର ଯେଉଁ ସଂଗ୍ରାମ ଆରମ୍ଭ ହୋଇଥିଲା, ତାହାକୁ ଅତ୍ୟନ୍ତ ନିଷ୍ଠୁର ଭାବରେ ଇଂରେଜ ପ୍ରଶାସନ ଦମନ କରିଥିଲା। ଏହି ବିପ୍ଳବରେ ଅଂଶଗ୍ରହଣ କରି ପରଶୁରାମ ପଟ୍ଟନାୟକ, ସଚ୍ଚିଦାନନ୍ଦ, ଗୋପାଳ ଛୋଟରାୟ, ବଂଶୀ ପାଇକରାୟ, ରାମସିଂହ ଫାଶୀଦଣ୍ଡରେ ଦଣ୍ଡିତ ହେଲେ। ଆଜୀବନ କାରାଦଣ୍ଡ ଭୋଗକଲେ ବାମଦେବ ପଟ୍ଟଯୋଶୀ, ନାରାୟଣ ପରମଗୁରୁ। ଦୀର୍ଘ ୧୪ ବର୍ଷ କାଳ ସଶ୍ରମ କାରାଦଣ୍ଡ ଭୋଗ କଲେ ନିତ୍ୟାନନ୍ଦ ପଟ୍ଟନାୟକ, ପଦ୍ମଚରଣ ଦାସ, ବିଷ୍ଣୁଚରଣ ଦାସ, ଚୈତନ୍ୟ ଚରଣ ଦାସ, କୃତ୍ତିବାସ ରାଉତରାୟ, ଧରଣୀ ସିଂହ, ଲୋକନାଥ ମୁଦୁଲି, କହ୍ନେଇ ମଳିକ ଚୌକିଦାର ଓ କୁଶେଇ ମଳିକ। ଏମାନେ ସମସ୍ତେ କଲିକତାର ଆଲିପୁର ଜେଲରେ ଆବଦ୍ଧ ରହିଥିଲେ। ୧୦୨ ଜଣଙ୍କୁ ଦ୍ୱୀପାନ୍ତର ଦଣ୍ଡରେ ଦଣ୍ଡିତ କରାଯାଇଥିଲା। ଅନେକ ବିଦ୍ରୋହୀ ମେଦିନୀପୁର ଜଙ୍ଗଲରେ କିଛିକାଳ ଅଟକ ରହି ଖଲାସ ହୋଇଥିଲେ।

ଧୀରେ ଧୀରେ ଖୋର୍ଦ୍ଧାର ଜନସାଧାରଣ ସ୍ୱୀକାର କରିବାକୁ ବାଧ୍ୟ ହୋଇଥିଲେ। ତଥାପି ସେମାନଙ୍କର ବୀର ରକ୍ତ ବେଳେବେଳେ ଟକମକ ହେଉଥାଏ। ଜାଁ ଜାଁ ବିଦ୍ରୋହର ନିଆଁ ଜଳି ଉଠୁଥାଏ। ଏହାର ସୁଯୋଗ ନେଲେ ଗଡ଼ ତାପଙ୍ଗର ଦଳବେହେରା। ଇଂରେଜ ରାଜକର୍ମଚାରୀଙ୍କର ଅସମ୍ମାନଜନକ ବ୍ୟବହାରରେ ପ୍ରଜାମାନେ ଅତିଷ୍ଠ ହୋଇପଡୁଥାନ୍ତି। ଦଳବେହେରା ଏହା କିପରି ଅବା ବରଦାସ୍ତ କରନ୍ତେ? ତାପଙ୍ଗ ଦଳବେହେରା ମାଧବ ଚନ୍ଦ୍ର ରାଉତରାୟ ଏହି ଅତ୍ୟାଚାର ବିରୋଧରେ ଅସ୍ତ୍ର ଉତ୍ତୋଳନ କଲେ ନିଜର ଦଳବଳ ପାଇକ ବାହିନୀ ସହିତ। ପାଇକ ବିପ୍ଳବର ପରବର୍ତ୍ତୀ ଦମନଲୀଳା ଓ ବକ୍ସି ଜଗବନ୍ଧୁଙ୍କର ଗରିଲା ଯୁଦ୍ଧର ସମ୍ବାଦ ସେମାନଙ୍କୁ ଉତ୍ତ୍ୟକ୍ତ କରି ରଖିଥାଏ। ସେମାନେ କେବଳ ଜଣେ ନେତା ଖୋଜୁଥା'ନ୍ତି। ହଠାତ୍ ଏହି କ୍ଷେତ୍ରରେ ଆବିର୍ଭାବ ହେଲେ ତାପଙ୍ଗ ଦଳବେହେରା। ତାଙ୍କୁ ସହଯୋଗ କଲେ ଖୋର୍ଦ୍ଧା ଅଞ୍ଚଳର ମଳିପଡ଼ା, ନରଣଗଡ଼ ଓ ରାମଚଣ୍ଡୀର ଦଳବେହେରାମାନେ ନିଜର ଦଳବଳ ସହିତ। ସଡ଼େଇଗଡ଼, ଛତ୍ରମାଗଡ଼, ରଥିପୁରଗଡ଼ ଓ କାଇପଦର ଗଡ଼ର ପାଇକମାନେ ଏହି ସଂଗ୍ରାମରେ ଅଂଶଗ୍ରହଣ କଲେ। ଏହି ସଂଗ୍ରାମକୁ ପରିଚାଳନା କଲେ ଦଧିମାଛଗାଡ଼ିଆର କରଣ ମଧୁସୂଦନ, ବଙ୍ଗିଦା, କଞ୍ଚଲୋ, ଝିଙ୍କିଝାରୀର କରଣ ଓ ଅଣ୍ଡାର କୋଠକରଣମାନେ। ଗଡ଼ ତାପଙ୍ଗର ଭାଗିରଥି ଦଳେଇ, ପ୍ରତାପ ସିଂହ, ବୈରୀଗଞ୍ଜନ, ଗୋବର୍ଦ୍ଧନ ଦଳେଇ, ରଣସିଂହ ପ୍ରଭୃତି ଅସ୍ତ୍ର ଉତ୍ତୋଳନ କଲେ ମାଧବ ରାଉତରାୟଙ୍କ ସପକ୍ଷରେ। କାଣ୍ଡଗୋଦାଠାରେ ଭୟଙ୍କର ଯୁଦ୍ଧ ହେଲା ଆଧୁନିକ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ଇଂରେଜବାହିନୀ ବିରୋଧରେ। ଦୀର୍ଘ ପାଞ୍ଚଦିନ କାଳ ଯୁଦ୍ଧ କରି ଓଡ଼ିଆ ପାଇକ ବାହିନୀ ପରାସ୍ତ ହେଲେ ଓ ଆତ୍ମସମର୍ପଣ କଲେ। ପ୍ରତିହିଂସା ପରାୟଣ ଇଂରେଜମାନେ ଭୟଙ୍କର ଦମନଲୀଳା ଚଳାଇ ରଖିଲେ।

**ବାଣପୁରରେ କନ୍ଧ ଓ ପାଣ ବିଦ୍ରୋହ ୧୮୩୬ :**

ବକ୍ସି ଜଗବନ୍ଧୁଙ୍କ ଖୋର୍ଦ୍ଧା ବିଦ୍ରୋହ ବିରୋଧରେ ଇଂରେଜ ଶାସକମାନଙ୍କୁ ସାହାଯ୍ୟ କରୁଥିଲେ ବୌଦ, ଆଠମଲ୍ଲିକ, ରଣପୁର ପ୍ରଭୃତି ଗଡ଼ଜାତର ରାଜାମାନେ ଏବଂ ପୁରୀଜିଲ୍ଲାର ବହୁ ପ୍ରଭାବଶାଳୀ

ଲୋକ। ଏମାନଙ୍କ ସାହାଯ୍ୟରେ ବିଦ୍ରୋହୀ ନେତାମାନେ ଧରା ହୋଇଥିଲେ। ତେଣୁ ଇଂରେଜ ସରକାର ଏହି ଦେଶଦ୍ରୋହୀମାନଙ୍କୁ ନାନାଭାବରେ ପୁରସ୍କାର ପ୍ରଦାନ କରିବା ଥିଲା ଅତ୍ୟନ୍ତ ସ୍ୱାଭାବିକ।

କଥାରେ ଅଛି, ଦେଶପାଇଁ ଆତ୍ମବଳିଦାନ ବ୍ୟର୍ଥ ହୁଏନାହିଁ। ଦେଶଭକ୍ତ, ସାଧୁରକ୍ତ ନୁହେଁ ଭସ୍ମେ ପରିଣତ। କିନ୍ତୁ ଇଂରେଜମାନଙ୍କର ଶାନ୍ତିରେ ନିଃଶ୍ୱାସ ମାରିବା ଥିଲା ଅଳ୍ପକାଳ ସ୍ଥାୟୀ। ପୁର୍ନବାର ବିଦ୍ରୋହର ନିଆଁ ଜଳିଉଠିଲା ବାଣପୁର ଅଞ୍ଚଳରେ ୧୮୩୬ ଖ୍ରୀଷ୍ଟାବ୍ଦରେ। ଏହି ଅଞ୍ଚଳରେ ରୋଡ଼ଙ୍ଗ ଗ୍ରାମର ପଞ୍ଚାନନ ନାୟକ କନ୍ଧ ଓ ପାଣଙ୍କର ମେଳିର ନେତୃତ୍ୱ ନେଲେ ଇଂରେଜମାନଙ୍କ ବିରୋଧରେ। ସେ ନିଜକୁ ରାଜା ଶରଣ ସିଂହ ନାମରେ ଘୋଷଣା କରି ପାଲିଙ୍କିରେ ଗ୍ରାମକୁ ଗ୍ରାମ ପରିଦର୍ଶନ କରି ରାଜାଭେଟି ଆଦାୟ କଲେ ଯୁଦ୍ଧ ଖର୍ଚ୍ଚ ତୁଲାଇବାପାଇଁ। ଏହି ସଂଗ୍ରାମର ପ୍ରଧାନ ସେନାପତି ହେଲେ ଅରାଙ୍ଗ ଗଡ଼ର ଦଳବେହେରା କୃତିବାସ ପାଟସାହାଣୀ। ଏହି ବିଦ୍ରୋହକୁ ସାହାଯ୍ୟ କରିଥିଲେ ଲୋଚନ ବିଶୋଇ, ଶିବ ବିଶୋଇ, ସାଧୁକାନି, ଦୀନାକାନି। ବାଣପୁର ଅଞ୍ଚଳର ଦଳେଇ ଓ ଦଳବେହେରାମାନେ ନିଜ ନିଜର ପାଇକମାନଙ୍କ ସହିତ ଇଂରେଜଙ୍କ ବିରୁଦ୍ଧରେ ଅସ୍ତ୍ରଧାରଣ କଲେ। ଇଂରେଜ ରାଜକର୍ମଚାରୀମାନେ ଜୀବନ ରକ୍ଷା ପାଇଁ ବାଣପୁରରୁ ପଳାୟନ କଲେ ଖୋର୍ଦ୍ଧା ଆଡ଼କୁ। ବାଣପୁରରେ ୩ ଦିନ କାଳ ଇଂରେଜଶାସନର କୌଣସି ସତ୍ତା ରହିଲା ନାହିଁ। ବାଣପୁରରେ ଇଂରେଜମାନଙ୍କ ଅଫିସ ପୋଡ଼ି ଦିଆଗଲା। ଖୋର୍ଦ୍ଧାରେ ଅବସ୍ଥାପିତ ଇଂରେଜ ବାହିନୀ ଅଭିଯାନ କରି ଏହି ବିଦ୍ରୋହୀ ମାନଙ୍କ କବଳରୁ ବାଣପୁରକୁ ମୁକ୍ତ କଲେ। ତିନିଦିନ ପାଇଁ ରାଜା ଓ ସେନାପତି ଭାବରେ ନିଜକୁ ପରିଚୟ ଦେଇଥିବା ପଞ୍ଚୁ ନାୟକ ଓ କୃତ୍ତିବାସ ପାଟସାହାଣୀଙ୍କୁ ଫାଶୀଦଣ୍ଡରେ ଦଣ୍ଡିତ କରାଗଲା। ଅରାଙ୍ଗ ଦଳବେହେରା ଦୋଷ ସ୍ୱୀକାର କରି ଜୀବନରକ୍ଷା କଲେ ସିନା ନିଜର ଜାଗିରୀ ଜମି ହରାଇ ବସିଲେ। ଅନ୍ୟ ଦଳ ଦଳବେହେରାମାନେ ଅନୁରୂପ ଦଣ୍ଡଭୋଗ କଲେ। ଅନେକ କନ୍ଧ ଓ ପାଣ ସର୍ଦ୍ଦାରଙ୍କୁ ଫାଶୀ ଦିଆଗଲା। ଜେଲଦଣ୍ଡ ଓ ଦ୍ୱୀପାନ୍ତରରେ ଅନେକ ଶେଷନିଃଶ୍ୱାସ ତ୍ୟାଗ କରିଥିଲେ।

**୧୮୫୭ ସାଲର ସିପାହୀ ବିଦ୍ରୋହ ଓ ଉତ୍କଳ ସନ୍ତାନ ଚାଖିଖୁଣ୍ଟିଆ :**

ସ୍ୱାଧୀନତା ଲାଭ କଲା ପରେ ଭାରତର ଇତିହାସରେ ୧୮୫୭ ସାଲର ସିପାହୀ ବିଦ୍ରୋହକୁ ପ୍ରଥମ ସ୍ୱାଧୀନତା ସଂଗ୍ରାମ ବୋଲି ଆଖ୍ୟାତ କରାଯାଇଛି। ଏହି ସଂଗ୍ରାମରେ ବହୁ ବହୁ ଦେଶହିତୈଷୀ ବୀରପୁରୁଷଙ୍କ ସ୍ମରଣ କରାଯାଉଥଲେ ହେଁ ଏଥିରେ ଅଂଶଗ୍ରହଣ କରି ନାନାଭାବରେ ଦଣ୍ଡିତ ହୋଇଥିବା ଓଡ଼ିଆ ବୀର ଚାଖି ଖୁଣ୍ଟିଆଙ୍କୁ କେହି ମନେ ପକାଉନାହାନ୍ତି। ଏହାହିଁ ଓଡ଼ିଶାର ଦୁର୍ଭାଗ୍ୟ। ଖ୍ୟାତିଗ୍ରନ୍ଥରେ ଓଡ଼ିଆପୁଅର ନାମ ଲେଖାଯାଉ, ଏଥିପ୍ରତି ଯେପରି ଅନେକ ବୁଦ୍ଧିଜୀବୀ କୁଣ୍ଠିତ। ୧୮୦୫ ସାଲରୁ ଦୀର୍ଘ ସାତଗୋଟି ଦଶନ୍ଧି ଓଡ଼ିଆଭାଷୀ ଅଞ୍ଚଳର ଲୋକମାନେ ଇଂରେଜ ଶାସନ ବିରୋଧରେ ଯେଉଁ ସଂଗ୍ରାମ ଜାରି ରଖିଥିଲେ, ତାହାକୁ ଭାରତୀୟ ଐତିହାସିକମାନେ ଆଦୌ ଗୁରୁତ୍ୱ ଦେଇନାହାନ୍ତି।

ସିପାହୀ ବିଦ୍ରୋହରେ ପୁରୀ ଶ୍ରୀଜଗନ୍ନାଥଙ୍କର ସେବକ ଚାଖିଖୁଣ୍ଟିଆଙ୍କର ଅବଦାନ ଆଦୌ ଅବହେଳିତ ନୁହେଁ। ଏହି ବୀରପୁରୁଷ ୧୮୨୭ ସାଲରେ ପୁରୀର ହରଚଣ୍ଡୀ ସାହିରେ ପିତା ରଘୁନାଥ

ଖୁଣ୍ଟିଆ ଓରଫ ଭୀମସେନ ହକୁରୀଙ୍କର ଔରସରେ ଜନ୍ମଗ୍ରହଣ କରିଥିଲେ । ଶ୍ରୀଜଗନ୍ନାଥଙ୍କର ବେଶକାରୀ ଭାବରେ ଏହି ପରିବାର ପ୍ରସିଦ୍ଧ । ଜନ୍ମରୁ ପୁଅର ନାମ ଦିଆଗଲା ଚନ୍ଦନ ହକୁରୀ ; କିନ୍ତୁ ସେ ଚାଖି ଖୁଣ୍ଟିଆ ଭାବରେ ପ୍ରସିଦ୍ଧ । ତାଙ୍କର ଜନନୀ ହେଲେ କମଳାବତୀ । ପୁରୀର ଆଖଡ଼ା ଘରେ ବାଲ୍ୟକାଳରୁ ସେ କୁସ୍ତିବିଦ୍ୟା ଓ ଖଣ୍ଡା, ମୁଦଗର୍ ପ୍ରଭୃତି ଅସ୍ତ୍ରଶସ୍ତ୍ର ଚାଳନାରେ ଶିକ୍ଷାଲାଭ କଲେ ।

ଜଗନ୍ନାଥଙ୍କର ସେବକମାନେ ଭାରତର ସର୍ବାଞ୍ଚଳରେ ହିନ୍ଦୁସମାଜର ପଣ୍ଡା ଭାବରେ ସମ୍ମାନିତ । ଚାଖିଖୁଣ୍ଟିଆ ହେଉଛନ୍ତି ଲକ୍ଷ୍ମୀବାଈଙ୍କର ପିତା ମେରୋପନ୍ଥାଙ୍କର ପୁରୀ ପଣ୍ଡା ଏବଂ ଅତ୍ୟନ୍ତ ସମ୍ମାନିତ । ଏହି ପରିବାର ସହିତ ଚାଖିଙ୍କର ସଂପର୍କ ଅତ୍ୟନ୍ତ ନିବିଡ଼ । ଲକ୍ଷ୍ମୀବାଈଙ୍କର ବିବାହ ସମ୍ପନ୍ନ ହେଲା ଝାନ୍ସୀର ରାଜା ଗଙ୍ଗାଧର ରାଓଙ୍କ ସହିତ । ସେହି ସୂତ୍ରରେ ଏହି ରାଜପରିବାରର ନିକଟ ସମ୍ପର୍କରେ ଆସିଲେ ଚାଖିଖୁଣ୍ଟିଆ । ଅକାଳରେ ଲକ୍ଷ୍ମୀବାଈ ନିଜର ସ୍ୱାମୀ ଓ ପୁତ୍ରକୁ ହରାଇ ମ୍ରିୟମାଣ ହୋଇପଡ଼ିଲେ । ରାଜ୍ୟରକ୍ଷା ପାଇଁ ସେ ଗ୍ରହଣ କଲେ ପୋଷ୍ୟପୁତ୍ର । ମାତ୍ର ଇଂରେଜ ସରକାର ଏହା ସ୍ୱୀକାର ନ କରି ରାଜ୍ୟକୁ ଖାସ୍ କରିଦେଲେ । ଲକ୍ଷ୍ମୀବାଈ ସମସ୍ତ ଅଧିକାରରୁ ବଞ୍ଚିତା ହେଲେ । ତାଙ୍କର ପ୍ରଧାନ ପରାମର୍ଶଦାତା ଚାଖିଖୁଣ୍ଟିଆ ଏହି ଅନ୍ୟାୟ ବିରୋଧରେ ଅସ୍ତ୍ର ଉତ୍ତୋଳନ କରି ନିଜର ଦାବି ହାସଲ କରିବା ପାଇଁ ଲକ୍ଷ୍ମୀବାଈଙ୍କୁ ଉତ୍ସାହିତ କଲେ । ଇଂରେଜମାନେ ଏହି ବିଷୟ ଅବଗତ ହୋଇ ଚାଖିଖୁଣ୍ଟିଆଙ୍କର ସମସ୍ତ ସମ୍ପତ୍ତି ବାଜ୍ୟାପ୍ତ କଲେ ଏବଂ ତାଙ୍କୁ ବନ୍ଦୀ କରିବା ପାଇଁ ପୁରୀର ମାଜିଷ୍ଟ୍ରେଟ୍ ଗୟାଜିଲ୍ଲାର ମାଜିଷ୍ଟ୍ରେଟଙ୍କୁ ଅନୁରୋଧ କଲେ ।

ଚାଖି ଖୁଣ୍ଟିଆ ବିଦ୍ରୋହୀମାନଙ୍କ ସହିତ ଏକାଠି ରହି ଅନେକ ଦିନ ଆତ୍ମଗୋପନ କଲେ ଏବଂ ପରିଶେଷରେ ଗୟା ଜେଲରେ ବନ୍ଦୀ ଜୀବନ ବିତାଇଲେ । ୧୮୫୮ ସାଲରେ ଇଂଲଣ୍ଡର ସାମ୍ରାଜ୍ଞୀ ରାଣୀ ଭିକ୍ଟୋରିଆଙ୍କ ଆଦେଶରେ ଭାରତର ବନ୍ଦୀଶାଳାରୁ ବନ୍ଦୀମାନଙ୍କୁ ମୁକ୍ତ କରାଗଲା । ଏହି ସୁଯୋଗରେ ଚାଖିଖୁଣ୍ଟିଆ ଜେଲରୁ ମୁକ୍ତ ହୋଇ ପୁରୀ ଆସିଲେ ଏବଂ ସେଠାରେ ଶ୍ରୀଜଗନ୍ନାଥଙ୍କର ସେବା କରି ଶେଷନିଃଶ୍ୱାସ ତ୍ୟାଗ କଲେ ୧୮୭୦ ଖ୍ରୀଷ୍ଟାବ୍ଦରେ । ଅନ୍ତିମ ଜୀବନରେ ସେ ଅନେକ ଭକ୍ତିମୂଳକ କବିତା ରଚନା କରିଥିବା ଜଣାଯାଏ । ତାଙ୍କ ସଂପର୍କରେ ପୁରୀରେ ଆଜି ସୁଦ୍ଧା ଏକ ଢଗ ପ୍ରଚଳିତ ଅଛି — "ନଈରେ ବାଳିଆ ଚହଟିଲା, କଜଳ ସୁନ୍ଦର ହ'ଲୋ ରାଣ୍ଡ ପୁଣି ଚାଖିଆ ଲେଉଟିଲା ।" ସିପାହୀ ବିଦ୍ରୋହରେ ଅଂଶଗ୍ରହଣ କରି ଅନେକ ଦିନ ପର୍ଯ୍ୟନ୍ତ ଚାଖିଖୁଣ୍ଟିଆଙ୍କର କୌଣସି ଖବର ମିଳିଲାନାହିଁ । ପରିବାର ଲୋକମାନେ ତାଙ୍କର ମୃତ୍ୟୁ ହୋଇଛି ବୋଲି ବିଶ୍ୱାସ କରି ତାଙ୍କର ଯୁବତୀ ସ୍ତ୍ରୀକୁ ବିଧବା କରିଦେଲେ । ଅନେକବର୍ଷ ପରେ ଚାଖି ଫେରି ଆସିବାରୁ ଭାଗ୍ୟବତୀ ପତ୍ନୀ ପୁନର୍ବାର ସଧବା ସୁଖ ଲାଭକରି ଘରସଂସାର କଲେ ।

**ଇଂରେଜ ଶାସନ ବିରୋଧରେ ବୀର ସୁରେନ୍ଦ୍ର ସାଏଙ୍କ ସଂଗ୍ରାମ :**

ଏହି ଦେଶପ୍ରାଣ ବୀରପୁରୁଷ ସମ୍ବଲପୁର ଅଞ୍ଚଳର ବରଗାଁ ଗ୍ରାମରେ ଏକ ରାଜପରିବାରରେ ଜନ୍ମଗ୍ରହଣ କରିଥିଲେ । ୧୮୦୯ ସାଲରେ ତାଙ୍କର ପିତା ଧରମ ସିଂହ ସମ୍ବଲପୁରର ଚୌହାଣ ରାଜା ମଧୁକର ସାଏଙ୍କର ପଞ୍ଚମ ବଂଶଧର । ବାଲ୍ୟକାଳରୁ ସୁରେନ୍ଦ୍ର ଥିଲେ ସାହସୀ, ଉଚ୍ଚାଭିଳାଷୀ ଏବଂ

ନାନାପ୍ରକାର ଯୁଦ୍ଧବିଦ୍ୟାରେ ପାରଙ୍ଗମ । ସମ୍ବଲପୁର ଅଞ୍ଚଳର ଗଣ୍ଡ ଓ ବିଂଝାଲ ଜାତିର ଆଦିବାସୀଙ୍କୁ ଯୁଦ୍ଧବିଦ୍ୟାରେ ଶିକ୍ଷାପ୍ରଦାନ କରି ସେମାନଙ୍କର ନେତୃତ୍ୱ ଗ୍ରହଣ କଲେ ସମ୍ବଲପୁର ରାଜା ଜୟନ୍ତ ସିଂହ । ୧୮୧୭ ଖ୍ରୀଷ୍ଟାବ୍ଦରେ ରାଜା ଜୟନ୍ତ ସିଂହ ମୃତ୍ୟୁବରଣ କଲେ ଏବଂ ତାଙ୍କର ପୁତ୍ର ମହାରାଜା ସାଏ ସିଂହାସନରେ ବସିଲେ । ସେ କିନ୍ତୁ ଅପୁତ୍ରିକ ଅବସ୍ଥାରେ ୧୮୨୭ ସାଲରେ ଶେଷନିଃଶ୍ୱାସ ତ୍ୟାଗ କଲେ । ରାଜବଂଶର ପରମ୍ପରା ଅନୁସାରେ ସୁରେନ୍ଦ୍ର ସାଏ ସିଂହାସନ ଆରୋହଣ କରିଥାଆନ୍ତେ ; କିନ୍ତୁ ଇଂରେଜ ସରକାର ସୁରେନ୍ଦ୍ର ସାଏଙ୍କର ଦାବିକୁ ଅସ୍ୱୀକାର କରି ବିଧବା ମହାରାଣୀଙ୍କୁ ରାଜଗାଦି ଅର୍ପଣ କଲେ । ଏପରି ଅନ୍ୟାୟ ବିରୋଧରେ ଅସ୍ତ୍ରଧାରଣ କରି ନିଜର ମୌଳିକ ଦାବି ହାସଲ କରିବା ବ୍ୟତୀତ ସୁରେନ୍ଦ୍ରଙ୍କର ଅନ୍ୟ ଉପାୟ ନ ଥିଲା । ସମ୍ବଲପୁରର ପ୍ରଜାମାନେ ଅକୁଣ୍ଠ ଚିତ୍ତରେ ସୁରେନ୍ଦ୍ର ସାଏଙ୍କୁ ସମର୍ଥନ କଲେ ।

ପ୍ରବଳ ସଂଗ୍ରାମରେ ଇଂରେଜମାନେ ଥରହର ହେଲେ । କ୍ୟାପଟେନ୍ ୱଇଲ୍‌ସନ୍‌ଙ୍କ ନେତୃତ୍ୱରେ ଇଂରେଜବାହିନୀ ପ୍ରବଳ ଯୁଦ୍ଧ କରି ଏହି ବିଦ୍ରୋହକୁ ସାମୟିକ ଦମନ କରିଥିଲେ । ଅନେକ ବିଦ୍ରୋହୀ ବନ୍ଦୀ ହେଲେ, ଫାଶୀ ପାଇଲେ ଓ ସେମାନଙ୍କର ସମ୍ପତ୍ତି ବାଜ୍ୟାପ୍ତ କରି ଦିଆଗଲା । ତଥାପି ବିଦ୍ରୋହ ଲାଗି ରହିଲା । ସାରା ସମ୍ବଲପୁର ଅଞ୍ଚଳ ସୁରେନ୍ଦ୍ରସାଏଙ୍କ ନେତୃତ୍ୱରେ ଏହି ସଂଗ୍ରାମ ଅବା ପ୍ରବଳପ୍ରତାପୀ ଇଂରେଜଶାସନ ବିରୁଦ୍ଧରେ କେତେକାଳ ତିଷ୍ଠି ରହି ପାରିଥାଆନ୍ତା । ସୁରେନ୍ଦ୍ର ଅନ୍ତରଙ୍ଗ ସାଥୀମାନଙ୍କ ସହିତ ଧରା ହୋଇ ହଜାରିବାଗ ଜେଲରେ ବନ୍ଦୀ ହେଲେ । ତାଙ୍କ ସହିତ ଥିଲେ ବିପ୍ଳବୀ ଚକ୍ରୀ ନାଏକ, ଆକୁଳ ଶଂଖୁଆ, ଶୀତ ପଲାଇ, କୁଡ଼ୋ ନାଏକ, ରାଜଦ୍ୱାରୀ, ରାମ ସତସିଂହ, ବିହାରୀ ଦାସ ଓ ଗଦାଧର ସିଂହ । ଇଂରେଜମାନେ ୧୮୪୯ ଖ୍ରୀଷ୍ଟାବ୍ଦରେ ସମ୍ବଲପୁରକୁ ଖାସ୍ କରି ରାଜତନ୍ତ୍ର ଲୋପ କଲେ । ୧୮୫୭ ସାଲରେ ମିରଟ୍ ଠାରେ ସିପାହୀ ବିଦ୍ରୋହର ବିଦ୍ରୋହାଗ୍ନି ଜଳି ଉଠିଲା । ଚାହୁଁ ଚାହୁଁ ଏହା ଭାରତର ବହୁ ଅଞ୍ଚଳରେ ବ୍ୟାପ୍ତ ହୋଇଗଲା । ଏହି ସଂଗ୍ରାମୀମାନେ ହଜାରିବାଗ ଜେଲରୁ ବନ୍ଦୀମାନଙ୍କୁ ମୁକୁଳାଇ ଦେଲେ । ସୁରେନ୍ଦ୍ର ସମ୍ବଲପୁରକୁ ଫେରିଆସି ରାଜଗାଦି ଦାବି କଲେ । ଇଂରେଜମାନେ ତାହା ପ୍ରତ୍ୟାଖ୍ୟାନ କରିବାରୁ ସୁରେନ୍ଦ୍ରସାଏ ନିଜର ଦଳବଳ ସହିତ ବାରପାହାଡ଼ର ନିଘଞ୍ଚ ଅରଣ୍ୟ ମଧ୍ୟରେ ଆତ୍ମଗୋପନ କରି ଗରିଲା ଯୁଦ୍ଧରେ ଇଂରେଜ ସୈନ୍ୟବାହିନୀକୁ ବାରମ୍ବାର ପରାଭବ ଦେଉଥାଆନ୍ତି ।

ସୁରେନ୍ଦ୍ରସାଏଙ୍କୁ ସହଯୋଗ କରୁଥାଆନ୍ତି ତାଙ୍କର ଭାଇ ଉଦନ୍ତ, କୋଲାବିରା ଜମିଦାର ଜର୍ଣ୍ଣହାର ନାଏକ, ଘେସି ଜମିଦାର ହାତୀ ସିଂହ ଓ ତାଙ୍କର ଅନୁଜ କୁଞ୍ଜନ ସିଂହ, ପାହାଡ଼ ସିରଗିଡ଼ା ଜମିଦାର ଜନାର୍ଦ୍ଦନ ସିଂହ ପ୍ରଭୃତି । ଏମାନଙ୍କ ବ୍ୟତୀତ ଏହି ଅଞ୍ଚଳରେ ଅଧିକାଂଶ ଗୌନ୍ତିଆ ସୁରେନ୍ଦ୍ରଙ୍କୁ ସମର୍ଥନ କରୁଥିଲେ । ଇଂରେଜ ସୈନ୍ୟ ଅସ୍ତବ୍ୟସ୍ତ ହୋଇ ଶେଷରେ କଟକରୁ ଅଧିକ ସୈନ୍ୟ ଓ ଯୁଦ୍ଧସାମଗ୍ରୀ ମଗାଇ ପଠାଇଲେ । ପ୍ରବଳ ଯୁଦ୍ଧରେ ଅଧିକାଂଶ ବିପ୍ଳବୀ ନିରସ୍ତ୍ର ହୋଇ ଆତ୍ମସମର୍ପଣ କଲେ । ଅବଶ୍ୟ ଏହି ସଂଗ୍ରାମରେ ଅନେକ ଇଂରେଜ ସେନାପତି ନିଜର ଜୀବନରକ୍ଷା କରିପାରିଲେ ନାହିଁ । ଅନ୍ୟ ଉପାୟ ନ ପାଇ ଇଂରେଜମାନେ ସୁରେନ୍ଦ୍ରଙ୍କୁ ଆତ୍ମସମର୍ପଣ କରିବାପାଇଁ ପ୍ରସ୍ତାବ ଦେଉଥାଆନ୍ତି । କେତେକ ସର୍ତ୍ତରେ ସୁରେନ୍ଦ୍ର ଆତ୍ମସମର୍ପଣ କରି ମୁକ୍ତ ଜୀବନଯାପନ କରିଥିଲେ ଅଳ୍ପଦିନ ପାଇଁ । ଏକ ମିଥ୍ୟା ଅଭିଯୋଗରେ

ବନ୍ଦୀ ହୋଇ ମଧ୍ୟପ୍ରଦେଶର ଆସିରଗଡ଼ ଜେଲରେ ଶେଷନିଃଶ୍ୱାସ ତ୍ୟାଗ କଲେ ୧୮୮୪ ଖ୍ରୀଷ୍ଟାବ୍ଦରେ।

ଓଡ଼ିଶାବାସୀଙ୍କର ସ୍ୱାଧୀନତା ସଂଗ୍ରାମର ସୂର୍ଯ୍ୟ ଏହିଠାରେ ଅସ୍ତମିତ ହୋଇଗଲେ। ସାମୂହିକ ଭାବରେ ଜନତାର ଜାଗରଣ ସ୍ୱପ୍ନପ୍ରାୟ ହୋଇଗଲା। ଇଂରେଜ ସରକାରଙ୍କ ଇଚ୍ଛାକୃତ ଅବହେଳା ଓ ଆକ୍ରୋଶ ବ୍ୟବହାର ଯୋଗୁ ଓଡ଼ିଶା ଭୂଖଣ୍ଡରେ ରାଜପଣ କଲା ଅଶିକ୍ଷା ଓ ଦାରିଦ୍ର୍ୟର ଘନ ଅନ୍ଧକାର। ଭାରତୀୟ ସମାଜରେ ଏମାନେ ହେଲେ ଦୀନ, ହୀନ ଓ ନାନା ତାଚ୍ଛଲ୍ୟର ଶିକାର। ତେଣୁ ଅତୀତର ଗୌରବମୟ ପରମ୍ପରାକୁ ସ୍ମରଣ କରି ସାମୟିକ ସାନ୍ତ୍ୱନା ଲାଭ କରିବା ଥିଲା ଭାଗ୍ୟର ଏକ ଭୟଙ୍କର ଅଟ୍ଟହାସ୍ୟ। ଏହି ଅବକ୍ଷୟକୁ ଐତିହାସିକ ଟୟନବି ବର୍ଣ୍ଣନା କରିଛନ୍ତି ଏହିପରି—

"The province which during four centuries had formed the traditional of revolt, has lapsed into the most peaceful port of the British Empire."



**ସହାୟକ ଗ୍ରନ୍ଥସୂଚୀ :**


୧. କଳାପାଣିରେ ଅଗ୍ନିଶିକ୍ଷା - ପ୍ରଫୁଲ୍ଲ ଦାସ - ୧୯୮୨

୨. ଗତ ଶତାବ୍ଦୀର ଓଡ଼ିଶା - ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ - ୧୯୫୫

୩. ସ୍ୱାଧୀନତା ସଂଗ୍ରାମର ଇତିହାସ - ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ

୪. ଭାରତର ପ୍ରଥମ ଗଣବିପ୍ଳବ - ଲକ୍ଷ୍ମୀନାରାୟଣ ରାୟସିଂହ

୫. ଇତିହାସର ସମୀକ୍ଷା - ପ୍ରୀତିଶ ଆଚାର୍ଯ୍ୟ

୬.Chakhi Khuntia - A national hero of the British period - Dr. Jagannath Mohanty

୭. History of Orissa - R.D.Banerji - Vol-II

୮. ଓଡ଼ିଶା ବିଦ୍ରୋହର ସଂକ୍ଷିପ୍ତ ଇତିହାସ - ୧୮୦୩-୧୯୨୦ - ହରେକୃଷ୍ଣ ମହତାବ

୯. ଗଞ୍ଜାମର ସାମରିକ ସଂସ୍କୃତି - ବାୟୁ ମନୁ ଚର୍ଚ୍ଚି - ଝଙ୍କାର - ୫୬ତମ ବର୍ଷ - ୫୮ ସଂଖ୍ୟା

୧୦.Orissa - Lakshminarayana Sahu.

୧୧ କଙ୍କାଳର ଆର୍ତ୍ତନାଦ - ଗୋଦାବରୀଶ ମିଶ୍ର।


*କେନ୍ଦୁଝର କଲୋନୀ, କଟକ-୮*

# ଓଡ଼ିଆ ଭାଷା
# କାହାର ହେବ ?

ପ୍ରଫେସର ମହାପାତ୍ର ନୀଳମଣି ସାହୁ

*ଓଡ଼ିଶାରେ ସାରସ୍ୱତ ସାଧନା କ୍ଷେତ୍ରରେ ଯେଉଁମାନେ ନିଜର ମୌଳିକ ରଚନା ଯୋଗୁଁ ଅଜସ୍ର ସମ୍ମାନ ଓ ପ୍ରଶଂସାର ଅଧିକାରୀ ହୋଇ ପାରିଛନ୍ତି, ସେମାନଙ୍କ ମଧ୍ୟରେ ଅଧ୍ୟାପକ ମହାପାତ୍ର ନୀଳମଣି ସାହୁ ଅନ୍ୟତମ। ବିଭିନ୍ନ ସ୍ୱାଦର ଉଚ୍ଚଦରର ଲେଖା ଅଧ୍ୟାପକ ସାହୁଙ୍କୁ ସର୍ବଦା ଆଗଧାଡ଼ିରେ ସ୍ଥାନ ଦେଇ ଆସିଛି। 'ମୋ ଓଡ଼ିଶା'ର ଅନୁରୋଧରେ ୨୦୦୯ ସାରସ୍ୱତ ସଂକଳନରେ ସ୍ଥାନିତ କରାଯାଇଛି ତାଙ୍କର ଅନୁପମ ପ୍ରବନ୍ଧ "ଓଡ଼ିଆ ଭାଷା କାହାର ହେବ ?"....*

ଗୋଟିଏ ଶତାବ୍ଦୀ ବହୁକଷ୍ଟରେ ବିତିଲା। ତଥାପି ଆମେ ସ୍ଥିର କରି ଜାଣିପାରିଲୁ ନାହିଁ ଯେ ଆମ ଭାଷା ବଞ୍ଚିଛି କି ନାହିଁ ଓ ଭବିଷ୍ୟତରେ ମଧ୍ୟ ବଞ୍ଚିବ କି ନାହିଁ। ଯଦିବା ବଞ୍ଚିବ, ତାହା ସୁସ୍ଥ ଭାବେ ବଞ୍ଚିବ କି ନାହିଁ— ଆପଣାର ବଞ୍ଚିବା ଅଧିକାରରେ ବଞ୍ଚିବ କି ନାହିଁ ଏବଂ ଅନ୍ୟର ଲୋଡ଼ା ହୋଇ ବଞ୍ଚିବ କି ନାହିଁ। ଆମେ ତାହା ମଧ୍ୟ ଆଜିଯାଏ ସ୍ଥିର କରି ବୁଝିପାରିଲୁ ନାହିଁ। ଓଡ଼ିଶାରେ ଚାରିକୋଟି ଅଧିବାସୀଙ୍କ ଭିତରୁ ପ୍ରାୟ ତିରିଶ ଭାଗ କୁଆଡ଼େ ଓଡ଼ିଆ ଭାଷା କହନ୍ତି ନାହିଁ କି ଜାଣନ୍ତି ନାହିଁ। ଆଉ ସତୁରି ଭାଗ ଲୋକଙ୍କ ଭିତରୁ ପ୍ରାୟ ପଚାଶ ଭାଗ କେବଳ ଓଡ଼ିଆ ଭାଷାରେ ଦୈନନ୍ଦିନ ଜୀବନର ଗୁଜୁରାଣ ମେଣ୍ଟାଇବା ଲାଗି କଥାବାର୍ତ୍ତା କରନ୍ତି। ଓଡ଼ିଶାର ଉଚ୍ଚଶିକ୍ଷିତ ବ୍ୟକ୍ତିମାନେ ସେମାନଙ୍କର ବୌଦ୍ଧିକ ଅଭିବ୍ୟକ୍ତି ଲାଗି ଇଂରାଜୀ ଭାଷା ବ୍ୟବହାର କରନ୍ତି, ନତୁବା ପ୍ରଚୁର ଇଂରାଜୀ ଶବ୍ଦ ଓ ଖଣ୍ଡବାକ୍ୟ ମିଶ୍ରିତ ଓଡ଼ିଆ କହନ୍ତି। ସମ୍ଭ୍ରାନ୍ତମନ୍ୟ ଇଂରେଜୀ ଭାଷାଦୋରସ୍ତ ବୁଦ୍ଧିଜୀବୀଗଣ ଓଡ଼ିଆ ସାହିତ୍ୟ ବା ଓଡ଼ିଆ ଭାଷାରେ ଲିଖିତ କୌଣସି ଚିନ୍ତାପ୍ରସୂତ ବିଷୟ ପଢ଼ିବାକୁ ମନ ବଳାନ୍ତି ନାହିଁ। ସେମାନଙ୍କର ଧାରଣା, ଓଡ଼ିଆ ଭାଷାରେ ସେମିତି କିଛି ଉଚ୍ଚ ଭାବନା, ଚିନ୍ତା ଅନୁଭୂତିପ୍ରସୂତ ବିଷୟ ଲେଖାଯାଇନାହିଁ ବା ଲେଖାଯାଇପାରିବ ନାହିଁ ମଧ୍ୟ। ଏମାନଙ୍କ ମଧ୍ୟରୁ କେହି କେହି ପ୍ରାଚୀନ ଓ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟ ପ୍ରତି ଯତ୍‌ସାମାନ୍ୟ ଖାତିର ଦେଖାନ୍ତି । ତାହା ମଧ୍ୟ ଖୁବ୍ ଦୟାକଲା ଭଳି। ସାରଳା ମହାଭାରତ ଓ ବଳରାମଙ୍କ ରାମାୟଣ ଓ ଜଗନ୍ନାଥଙ୍କ ଭାଗବତକୁ ଧାର୍ମିକ କାରଣରୁ ହେଉ ବା ଅନ୍ୟ କୌଣସି କାରଣରୁ ହେଉ, ଅବମାନନା କରିବା ସହଜ ନୁହେଁ ବୋଲି ଅବମାନନା କରିପାରନ୍ତି ନାହିଁ। ମାତ୍ର ଉପେନ୍ଦ୍ରଭଞ୍ଜ ଓ ଅଭିମନ୍ୟୁ ପ୍ରଭୃତି

କବିମାନଙ୍କ ପ୍ରତି ଏହି ସମ୍ଭ୍ରାନ୍ତମନ୍ୟ ଉଚ୍ଚଶିକ୍ଷିତମାନଙ୍କ ମନରେ ଗୋଟିଏ କେମିତି କୌତୁକଭାବ ମିଶ୍ରିତ ଆଦର କେବଳ ଥାଏ, ସମ୍ଭ୍ରମଭାବ ମିଶ୍ରିତ ଆଦର ନୁହେଁ ।

ଯେଉଁମାନଙ୍କ ହାତରେ ଓଡ଼ିଶାର ଭାଗ୍ୟଡୋରି ପଡ଼ିଛି— ଅର୍ଥାତ୍ ମୂଳରୁ ଆମର ମନ୍ତ୍ରୀ ଓ ପ୍ରଶାସକମାନେ, ଆମର ଶିକ୍ଷା ବିଭାଗର ହାକିମ ହୁକୁମା ଓ ଶିକ୍ଷକ-ଅଧ୍ୟାପକମାନେ ଓଡ଼ିଆ ଭାଷା ପ୍ରତି ମନ ଭିତରେ ଖୁବ୍ ଅବଜ୍ଞାଭାବ ପୋଷଣ କରିଥା'ନ୍ତି । ସେମାନଙ୍କର ବଦ୍ଧମୂଳ ଧାରଣା ଯେ ଓଡ଼ିଆ ଭାଷାକୁ ଯେ ଯେତେ କର, ତାହା ଏକ ନିର୍ଦ୍ଦିଷ୍ଟ ଉଚ୍ଚତାକୁ ଅତିକ୍ରମ କରି ଆଉ ଉପରକୁ ଉଠିପାରିବ ନାହିଁ । ଖୁବ୍ ବେଶିହେଲେ— ଏ ଭାଷାରେ ଦୁଇ ଚାରିଖଣ୍ଡ ଖବରକାଗଜ ବାହାରିବ ଏବଂ ସେଥିରେ କେବଳ ଓଡ଼ିଶାର ନେତାମାନଙ୍କ ସମ୍ବନ୍ଧେ କୁତ୍ସାମୂଳକ ଖବର ସବୁ ପ୍ରକାଶିତ ହୋଇପାରିବ ଅଥବା ବିଭିନ୍ନ ସ୍ଥାନର ଅଭାବ ଅଭିଯୋଗମାନ ପ୍ରକାଶ ପାଇପାରିବ, ତଦତିରେକ ଆଉ କିଛି ପ୍ରକାଶ ପାଇବାକୁ ସେ ଭାଷା କୁଳାଇବ ନାହିଁ । ସେମିତି ଆମର ସର୍ବମୋଟ ଚାରୋଟିଯାକ ଆକାଶବାଣୀ କେନ୍ଦ୍ରରେ ଯାହିତାହି ଓଡ଼ିଆ ଭାଷାରେ ଖବର, ଗୀତ ଏବଂ ଏଣୁଷ୍ଟ ତେଣୁଷ୍ଟ କିଛି ହେବ ଓ ହେଉଥାଉ । ତାକୁ ଯେଉଁମାନେ ଶୁଣିବେ, ଶୁଣୁଥା'ନ୍ତୁ । ନ ଶୁଣିଲେ ବି ନ ଶୁଣନ୍ତୁ । ମାଟ୍ରିକୁଲେସନ୍ ଯାଏ ଓଡ଼ିଆ ଭାଷା ମାଧ୍ୟମରେ ଯେତିକି ପଢ଼ା ହେଉଛି ହେଉ । ମାତ୍ର କଲେଜରେ ସେ ଭାଷା ମାଧ୍ୟମରେ ପାଠ ପଢ଼ାଇବା କଥା ନ ଉଠୁ । ପଞ୍ଚାୟତ ଅଫିସଠାରୁ ସେକ୍ରେଟେରୀଏଟ୍ ପର୍ଯ୍ୟନ୍ତ ଓ କୋର୍ଟକଚେରୀ ପର୍ଯ୍ୟନ୍ତ ଇଂରାଜୀଭାଷାରେ ସବୁ କାର୍ଯ୍ୟ ଚାଲୁ । ଓଡ଼ିଆ ଭାଷାକୁ ସେ ସବୁ କାଗାରେ ପୂରାଇଲେ କାମ ଚଳିପାରିବ ନାହିଁ, ସବୁ ବିଭ୍ରାଟ ହୋଇଯିବ । ମୋଟ କଥା ହେଲା, ଆମର କର୍ତ୍ତୃପକ୍ଷଙ୍କ ମନରେ ଏ ଭାଷା ଉପରେ ବିଶ୍ୱାସ ନାହିଁ, ଆସ୍ଥା ନାହିଁ କି ଶ୍ରଦ୍ଧା ଓ ସଂଭ୍ରମଭାବ ମଧ୍ୟ ନାହିଁ । ଫଳରେ ଓଡ଼ିଆ ଭାଷାକୁ ଭାରତ ସରକାର ଏକ ଆଧୁନିକ ଭାରତୀୟ ଭାଷା ବୋଲି ଧରିଥିଲେ ହେଁ ଏ ଭାଷା ତା'ର ଏକ ନିର୍ଦ୍ଦିଷ୍ଟ ସୀମା ଭିତରେ ଚାଲ୍‌ବୁଲ୍ କରିପାରିବ, ତା' ବାହାରକୁ ଯାଇପାରିବ ନାହିଁ । ସେ ସମ୍ବନ୍ଧେ ଆମର କର୍ତ୍ତୃପକ୍ଷ ବେଶ୍ ନିଶ୍ଚିତ ସିଦ୍ଧାନ୍ତ ନେଇସାରିଛନ୍ତି ।

କିନ୍ତୁ ଏ ଜଗତରେ କୌଣସି କଥା ତା'ର ଗୋଟିଏ ନିର୍ଦ୍ଦିଷ୍ଟ ସୀମା ଭିତରେ ଚିରଦିନ ଆବଦ୍ଧ ରହିପାରିବ ନାହିଁ । ହୁଏତ ତାହା ପୃଷ୍ଠଭଙ୍ଗ ଦେଇ ଲୀନ ହୋଇଯିବ, ନଚେତ୍ ସର୍ବଦା ଆପଣାର ସୀମା ଅତିକ୍ରମ କରି ଆଗକୁ ମାଡ଼ି ଚାଲିଥିବ । କ୍ରମବିକାଶ ତତ୍ତ୍ୱର ଏହାହିଁ ନିୟମ । ତେଣୁ ଆମେ ଆମ ମାତୃଭାଷାର କ୍ରମବିକାଶ କରି ଚାଲିବୁ ନା ତା'ର ଗତିବିଧିକୁ ନିୟନ୍ତ୍ରଣ କରି ତା'ର ନିୟତିକୁ ନିର୍ଦ୍ଦିଷ୍ଟ କରିଦେବୁ— ଏହାହିଁ ବର୍ତ୍ତମାନ ମୌଳିକ ପ୍ରଶ୍ନ ।

ଗୋଟିଏ ଭାଷା ବିଷୟରେ କିଛି କହିଲାବେଳେ ଆମକୁ ସର୍ବଦା ଦୁଇଟା କଥା ମନେରଖିବାକୁ ହେବ । ତାହା ହେଲା— ପ୍ରଥମରୁ ସେ ଭାଷା ଯଦି ଆମର ମାତୃଭାଷା ହୋଇଥାଏ ବା ରାଷ୍ଟ୍ରଭାଷା ହୋଇଥାଏ, ତେବେ ତା' ପ୍ରତ ଆମର ହୃଦୟର ସହଜ ସଂଜାତ ଆବେଗାତ୍ମକ ଶ୍ରଦ୍ଧା । ଏହି ଆବେଗାତ୍ମକ ଶ୍ରଦ୍ଧା ବା ସ୍ନେହ ଯେପରି ସ୍ୱାଭାବିକ ଭାବେ ଆମର ବାପା, ମାଆ, ଭାଇଭଉଣୀ ପ୍ରଭୃତି ଆତ୍ମୀୟସ୍ୱଜନଙ୍କ ପ୍ରତି ଓ

ଜନ୍ମଭୂମି ପ୍ରତି । ଏହି ଆବେଗାତ୍ମକ ସମ୍ପର୍କ ଭିତରେ ଥାଏ ଆମ ଆତ୍ମାର ସ୍ୱାଭାବିକ ସ୍ନେହ, ଶ୍ରଦ୍ଧା, ବିଶ୍ୱାସ, ଆସ୍ଥା ଓ ସମ୍ମାନବୋଧ ଏବଂ ସର୍ବୋପରି ଏକ ପ୍ରତ୍ୟୁପକାର ବା ନୈତିକ ଋଣ ପରିଶୋଧ ଲାଗି ପ୍ରଚଣ୍ଡ ଆଗ୍ରହ । ଆତ୍ମୀୟସ୍ୱଜନ ପ୍ରିୟଜନଙ୍କ ସ୍ନେହପ୍ରୀତିର ଋଣ ପରିଶୋଧ ଲାଗି ଆମ ମନର ଏଇ ଯୋଉ ସ୍ୱାଭାବିକ ସୁନ୍ଦର ଆଗ୍ରହ, ତାହା ହିଁ କେବଳ ଆମ ବଞ୍ଚିବାର ସାର୍ଥକତା । ପିତାମାତାଙ୍କଠାରୁ ଆରମ୍ଭ କରି, ଜନ୍ମଭୂମି ଓ ମାତୃଭାଷା ପର୍ଯ୍ୟନ୍ତ ସମସ୍ତଙ୍କ ପାଖରେ ଆମେ ଏତେ ଋଣୀ ଯେ ସେ ଋଣ ପରିଶୋଧ ଲାଗି ଯଦି ଆମର ଆଗ୍ରହ ନ ଆସେ, ତେବେ ଆମେ ମନୁଷ୍ୟପଦବାଚ୍ୟ ନୋହୁ ।

ଯେଉଁ ଭାଷା ଆମେ ଆମ ମାଆର କ୍ଷୀରପାନ କରିବା ସଙ୍ଗେ ସଙ୍ଗେ ତା' ମୁହଁରୁ ଆମ ମୁହଁକୁ ଟାଣି ନେଇଥିଲୁ, ଯୋଉ ଭାଷାରେ ଆମେ ପ୍ରଥମ କରି ଆମ ମନର କଥା ପ୍ରକାଶ କରିବାରେ ସକ୍ଷମ ହୋଇଥିଲୁ, ସେ ଭାଷାର ଗୁରୁତ୍ୱ ଓ ମହିମା ଆମ ଜୀବନରେ ଆମ ଇଷ୍ଟଦେବ ତୁଲ୍ୟ ସାଧାରଣ ବୁଦ୍ଧିବିଚାର କଳନାର ଊର୍ଦ୍ଧ୍ୱରେ ନିଶ୍ଚୟ । ତେଣୁ ସେ ଭାଷା ପାଖେ ଆମେ ଆମ ଜୀବନଯାକ ବନ୍ଧା ପଡ଼ିଛୁ— ଋଣୀ ହୋଇ ରହିଛୁ । ତା'ର ମଙ୍ଗଳ ପାଇଁ ଆମେ ଜୀବନକୁ ପାଣି ଛଡ଼ାଇ ଦେଇଛୁ । ଯେଉଁମାନଙ୍କ ତାଙ୍କ ମାତୃଭାଷା ପ୍ରତି ଏହି ସ୍ୱାଭାବିକ ଆବେଗ ସୁଦ୍ଧା ନାହିଁ, ସେମାନେ ଏ ଦେଶରେ ଥାଇ ମଧ୍ୟ ବିଜାତୀୟ, ପ୍ରତାରକ, ଭଣ୍ଡ ଓ ପାଷଣ୍ଡ । ସେହି ପାଷଣ୍ଡମାନେ ମୂଳରୁ, ଏପରିକି ଜନ୍ମରୁ, ଏପରିକି ମାତୃଗର୍ଭରୁ ବିଦେଶୀ ଭାଷା ଶିଖିଛନ୍ତି ଓ ସେମାନଙ୍କ ପିଲାଙ୍କୁ ମଧ୍ୟ ବିଦେଶୀ ଭାଷା ଶିଖାଇଛନ୍ତି । ସେମାନଙ୍କ ଘରେ ପିଲାମାନେ ଡାଡ଼ି, ମମି ଡାକନ୍ତି ଓ ବାପାମାଆ ସେଇ ଡାକ ଶୁଣି ଉଲ୍ଲସିତ ଓ ପୁଲକିତ ହୁଅନ୍ତି । ସେମାନଙ୍କ ଉଦ୍ଦେଶ୍ୟ— ବଡ଼ ପୁଅ ଇଂଲଣ୍ଡରେ ଡାକ୍ତର ହୋଇ ରହୁ, ମଝିଆ ପୁଅ ଫ୍ରାନ୍‌ସରେ ରାଷ୍ଟ୍ରଦୂତ ହୋଇ ରହୁ, ସାନ ପୁଅ ରହୁ ଆମେରିକାରେ ଇଞ୍ଜିନିୟର ହୋଇ । ଡାକ୍ତର ଝିଅ ଓ ଡାକ୍ତର ଜୋଇଁ ଦୁହେଁଯାକ ରହନ୍ତୁ ଯାଇ ଇରାନରେ, କି ଆଫ୍ରିକାର କୋଉ ଦେଶରେ । ଏମିତି ଆଶା କରିବା ପାପ ନୁହେଁ । ଏଭଳି ଉଚ୍ଚାକାଂକ୍ଷା ଭଲ । କିନ୍ତୁ ଏମିତି ଆଶା କରୁଥିବା ଲୋକଙ୍କ ହାତରେ ଆମ ଜନ୍ମଭୂମି ଓ ମାତୃଭାଷାର ଭାଗ୍ୟଡ଼ୋରୀ ପଡ଼ିଯାଇଛି । ଆହା! ଏହି ସମ୍ପର୍କହୀନ, ଆପଣା ଲାଗି ଉଚ୍ଚାକାଂକ୍ଷୀ ଭଗାରୀମାନଙ୍କ ହାତରେ ଆମ ପ୍ରାଣଦାୟିନୀ ପ୍ରାଣୋପମା ମଧୁମୟୀ ମାଆର ଭାଗ୍ୟଡୋରି ପଡ଼ିଯାଇଛି! ତେଣୁ ଯାହା ହେବାର କଥା, ତାହାହିଁ ହେଉଛି ।

ମାତୃଭାଷା ପ୍ରତି ଏହି ଭାବାବେଗାତ୍ମକ ମନୋଭାବ ବ୍ୟତୀତ ଆଉ ଗୋଟିଏ ଦୃଷ୍ଟିକୋଣରୁ ମଧ୍ୟ ଆଲୋଚନା ହେବା ଉଚିତ । ତାହାହେଲା— ଯୋଉ ଭାଷା ମାଧ୍ୟମରେ ଆମେ ପିଲାଦିନେ ବା ବହୁକାଳ ପର୍ଯ୍ୟନ୍ତ ଆମର ମନୋଭାବ ବ୍ୟକ୍ତ କରିପାରୁଥିଲୁ କିମ୍ବା ଯେଉଁ ମାତୃଭାଷା ମାଧ୍ୟମରେ ଆମେ ଆମର ଦୈନନ୍ଦିନ ଜୀବନର ଗୁଜୁରାଣ ମେଣ୍ଟାଇ ପାରୁଥିଲୁ, ତାହା ସବୁଦିନେ ସେହି ଭାଷା ମାଧ୍ୟମରେ ସମ୍ଭବ ହୋଇପାରିବ ନାହିଁ । ତା' ଅର୍ଥ ଭିନ୍ନ ଭିନ୍ନ ଧନ୍ଦାରେ ଲାଗିଥିବା ଓ ଭିନ୍ନ ଭିନ୍ନ ଚିନ୍ତା ଅନୁଭୂତି ଇତ୍ୟାଦି ପ୍ରକାଶ କରିବାକୁ ଓ ବୁଝିବାକୁ ଚାହୁଁଥିବା ପ୍ରାୟ ଚାରିକୋଟି ଓଡ଼ିଆଙ୍କ ଲାଗି ଆମର ଏଇ ମାତୃଭାଷା ଠିକଣା ମାଧ୍ୟମ ହୋଇପାରିଛି କି ନାହିଁ ଓ ପାରିବ କି ନାହିଁ ? ଏହାର ଉତ୍ତର ହେଲା— ଏହା ଏ ପର୍ଯ୍ୟନ୍ତ

ସେଥପାଇଁ ସକ୍ଷମ ବା ସମର୍ଥ ହୋଇପାରିନାହିଁ; କିନ୍ତୁ ହୋଇପାରିବ ନାହିଁ ବୋଲି ସନ୍ଦେହ କରିବାରେ କିଛି ହେତୁ ଅଛି କି ?

ଗୋଟିଏ ଭାଷା ହେଲା ଗୋଟିଏ ସମୃଦ୍ଧନୀରା ବେଗବତୀ ନଦୀ ସଦୃଶ । ବହୁ ଉପନଦୀର ଜଳ ସଂଯୋଗରେ ତାହା ହୁଏ ବିପୁଳ କଳେବରା ଏବଂ ବେଗବତୀ । ପୁଣି କାଳକ୍ରମେ ତା' ଭିତରୁ ବହୁ ଶାଖାନଦୀ ମଧ୍ୟ ବାହାରିଯାଇ ଆପଣାଛାଏଁ ଆପଣା ବାଟରେ ଲକ୍ଷ୍ୟ ଆଡ଼କୁ ଗତି କରନ୍ତି । ପୃଥିବୀର ବିଭିନ୍ନ ସମୃଦ୍ଧ ଭାଷାରୁ ବହୁ ବହୁ ମୂଲ୍ୟବାନ ଲେଖା ଯଦି ଆମ ଭାଷାରେ ଅନୂଦିତ ନ ହୁଏ, ତେବେ ଆମର ଭାଷା ଉଚ୍ଚ ଚିନ୍ତା ଓ ଭାବରେ ପୁଷ୍କଳ ହେବନାହିଁ । ସେହିପରି ବିଭିନ୍ନ ଭାଷାରୁ ଯଦି ବହୁ ଚିନ୍ତା ଓ ବ୍ୟଞ୍ଜନାଦ୍ୟୋତକ ଶବ୍ଦରାଶି ତତ୍ସମ ରୂପେ ବା ତଦ୍ଭବ ରୂପେ ଆମ ଭାଷାକୁ ନ ଆସେ, ତା'ହେଲେ ମଧ୍ୟ ଭାଷାର ଶକ୍ତିସାମର୍ଥ୍ୟ ବଢ଼ିପାରିବ ନାହିଁ । ଶେଷ କଥା ହେଉଛି— ଆମର ବିଭିନ୍ନ ବିଭାଗରେ କାମ କରୁଥିବା ଓ ଚିନ୍ତା କରୁଥିବା ଜ୍ଞାନୀବିଜ୍ଞାନୀମାନେ ଯଦି ଏହି ଭାଷାରେ ସେମାନଙ୍କର ତତ୍ତ୍ୱ ବା ତଥ୍ୟ ପରିବେଷଣ ନ କରନ୍ତି, ତେବେ ମଧ୍ୟ ଏ ଭାଷା ସର୍ବପ୍ରକାର ଚିନ୍ତା ଓ ଭାବର ବାହକ ବା ପ୍ରକାଶକ ହୋଇପାରିବ ନାହିଁ । ଅର୍ଥନୀତି, ରାଜନୀତିବିଜ୍ଞାନ, ସମାଜବିଜ୍ଞାନ, ମନୋବିଜ୍ଞାନ, ପ୍ରାଣୀବିଜ୍ଞାନ, ପଦାର୍ଥ ବିଜ୍ଞାନ, ଚିକିତ୍ସା ବିଜ୍ଞାନ, ରସାୟନ ବିଜ୍ଞାନ, ଉଦ୍ଭିଦ ବିଜ୍ଞାନ, ଆଇନ, ଦର୍ଶନ ଓ ପ୍ରଯୁକ୍ତି ବିଦ୍ୟାର ତତ୍ତ୍ୱ ଓ ତଥ୍ୟସବୁ ଯଦି ଆମ ଭାଷାରେ ପ୍ରକାଶ ନ ପାଏ, ଯଦି ସେ ଦିଗରେ ବହୁ ଲୋକ କାର୍ଯ୍ୟ ନ କରନ୍ତି, ତେବେ ଓଡ଼ିଆ ଭାଷା ଓଡ଼ିଆମାନଙ୍କର ଜୀବନ ନିର୍ବାହରେ ସହାୟକ ଭାଷା କିପରି ହୋଇପାରିବ ? ଅବଶ୍ୟ ଏ ଦିଗରେ କାର୍ଯ୍ୟ କଲା ବେଳେ ବହୁ ଇଂରାଜୀ ଶବ୍ଦକୁ ସେହିପରି ଅବିକଳ ରଖିବାକୁ ହେବ । ସେଗୁଡ଼ିକର ବିକୃତ ଅନୁବାଦ କରିବା ଆଦୌ ଆବଶ୍ୟକ ନୁହେଁ । 'ଇଞ୍ଜିନିୟର' ଶବ୍ଦକୁ 'ଯନ୍ତ୍ରୀ' କରିବାରେ କିଛି ହେତୁ ନାହିଁ । ସେମିତି ବିଭିନ୍ନ ବିଜ୍ଞାନର ଶବ୍ଦଗୁଡ଼ିକୁ ସେମିତି ଯଥାଯଥ ଭାବେ ରଖିଦେଲେ କିଛି ଅସୁବିଧା ବା ଅସୁନ୍ଦର କଥା ହେବନାହିଁ । ଉଦ୍ଭିଦ ବିଜ୍ଞାନରେ ଯେଉଁସବୁ ଶବ୍ଦ ଇଂରାଜୀରେ ଅଛି, ତା'ର ଅନୁବାଦ କରିବାକୁ ବୃଥା ସମୟ ନଷ୍ଟ କଲେ ଲାଭ କ'ଣ ? ସେଗୁଡ଼ିକୁ ସେମିତି ଓଡ଼ିଆ ଲିପିରେ ଲେଖି ପଢ଼ିଲେ ଆମେ ଘରେ ବା ବାହାରେ କୋଉଠି ଅସୁବିଧା ଭୋଗିବୁ ନାହିଁ । ରୁଷିଆରେ ସେମାନେ ନିଜ ଭାଷାରେ ବିଜ୍ଞାନାଦି ପଢ଼ିଛନ୍ତି । କିନ୍ତୁ ସମସ୍ତ ବୈଜ୍ଞାନିକ ଶବ୍ଦ ସେମାନେ ମୂଳ ସଙ୍ଗେ ସମାନ ରଖିଛନ୍ତି । ବହୁ ଇଂରାଜୀ ଶବ୍ଦ ଆମ ଭାଷାରେ ତତ୍ସମ ଓ ତଦ୍ଭବ ହୋଇ ମିଶିଗଲାଣି । ଆମେ ଷ୍ଟେସନ, ଟେବୁଲ, ଗିଲାସ, ଇସ୍କୁଲ, ଫୁଟବଲ, ବି.ଡି.ଓ., ଡାକ୍ତର ଇତ୍ୟାଦି ଶବ୍ଦ ବ୍ୟବହାର କରୁଛୁ ବିନା ଦ୍ୱିଧାରେ । ସେମିତି ଜ୍ଞାନବିଜ୍ଞାନର ବହୁ କ୍ଷେତ୍ରରେ ମଧ୍ୟ ଆମକୁ ମୂଳଶବ୍ଦଗୁଡ଼ିକୁ ସେମିତି ଯଥାଯଥ ଭାବେ ରଖିବାକୁ ପଡ଼ିବ । ସେଥିରେ ଭାଷାର ମୂଳଧର୍ମ ବା ଇଜ୍ଜତ ନଷ୍ଟ ହୁଏନାହିଁ । ଇଂରାଜୀ ଭାଷାରେ ବ୍ୟବହୃତ ସବୁ ଜ୍ଞାନବିଜ୍ଞାନର ଶବ୍ଦଗୁଡ଼ିକ ମଧ୍ୟ ମୂଳତଃ ଇଂରାଜୀ ନୁହେଁ— ଏଗୁଡ଼ିକ ବୈଦେଶିକ ଓ ଆହରିତ । ସେ ଦୃଷ୍ଟିରୁ କମିଟି ପରେ କମିଟି ବସାଇ ବିକୃତ ବିଚିତ୍ର ପରିଭାଷାମାନ ସୃଷ୍ଟି କରି ଏବଂ ପୁନଶ୍ଚ ସେହିପରି ଭାଷାଗୁଡ଼ିକୁ ବ୍ୟଙ୍ଗବିଦ୍ରୂପ କରି ବୃଥା କାଳକ୍ଷେପଣ କରିବାରେ କିଛି ହେତୁ ନାହିଁ ।

ବିଶ୍ୱବିଦ୍ୟାଳୟ ସ୍ତରରେ ଓଡ଼ିଆ ଭାଷାକୁ ଶିକ୍ଷାର ମାଧ୍ୟମ ରୂପେ ବ୍ୟବହାର କରିବା ବିଷୟ ବିଚାର କରିବା ପୂର୍ବରୁ ଆମକୁ ଆଗ ଦେଖିବାକୁ ହେବ ଯେ, ଇଂରାଜୀ ଭାଷା ଜାଣି ନ ଥିବା ବା ସେଥିରେ ଯଥେଷ୍ଟ ବ୍ୟୁତ୍ପତ୍ତି ଲାଭ କରି ନ ଥିବା କୋଟି କୋଟି ଓଡ଼ିଆଙ୍କ ଚିତ୍ତବୃତ୍ତିକୁ ସବୁ ଦିଗରୁ ଶିକ୍ଷିତ, ମାର୍ଜିତ ଓ ସମୃଦ୍ଧ କରିବା ପାଇଁ ଏବଂ ସେମାନଙ୍କୁ ଯଥାସମ୍ଭବ ସୁଜାଣ କରିବା ଦିଗରେ ତଥ୍ୟବନ୍ତ ଓ ତତ୍ତ୍ୱବନ୍ତ କରିବାପାଇଁ, ଆମେ ଆମ ଭାଷାକୁ ତଦନୁଯାୟୀ ଉପଯୁକ୍ତ କରି ଗଢ଼ିବୁ କି ନାହିଁ! ଆମର ମାଟ୍ରିକ୍ ପାସ୍ କରି ବିଭିନ୍ନ ଧନ୍ଦାରେ ଲାଗିଥିବା ଲୋକେ ଦର୍ଶନ, ବିଜ୍ଞାନ, ରାଜନୀତି, ମନସ୍ତତ୍ତ୍ୱ ଓ ସମାଜତତ୍ତ୍ୱ ପ୍ରଭୃତି ବିଷୟଗୁଡ଼ିକ ସମ୍ବନ୍ଧେ ଉତ୍ତର ଜୀବନରେ ଉତ୍ତରୋତ୍ତର ଅବହିତ ହେବେ କି ନାହିଁ ? ଆମ ଦେଶର ସ୍ୱଳ୍ପଶିକ୍ଷିତ ଚାଷୀଟିଏ ବା ସ୍ୱଳ୍ପଶିକ୍ଷିତ କାରିଗରଟିଏ ବା ସ୍କୁଲ ମାଷ୍ଟରଟିଏ ବା ଡାକବାଲାଟିଏ ବା ବ୍ୟବସାୟୀଟିଏ ବା ଏମିତି ଏମିତି ବିଭିନ୍ନ ସାନବଡ଼ ଧନ୍ଦାରେ ମାତିଥିବା ଏବଂ ଅଳ୍ପ ଇଂରାଜୀ ଜାଣିଥିବା ଲୋକଙ୍କ ଭିତରୁ ଯଦି କେହି ଦର୍ଶନ, ଅର୍ଥନୀତି, ଉଦ୍ଭିଦବିଜ୍ଞାନ ବା ସମାଜତତ୍ତ୍ୱ, ମନସ୍ତତ୍ତ୍ୱ ଆଦି ସମ୍ପର୍କରେ ତା' ଅବସର ସମୟରେ ଅଧିକ କିଛି ଜାଣିବାରେ ଆଗ୍ରହ ଦେଖାଏ, ତେବେ ସେ କେଉଁ ଭାଷାରେ ସେଗୁଡ଼ିକୁ ପଢ଼ିପାରିବ ? ଯଦି ତାର ମାତୃଭାଷା ମାଧ୍ୟମରେ ସେ ସେଗୁଡ଼ିକୁ ପଢ଼ିବାକୁ ନ ପାଏ, ତେବେ ତା'ର ପୂର୍ବାର୍ଜିତ ଜ୍ଞାନସୀମା ତ ଆଉ ଅଧିକ ଆଗକୁ ବଢ଼ିପାରିବ ନାହିଁ ! ଏପରି ସ୍ଥଳେ ରାଜ୍ୟବାସୀଙ୍କ ଜ୍ଞାନସୀମା ବୃଦ୍ଧି କରିବାରେ ଆମ ଭାଷା ସକ୍ଷମ ହେବା ଉଚିତ କି ନୁହେଁ ? ସାଧାରଣ ଜନତାର ଚିତ୍ତବୃତ୍ତି, ବୁଦ୍ଧିବୃତ୍ତି, ଜୀବନ ସମ୍ପର୍କୀୟ ତଥ୍ୟ ଜ୍ଞାନ ଯଦି ଦିନକୁ ଦିନ ବୃଦ୍ଧି ନ ପାଏ, ତେବେ ଦୁଇଚାରିଟା ଅସାଧାରଣ ଧୀମାନ ପ୍ରତିଭାବାନ ଇଂରେଜୀ ଜାଣତା ଲୋକ ଦେଶବିଦେଶରେ ଯେକୌଣସି ବିଷୟରେ ଅସାଧାରଣ ବ୍ୟୁତ୍ପତ୍ତି ଦେଖାଇଦେଲେ ସମଗ୍ର ରାଜ୍ୟବାସୀଙ୍କ ଅବସ୍ଥା ଆଲୁଅ ହୋଇଯିବନାହିଁ।

ବର୍ତ୍ତମାନ ଆମେ ଦେଖିବା ଆମ ଓଡ଼ିଆ ଭାଷାଟିକୁ ସର୍ବାବଗାହୀ ଓ ସର୍ବାର୍ଥସାଧିକା, ସର୍ବଗୁଣସଂପନ୍ନା କରିବା ଦିଗରେ ଆମେ ଅର୍ଥାତ୍ ଆମ ରାଜ୍ୟବାସୀ ଓ ସରକାର ଏ ଯାବତ୍ କ'ଣ କରିପାରିଛୁ ବା କରିବାକୁ ଯାଉଛୁ । ପ୍ରଥମେ ଆମେ ଦେଖିବା ଯେ ଭାଷାଭିତ୍ତିରେ ଭାରତବର୍ଷର ବିଭିନ୍ନ ପ୍ରଦେଶମାନ ଗଠିତ ହୋଇଅଛି ଓ ସେହି ଭାଷାଭିତ୍ତିକ ପ୍ରଦେଶରେ ଆମର ସରକାର ସ୍ଥାପିତ ହୋଇଛି। ତିନି ଚାରିଟି ବିଶ୍ୱବିଦ୍ୟାଳୟ ହୋଇଛି ଏବଂ ଓଡ଼ିଆ ଭାଷା ସାହିତ୍ୟର ବିକାଶ ଲାଗି ଗୋଟିଏ ଏକାଡେ଼ମୀ ମଧ୍ୟ ସ୍ଥାପିତ ହୋଇଛି। ଓଡ଼ିଆ ଭାଷା ଓ ସାହିତ୍ୟରେ ସମସ୍ତେ କିଛି ପରିମାଣରେ ଜ୍ଞାତ ହେବାଲାଗି ବି.ଏ. ପର୍ଯ୍ୟନ୍ତ ଶହେ ନମ୍ବର ବିଶିଷ୍ଟ ଗୋଟିଏ ବାଧ୍ୟତାମୂଳକ ବିଷୟ ପଢ଼ାଯାଉଛି। ପ୍ରତି ବିଶ୍ୱବିଦ୍ୟାଳୟରେ ଓଡ଼ିଆ ଭାଷା ସାହିତ୍ୟରେ ଅଧିକ ଜ୍ଞାନାର୍ଜନ ଲାଗି ଏମ୍.ଏ. ମଧ୍ୟ ଖୋଲାଯାଇଛି। ଏତଦ୍‌ବ୍ୟତୀତ କେନ୍ଦ୍ରସରକାରଙ୍କର ମାତୃଭାଷା ମାଧ୍ୟମରେ ଉଚ୍ଚଶିକ୍ଷା ଦିଆଯିବାର ଯୋଜନାରେ ଓଡ଼ିଶାରେ ମଧ୍ୟ ଗୋଟିଏ ପାଠ୍ୟପୁସ୍ତକ ବ୍ୟୁରୋ ପ୍ରତିଷ୍ଠାନ ରହିଛି ଏବଂ ତାହା ତରଫରୁ ଓଡ଼ିଆ ଭାଷାରେ ବହୁ ବହୁ ପ୍ରକାର ଜ୍ଞାନବିଜ୍ଞାନ ଇତ୍ୟାଦି ସମ୍ବନ୍ଧୀୟ ବହି ରାଜ୍ୟର ବଡ଼ ବଡ଼ ମୁଣ୍ଡିଆଳ ଅଧ୍ୟାପକମାନେ ଲେଖିଛନ୍ତି ଓ ଲେଖି ଚାଲିଛନ୍ତି। ସେହି ବ୍ୟୁରୋଟି ବହୁ ଉଚ୍ଚପଦସ୍ଥ ସରକାରୀ ଶିକ୍ଷା ବିଭାଗୀୟ କର୍ମଚାରୀଙ୍କ ଦ୍ୱାରା ପରିଚାଳିତ ହେଉଅଛି। ଏହି ବ୍ୟୁରୋ ସଙ୍ଗେ

ପ୍ରଫେସର ଡକ୍ଟର ସଦାଶିବ ମିଶ୍ର, ଶ୍ରୀଯୁକ୍ତ ବାମାଚରଣ ଦାସ ପ୍ରମୁଖ ଭୂତପୂର୍ବ ବିଶିଷ୍ଟ ଅଭିଜ୍ଞ ଶିକ୍ଷାବିତ୍, ଅଧ୍ୟାପକ, ଡି.ପି.ଆଇଙ୍କ ଇଂରାଜୀ ଭାଷା ବିଭାଗର ବିଶିଷ୍ଟ ପ୍ରଫେସର ବିଧୁଭୂଷଣ ଦାସ ମଧ୍ୟ ସଂପୃକ୍ତ ରହିଛନ୍ତି। ଆମ ଜାଣିବାରେ ଏହି ବ୍ୟୁରୋର ଲକ୍ଷ୍ୟ ଓ କାର୍ଯ୍ୟ ହେଲା– ପୃଥିବୀର ବିଭିନ୍ନ ମୌଳିକ ଜ୍ଞାନବିଜ୍ଞାନର ଅତି ଉପାଦେୟ ଗ୍ରନ୍ଥମାନ ଓଡ଼ିଆ ଭାଷାରେ ଅନୁବାଦ କରିବା ଏବଂ ତା ସଙ୍ଗେ ଜ୍ଞାନ ବିଜ୍ଞାନର ବିଭିନ୍ନ ବିଭାଗରେ ଓଡ଼ିଆ ଭାଷାରେ ବିଭିନ୍ନ ମୌଳିକ ଗ୍ରନ୍ଥମାନ ରଚନା କରେଇବା ଏବଂ ବିଶ୍ୱବିଦ୍ୟାଳୟ ସ୍ତରରେ ଉଚ୍ଚଜ୍ଞାନଲିପ୍ସୁ ଛାତ୍ରଛାତ୍ରୀଙ୍କ ଲାଗି ବିଭିନ୍ନ ବିଷୟରେ ଉପାଦେୟ ପାଠ୍ୟପୁସ୍ତକ ପ୍ରଣୟନ କରେଇବା। ଏଥିଲାଗି ରାଜ୍ୟ ସରକାର କେତେ କ'ଣ ଖର୍ଚ୍ଚ କରୁଛନ୍ତି କେଜାଣି, ମାତ୍ର କେନ୍ଦ୍ର ସରକାର ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ କରୁଛନ୍ତି ଓ ଅଧିକ କରିବାକୁ ପ୍ରସ୍ତୁତ ରହିଛନ୍ତି। ଆମେ ଜାଣୁ, ଗତ କେତେବର୍ଷ ମଧ୍ୟରେ ଏହି ବ୍ୟୁରୋ ଉତ୍ତମ, ମଧ୍ୟମ, ଅଧମ ରୀତିରେ କେତେ ଖଣ୍ଡ ଗ୍ରନ୍ଥ ମଧ୍ୟ ଏହି ଲକ୍ଷ୍ୟରେ ଓଡ଼ିଆ ଭାଷାରେ ପ୍ରକାଶ କରିଛନ୍ତି। ମାତ୍ର ଯାହା ଜଣାଯାଏ, ସେହି ବହିଗୁଡ଼ିକ ଆଦୌ ବିକ୍ରି ହେଉନାହିଁ। କାରଣ ଓଡ଼ିଆ ଲୋକେ ସେସବୁ ବହି କିଣିକରି ପଢୁନାହାନ୍ତି କିମ୍ବା କଲେଜ ଛାତ୍ରଛାତ୍ରୀ ସେହି ବହିକୁ ଆଡ଼ ଆଖିରେ ମଧ୍ୟ ଚାହୁଁନାହାନ୍ତି। ଆମ ଛାତ୍ରଛାତ୍ରୀମାନେ ଯେହେତୁ ଇଂରେଜୀ ଭାଷା ମାଧ୍ୟମରେ ପଢ଼ିବାକୁ ଇଚ୍ଛା କରୁଛନ୍ତି, ତେଣୁ ଓଡ଼ିଆ ଭାଷାରେ ଏ ଯୋଉସବୁ ବହି ଲେଖା ହେଲା, ସେଗୁଡ଼ିକ ବୃଥା। ଲକ୍ଷ ଲକ୍ଷ ଟଙ୍କାର ଓଡ଼ିଆ ବହିକୁ ବର୍ତ୍ତମାନ ମୂଷା କିମ୍ବା ଉଇମାନେ ଖାଇବେ। ମାତ୍ର ସେମାନେ ମଧ୍ୟ କୁଆଡ଼େ ସେ ବହିଗୁଡ଼ିକୁ ଛୁଉଁନାହାନ୍ତି। ସେମାନଙ୍କୁ ସେଗୁଡ଼ାକ ଓଡ଼ିଆ ଓଡ଼ିଆ ଗନ୍ଧାଉଛି।

ଅଳ୍ପଦିନ ତଳେ ଏହି ବ୍ୟୁରୋ ତରଫରୁ ଭୁବନେଶ୍ୱରଠାରେ ଗୋଟିଏ ସେମିନାର ହୋଇଥିଲା। ସେଠାକୁ ଭାଗ ନେବାପାଇଁ ଓଡ଼ିଶାର ବହୁ ବିଶିଷ୍ଟ ଶିକ୍ଷାବିତ୍ ଆସିଥିଲେ। ଶିକ୍ଷାମନ୍ତ୍ରୀ, ଶିକ୍ଷାସଚିବ, ବିଶ୍ୱବିଦ୍ୟାଳୟ କୁଳପତି, ଶିକ୍ଷା ବିଭାଗର ଡି.ପି.ଆଇ., ବହୁ ଅଧ୍ୟାପକ, ସାହିତ୍ୟିକ ଓ ସର୍ବୋପରି ଓଡ଼ିଶାର ସମ୍ମାନନୀୟ କୁଳବୃଦ୍ଧ ନେତା ଶ୍ରୀଯୁକ୍ତ ହରେକୃଷ୍ଣ ମହତାବ ମଧ୍ୟ ଆସିଥିଲେ। ଆମ୍ଭେ ମଧ୍ୟ ଆମ୍ଭର ଦୁଇ ଜଣ ବନ୍ଧୁଙ୍କ ସହିତ ସେଠାକୁ ବିନା ନିମନ୍ତ୍ରଣରେ ଯାଇଥିଲୁ। ସକାଳବେଳା ଆମର ମୁଖ୍ୟମନ୍ତ୍ରୀ ତାହାକୁ ଉଦ୍‌ଘାଟନ କରିଥିଲେ । ବିଶିଷ୍ଟ ଶିକ୍ଷାବିତ୍‌ମାନେ ଜଣକ ପରେ ଜଣେ ଭାଷଣ ଦେଲେ ଏବଂ ସମସ୍ତେ ଯେଝା ଢଙ୍ଗରେ ଭାଷଣ ଦେଲେ ମଧ୍ୟ ସମସ୍ତଙ୍କ ଭାଷଣରୁ ଗୋଟିଏ ସାଧାରଣ ମନ୍ତବ୍ୟ ପ୍ରକାଶ ପାଇବାର ବୁଝାଗଲା। ସମସ୍ତେ ଗୋଟିଏ କଥା କହିଲେ ଯେ, ଇଂରାଜୀକୁ ବର୍ତ୍ତମାନ ଶିକ୍ଷାର ମାଧ୍ୟମ କରି ରଖିବା ଉଚିତ। ଓଡ଼ିଆ ମାଧ୍ୟମରେ ଉଚ୍ଚଶିକ୍ଷା ଦିଆଗଲେ ଭାରି ଖରାପ ହେବ, ଉଚ୍ଚଶିକ୍ଷାର ମାନ କମିଯିବ। ଓଡ଼ିଆ ଭାଷାରେ ଆମେ ଏତେ ମୌଳିକ ଜ୍ଞାନପୂର୍ଣ୍ଣ ବହି ପ୍ରସ୍ତୁତ କରିପାରିବୁ ନାହିଁ। ଜଣେ ଇଂରାଜୀ ମାଧ୍ୟମରେ ବି.ଏ. ଅର୍ଥନୀତି ପଢୁଛି, ସେ ସେହି ବିଷୟରେ ଅଧିକା ପଢ଼ିବାକୁ ଇଚ୍ଛା କଲେ ଇଂରାଜୀ ଭାଷାରେ ଲିଖିତ ବହୁ ବହି ପଢ଼ିବାକୁ ପାଇବ; ମାତ୍ର ଓଡ଼ିଆ ଭାଷାରେ ଅର୍ଥନୀତି ସମ୍ପର୍କୀୟ ଉଚ୍ଚ ମୌଳିକ ବହି ବର୍ତ୍ତମାନ ଏତେ କୁଆଡୁ ଆସିବ ? ସେମିତି ସବୁ ସବୁ କଥା। ଡାକ୍ତରୀ ଶାସ୍ତ୍ରଠାରୁ ଇଞ୍ଜିନିୟରିଂ ଶାସ୍ତ୍ର ପର୍ଯ୍ୟନ୍ତ ଏକ କଥା। ଇଂରାଜୀରେ ଏସବୁ ସଂପର୍କରେ ଶହ ଶହ ବହି ଲେଖା ହୋଇଛି, ଅତି ଉଚ୍ଚକୋଟୀର

ଜ୍ଞାନପୂର୍ଣ୍ଣ ବହି । ଆମ ପିଲାଏ ଓଡ଼ିଆ ମାଧ୍ୟମରେ ଆଇ.ଏ., ବି.ଏ., ଏମ୍.ଏ. ପଢ଼ିଲେ ସେଇସବୁ ଉଚ୍ଚକୋଟୀର ବହି ପଢ଼ିପାରିବେନାହିଁ । ଫଳରେ ଆମ ପିଲାଏ ଅଧା ପାଠୁଆ କିମ୍ବା ପାଏ ପାଠୁଆ ଆଇ.ଏ., ବି.ଏ., ଏମ୍.ଏ. ହୋଇ ବାହାରିବେ । ଏହି ତଥ୍ୟର ନିଦର୍ଶନ ଦେଇ ସେମାନେ ବିହାର ଓ ଆଉ କେତୋଟି ଜାଗାରେ କିପରି ଉଚ୍ଚଶିକ୍ଷାର ମାନ କମିଯାଇଛି, ତାହା ଉଲ୍ଲେଖ କଲେ । ସମସ୍ତେ ଏକସ୍ୱରରେ କହିବାକୁ ଆରମ୍ଭ କଲେ ଯେ, ବର୍ତ୍ତମାନ ଓଡ଼ିଶାରେ ଓଡ଼ିଆ ଭାଷା ମାଧ୍ୟମରେ ଉଚ୍ଚଶିକ୍ଷା ଦିଆଯାଉ ବୋଲି ଯେଉଁ ଦାବି ହେଉଛି, ତାହା ଏକ ଅପରିଣାମଦର୍ଶୀ ଦାବି । ଏହା ସଙ୍ଗେ ସଙ୍ଗେ ବିଶିଷ୍ଟ ଶିକ୍ଷାବିଦ୍‌ମାନେ ଆହୁରି ଗୋଟିଏ କଥା କହିଲେ । ସେମାନେ ମତ ଦେଲେ ଯେ, ବର୍ତ୍ତମାନ କେତେକ ଓଡ଼ିଆ ଏମ୍.ଏ. ପଢ଼ାଳି ଦାବି କରୁଛନ୍ତି— ବି.ଏ. ପର୍ଯ୍ୟନ୍ତ ଶହେ ନମ୍ବରିଆ ଗୋଟିଏ ବାଧ୍ୟତାମୂଳକ ପେପର୍ ପରିବର୍ତ୍ତେ ଦୁଇଶହ ନମ୍ବରିଆ ଦୁଇଟି ପେପର୍ ବାଧ୍ୟତାମୂଳକ ଓଡ଼ିଆ ପାଠ ପଢ଼ାଯାଉ; କିନ୍ତୁ ଏହା ମଧ୍ୟ କୁଆଡ଼େ ଏକ ଭ୍ରାନ୍ତ ଦାବୀ । ଦୁଇ ଶହ ନମ୍ବରିଆ ଦୁଇଟି ଓଡ଼ିଆ ପେପର ପଢ଼ାଇବା ପାଇଁ ଓଡ଼ିଆ ଭାଷାରେ ଲିଖିତ ଏତେ ସାହିତ୍ୟ କାହିଁ ? ଦୁଇଟି ପେପର ପଢ଼ା ହେଲେ ଓଡ଼ିଆ ଅଧ୍ୟାପକମାନେ ପୁଣି ସେହି ବିଚିତ୍ର ରାମାୟଣ ଓ ବିଦଗ୍ଧ ଚିନ୍ତାମଣିର କେତେକ ଛାନ୍ଦ ଓ ମାଦଳାପାଞ୍ଜିରୁ କିଛି ଅଂଶ ନେଇ ଏବଂ ଭାଗବତ ଘର, ସ୍ତ୍ରୀ ଶିକ୍ଷା ପ୍ରଭୃତି କେତୋଟି ନିମ୍ନମାନର ପ୍ରବନ୍ଧ ପାଠ୍ୟକ୍ରମରେ ରଖିଦେବେ । ତାହା ଆମ ଛାତ୍ରଛାତ୍ରୀଙ୍କର ଜ୍ଞାନ ବୃଦ୍ଧିରେ କ'ଣ ବା ସହାୟକ ହେବ ? ଆଧୁନିକ ଜ୍ଞାନ-ବିଜ୍ଞାନ ଏବଂ ଚିନ୍ତା-ଭାବନାଦି ବିଷୟକ ସାହିତ୍ୟ ଓଡ଼ିଆ ଭାଷାରେ ଏତେ ନାହିଁ, ଯାହାଦ୍ୱାରା ଦୁଇଟି ବାଧ୍ୟତାମୂଳକ ପେପର ଭରଣା କରାଯାଇପାରିବ । ତେଣୁ ଓଡ଼ିଆ ଏମ୍.ଏ., ପଢ଼ାଳିମାନେ ଏଇ ଯୋଉ ଦାବି କରୁଛନ୍ତି, ତା'ଦ୍ୱାରା କେବଳ ଏତିକି ଲାଭ ହେବ ଯେ, ବହୁ ଓଡ଼ିଆ ଅଧ୍ୟାପକ ପଦ ସୃଷ୍ଟି ହେବ ଏବଂ ସେମାନଙ୍କ ଭିତରୁ ଅନେକେ ଚାକିରି ପାଇଯିବେ ।

କହିବା ବାହୁଲ୍ୟ— ଏହି ଯୁକ୍ତିଗୁଡ଼ିକ ଅମୂଳକ ନୁହେଁ; କିନ୍ତୁ ଲକ୍ଷ୍ୟ କରିବାର ଅଛି ଯେ, ଏହିସବୁ ଯୁକ୍ତି ଯେଉଁମାନେ କରୁଥିଲେ, ସେମାନଙ୍କ ମନ ଭିତରେ ଶ୍ରେୟପ୍ରେୟ ବିନିଶ୍ଚୟ ଲାଗି ଆନ୍ତରିକତା ଅପେକ୍ଷା ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରତି ଖୁବ୍ ପ୍ରଚ୍ଛନ୍ନ ଭାବେ ଅନାଦର, ଅବଜ୍ଞା, ଅନାସ୍ଥା ଓ ବିଦ୍ରୂପାତ୍ମକ ମନୋଭାବ ପୂରି ରହିଥିଲା, ଯାହାକି ସେମାନଙ୍କ କଥା କହିବା ଭଙ୍ଗୀରୁ ସ୍ୱତଃ ପ୍ରକାଶ ପାଇଯାଉଥିଲା ।

ଟେକ୍‌ଷ୍ଟ ବୁକ୍ ବ୍ୟୁରୋ ତରଫରୁ ସେଦିନ ଓପରଓଳି ଯୋଉ ସେମିନାର ହେଲା, ସେଥିରେ ସକାଳ ଓଳିର ଅଭିଜ୍ଞ କୃତବିଦ୍ୟ ବୟୋବୃଦ୍ଧ ଶିକ୍ଷାବିଦ୍‌ମାନେ ନ ଥିଲେ; କିନ୍ତୁ ଓପରଓଳି କେତେକ ଯୁବ ଶିକ୍ଷାବିତ୍ ସକାଳ ମତକୁ ବିରୋଧ କଲେ । ସେମାନଙ୍କ ବକ୍ତବ୍ୟ ଅପେକ୍ଷାକୃତ ଅଧିକ ସ୍ୱଚ୍ଛ, ବାସ୍ତବମୁଖୀ, ଆନ୍ତରିକ ଓ ପ୍ରତାରଣାବିହୀନ ଥିଲା । ସେମାନେ ପ୍ରାୟ ଓଡ଼ିଆ ଭାଷା ମାଧ୍ୟମ ହେଉ ଏବଂ ସେଥିଲାଗି ଆହୁରି ପ୍ରବଳ ଭାବେ ଉଦ୍ୟମ ହେଉ ବୋଲି ଦାବି କରିଥିଲେ । ସେମାନଙ୍କ ବକ୍ତବ୍ୟରୁ ଗୋଟିଏ ଚମତ୍କାର କଥା ମଧ୍ୟ ଶୁଣିବାକୁ ମିଳିଲା । ତାହାହେଲା— ଯେଉଁ ବିଶିଷ୍ଟ ବୟୋବୃଦ୍ଧ ଶିକ୍ଷାବିଦ୍‌ମାନେ ଓଡ଼ିଆ ଭାଷା ଉଚ୍ଚଶିକ୍ଷାର ମାଧ୍ୟମ ହେଲେ ଉଚ୍ଚଶିକ୍ଷାର ମାନ କମିଯିବ ବୋଲି ଯୁକ୍ତି କରୁଛନ୍ତି, ସେମାନେ କିନ୍ତୁ ସମସ୍ତେ ଏହି ବ୍ୟୁରୋ

ସଙ୍ଗେ ସଂପୃକ୍ତ । ଉଦ୍ଦେଶ୍ୟ ବା ଲକ୍ଷ୍ୟ ଉପରେ ବିଶ୍ୱାସ ନ ଥାଇ ତା' ସଙ୍ଗେ ସଂପୃକ୍ତି ହେବା ଏକ ଚରମ କପଟନ୍ୟ ଛଳନା ନୁହେଁ କି ?

ସେଦିନର ବିଶିଷ୍ଟ ଶିକ୍ଷାବିଦ୍‌ମାନଙ୍କ ଆଲୋଚନା ଶୁଣିସାରିଲା ପରେ ଆମେ ଭାବୁଛୁ ଯେ, ସାରା ରାଜ୍ୟରେ ରାଜ୍ୟବାସୀ ଏ ଦିଗରେ ଯେତିକି ମୁଣ୍ଡ ଖେଳାଇବାର କଥା, ତାହା ଖେଳାଇ ନାହାନ୍ତି । ଚାରିକୋଟି ଓଡ଼ିଆଭାଷୀଙ୍କ ଠାରୁ ଅବଶ୍ୟ ଏ ଦିଗରେ ମତଗ୍ରହଣ ପାଇଁ ଆମେ ଭୋଟ ଦାବି କରିବୁ ନାହିଁ କିମ୍ବା କୋଉ ଭାଷା ମାଧ୍ୟମରେ ଶିକ୍ଷା ଦିଆଗଲେ ଭଲ ହେବ ଓ କଲେଜ ସ୍ତରରେ କେତୋଟି ପେପର ଓଡ଼ିଆ ପଢ଼ାଗଲେ ଆମ ପିଲାଙ୍କର ଉପକାର ହେବ, ସେ ବିଷୟରେ ସଂଖ୍ୟାଗରିଷ୍ଠ ଲୋକଙ୍କ ମତ ନେଇ ଗୋଟାଏ ସିଦ୍ଧାନ୍ତରେ ହଠାତ୍ ପହଞ୍ଚିଯିବା ଉଚିତ ନୁହେଁ । ଏ ବ୍ୟାପାରରେ ରାଜ୍ୟର ବୁଦ୍ଧିଜୀବୀଗୋଷ୍ଠୀ ଅର୍ଥାତ୍ ଆମର ଶିକ୍ଷକ, ଅଧ୍ୟାପକବୃନ୍ଦ, ଆମର ଓକିଲ, ଡାକ୍ତର, ଇଞ୍ଜିନିୟର, ବୈଜ୍ଞାନିକ, ସାମ୍ବାଦିକ, କବି, ଲେଖକ ପ୍ରଭୃତି ଖୁବ୍ ମୁଣ୍ଡ ଖେଳାଇବା ଉଚିତ ଏବଂ ସଭାସମିତି କରିଆରେ, ପତ୍ରପତ୍ରିକା ମାଧ୍ୟମରେ ସେମାନଙ୍କର ଆନ୍ତରିକ ବିଶ୍ଳେଷଣାତ୍ମକ ଓ ସୈଦ୍ଧାନ୍ତିକ ମନ୍ତବ୍ୟମାନ ପ୍ରକାଶ କରିବା ଉଚିତ । ଦୁଃଖର କଥା, ଏ ଦିଗରେ କେବଳ ଓଡ଼ିଆ ଏମ୍.ଏ. ପଢ଼ାଳି ଛାତ୍ରଙ୍କ ବ୍ୟତୀତ ଆଉ କେହି କିଛି ସେମିତି କହୁନାହାନ୍ତି । ଓଡ଼ିଆ ଏମ୍.ଏ. ପଢ଼ାଳୀ ଛାତ୍ରଗଣଙ୍କ ସଙ୍ଗେ କଥା ହୋଇ ଯାହା ଜଣାଗଲା, ସେଥିରୁ ବୁଝାପଡ଼ିଲା ଯେ, ସେମାନେ ମଧ୍ୟ ବିଷୟଟିକୁ ଚାରିଆଡୁ ଭାବିଚିନ୍ତି ନାହାନ୍ତି । କେତେକ ଅଯଥା ଭାବପ୍ରବଣତାର ବଶବର୍ତ୍ତୀ ହୋଇ ଓ ଆଉ କେତେକ ଭବିଷ୍ୟତରେ କିଛି ଓଡ଼ିଆ ଅଧ୍ୟାପକ ଚାକିରି ସୃଷ୍ଟି ହେବାର ଆଶା ଦୃଷ୍ଟିରୁ ଯାହା ଯେତିକି ବିଚାରି ଅତି କ୍ଷୀଣ ଓ ଦୀନ ସ୍ୱରରେ ଚିତ୍କାର କରୁଅଛନ୍ତି । ସେମାନଙ୍କର କେତେକ ଅଧ୍ୟାପକ ମଧ୍ୟ ଅନୁନାସିକ ସ୍ୱରରେ କ'ଣ କହୁଛନ୍ତି, ତାହା ବୁଝି ହେଉନାହିଁ ।

ଓଡ଼ିଆ ବିଭାଗ ବ୍ୟତୀତ ଅନ୍ୟ ବିଭାଗର ଛାତ୍ରଛାତ୍ରୀମାନେ ଅଧ୍ୟାପକମାନଙ୍କ ସଙ୍ଗେ କଥାବାର୍ତ୍ତା ହୁଅନ୍ତେ ସେମାନେ ଅବଶ୍ୟ କେତେକ ସ୍ପଷ୍ଟ ମତ ଦେଲେ । ସେମାନଙ୍କ ମତାମତର ସାରକଥା ହେଲା ଯେ, ଆମର ଓଡ଼ିଆ ଜାତିପ୍ରୀତି ରହିବା ଏକାନ୍ତ ଉଚିତ ଓ ଏହା ଦିନୁଦିନ ବଢ଼ିବା ଉଚିତ । ଆମେ ଆମର ଭାଷାର, ସାହିତ୍ୟର ଦିନୁଦିନ ଉନ୍ନତି ଚାହୁଁ । ଆମେ ଆମ ସଂସ୍କୃତିର ଟେକ ରଖିବାକୁ ଚାହୁଁ । କିନ୍ତୁ ଆମ ଜାତି, ଭାଷା, ସାହିତ୍ୟ ଓ ସଂସ୍କୃତିକୁ ରକ୍ଷା କରିବାକୁ ଯାଇ ଆମେ ଯଦି ବିଶ୍ୱର ଜ୍ଞାନ-ବିଜ୍ଞାନ ସଙ୍ଗେ ପରିଚିତ ନ ହୋଇ କେବଳ ଆମରି ଘେର ଭିତରେ ଘୂରି ଚାଲିଥିବୁ, ତେବେ ସମଗ୍ର ଜାତି ମୂର୍ଖ ହୋଇଯିବ । ଓଡ଼ିଆ ଭାଷା ମାଧ୍ୟମରେ ପାଠ ପଢ଼ିଲେ ଆମର ସେହି ମୂର୍ଖତା ଖୁବ୍ ଶୀଘ୍ର ଆସିଯିବ ।

ତା'ଛଡ଼ା ବର୍ତ୍ତମାନ ଅବସ୍ଥାରେ ଇଂରାଜୀ ଭାଷାକୁ ଗୋଟିଏ ବୈଦେଶିକ ଭାଷା ବୋଲି କହିବାରେ ବା କି ହେତୁ ଅଛି ? ଅନ୍ୟମାନଙ୍କ କଥା ଛାଡ଼ି ଦିଆଯାଉ– ଯୋଉ ଭାଷାରେ ସ୍ୱାମୀ ବିବେକାନନ୍ଦ, ଶ୍ରୀଅରବିନ୍ଦ, ଗାନ୍ଧିଜୀ, ଜବାହରଲାଲ, ରାଜଗୋପାଳଚାରୀ ଓ ରାଧାକ୍ରିଷ୍ଣନ୍ ପ୍ରମୁଖ ଭାରତୀୟ ଋଷି ଓ ମନୀଷିଗଣ ଲେଖିଯାଇଛନ୍ତି, ତାହା ସେ ଦୃଷ୍ଟିରୁ ଆମ ନିଜର ଭାଷା ହୋଇଗଲାଣି ଓ ଆମ ଆତ୍ମା ସଙ୍ଗେ

ମଧ୍ୟ ସମ୍ପର୍କିତ ହୋଇଗଲାଣି ଏବଂ ଏହି ଇଂରାଜୀ ମାଧ୍ୟମରେ ହିଁ ଆମେ ବର୍ତ୍ତମାନ ବିଶ୍ୱ ସଙ୍ଗେ ପରିଚୟ ଓ ସଂପର୍କ ରଖିପାରିଛୁ । ଇଂରେଜୀ ଉପରୁ ଗୁରୁତ୍ୱ ଚାଲିଗଲେ, ଆମେ ସେତକ ହରାଇ ବସିବୁ ।

ଏମାନଙ୍କ ମତ ଶୁଣି ଆମେ ଆଉ କେତେକ ନିରପେକ୍ଷ ଶିକ୍ଷାବିଦ୍‌ଙ୍କ ସଙ୍ଗେ ମଧ୍ୟ ଆଲୋଚନା କରିଥିଲୁ । ସେମାନଙ୍କ ମତ ହେଲା, ଓଡ଼ିଆ ଭାଷାର ଯଦି ସତକୁ ସତ ଉନ୍ନତି କେହି ଚାହୁଥାଏ, ତେବେ ସେ ଭାଷା ବର୍ତ୍ତମାନ ଯୋଉ ଅବସ୍ଥାରେ ଅଛି, ତାକୁ ତା'ଠାରୁ ଯଥେଷ୍ଟ ଦୂରକୁ ନେଇଯିବାକୁ ହେବ । ଓଡ଼ିଆ ଭାଷାରେ ହୁଏତ କେତେକ ଭଲ ଗଳ୍ପ, ଉପନ୍ୟାସ, ନାଟକ ବା କାବ୍ୟକବିତା ଲେଖାଯାଇଛି । ମାତ୍ର ସେତିକି ବିଭବ ନେଇ ଗୋଟିଏ ଭାଷା ସେ ଜାତିର ସବୁ ଆକାଙ୍‌କ୍ଷା ପରିପୂରଣ କରିପାରିବ ନାହିଁ । ଯଦି ଓଡ଼ିଆ ଭାଷାରେ ସବୁ ପ୍ରକାର ଜ୍ଞାନ-ବିଜ୍ଞାନ ସମ୍ବଳିତ ଗ୍ରନ୍ଥମାନ ଲେଖା ନ ଯାଏ, ତେବେ ଏ ଭାଷା ଆମର ମାତୃଭାଷା ହୋଇ ରହିବ ସିନା; କିନ୍ତୁ କ୍ରମଶଃ ଏହା ଆମ ଜୀବନର ଆବଶ୍ୟକତା ପୂରଣ କରି ନ ପାରି ମ୍ରିୟମାଣ ହେଉ ହେଉ ମୃତପ୍ରାୟ ହୋଇଯିବ ।

କିନ୍ତୁ ଓଡ଼ିଆ ଭାଷାରେ ଜ୍ଞାନବିଜ୍ଞାନର ବିଭିନ୍ନ ବିଷୟ ଲେଖା ହେବ କାହିଁକି, ଯଦି ଏ ରାଜ୍ୟରେ ତାହା ବିଭିନ୍ନ କ୍ଷେତ୍ରରେ ଓ ବିଭିନ୍ନ ଧନ୍ଦାରେ ବ୍ୟବହୃତ ନ ହେବ ? ଆମର ମେଡିକାଲ କଲେଜରେ ଡାକ୍ତରୀ ଛାତ୍ରମାନେ ଯଦି ଓଡ଼ିଆରେ ନ ପଢ଼ିବେ, ତେବେ ଓଡ଼ିଆରେ ପାଶ୍ଚାତ୍ୟ ଚିକିତ୍ସା-ବିଜ୍ଞାନ ସମ୍ବନ୍ଧୀୟ ବହି ଲେଖା ହେବ କାହିଁକି ? ସେମିତି ମଧ୍ୟ ସବୁ କ୍ଷେତ୍ରରେ । କୋର୍ଟ କଚେରୀରେ, ପ୍ରଶାସନିକ କ୍ଷେତ୍ରରେ ମଧ୍ୟ ସବୁକଥା ଓଡ଼ିଆ ଭାଷାରେ ଚାଲିଲେ ସେ ସଂପର୍କୀୟ ଜ୍ଞାନପୂର୍ଣ୍ଣ ବହି ସବୁ କ୍ରମଶଃ ଲୋକେ ଲେଖିବେ । ଆମ ସର୍ବତ୍ର ଓଡ଼ିଆ ଭାଷା ବ୍ୟବହାର କରିବୁ— ଏପରି ସିଦ୍ଧାନ୍ତ ନେଲେ ସିନା ଯାଇ ଓଡ଼ିଆ ଭାଷାରେ ସେ ସମ୍ବନ୍ଧୀୟ ବହି ଲେଖିବାର ତାଗିଦା ବଢ଼ିଯିବ ଓ ଲୋକେ ସେ ଭାଷା ଶିଖିବାକୁ ଆଗ୍ରହ ପ୍ରକାଶ କରିବେ ? ଆମେ ପତ୍ରରେ ଭୋଜନ ନ କରି ବାସନରେ ଭୋଜନ କରିବୁ ବୋଲି ସିଦ୍ଧାନ୍ତ ନେଲା ପରେ ସିନା ବାସନ ତିଆରି ହେବ ଓ ବିଭିନ୍ନ ପ୍ରକାର ବାସନ ତିଆରି ହୋଇ ଚାଲିବ ! ସିଦ୍ଧାନ୍ତ ନେବା ପୂର୍ବରୁ ବାସନ କାହିଁକି କିଏ ତିଆରି କରିବ ? ଏ ପିଲାଟି ପହଁରି ପାରିବ ନାହିଁ— ବୁଡ଼ିଯିବ ବୋଲି ସର୍ବଦା ଆଶଙ୍କା କରୁଥିବା ପିତାମାତା ଯେଉଁ ପିଲାଟିକୁ ପାଣି ଭିତରକୁ ଆଦୌ ଛାଡ଼ନ୍ତି ନାହିଁ, ସେ ପିଲା ଜୀବନଯାକ ଆଉ ପହଁରା ଶିଖିପାରେ ନାହିଁ ଏବଂ ଦିନେ ଅଚାନକ ପହଁରି ନ ଜାଣିଥିବା ହେତୁ ନଈ କି ପୋଖରୀରେ ବୁଡ଼ି ମରେ । ଓଡ଼ିଆ ଭାଷା ଉପରେ ଯଦି ମୂଳରୁ ଆମର ଆସ୍ଥା ନ ଆସେ ଏବଂ ଆମେ ଯଦି ସବୁବେଳେ ସେ ଭାଷା ପାରିବ ନାହିଁ, ପାରିବନାହିଁ ବୋଲି ଭାବୁଥାଉ, ତେବେ ଦିନେ ନିଶ୍ଚୟ ଏ ଭାଷା ମରିଯିବ ଏବଂ ତା' ବଦଳରେ ଯୋଉ ଭାଷାଟି ଆମର ମାତୃଭାଷା ରୂପରେ ଥିବ, ତାହା ଏକ ନିରାଶ୍ରୟା, ନିପାରିଲା, ଦୁର୍ବଳା, ଦୀନାହୀନା ସ୍ତ୍ରୀଲୋକ ଭଳି ଗାଁଗଣ୍ଡାରେ ସହର ବଜାରରେ ବୁଲୁଥିବ— ଯା' ତା' ଦୁଆରେ ଆଶ୍ରା ମାଗୁଥିବ ଓ ଦୂର ଦୂର୍ ମାର୍ ମାର୍ ଶୁଣୁଥିବ । ଶେଷରେ ଦିନେ ଅପନ୍ତରାରେ ପଡ଼ି ମରିଯିବ ।

ଆମ ରାଜ୍ୟରେ ବର୍ତ୍ତମାନ ଆମ ଭାଷାକୁ ନେଇ ସେହି ସଙ୍କଟ ଦେଖାଦେଇଛି । କାହାର ଏ ଭାଷାଟି ଉପରେ ଗଭୀର ଆନ୍ତରିକ ଆସ୍ଥା ନାହିଁ । କିନ୍ତୁ ସ୍ୱାଧୀନତାପ୍ରାପ୍ତି ପରଠାରୁ ଆମ ଭାଷାରେ ଯାହାସବୁ

ଲେଖାଯାଇଛି— ଅବଶୋଷର କଥା ଯେ, ଆମ ରାଜ୍ୟର ଏଇସବୁ ହର୍ତ୍ତାକର୍ତ୍ତା ନୀତିବିଧାତାମାନେ ସେ ସମ୍ବନ୍ଧେ କିଛି ଖବର ରଖିନାହାନ୍ତି ; ବରଂ ସେମାନେ ଏଥିପ୍ରତି ଖୁବ୍ ଉଦାସୀନ— ନତୁବା ଅବହେଳା ଦେଖାଇଛନ୍ତି । ଗତ ତିରିଶ ବର୍ଷ ଭିତରେ ଓଡ଼ିଆ ଭାଷା ଓ ସାହିତ୍ୟର ଏତେ ଅବହେଳା ସତ୍ତ୍ୱେ ଗୁଣାତ୍ମକ ଓ ପରିଗୁଣାତ୍ମକ ଭାବେ ଯେତିକି ସିଦ୍ଧିର ଅଧିକାରୀ ହେଲାଣି, ସପ୍ତଦଶ ଶତାବ୍ଦୀ ପରଠାରୁ ଏ ଭାଷାର ଇତିହାସରେ ଏତେବଡ଼ ବିପୁଳ ପୁଷ୍କଳ ବିକାଶ ଆଉ କେବେ ଘଟିଥିଲା ପରି ଜଣାପଡ଼ିନାହିଁ । ଏହି ସମୟରେ ଲିଖିତ ଓଡ଼ିଆ କାବ୍ୟକବିତା ଆନ୍ତର୍ଜାତିକ ସ୍ତରରେ ମଧ୍ୟ ନିଜର ମହିମା ଦେଖାଇ ପାରିଲାଣି । ସେହିପରି ଓଡ଼ିଆ ଗଦ୍ୟ ସାହିତ୍ୟର ଭୂୟୋବିକାଶକୁ ମଧ୍ୟ ଲକ୍ଷ୍ୟ କରିବାର କଥା । ଇତିମଧ୍ୟରେ ନାନା ଓଜନଦାର ଭାବ ଓ ଚିନ୍ତା ବହନରେ ଏବଂ ଅଭିବ୍ୟକ୍ତିରେ ଓଡ଼ିଆ ଗଦ୍ୟ ଯେଉଁ ଶକ୍ତି, ସାମର୍ଥ୍ୟ ଓ ବୈଚିତ୍ର୍ୟ ଦେଖାଇପାରିଛି, ତାହା ଦେଖିଲେ ଏ ଭାଷାର ଭବିଷ୍ୟତ ସମ୍ଭାବନା ସମ୍ବନ୍ଧେ ଆଉ ସନ୍ଦିହାନ ହେବାର କଥା ନୁହେଁ । ଆମ ଗଳ୍ପ, ଉପନ୍ୟାସ, ନାଟକାଦିର କଥା ଛାଡ଼ିଦେଲେ ବି ବିଭିନ୍ନ ବିଷୟରେ ଓଡ଼ିଆ ଗଦ୍ୟରେ ଯେଉଁସବୁ ଉଚ୍ଚକୋଟୀର ପ୍ରବନ୍ଧ, ନିବନ୍ଧ, ସମାଲୋଚନା ଓ ରମ୍ୟରଚନାଦି ଲେଖାଯାଉଛି, ସେସବୁକୁ କିଞ୍ଚିତ୍ ଶ୍ରଦ୍ଧାର ସହିତ ଦେଖିଲେ ଏ ଭାଷାର ଅନ୍ତର୍ନିହିତ ବିପୁଳ ପ୍ରାଣଶକ୍ତି ଓ ସମ୍ଭାବନାମୟ ଭବିଷ୍ୟତ ସମ୍ବନ୍ଧେ ଆମର ନିଶ୍ଚୟ ପ୍ରତ୍ୟୟ ଆସିଯିବ । ବିଭିନ୍ନ ପତ୍ରପତ୍ରିକାରେ ଓ ସ୍ୱତନ୍ତ୍ର ପୁସ୍ତକାକାରରେ ଅର୍ଥନୀତି, ସମାଜ ବିଜ୍ଞାନ, ମନସ୍ତତ୍ତ୍ୱ, ଦର୍ଶନ, ନୃତତ୍ତ୍ୱାଦି ବିଷୟକ ବହୁ ରଚନା ଓଡ଼ିଆ ଭାଷାରେ ଓଡ଼ିଶାର ଅଧ୍ୟାପକମାନେ ଲେଖି ପ୍ରକାଶ କରିଛନ୍ତି । ସେଥିରୁ ଜଣାପଡୁଛି— ଆମେ ଯଦି ସଂସ୍କୃତ ଓ ଇଂରାଜୀ ଭାଷାରୁ ବହୁ ଆବଶ୍ୟକୀୟ ଶବ୍ଦ ଅବିକଳ ସେହିଭଳି ପରିଭାଷା ରୂପେ ବ୍ୟବହାର କରି ଓଡ଼ିଆ ଭାଷାରେ ଗ୍ରନ୍ଥମାନ ରଚନା କରି ଚାଲୁ, ତେବେ ଆମର କିଛି ଅସୁବିଧା ହେବନାହିଁ । କୌଣସି ଭାଷା କେବଳ ତା'ର ନିଜର ଶବ୍ଦ ଉପରେ ଭରସା କରି ବଞ୍ଚିନାହିଁ କି ପୁଷ୍ଟ ହୋଇନାହିଁ ଏବଂ କେବଳ ଶବ୍ଦଗୁଡ଼ିକ ଉପରେ ମଧ୍ୟ ଭାଷାର ସ୍ୱାତନ୍ତ୍ର୍ୟ ନିର୍ଭର କରେନାହିଁ । ପ୍ରତିଟି ଭାଷା ତା'ର ବାକ୍ୟଗଠନର ପ୍ରଣାଳୀ ଉପରେ ବହୁ ପରିମାଣରେ ନିର୍ଭର କରେ ଏବଂ ପ୍ରତିଭାବାନ ସମ୍ୟକ୍ ଜ୍ଞାନୀ ଓ ଆନ୍ତରିକ ଲେଖକମାନଙ୍କ ହାତରୁ ସେହି ଅଦଭୂତ ଭାବ ଓ ଚିନ୍ତା ପ୍ରକାଶକ ଏବଂ ଅନ୍ୟ ଭିତରେ ଭାବ ଓ ଚିନ୍ତା ସଞ୍ଚାରକ ଏବଂ ଅନ୍ୟ ଭିତରୁ ପୁନଶ୍ଚ ଅଭିନବ ଭାବ ଓ ଚିନ୍ତା ଉତ୍ପାଦକ ବାକ୍ୟାବଳୀ ଅଦଭୂତ ରଚନାଶୈଳୀ ବିମଣ୍ଡିତ ହୋଇ ବାହାରିଆସେ । ଓଡ଼ିଶାରେ ସେଭଳି ପ୍ରତିଭାବାନ୍ ସମ୍ୟକ୍ ଜ୍ଞାନୀ ଓ ଆନ୍ତରିକ ଲେଖକମାନଙ୍କର ଅଭାବ ନାହିଁ ; କିନ୍ତୁ ଓଡ଼ିଶାର ବିଶ୍ୱବିଦ୍ୟାଳୟଗୁଡ଼ିକ, ଏକାଡେମୀ ଏବଂ ପାଠ୍ୟପୁସ୍ତକ ପ୍ରଣୟନ ସଂସ୍ଥା ଓ ବ୍ୟୁରୋ ଏହିସବୁ ପ୍ରତିଭା, ଶକ୍ତି ଓ ସାମର୍ଥ୍ୟର ଯଥାଯଥ ବିନିଯୋଗ କରୁଛି କି ? ଯାହା ଦେଖାଯାଉଛି, ବିଶ୍ୱବିଦ୍ୟାଳୟଗୁଡ଼ିକ ଓଡ଼ିଆ ବିଭାଗ ହାତରେ ଓଡ଼ିଆ ଭାଷାକୁ ଛାଡ଼ିଦେଇ ନିଶ୍ଚିନ୍ତ ଏବଂ ଓଡ଼ିଆ ବିଭାଗକୁ ଚଳାଉଥବା ଅଧ୍ୟାପକଗୋଷ୍ଠୀ ଏଇ ଭାଷା ଏ ସାହିତ୍ୟର କିଭଳି ବିକାଶ ସାଧନ କରୁଛନ୍ତି, ତାହା ସେମାନଙ୍କ କୃତ କଲେଜ ସ୍ତରରେ ପାଠ୍ୟପୁସ୍ତକ ସିଲାବସ୍‌ରୁ ଓ ପାଠ ପଢ଼ାଇବା ପ୍ରଣାଳୀରୁ ବେଶ୍ ବୁଝାପଡୁଛି ।

ବର୍ତ୍ତମାନ ଉତ୍କଳ ବିଶ୍ୱବିଦ୍ୟାଳୟର ବାଧ୍ୟତାମୂଳକ ଓଡ଼ିଆ ସିଲାବସ୍‌ଟିକୁ ଉଦାହରଣ ନିଆଯାଇପାରେ । ଏହି ସିଲାବସଟି ଏତେ ପୁରାତନ, ଜୀର୍ଣ୍ଣ ଓ ଯୁଗୋପଯୋଗୀ ତଥ୍ୟ, ତତ୍ତ୍ୱାଦିରେ ଦରିଦ୍ର ଯେ ଛାତ୍ରମାନେ ସେ ବିଷୟଗୁଡ଼ିକୁ ପଢ଼ିବା ଲାଗି ଖାତିର କରନ୍ତି ନାହିଁ । ଆହୁରି ଶୋଚନୀୟ ହେଉଛି ବର୍ତ୍ତମାନ ଷଷ୍ଠ ସପ୍ତମ ଶ୍ରେଣୀରେ ଓ ମାଟ୍ରିକ ସ୍ତରରେ ଯୋଉ ଓଡ଼ିଆ ପ୍ରବନ୍ଧ ଓ କବିତାଦି ପଢ଼ାଯାଉଛି, ସେଗୁଡ଼ିକ ଠାରୁ ଆଇ.ଏ., ଓ ବି.ଏ.ରେ ପଢ଼ାଯାଉଥିବା କବିତା ଓ ପ୍ରବନ୍ଧଗୁଡ଼ିକ ସବୁଦିଗରୁ ନ୍ୟୁନମାନର ବୋଲି ବୋଧହୁଏ । ଆଇ.ଏ.ଓ ବି.ଏ. ପଢୁଥିବା ଛାତ୍ରଛାତ୍ରୀଗଣ ଅର୍ଥନୀତି, ରାଜନୀତି, ଗଣିତ, ଦର୍ଶନ, ଇତିହାସ, ସମାଜବିଜ୍ଞାନ ଓ ଇଂରାଜୀ ସାହିତ୍ୟ ପଢ଼ି ଯେଉଁ ବୌଦ୍ଧିକ ସନ୍ତୋଷ ଲାଭ କରନ୍ତି, ବାଧ୍ୟତାମୂଳକ ଓଡ଼ିଆ ଶ୍ରେଣୀରେ ଫାଳେ ମାଦଳାପାଞ୍ଜି, ଭାଗବତ ଘର ବା ଷଡ଼ଋତୁ ବର୍ଣ୍ଣନା ବିଷୟ ପଢ଼ି ତାହା ପା'ନ୍ତି ନାହିଁ । କଲେଜରେ ଅଧ୍ୟୟନ କରୁଥିବା ଛାତ୍ରମାନଙ୍କର ବୌଦ୍ଧିକ ଓ ହାର୍ଦ୍ଦିକ ଜ୍ଞାନକ୍ଷୁଧାକୁ ଯେଉଁ ବିଷୟ ସାମାନ୍ୟମାତ୍ରାରେ ମଧ୍ୟ ଉପଶମ କରିପାରୁନାହିଁ, ତାହାକୁ ପଢ଼ିବା ପାଇଁ ସେମାନଙ୍କର ତିଳାର୍ଦ୍ଧେ ମଧ୍ୟ ଆଗ୍ରହ କାହିଁକି ହେବ ? ସେଥିପାଇଁ ସବୁ କଲେଜରେ ବାଧ୍ୟତାମୂଳକ ଓଡ଼ିଆ ଶ୍ରେଣୀରେ ଯାବତୀୟ ଗୋଳମାଳ ହୋଇଥାଏ । ଅସଲ କଥା ହେଲା, ବାଧ୍ୟତାମୂଳକ ଓଡ଼ିଆର ସିଲାବସ୍ ଯେଉଁମାନେ କରୁଛନ୍ତି, ସେମାନେ ପିଲାମାନଙ୍କର କ'ଣ ଦରକାର, ତାହା ଜାଣନ୍ତି ନାହିଁ । ସେହିପରି ମଧ୍ୟ ସ୍ୱେଚ୍ଛାମୂଳକ ଓଡ଼ିଆ ଭାଷା ଓ ସାହିତ୍ୟର କଥା । ଆଇ.ଏ.ଠାରୁ ଏମ୍.ଏ. ପର୍ଯ୍ୟନ୍ତ ଓଡ଼ିଆ ସିଲାବସ୍ ଦେଖିଲେ ଓ ପଢ଼ାଇବାର ପ୍ରଣାଳୀ ଲକ୍ଷ୍ୟ କଲେ । ସେ ସବୁ ବିସ୍ତୃତ ଭାବେ ଆଲୋଚନା କରିବାର ଏହା କ୍ଷେତ୍ର ନୁହେଁ । — ପ୍ରକୃତରେ କେହି ଏ ଭାଷା ଆଉ ସାହିତ୍ୟ ଉପରେ ଆସ୍ଥା ବା ବିଶ୍ୱାସ ରଖିପାରିବେ ନାହିଁ କିନ୍ତୁ ଆମେ ଅତନ୍ତଃ ଏତିକି ଓଡ଼ିଆ ସିଲାବସ୍‌ରୁ ଆଶା କରିବା ଉଚିତ ଯେ, ଆମ ପିଲାମାନେ ପ୍ରାଚୀନ ଓ ଆଧୁନିକ ଓଡ଼ିଆ ସାହିତ୍ୟ ପଢ଼ିବାବେଳେ ଯେମିତି ସେମାନେ ଅନୁଭବ ନ କରିବେ ଯେ ଆମେ ଅନ୍ୟାନ୍ୟ ଭାରତୀୟ ସାହିତ୍ୟ ତୁଳନାରେ ଓ ଇଂରାଜୀ ସାହିତ୍ୟ ତୁଳନାରେ ଗୋଟାଏ ନ୍ୟୁନତର ସାହିତ୍ୟ ପଢୁଛୁ; ଯାହାକି ଗଭୀର ଜ୍ଞାନ, ଅନୁଭୂତି ଓ ମନନରେ ଅତି ଦରିଦ୍ର ଏବଂ ଯାହାକି ଅନ୍ୟ ସାହିତ୍ୟରେ ଅଧ୍ୟୟନ କରୁଥିବା ଛାତ୍ରଛାତ୍ରୀଙ୍କ ସାହିତ୍ୟ ବୁଝାମଣା ତୁଳନାରେ ପ୍ରତି କ୍ଷେତ୍ରରେ ଅତି ଦୀନହୀନ ମନେହେବ । ଏବଂ ଦୁଃଖର ସହିତ କହିବାକୁ ପଡୁଛି ଯେ, ତାହାହିଁ ଘଟୁଛି ଓ ଭବିଷ୍ୟତରେ ମଧ୍ୟ ଆହୁରି ଶୋଚନୀୟ ଭାବେ ଘଟିବାର ଆଶଙ୍କା ଦେଖାଯାଉଛି । ଜଣେ ଇଂରାଜୀ ସାହିତ୍ୟ ବା ବଙ୍ଗଳା ସାହିତ୍ୟ ପଢୁଥିବା ଛାତ୍ର ଗୋଟିଏ ଉଚ୍ଚକୋଟୀର ଗଳ୍ପ, ଉପନ୍ୟାସ, ନାଟକ, କବିତା ବା ମନନଧର୍ମୀ ପ୍ରବନ୍ଧଟିଏ ପଢ଼ି ଯେତେ ସହଜରେ ତାର ମର୍ମ ବୁଝିପାରେ ଓ ତାର ଭାବରେ ହାର କରିପାରେ, ଓଡ଼ିଆ ସାହିତ୍ୟ ପଢୁଥିବା ଛାତ୍ରଟି ଭିତରେ ସେ ସାମର୍ଥ୍ୟ ପ୍ରାୟତଃ ଦେଖାଯାଏ ନାହିଁ ।

ଏହାର ତିନୋଟି କାରଣ । ପ୍ରଥମରେ, ଓଡ଼ିଆ ସିଲାବସ୍ ଅତି ଲଘୁ । ଦ୍ୱିତୀୟରେ, ଅନ୍ୟାନ୍ୟ ବିଭାଗରେ ପଢୁଥିବା ଭଳି ଅନେକ ଭଲ ମେଧାବୀ ଛାତ୍ର ଓଡ଼ିଆ ପଢ଼ିବାକୁ ଆଗ୍ରହୀ ହେଉନାହାନ୍ତି । ତୃତୀୟରେ, ଭାଷା ଓ ସାହିତ୍ୟ ଯୋଉ ରୀତିରେ ପଢ଼ା ହେବାର କଥା, ତାହା ସେ ଭାବରେ ପଢ଼ାଯାଇ

ପାରୁନାହିଁ । ସାରଳା ଦାସଙ୍କ ମହାଭାରତ ହେଉ କି ଜଗନ୍ନାଥ ଦାସଙ୍କ ଭାଗବତ ହେଉ, ଗୋପୀନାଥ ମହାନ୍ତିଙ୍କ ଉପନ୍ୟାସ ହେଉ, କି ସଚ୍ଚିରାଉତରାୟଙ୍କ କବିତା ହେଉ, କୁଞ୍ଜବିହାରୀ ଦାଶଙ୍କ ଗାଉଁଲି ଗୀତ ହେଉ କି ଉପେନ୍ଦ୍ର ଭଞ୍ଜଙ୍କ ଲାବଣ୍ୟବତୀ ହେଉ— ସେଗୁଡ଼ିକୁ ପଢ଼ାଇବାର ରୀତି ଯଦି ଉନ୍ନତ ନ ହୁଏ ଏବଂ ଆମର ଅନ୍ୟାନ୍ୟ ଜ୍ଞାନବିଜ୍ଞାନ ସଙ୍ଗେ ସେଗୁଡ଼ିକ ଭିତରେ ନିହିତ ଚିନ୍ତା ଓ ଅନୁଭୂତିଗୁଡ଼ିକୁ ଯଦି ସଙ୍ଗତ ଓ ସମନ୍ୱିତ କରାଯାଇ ପଢ଼ା ନ ଯାଏ, ତେବେ ଆମର ଛାତ୍ରଛାତ୍ରୀଙ୍କ ପକ୍ଷରେ ତାହା କୋଉ ଦିଗରୁ ଲାଭଜନକ ହେବନାହିଁ । ଏ ସମ୍ବନ୍ଧେ ଏତେ କଥା କହିବାର ଉଦ୍ଦେଶ୍ୟ ହେଲା— ବର୍ତ୍ତମାନ କଲେଜ ସ୍ତରରେ ଯୋଉ ଓଡ଼ିଆ ଭାଷା ଓ ସାହିତ୍ୟ ପଢ଼ାଯାଉଛି, ତା'ର ସିଲାବସ୍ ଓ ତା'ର ପଠନପ୍ରଣାଳୀକୁ ଆହୁରି ଉନ୍ନତ ଓ ଉପଯୋଗୀ କରାଯାଉ । ତା'ହେଲେ ଯାଇ ଆମ ଭାଷାଶିକ୍ଷାର ମାନ ବୃଦ୍ଧି ପାଇବ ଓ ଏ ଭାଷା ସାହିତ୍ୟ ପ୍ରତି ସମସ୍ତଙ୍କର ଆଗ୍ରହ ବୃଦ୍ଧି ପାଇବ ।

ରାଜ୍ୟର ପ୍ରାୟ ସମସ୍ତ ବୁଦ୍ଧିଜୀବୀ, ନେତୃବର୍ଗ ଓ ସର୍ବସାଧାରଣ ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରତି ଯୋଉ ମନୋଭାବ ପୋଷଣ କରିଛନ୍ତି, ସେହି ଅନୁଯାୟୀ ଏ ଭାଷା ସାହିତ୍ୟର ଅବସ୍ଥା ଗତି କରିଛି । ସମସ୍ତେ ପ୍ରଥମେ ମନ ଭିତରେ ଏକ ଦୃଢ଼ ଇଚ୍ଛା ଓ ଆସ୍ଥା ପୋଷଣ କରିବା ଉଚିତ ଯେ ଆମେ ଆମର ମାତୃଭାଷାକୁ ଉନ୍ନତ ସ୍ତରକୁ ନେବୁ ହିଁ ନେବୁ । ଏ କଥା ସ୍ଥିର ହେଲେ— ଆମର କାର୍ଯ୍ୟକ୍ରମ ମଧ୍ୟ ତଦ୍ରୂପ ହେବ । ବର୍ତ୍ତମାନ ଓଡ଼ିଆ ଭାଷା ମାଧ୍ୟମରେ ଉଚ୍ଚଶିକ୍ଷା ଦିଆଯିବାର ପ୍ରଶ୍ନ ଅପେକ୍ଷା ଆଗ ଆମର ସରକାର ପ୍ରଶାସନିକ କ୍ଷେତ୍ରରେ ଓଡ଼ିଆ ଭାଷାର ପ୍ରଚଳନ କରିବା ଉଚିତ ହେବ । ଆମ ପିଲାମାନେ ଓଡ଼ିଆ ଭାଷା ଶିଖିବାକୁ ମଙ୍ଗୁ ନାହାନ୍ତି ମୁଖ୍ୟତଃ ଏହି କାରଣରୁ । ଏ ଭାଷା ଅଧିକ ଶିକ୍ଷାକରି ଲାଭ କ'ଣ ହେବ ? ବର୍ତ୍ତମାନ ଓ.ଏ.ଏସ୍. ଏବଂ ଆଇ.ଏ.ଏସ୍. ଆଦି ପରୀକ୍ଷାରେ ଓଡ଼ିଆ ଭାଷାକୁ ଖୁବ୍ ସ୍ଥାନ ଦିଆଗଲାଣି । ଯଦି ଆମର ପ୍ରଶାସନିକ କ୍ଷେତ୍ରରେ ଖୁବ୍ ଶୀଘ୍ର ଓଡ଼ିଆ ଭାଷା ପ୍ରଚଳନ କରା ନ ଯାଏ, ତେବେ ଆମ ପିଲାମାନେ ଓଡ଼ିଆ ପଢ଼ିବାରେ ଆଦୌ ଆଗ୍ରହ ଦେଖାଇବେ ନାହିଁ । ପ୍ରଶାସନିକ କ୍ଷେତ୍ରରେ ଏବଂ ସର୍ବଭାରତୀୟ ଚାକିରିବାକିରିରେ ଓଡ଼ିଆ ଏକ ମାଧ୍ୟମ ହେଲା ପରେ ଏବଂ ଓଡ଼ିଆ ମଧ୍ୟ ଏକ ବିଷୟ ହେଲା ପରେ ଓଡ଼ିଆକୁ କିପରି କଲେଜ ସ୍ତରରେ ପଢ଼ାଯିବ, ତାହା ବିଚାରିବାର କଥା । ବର୍ତ୍ତମାନ ଯେଉଁ ଶହେ ନମ୍ବରିଆ ଗୋଟିଏ ପେପର ଅଛି, ତା' ସ୍ଥଳେ ଦୁଇ ଶହ ନମ୍ବରର ଦୁଇଟି ପେପର ନିଶ୍ଚିତଭାବେ ବାଧ୍ୟତାମୂଳକ ହେବା ଉଚିତ । ମାତ୍ର ତତ୍ ସଙ୍ଗେ ସଙ୍ଗେ ମଧ୍ୟ ସିଲାବସ୍‌ର ନବୀକରଣ ଓ ଯୁଗୋପଯୋଗୀ ହେବା ଉଚିତ । ସେହିପରି ସ୍ୱେଚ୍ଛାଧୀନ ଓଡ଼ିଆ ପେପରଗୁଡ଼ିକର ସିଲାବସକୁ ମଧ୍ୟ ଖୁବ୍ ପରିବର୍ତ୍ତନ କରିବା ଦରକାର ପଡ଼ିଲାଣି । ଓଡ଼ିଆ ଏମ୍.ଏ.ରେ ମଧ୍ୟ ସେହି ଚିରାଚରିତ ଏଣୁଷ୍ଟ ତେଣୁଷ୍ଟ ସିଲାବସ ଆଉ ଚଳିବ ନାହିଁ ଏବଂ ସମସ୍ତଙ୍କ ପାଇଁ ଓଡ଼ିଆ ଏମ୍.ଏ. ବିଭାଗରେ ସାହାଣ ମେଲା ହେବା ଅନୁଚିତ । ବି.ଏ. ପର୍ଯ୍ୟନ୍ତ ଯେଉଁମାନଙ୍କର ଇଂରାଜୀରେ ଅନ୍ତତଃ ଚାଳିଶି ପଇଁଚାଳିଶି ନମ୍ବର ଥିବ କିମ୍ବା ସଂସ୍କୃତରେ ଚାଳିଶି ପଇଁଚାଳିଶି ନମ୍ବର ଥିବ ଓ ସର୍ବମୋଟ ଶତକଡ଼ା ୪୮ ଭାଗ ନମ୍ବର ପାଇଥିବା ପିଲାଙ୍କ ପାଇଁ ଓଡ଼ିଆ ବିଭାଗ ଏମ୍.ଏ. ପଢ଼ିବାକୁ ଅନୁମତି ଦେବା ଉଚିତ । ଓଡ଼ିଆ ଅନର୍ସ ଏବଂ ଏମ୍.ଏ.ରେ ଇଂରାଜୀ

ଓ ସଂସ୍କୃତ ସାହିତ୍ୟର ଇତିହାସ ସଙ୍ଗେ ପ୍ରାଚ୍ୟ ଓ ପାଶ୍ଚାତ୍ୟ କାବ୍ୟତତ୍ତ୍ୱ ଓ ଆଲୋଚନାରୀତି ପୁଙ୍ଖାନୁପୁଙ୍ଖ ଭାବେ ପଢ଼ା ହେବା ଉଚିତ। ଆସନ୍ତା  କେତେବର୍ଷ ପର୍ଯ୍ୟନ୍ତ ଓଡ଼ିଆ ଏମ୍.ଏ.ରେ ଏହି ସଂସ୍କୃତ ଓ ଇଂରାଜୀ ବିଷୟଗୁଡ଼ିକୁ ଇଂରାଜୀ ଓ ସଂସ୍କୃତ ଅଧ୍ୟାପକମାନେ ପଢ଼ାଇଲେ ଖୁବ୍ ଭଲ ହେବ।

କଲେଜସ୍ତରରୁ ପୁଣି ତଳକୁ ଓହ୍ଲାଇ ସ୍କୁଲ ସ୍ତରକୁ ଆସିଲେ ଦେଖାଯାଏ, ସ୍କୁଲମାନଙ୍କରେ ଓଡ଼ିଆ ଭାଷା ଓ ସାହିତ୍ୟ ଉଦ୍ଦେଶ୍ୟରେ ଯେଉଁ ସିଲାବସ୍ ଓ ପାଠ୍ୟପୁସ୍ତକ ଅଛି, ତାହା ବେଶ ଉଚ୍ଚକୋଟୀର। ମାତ୍ର ସେଗୁଡ଼ିକୁ କିପରି ପଢ଼ାଇବାକୁ ହେବ, ସେ ସମ୍ବନ୍ଧେ ଓଡ଼ିଆ ପଢ଼ାଉଥିବା ଶିକ୍ଷକମାନଙ୍କୁ  ମଧ୍ୟେ ମଧ୍ୟେ ସାମୟିକ ତାଲିମ ଦିଆଗଲେ ଭଲ ହୁଅନ୍ତା।

ବିଶ୍ୱବିଦ୍ୟାଳୟଗୁଡ଼ିକ, ଓଡ଼ିଆ ସାହିତ୍ୟ ଏକାଡେମୀ ଏବଂ ପାଠ୍ୟପୁସ୍ତକ ବ୍ୟୁରୋ ଓଡ଼ିଆ ଭାଷାରେ ବିଭିନ୍ନ ଜ୍ଞାନିବିଜ୍ଞାନ ସମ୍ପର୍କୀୟ ମୌଳିକ ପୁସ୍ତକଗୁଡ଼ିକୁ ପ୍ରଥମେ ଉପଯୁକ୍ତ ଲେଖକମାନଙ୍କ ଦ୍ୱାରା ଅନୁବାଦ କରିବାରେ ଆହୁରି ଅଧିକ ତତ୍ପରତା ଦେଖାଇବା ଉଚିତ। ଏ ବିଷୟରେ ରାଜ୍ୟ ସରକାର୍ ମଧ୍ୟ ଅକୁଣ୍ଠ ଭାବେ ଅର୍ଥବ୍ୟୟ କରିବା କଥା। ଆଜି ଲେଖକ ଓ ଅଧ୍ୟାପକଗୋଷ୍ଠୀ ମଧ୍ୟ ସବୁ ବିଭାଗରେ ପ୍ରଥମେ ମାତୃଭାଷାରେ ମୌଳିକ ମନନଶୀଳ ପ୍ରବନ୍ଧପୁସ୍ତକମାନ ରଚନା କରିବାରେ ବ୍ରତୀ ହୁଅନ୍ତୁ। ଓଡ଼ିଆ ଭାଷାରେ ବାହାରୁଥିବା ପତ୍ରପତ୍ରିକାରେ ଦର୍ଶନ, ମନୋବିଜ୍ଞାନ, ଅର୍ଥନୀତି ସମ୍ବନ୍ଧୀୟ ବା ସମାଜବିଜ୍ଞାନ ସମ୍ବନ୍ଧୀୟ ରଚନା ପ୍ରାୟ ପ୍ରକାଶ ପାଏନାହିଁ। ବର୍ତ୍ତମାନ ଓଡ଼ିଶାରେ ଶତାଧିକ କଲେଜରେ ସହସ୍ରାଧିକ ବିଦ୍ୱାନ ଅଧ୍ୟାପକବୃନ୍ଦ ବିଭିନ୍ନ ଜ୍ଞାନବିଜ୍ଞାନ ଶିକ୍ଷା ଦେଉଛନ୍ତି ; ମାତ୍ର ଓଡ଼ିଆ ଭାଷାରେ ସେମାନଙ୍କ ଭିତରୁ କେତେକ ପ୍ରବନ୍ଧଟିଏ ଲେଖନ୍ତି ? ଗୋଟିଏ ମାତୃଭାଷାର ଉନ୍ନତି କେବଳ ସରକାର ଉପରେ ନିର୍ଭର କରେନାହିଁ। ଆମ୍ଭମାନଙ୍କର ଶ୍ରଦ୍ଧା, ଅନୁରାଗ, ତ୍ୟାଗ ଓ ପ୍ରତ୍ୟାଶାବିହୀନ ସେବା  ଉପରେ ବେଶି ଭାଗ ନିର୍ଭର କରେ ମାତୃଭୂମି ଓ ମାତୃଭାଷାର ଉନ୍ନତି। ଆମର ଲକ୍ଷ ଲକ୍ଷ ଓଡ଼ିଆ ଭାଇଭଉଣୀ ଇଂରାଜୀ ଜାଣନ୍ତି ନାହିଁ ଅଥବା ଖୁବ୍ କମ୍ ଜାଣନ୍ତି। ସେମାନଙ୍କୁ ଅଧିକ ଶିକ୍ଷିତ ଓ ଜ୍ଞାନବନ୍ତ କରାଇବାର୍ ନୈତିକ ଦାୟିତ୍ୱ ଆମର ଅଧ୍ୟାପକ ଓ ଲେଖକମାନଙ୍କର ମୁଣ୍ଡ ଉପରେ ନାହିଁ କି ? ଓଡ଼ିଆ ଭାଷା ମାଧ୍ୟମରେ ବହୁ ବିଷୟରେ ବହି ଲେଖି ଆମେ ଯଦି ଗ୍ରାମ ଓ ସହରର ପାଠାଗାରମାନଙ୍କୁ ଭରିଦେଉ ଓ ଓଡ଼ିଆମାନଙ୍କ ଭିତରେ ନାନା ବିଷୟ ପଠନଲାଗି ସ୍ପୃହା ଜାଗ୍ରତ କରିଦେଉ, ତେବେ ଯାଇ ଏ ଭାଷାର ଯଥାର୍ଥ ଉନ୍ନତି ହୋଇପାରିବ ଓ ଅଳ୍ପ କେତେବର୍ଷ ମଧ୍ୟରେ ତାହା ଉଚ୍ଚଶିକ୍ଷାର ମାଧ୍ୟମ ହେବାରେ ଯଥାର୍ଥ ଯୋଗ୍ୟତା ଅର୍ଜନ କରିପାରିବ। ଓଡ଼ିଶା ସାହିତ୍ୟ ଏକାଡ଼େମୀ ସଂସ୍ଥା ତରଫରୁ ବିପୁଳ ଅର୍ଥବ୍ୟୟରେ ଏକ ଅନୁବାଦ ବିଭାଗ ଖୋଲାଯିବା ଉଚିତ ଏବଂ ସରକାର ଏଥିରେ ବିପୁଳ ଅର୍ଥବ୍ୟୟ କରିବାକୁ କୁଣ୍ଠିତ ହେବା ଉଚିତ ନୁହେଁ।

ଆଉ ଗୋଟିଏ କଥା ମନେରଖିବାର ଅଛି— ଆମେ ଇଂରାଜୀକୁ ଛାଡ଼ିପାରିବୁ ନାହିଁ  ବରଂ ଓଡ଼ିଆମାନେ ଇଂରାଜୀ ଭାଷାରେ ଖୁବ୍ ବ୍ୟୁତ୍ପତ୍ତି ଲାଭ କରିବା ଉଚିତ। ଇଂରାଜୀକୁ ବର୍ତ୍ତମାନ ଯୁଗରେ

ଆଉ ବିଦେଶୀ ଭାଷା କହି ହେବନାହିଁ । ଏହା ଆମ ପକ୍ଷରେ ବର୍ତ୍ତମାନ ଆନ୍ତର୍ଜାତିକ ଭାଷା ଓ ଉପମାତୃଭାଷା କହିଲେ ଅତ୍ୟୁକ୍ତି ହେବନାହିଁ । ଆମ ପିଲାଏ ମୂଳରୁ ଶିକ୍ଷା ଆରମ୍ଭରୁ ମାଟ୍ରିକ୍ ପର୍ଯ୍ୟନ୍ତ ଓଡ଼ିଆ, ସଂସ୍କୃତ ଓ ଇଂରାଜୀ ଭାଷା— ଏହି ତିନୋଟି ଭାଷାକୁ ଖୁବ୍ ଭଲରୂପେ ଶିଖିନେବା ଉଚିତ । ଇଂରାଜୀକୁ ଛାଡ଼ିଦେଲେ ଜାତି ନିଶ୍ଚୟ ମୂର୍ଖ ହୋଇଯିବ । ଇଂରାଜ ଓ ସଂସ୍କୃତ ଭାଷା ସାହାଯ୍ୟରେ ହିଁ ଆମେ ନିଜେ ଜ୍ଞାନବନ୍ତ ହୋଇପାରିବୁ ଓ ଆମର ମାତୃଭାଷାକୁ ଠିକ୍ ଭାବେ ବିକଶିତ ଓ ସମୃଦ୍ଧ କରିପାରିବୁ । ଏ ତିନୋଟି ବାଧ୍ୟତାମୂଳକ ଭାଷା ବ୍ୟତୀତ ମଧ୍ୟ ଆମର ଅଧିକ ଧୀମାନ ପିଲାମାନେ ପୃଥିବୀର ଓ ଭାରତୀୟ ଅନ୍ୟାନ୍ୟ ଭାଷା ଶିକ୍ଷା କରିବାରେ ଆଗ୍ରହୀ ହୁଅନ୍ତି । ଦୁଃଖର କଥା— ଆମ ରାଜ୍ୟରେ ଅନ୍ୟାନ୍ୟ ଭାରତୀୟ ଭାଷା ଓ ବୈଦେଶିକ ଭାଷା ଶିଖିବାର ବ୍ୟବସ୍ଥା ଥିଲେ ମଧ୍ୟ ଆମ ପିଲାଏ ବହୁସଂଖ୍ୟାରେ ସେ ଭାଷାମାନ ଶିଖୁନାହାନ୍ତି । ଓଡ଼ିଆମାନେ କୂପମଣ୍ଡୁକତ୍ୱ ଛାଡ଼ି ଏକ ବିସ୍ତାରିତ ଦିଗନ୍ତ ଭିତରକୁ କ୍ଷେପି ନ ଗଲେ ଏ ଜାତିର ମନୋବୃତ୍ତି ଖୁବ୍ ଛୋଟିଆ ହୋଇଯିବ । ଛୋଟିଆ ଛୋଟିଆ ଉଦ୍ଦେଶ୍ୟ ମନରେ ପୋଷଣ କରି, ଅଳ୍ପିକିଆ ଜୀବନଯାପନ ଉଦ୍ଦେଶ୍ୟରେ ପରିଶ୍ରମକାତର ହୋଇ ଯଦି ଆମେ ଖାଲି ଓଡ଼ିଆ ଓଡ଼ିଆ ହେଉ, ତେବେ ଅଚିରେ ଆମେ ଗୋଟିଏ ଗୋଟିଏ ତୃତୀୟ ଶ୍ରେଣୀର ଜାତି ହୋଇଯିବୁ ।

ପରିଶେଷରେ ଆମର ଏଇ ଆଶା ଯେ, ଓଡ଼ିଆ ଭାଷା କେବଳ କେତେକଣ ଗଳ୍ପକବିତାପଢ଼ାଳି ବା କେତେଜଣ ଓଡ଼ିଆ ଭାଷାର ଛାତ୍ରଛାତ୍ରୀ ଓ ଅଧ୍ୟାପକ ଅଧ୍ୟାପିକା ବା କେତେକଣ ଗଳ୍ପ, କବିତା ଲେଖକଙ୍କର ଭାଷା ହୋଇ ନ ରହୁ । ଆମର ବିପୁଳ ଆନ୍ତରିକ ଶ୍ରଦ୍ଧା, ପରିଶ୍ରମ ଓ ତ୍ୟାଗ ବଳରେ ଆମେ ଏ ଭାଷାକୁ ଏପରି ସମୃଦ୍ଧ ଓ ସର୍ବଗ୍ରହଣକ୍ଷମ ଓ ସର୍ବପ୍ରକାଶକ୍ଷମ କରିବା ଯେ ଯେପରି କି ଖୁବ୍ ଶୀଘ୍ର ପ୍ରତ୍ୟେକ ଓଡ଼ିଆ ସେ ମୋଚି ହେଉ ବା କାରିଗର ହେଉ, ଡାକ୍ତର, ଇଞ୍ଜିନିୟର ହେଉ ବା କୃଷକ ହେଉ, ସେଥିରେ ସ୍ୱଚ୍ଛନ୍ଦ ଭାବେ ଆତ୍ମପ୍ରକାଶ କରିପାରିବେ ଓ ସେହି ଭାଷା ମାଧ୍ୟମରେ ଆପଣା ଆପଣାର ବୃତ୍ତି ଓ ପ୍ରବୃତ୍ତି ଅନୁଯାୟୀ ଜୀବନଧାରଣ ଉପଯୋଗୀ ଜ୍ଞାନ ଅର୍ଜନ କରିପାରିବେ ।



# ଦୁଇ ମୋଚି–
# ମଧୁସୂଦନ ଓ ମୋହନ ଦାସ

ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣା

*ମଧୁବାବୁ ଓ ମହାତ୍ମାଗାନ୍ଧୀଙ୍କ ଆଦର୍ଶରେ ନିଜ ପରିବାରକୁ ଗଢ଼ିବାକୁ ଯାଇ ପ୍ରାଚୁର୍ଯ୍ୟରୁ ହସି ହସି ଦାରିଦ୍ର୍ୟ ବରଣ କରିଥିବା ପରିବାରର ଶେଷ ନାୟିକା ହେଉଛନ୍ତି ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣା । ତାଙ୍କର ସାରସ୍ୱତ ସୃଷ୍ଟି'ଅମୃତ ଅନୁଭବ' ପୁସ୍ତକଟି ତାଙ୍କ ଅମୂଲ୍ୟ ଅନୁଭୂତିକୁ ଏଭଳି ଅନୁପମ ରୀତିରେ ରୂପାୟିତ କରିଛି ଯେ ସେ ପୁସ୍ତକଟି ତ୍ୟାଗ, ତିତୀକ୍ଷା, ସେବା ଓ ସହନଶୀଳତାର ମୂର୍ତ୍ତିମନ୍ତ ଜ୍ୱଳନ୍ତ ପ୍ରତୀକ କହିଲେ ଅତ୍ୟୁକ୍ତି ହେବନାହିଁ । ଜୀବନର ସାୟାହ୍ନରେ ମଧ୍ୟ ସେହି ମହୀୟସୀ ମହିଳାଙ୍କର ସାନ୍ନିଧ୍ୟ ଟିକେ ପାଇବା ପାଇଁ ଅନେକ ଉଚ୍ଚ ସମ୍ମାନିତ ବ୍ୟକ୍ତି ନିଜର ସୌଭାଗ୍ୟ ବୋଲି ଭାବିଥା'ନ୍ତି । 'ମୋ ଓଡ଼ିଶା'ର ଅନୁରୋଧରେ ୨୦୦୯ ସାରସ୍ୱତ ସଂକଳନ ପାଇଁ ତାଙ୍କ କଲମରୁ "ଦୁଇ ମୋଚି— ମଧୁସୂଦନ ଓ ମୋହନ ଦାସ" ଆପଣମାନଙ୍କ ପାଇଁ.....*

ମଧୁ ଓ ମୋହନ ଦୁହେଁ ଓକିଲ ଥିଲେ । ଜଣେ ରହୁଥିଲେ କଟକ ସହରରେ, ଆଉ ଜଣେ ରହୁଥିଲେ ଗୁଜୁରାଟର ସାବରମତୀ ନଦୀ କୂଳରେ । ଦୁହେଁଯାକ ଦେଶପ୍ରେମରେ ପାଗଳ । ଜଣେ ଓଡ଼ିଶାର ଗାଁଗହଳର କାରିଗରଙ୍କ କଲ୍ୟାଣ ସାଧନ ପାଇଁ ସର୍ବସ୍ୱାନ୍ତ ହେଲେ । ଆଉ ଜଣକ 'ଚାଷୀମୂଲିଆଙ୍କ ଜୀବନ ହିଁ ଯଥାର୍ଥ ଜୀବନ' ଘୋଷଣା କରି ସେମାନଙ୍କ ସହିତ ସମରସ ହେବା ପାଇଁ ପାଞ୍ଚହାତିଆ ଆଣ୍ଠୁ ନ ଲୁଚା ଖଦୀ ପିନ୍ଧି ବୁଲିଲେ ।

ଦୁହିଁଙ୍କର ପ୍ରଥମ ଦେଖାସାକ୍ଷାତ୍ ହେଲା ୧୯୨୫ ମସିହା ଅଗଷ୍ଟ ମାସ ଉଣେଇଶ ତାରିଖରେ । ମୋହନ ସେଦିନ ମଧୁଙ୍କର ଅତିଥି ହେଲେ । ସେଦିନ କଟକ ମଧୁକୋଠି ହାତକଟା ସୂତାର ଧଳା ଖଦୀରେ ଆବୃତ ହୋଇ ଶୁଭ୍ର ବସ୍ତ୍ରନଗରୀ ପାଲଟି ଯାଇଥିବାର ଦୃଶ୍ୟ ଏ ଆଖି ଦେଖିଛି । ପ୍ରଥମ ଦର୍ଶନରେ ହିଁ ଦୁହେଁ ଦୁହିଁଙ୍କର ଅତି ଆପଣାର ହୋଇଗଲେ ।

ମଧୁସୁଦନ ତଥାକଥିତ ଅନୁନ୍ନତ ଓଡ଼ିଶାର କାରିଗରଙ୍କର ସୁନାରୂପାର ହାତ ତିଆରି ତାରକସି କାମ ମୋହନଙ୍କୁ ଦେଖାଇଲେ । ତାହା ପରେ ତାଙ୍କର ପ୍ରାଣପ୍ରିୟ ଜୋତା କାରଖାନା 'ଉତ୍କଳ ଟ୍ୟାନେରୀ'କୁ ତାଙ୍କୁ ନେଇଗଲେ । ମଧୁସୂଦନ ମଧ୍ୟେ ମଧ୍ୟେ କାରିଗରଙ୍କ ସଙ୍ଗେ ମିଶି ଜୋତା ତିଆରି କରୁଥିଲେ । ମୋହନ ଦାସ ଦକ୍ଷିଣ ଆଫ୍ରିକାରେ ତାଙ୍କ ଦ୍ୱାରା ସ୍ଥାପିତ 'ଟଲଷ୍ଟୟ୍ ଫାର୍ମ' ରେ ଜୋତା ସିଲେଇ କରୁଥିଲେ ।

ସେ ନିଜ ହାତ ତିଆରି ହଳେ ଚଟିଜୋତା ଦକ୍ଷିଣ ଆଫ୍ରିକାର ମୁଖ୍ୟ ଶାସନକର୍ତ୍ତା ଜେନେରାଲ ସ୍ମଟ୍‌ସଙ୍କୁ ମଧ୍ୟ ଉପହାର ଦେଇଥିଲେ ।

ଦୁହେଁ କଥାବାର୍ତ୍ତା ହେଲାବେଳେ ମଧୁସୂଦନ ମୋହନ ଦାସଙ୍କୁ କହିଲେ ଯେ "ମଣିଷର ହାତ ଆଙ୍ଗୁଳିର ତାହାର ମସ୍ତିଷ୍କ ସହିତ ଏକ ଅବିଚ୍ଛେଦ୍ୟ ସଂପର୍କ ରହିଛି । ମଣିଷର ମସ୍ତିଷ୍କ ତା'ର ନବ ନବ ଉନ୍ମେଷଶାଳିନୀ ଶକ୍ତି ଯୋଗୁ ଯାହା କଳ୍ପନା କରେ, ତାହାର ହାତ ଆଙ୍ଗୁଳି ତାହାକୁ ସାକାର କରେ । ତେଣୁ ମଣିଷର ମସ୍ତିଷ୍କ ସହିତ ହାତକାମ ବା ହାତ ଆଙ୍ଗୁଳିର ସମନ୍ୱୟ ଦ୍ୱାରା ହିଁ ତାହାର ସର୍ବାଙ୍ଗୀନ ବିକାଶ ହୋଇପାରିବ ।" ଏହା କହି ସେ ୧୯୧୦ ମସିହାରେ ବଙ୍ଗ ପ୍ରଦେଶର ବ୍ୟବସ୍ଥାପକ ସଭାର ସଭ୍ୟଭାବରେ ତା'ର ଏକ୍‌ଜିକ୍ୟୁଟିଭ୍ କାଉନ୍‌ସିଲରେ ଶିକ୍ଷା ସମ୍ବନ୍ଧୀୟ ବିଲ୍ ଉପରେ ଯେଉଁ ଭାଷଣ ଦେଇଥିଲେ, ତାହାର ସାରମର୍ମ ମୋହନ ଦାସଙ୍କୁ ଶୁଣାଇ କହିଲେ, "ହଳ କଲାବେଳେ ବଳଦ ପଛେ ପଛେ ଚାଲୁଥିବା ଚାଷୀର ହାତ ଆଙ୍ଗୁଠିର ବିକାଶ ପାଇଁ ଯଦି ଶିକ୍ଷା ଯୋଜନା ନ ହେବ, ତେବେ କାଳକ୍ରମେ ଚାଷୀର ମସ୍ତିଷ୍କ ବଳଦର ମସ୍ତିଷ୍କ ପରି ହୋଇଯିବ ।" ଏ ସିଦ୍ଧାନ୍ତଟି ମୋହନ ଦାସଙ୍କ ମନକୁ ଛୁଇଁଗଲା । ଓଡ଼ିଶାରୁ ଫେରିଯାଇ ସେ ତାଙ୍କ ସତ୍ୟାଗ୍ରହ ଆଶ୍ରମରେ ଚର୍ମାଳୟ ସ୍ଥାପନ କଲେ ଏବଂ ଏହା ବିଷୟରେ ମଧୁସୂଦନଙ୍କ ସଙ୍ଗେ ନିୟମିତ ପତ୍ର ବ୍ୟବହାର କଲେ । ଏ ସିଦ୍ଧାନ୍ତକୁ ମୋହନଦାସ କିପରି ଭାବରେ ଗ୍ରହଣ କରିଥିଲେ, ତାହା ସର୍ବଭାରତୀୟ ଶିକ୍ଷା ସମ୍ମିଳନୀରେ ତା. ୨୮.୧୦.୧୯୩୭ ରେ ସେ ଦେଇଥିବା ଭାଷଣରୁ ପ୍ରମାଣିତ ହୋଇଥାଏ ।

ଗାନ୍ଧିଜୀ କହିଲେ– "The late Madhusudan Das is a lawer, but he was convinced that without the use of our hands and legs our brain would be atrophied and even it worked it would be Home of Suten. Tolstoy has taught me same lesson through the several of his tales."

ଦୁହିଁଙ୍କର ଏହି ସିଦ୍ଧାନ୍ତ ଉପରେ ପ୍ରତିଷ୍ଠିତ ଏହି ବିଚାର ଶିକ୍ଷାବିତ୍‌ମାନଙ୍କର ବିଚାରଧାରାକୁ ପ୍ରଭାବିତ କରିଥିବାର ଦେଖାଯାଇଥାଏ ।



# ବୀର ସୁରେନ୍ଦ୍ର ସାଏ

ଶ୍ରୀ ନିରଞ୍ଜନ ଦ୍ୱିବେଦୀ

*ବିଦେଶୀ ଇଂରେଜମାନଙ୍କ ଅବିଚାରିତା, ଓଡ଼ିଶା ପ୍ରତି ହେୟ ମନୋଭାବର ପ୍ରତିବାଦ କରିବାକୁ ଯାଇ ଶେଷରେ ସେମାନଙ୍କୁ ବିତାଡ଼ନ କରିବାକୁ ଓଡ଼ିଶାରେ ଯେଉଁ ବ୍ୟାପକ ପ୍ରତିବାଦ, ବିକ୍ଷୋଭ, ଆନ୍ଦୋଳନ ଓ ବିଦ୍ରୋହ ଦେଖା ଯାଇଥିଲା, ତା'ର ନେତୃତ୍ୱ ନେଇଥିବା ବିପ୍ଲବୀମାନଙ୍କ ମଧ୍ୟରେ ବୀର ସୁରେନ୍ଦ୍ର ସାଏ ଥିଲେ ଅନ୍ୟତମ। ଜଣେ ଗବେଷକ ଭାବେ ଦେବଗଡ଼ର ଜ୍ୟୋତିର୍ବିଦ୍ ବାଣୀଗୌରବ ଶ୍ରୀ ନିରଞ୍ଜନ ଦ୍ୱିବେଦୀ ବୀର ସୁରେନ୍ଦ୍ର ସାଏଙ୍କ ବିପ୍ଲବର ପୂର୍ବାପର ଘଟଣାର କଞ୍ଚିତ୍ ବିବରଣୀ ପ୍ରଦାନ କରିଛନ୍ତି "ବୀର ସୁରେନ୍ଦ୍ର ସାଏ" ଲେଖାଟିରେ ଆପଣମାନଙ୍କ ପାଇଁ......*

ଓଡ଼ିଶା ପ୍ରଦେଶ ଭାରତବର୍ଷରେ ଇଂରେଜମାନଙ୍କ ବିରୋଧରେ ଗଣ ବିଦ୍ରୋହ କରିବାରେ ସର୍ବପ୍ରଥମ ରାଜ୍ୟ। ଊନବିଂଶ ଶତାବ୍ଦୀ ପ୍ରଥମ ଦଶକରେ ଖୋର୍ଦ୍ଧା ପାଇକ ବିଦ୍ରୋହ ଏବଂ ଘୁମୁସର ପ୍ରଜା ଆନ୍ଦୋଳନ ହିଁ ଇଂରେଜ ଶକ୍ତି ବିରୋଧରେ ପ୍ରଥମ ସ୍ୱର ଉତ୍ତୋଳନର ପ୍ରମାଣ। ଇଂରେଜ ଶାସନ ଶୃଙ୍ଖଳରୁ ସ୍ୱର୍ଗାଦପି ଗରୀୟସୀ ଜନନୀ ଜନ୍ମଭୂମି ଭାରତବର୍ଷକୁ ମୁକ୍ତ କରିବା ନିମିତ୍ତ ୧୮୫୭ ମସିହାରେ ସିପାହୀ ବିଦ୍ରୋହ ସମୟରୁ ପ୍ରଥମ ସଂଘବଦ୍ଧ ଉଦ୍ୟମ ଆରମ୍ଭ ହୋଇଥିଲା। ଏହି ଗଣ ବିପ୍ଲବରେ ନାନା ସାହେବ, ତାନ୍ତିଆ ଟୋପି, ବାହାଦୁର ଶାହା ଓ ଝାନ୍ସୀ ରାଣୀ ଲକ୍ଷ୍ମୀବାଇଙ୍କ ସହିତ ଓଡ଼ିଶାର ବହୁ ଜାତୀୟବାଦୀ ନେତା ଯୋଗ ଦେଇଥିଲେ। ଓଡ଼ିଶାର ଚାଖି ଖୁଣ୍ଟିଆ ଓ ବୀର ସୁରେନ୍ଦ୍ର ସାଏ ଏଥିନିମିତ୍ତ ଚିରନମସ୍ୟ। ୧୮୫୮ ମସିହାରେ ଉତ୍ତର ଭାରତରେ ବିଦ୍ରୋହ ଶାନ୍ତ ହୋଇଯାଇଥିଲେ ମଧ୍ୟ ଏହା ୧୮୬୨ ମସିହା ପର୍ଯ୍ୟନ୍ତ ଓଡ଼ିଶାରେ ଜୀବନ୍ତ ଥିଲା।

ବୀର ସୁରେନ୍ଦ୍ର ସାଏ ୧୮୦୯ ମସିହାରେ ସମ୍ବଲପୁର ଜିଲ୍ଲା ଅନ୍ତର୍ଗତ ଖିଣ୍ଡାଗ୍ରାମରେ ସମ୍ବଲପୁର ରାଜବଂଶ ଛତ୍ରୀ ଚୌହାନ ବଂଶରେ ଜନ୍ମଗ୍ରହଣ କରିଥିଲେ। ୧୮୨୭ ମସିହାରେ ସମ୍ବଲପୁରର ରାଜା ଶ୍ରୀମାନ୍ ମହାରାଜ ସାଏ ପୁତ୍ରହୀନ ଭାବରେ ପ୍ରାଣତ୍ୟାଗ କଲେ। ସୁରେନ୍ଦ୍ର ସାଏ ସମ୍ବଲପୁର ରାଜଗାଦିର ଉଚିତ ଉତ୍ତରାଧିକାରୀ ହେବା ନ୍ୟାୟସଙ୍ଗତ ହେଲେ ସୁଦ୍ଧା ଇଂରେଜ ସରକାରଙ୍କ କୂଟନୀତିରେ ତାଙ୍କ ପ୍ରତି ଅନ୍ୟାୟ ଆଚରଣ କରି ବରପାଲିର ଜମିଦାର ଶ୍ରୀମାନ୍ ନାରାୟଣ ସିଂହଙ୍କୁ ସମ୍ବଲପୁରରେ ଗାଦିନସୀନ କରାଗଲା। ଇଂରେଜମାନଙ୍କ ଏତାଦୃଶ ଖାମ୍‌ଖିଆଲିଆ କାର୍ଯ୍ୟକଳାପ ସମଗ୍ର ଜିଲ୍ଲାରେ ତୀବ୍ର ଜନଅସନ୍ତୋଷର କାରଣ ହେଲା। ଗଣ୍ଡ ଓ ବିନ୍‌ଝାଲ ଜମିଦାରମାନେ ସୁରେନ୍ଦ୍ର ସାଏଙ୍କୁ ସିଂହାସନର

ପ୍ରକୃତ ଅଧିକାରୀ ରୂପେ ସମର୍ଥନ କରି ବିଦ୍ରୋହ ଆରମ୍ଭ କଲେ। ପରିଶେଷରେ ୧୮୪୦ ମସିହାରେ ସୁରେନ୍ଦ୍ର ସାଏ ଏବଂ ତାଙ୍କର ଅନ୍ୟତମ ଅନୁଜ ଉଦନ୍ତ ସାଏଙ୍କୁ ସତର ବର୍ଷ ନିମିତ୍ତ କାରାଦଣ୍ଡରେ ଦଣ୍ଡିତ କରାଗଲା। ବିହାରର ହଜାରୀବାଗ ଜେଲରେ ସୁରେନ୍ଦ୍ରସାଏ ବନ୍ଦୀ ଜୀବନଯାପନ କଲେ । ୧୮୫୭ ମସିହାରେ ସିପାହୀ ବିଦ୍ରୋହ ଆରମ୍ଭ ହେଲା। ସିପାହୀମାନେ ସମସ୍ତ ବନ୍ଦୀଙ୍କୁ ଜେଲରୁ ଖଲାସ କରିଦେବାରୁ ଓଡ଼ିଶାର ୩୭ ଜଣ ସମଗୋତ୍ରୀ ରାଜନୈତିକ ବନ୍ଦୀଙ୍କ ସହ ସୁରେନ୍ଦ୍ରସାଏ ଓ ଉଦନ୍ତ ସାଏ ମୁକ୍ତି ପାଇଲେ। କାରାଗାରରେ ଥିବା ସମୟରେ ଅନ୍ୟାନ୍ୟ ବନ୍ଦୀଙ୍କ ସହ ପରାମର୍ଶ କରି ସୁରେନ୍ଦ୍ରସାଏ ଓଡ଼ିଶାରେ ସମାନ୍ତରାଳ ବିପ୍ଳବର ଯୋଜନା ପ୍ରସ୍ତୁତ କରିଥିଲେ।

ଇଂରେଜମାନଙ୍କ ଅଧୀନସ୍ଥ ହେବାରେ ଓଡ଼ିଶା ଶେଷତମ ପ୍ରଦେଶ ତଥା ଇଂରେଜମାନଙ୍କଠାରୁ ମୁକ୍ତି ପାଇବା ନିମିତ୍ତ ସଂଗ୍ରାମ କରିବାରେ ଓଡ଼ିଶା ଭାରତବର୍ଷରେ ସର୍ବପ୍ରଥମ । ଏହି ପରିପ୍ରେକ୍ଷୀରେ ଖୋର୍ଦ୍ଧା ପାଇକ ବିଦ୍ରୋହର ନେତା ବକ୍ସି ଜଗବନ୍ଧୁ ବିଦ୍ୟାଧର, ଜୟୀ ରାଜଗୁରୁ ଏବଂ ଘୁମୁସର ପ୍ରଜା ବିଦ୍ରୋହର ନେତା ମହାବୀର ଦୋହରା ବିଶୋଇ ତଥା ସିପାହୀ ବିଦ୍ରୋହର ନେତା ଚାଖିଖୁଣ୍ଟିଆ ଏବଂ ସମ୍ବଲପୁର ଗଣ ବିପ୍ଳବର ନେତା ସୁରେନ୍ଦ୍ରସାଏ ଓଡ଼ିଆ ଜାତିର ଚିରନମସ୍ୟ।

ଦୀର୍ଘ ସତର ବର୍ଷ ବନ୍ଦୀ ଜୀବନ ବିତାଇବା ପରେ ସୁରେନ୍ଦ୍ରସାଏ ସମ୍ବଲପୁର ଆସି ୧୮୫୭ ମସିହାରେ ଭାରତୀୟ ଜାତୀୟ ବିଦ୍ରୋହର ସମାନ୍ତରାଳ ସଂଗଠନ ଓ ବିପ୍ଳବର ପୁନଃ ସୂତ୍ରପାତ କଲେ। ଏହି ମହାନ୍ ଗଣତାନ୍ତ୍ରିକ ବିପ୍ଳବରେ ଭ୍ରାତା ଉଦନ୍ତ ଓ ଧ୍ରୁବ ପୁତ୍ର ମିତ୍ରଭାନୁଙ୍କ ସହ ରମ୍ପେଲାର ଲୋକନାଥ ପଣ୍ଡା (ଗୌତିଆଁ), ଅର୍ଡାର ମୃତ୍ୟୁଞ୍ଜୟ ପାଣିଗ୍ରାହୀ, କମଲ ସିଂ ଦାଉ, କୁଞ୍ଜେଲ ସିଂ, ହାଟୀ ସିଂ, ବୈରୀ ସିଂ, ଖଗେଶ୍ୱର ଦାସ, ଶାଳିଗ୍ରାମର ବରିହା ପ୍ରମୁଖ ବଳିଷ୍ଠ ସମର୍ଥନ ତଥା ସାହାଯ୍ୟ କରିବାରେ ଅଗ୍ରଣୀ ଭୂମିକା ବହନ କରିଥିଲେ। ଇଂରେଜ ସରକାର ସର୍ବପ୍ରଥମେ ସୁରେନ୍ଦ୍ର ସାଏଙ୍କ ବିଶ୍ୱସ୍ତ ବନ୍ଧୁ ଲୋକନାଥ ଗୌତିଆଁ ଓ ମୃତ୍ୟୁଞ୍ଜୟ ପାଣିଗ୍ରାହୀଙ୍କୁ ବନ୍ଦୀ କରିବାରେ ସଫଳ ହୋଇଥିଲେ। ଏମାନଙ୍କ ମାଧ୍ୟମରେ ସୁରେନ୍ଦ୍ର ସାଏଙ୍କୁ ଧରିବା ନିମନ୍ତେ ସ୍ୱତନ୍ତ୍ର ଭାବେ ବହୁପ୍ରକାର ପ୍ରଲୋଭନ ଦେଖାଇ ପ୍ରଲୁବ୍ଧ କରିବାରେ ଇଂରେଜମାନେ ବିଫଳ ହୋଇଥିଲେ। ପରାଜିତ, ନୈରାଶ୍ୟ ଜର୍ଜରିତ ଇଂରେଜ କମାଣ୍ଡର ମେଜର ଇଇଣ୍ଟ ହାମ୍ ସମଗ୍ର ସମ୍ବଲପୁର ଜିଲ୍ଲାରେ ଅକଥନୀୟ ଦମନଲୀଳା ଚଳାଇଲେ। ଯେଉଁ ଗ୍ରାମରେ ସୁରେନ୍ଦ୍ର ସାଏ ଥିବାର ସାମାନ୍ୟ ସନ୍ଦେହ କରାଗଲା, ସେହି ଗ୍ରାମକୁ ସମ୍ପୂର୍ଣ୍ଣ ଭାବରେ ପୋଲିସ ଘେରାଉ କରି ନିଆଁ ଲଗାଇ ଭସ୍ମୀଭୂତ କରି ଦିଆଗଲା। ଉଦ୍ଦେଶ୍ୟ ଏହି ଯେ, ବହ୍ନିର ଲେଲିହାନ୍ କବଳରୁ ହୁଏତ ସୁରେନ୍ଦ୍ର ସାଏ ଜୀବନ ବିକଳରେ ଗୋପନରୁ ବାହାରି ଆସି ସୈନ୍ୟମାନଙ୍କ ହାତରେ ଧରାଦେବ କିମ୍ବା ସେଠାରେ ମୃତ୍ୟୁବରଣ କରିପାରେ। ମାତ୍ର ଏତିକିରେ ଇଂରେଜ ସୈନ୍ୟଙ୍କର ଦମନଲୀଳାର ପରିସମାପ୍ତି ଘଟି ନ ଥିଲା। ସୈନ୍ୟମାନେ ଗାଁକୁ ଗାଁ ଯାଇ ଲୁଟତରାଜ ଚଳାଇଲେ। ଯାହାକୁ ଦେଖିଲେ ଗୁଳିକରି ହତ୍ୟା କଲେ। ଯେଉଁ ବିପ୍ଳବୀମାନେ ଧରାଗଲେ, ସେମାନଙ୍କର ଜୀବନ୍ତ ଶରୀରକୁ ନିଆଁରେ ଜଳାଇ ଦିଆଗଲା। ମହିଳା,

ବାଳକମାନଙ୍କୁ ଗୁଳିକରି ନଦୀରେ ସମାଧିସ୍ଥ କରାଗଲା । ଇଂରେଜମାନଙ୍କର ପୈଶାଚିକ ବର୍ବରତା ଚରମ ସୀମାରେ ପହଞ୍ଚିଲା । ପରିଣାମସ୍ୱରୂପ ଜନପଦ ଶୂନ୍ୟ ହେଲା, ଶବ ସଂସ୍କାର କରିବା ନିମନ୍ତେ ଲୋକ ଅଭାବ ଘଟିଲା, ସଂକ୍ରାମକ ରୋଗ ବ୍ୟାପିବାରେ ଲାଗିଲା, କୃଷିକାର୍ଯ୍ୟ ହୋଇପାରିଲା ନାହିଁ । ଇଂରେଜ ସୈନ୍ୟମାନେ ଯାହାସବୁ ଥିଲା ଅପହରଣ କଲେ । ତା'ପରେ ଖଳ ଲୋକଙ୍କର ପ୍ରଭାବରେ ଚୋରି ବୃଦ୍ଧି ହେଲା । ବହୁଲୋକ ପ୍ରାଣ ବିକଳରେ ଘରଦ୍ୱାର ଛାଡ଼ି ଫୁଲଝର, ଶାରଙ୍ଗଗଡ଼, ରାୟଗଡ଼ଠାରେ ଆଶ୍ରୟ ନେଲେ । ଜିଲ୍ଲାର ଏମନ୍ତ ଦୁରବସ୍ଥା ଦେଖି ସୁରେନ୍ଦ୍ର ସାଏ ଆତ୍ମସମର୍ପଣ କରିବାକୁ ମନସ୍ଥ କଲେ ।

ସୁରେନ୍ଦ୍ରସାଏଙ୍କର ଏତାଦୃଶ ଭାବନାକୁ ତାଙ୍କ ଭାଇଦ୍ୱୟ ଏବଂ ବନ୍ଧୁଗଣ ସମର୍ଥନ କଲେନାହିଁ । ପରୀକ୍ଷାସ୍ୱରୂପ ୧୮୬୨ ମସିହା ଜାନୁଆରୀ ମାସ ୧୮ ତାରିଖ ଦିନ ଭ୍ରାତା ଉଦନ୍ତ ଓ ଧ୍ରୁବ ଆତ୍ମସମର୍ପଣ କଲେ; ମାତ୍ର ଫଳ କିଛି ହେଲାନାହିଁ । ମେ ମାସ ୪ ତାରିଖରେ ସୁରେନ୍ଦ୍ର ସାଏ ଧରାଦେବା ନିମିତ୍ତ ଇଂରେଜ ସରକାର ସର୍ତ୍ତ ରଖି ଅଧିକ ସୈନ୍ୟ ପଠାଇ ଦମନ ଲୀଳାକୁ ବହୁଗୁଣରେ ବୃଦ୍ଧି କଲେ । ପରିଶେଷରେ ଜନତାଙ୍କ ଜୀବନରକ୍ଷା ନିମିତ୍ତ ୧୮୬୨ ମସିହା ମେ ମାସ ଶେଷ ସପ୍ତାହରେ ଡେପୁଟି କମିଶନର ଇମ୍ପେସାହେବଙ୍କ ନିକଟରେ ସୁରେନ୍ଦ୍ର ସାଏ ଆତ୍ମସମର୍ପଣ କଲେ । ସରକାର ତାଙ୍କ ଭରଣପୋଷଣ ନିମିତ୍ତ ଜମିବାଡ଼ି ଯୋଗାଇଦେଲେ । ମାତ୍ର ଏ ବ୍ୟବସ୍ଥା ବେଶୀଦିନ ପର୍ଯ୍ୟନ୍ତ ତିଷ୍ଠିପାରିଲା ନାହିଁ । ୧୮୬୩ ମସିହାରେ ସମ୍ବଲପୁରକୁ ଓଡ଼ିଶାରୁ ବାହାର କରି ମଧ୍ୟପ୍ରଦେଶ ସହିତ ମିଶାଇ ଦିଆଗଲା । ଜନସାଧାରଣ ଏଥିରେ ଅସନ୍ତୁଷ୍ଟ ହୋଇ ବିଦ୍ରୋହ ଆରମ୍ଭ କଲେ । ଏହାପଛରେ ସୁରେନ୍ଦ୍ର ସାଏଙ୍କର ପ୍ରଚ୍ଛନ୍ନ ହାତ କାର୍ଯ୍ୟ କରୁଥିବାର ସନ୍ଦେହ କରି ତାଙ୍କୁ ଗିରଫ କରାଗଲା ଏବଂ ରାୟପୁରଠାରେ ଅଟକବନ୍ଦୀ ହିସାବରେ ରଖାଗଲା । ପରିଶେଷରେ ୧୮୮୪ ମସିହା ଜାନୁୟାରୀ ୨୩ ତାରିଖରେ ଏହି ମହାନ୍ ବିପ୍ଳବୀ ଜନନେତା ଅସୁରଗଡ଼ ଜେଲରେ ଶେଷନିଃଶ୍ୱାସ ତ୍ୟାଗ କଲେ ।

ଭାରତୀୟ ଜନ ଜାଗରଣର ଉଜ୍ଜ୍ୱଳତମ ଜ୍ୟୋତିଷ୍କ ବୀର ସୁରେନ୍ଦ୍ର ସାଏଙ୍କର ଦେଶପ୍ରେମ, ଦେଶବାସୀଙ୍କ ପ୍ରତି ଶ୍ରଦ୍ଧା, ନିର୍ଭୀକତା, ଦୂରଦର୍ଶିତା, ସଫଳ ନେତୃତ୍ୱ, ସାହସିକତା, ସର୍ବୋପରି ଚାରିତ୍ରିକ ମହନୀୟତା ପ୍ରତ୍ୟେକ ଭାରତୀୟଙ୍କ ହୃଦୟରେ ଉତ୍ସାହ, ପ୍ରେରଣା ତଥା ଉଦ୍ଦୀପନା ଯୋଗାଇବ ।

*ସ୍ୱାମୀ ଚିଦାନନ୍ଦ ଆଶ୍ରମ, ଦେବଗଡ଼*



# ଗାନ୍ଧିଜୀ, ଆମ୍ବେଦକର ଓ ମଧୁସୂଦନ

ଶ୍ରୀ ସୁରସିଂହ ପଟ୍ଟନାୟକ

*ନବ ଉତ୍କଳ ନିର୍ମାଣ ଲାଗି ଉତ୍କଳ ଗୌରବ ମଧୁସୂଦନଙ୍କ ଭୂମିକା ବିଷୟରେ ସବୁଠାରୁ ବେଶୀ ଜାଣିଥିବା ଗବେଷକମାନଙ୍କ ମଧ୍ୟରେ ଶ୍ରୀଯୁକ୍ତ ସୁରସିଂହ ପଟ୍ଟନାୟକ ଶ୍ରେଷ୍ଠ ଆସନର ଅଧିକାରୀ । ମଧୁବାବୁଙ୍କ ତ୍ୟାଗ, ଅସ୍ମିତା, ସାହସ ଓ ସ୍ୱାଭିମାନ ଉପରେ ସେ ଅସଂଖ୍ୟ ପ୍ରବନ୍ଧ ଓ ନିବନ୍ଧ ଲେଖି ଓଡ଼ିଶାରେ ସର୍ବଜନାଦୃତ ହୋଇପାରିଛନ୍ତି । ଜୀବନବ୍ୟାପୀ ମଧୁବାବୁଙ୍କ ଉପରେ ଗବେଷଣା ଚଳାଇ ରଖିଥିବା ଶ୍ରୀ ପଟ୍ଟନାୟକଙ୍କର "ଗାନ୍ଧିଜୀ, ଆମ୍ବେଦକର ଆଉ ମଧୁସୂଦନ" ପ୍ରବନ୍ଧଟି ଆପଣମାନଙ୍କ ପାଇଁ....*

ସ୍ୱାଧୀନତାର ଅଗ୍ରଦୂତ ମହାତ୍ମା ଗାନ୍ଧୀଙ୍କର ଜାତୀୟତାବାଦୀ କାର୍ଯ୍ୟଧାରାର ପଟ୍ଟଭୂମିରେ ପରାଧୀନ ଭାରତରେ ଆମ୍ବେଦକର ଏବଂ ମଧୁସୂଦନ, ଗାନ୍ଧିଜୀଙ୍କ ପ୍ରତି ଉଚ୍ଛ୍ୱସିତ ସମର୍ଥନ ଜଣାଇଥିଲେ ମଧ୍ୟ ନିଜର ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ, କଲ୍ୟାଣପ୍ରଦ ତଥା ମହତ୍ତ୍ୱର ଲକ୍ଷ୍ୟ ତୁରନ୍ତ ହାସଲ କରିବାର ଆତୁରତା ପାଇଁ ସେମାନଙ୍କୁ ଗାନ୍ଧିଜୀଙ୍କର କିଞ୍ଚିତ୍ ବିରୋଧର ସମ୍ମୁଖୀନ ହେବାକୁ ପଡ଼ିଥିଲା । ଏହାଛଡ଼ା ସେଇ ସମୟର ତୁଙ୍ଗ ନେତୃବର୍ଗଙ୍କ ସହିତ ସେମାନଙ୍କୁ ରୀତିମତ ସଂଘର୍ଷ କରିବାକୁ ପଡ଼ିଥିଲା । ଆମ୍ବେଦକର ଆଉ ମଧୁସୂଦନଙ୍କ କାର୍ଯ୍ୟାଧାରାକୁ ବିଶ୍ଲେଷଣ କଲେ ସେମାନଙ୍କ ମଧ୍ୟରେ ଯେଉଁ ସମାନତା, ତାହା ସ୍ପଷ୍ଟ ବାରିହୁଏ ।

ଭାରତରତ୍ନ ଭୀମରାଓ ଆମ୍ବେଦକର (୧୮୯୧-୧୯୫୬) ନିର୍ଯ୍ୟାତିତ ଆଉ ନିଷ୍ପେଷିତ ଦଳିତ ଜାତିର ମୁକ୍ତି ଓ ଆର୍ଥିକ ବିକାଶ ପାଇଁ ଏବଂ ଜାତୀୟ ଗୌରବ ମଧୁସୂଦନ ଦାସ (୧୮୪୮-୧୯୩୪) ବିଖଣ୍ଡିତ ଓ ବିଭାଜିତ ଜଙ୍ଗଲପାର ଓଡ଼ିଆ ଜାତିର ନିଜସ୍ୱ ଭାଷାଭିତ୍ତିକ (ଓଡ଼ିଶା) ପ୍ରଦେଶର ସ୍ଥାପନ ପାଇଁ ଜୀବନବ୍ୟାପୀ ସଂଗ୍ରାମରେ ଅବତୀର୍ଣ୍ଣ ହୋଇଥିଲେ । ଏହି ଲକ୍ଷ୍ୟପ୍ରାପ୍ତି ପାଇଁ ସେମାନେ ମହାତ୍ମାଗାନ୍ଧୀଙ୍କର ଅକୁଣ୍ଠିତ ସମର୍ଥନ ମଧ୍ୟ ହାସଲ କରିଥିଲେ । ଆମ୍ବେଦକର ଆଉ ମଧୁସୂଦନଙ୍କ ପାଇଁ ସ୍ୱାଧୀନତା ପ୍ରାପ୍ତିର ଯଥେଷ୍ଟ ପୂର୍ବରୁ ସେମାନଙ୍କ ଲକ୍ଷ୍ୟପୂରଣ ହେବା ଆବଶ୍ୟକ ଥିଲା, କାରଣ ସ୍ୱାଧୀନତା ପରେ ସେହି ଲକ୍ଷ୍ୟ ହାସଲ କରିବା ଅତ୍ୟନ୍ତ ଦୁରୂହ ଓ କଷ୍ଟସାଧ୍ୟ ବ୍ୟାପାର ହୋଇପଡ଼ିଥିଲା ।

ଦଳିତ ଜାତିମାନଙ୍କ ସମସ୍ୟାର ଆଶୁ ସମାଧାନ କ୍ଷେତ୍ରରେ ଆମ୍ବେଦକରଙ୍କ ବକ୍ତବ୍ୟ ଥିଲା, "ମୁଁ ଅତ୍ୟନ୍ତ ଆତଙ୍କିତ ଯେ ଭାରତ ବର୍ତ୍ତମାନ ସ୍ଥିତିରେ ଯଦି ସ୍ୱାଧୀନତା ଲାଭ କରେ, ତାହା ହେଲେ ଉଚ୍ଚବର୍ଗର

ହିନ୍ଦୁମାନଙ୍କ ଦ୍ୱାରା ଅସ୍ପୃଶ୍ୟମାନେ ଅଧିକ ନିର୍ଯାତିତ ଓ ନିପୀଡ଼ିତ ହେବେ।" ଏହି କଥାକୁ ତାତ୍ତ୍ୱିକ ସମର୍ଥନ ଜଣାଇ ମହାତ୍ମା ଗାନ୍ଧୀ ୧୯୩୨ ସାଲର ମଧ୍ୟଭାଗରେ କହିଥିଲେ "ଅସ୍ପୃଶ୍ୟତାକୁ ହ୍ରାସ ନ କରି ଯଦି ଆମେ କ୍ଷମତାକୁ ଆସୁ, ତେବେ ମୁଁ ନିଶ୍ଚିତ ଯେ ଅସ୍ପୃଶ୍ୟମାନଙ୍କ ପରିସ୍ଥିତି ସ୍ୱାଧୀନତାପ୍ରାପ୍ତି ପରେ ଅଧିକ ଦୟନୀୟ ହେବ। କାରଣ ସ୍ୱାଧୀନତା ପ୍ରାପ୍ତି ମାତ୍ରକେ ଆମ ଦେଶରେ କୁସଂସ୍କାର ଜନିତ ମତାନ୍ଧତା ଅଧିକ ବ୍ୟାପକ ଓ ଗଭୀର ହେବ।"

ସେହିପରି ମଧୁସୂଦନ ଦାସ ଚାରିଟି ପ୍ରଦେଶରେ ବିଭାଜିତ ଓଡ଼ିଆ ଜାତି ସଂଖ୍ୟାଲଘୁ ଭାବେ ନିର୍ଯ୍ୟାତନାର ଶିକାର ହେବା ସମ୍ପର୍କରେ ୧୯୨୦ ସାଲରେ ଗାନ୍ଧିଜୀଙ୍କୁ (ବ୍ରଜସୁନ୍ଦର ଦାସଙ୍କ ଜରିଆରେ) ଯେଉଁ ଚିଠିଟି ଲେଖିଥିଲେ, ତାହାର କିଛି ଅଂଶ ଏହିପରି ଥିଲା।

"ହେ ମହାତ୍ମାଗାନ୍ଧୀ! ଆପଣଙ୍କର ନବନିର୍ମିତ ଭାରତ କ'ଣ ଓଡ଼ିଆ ଜାତିର ଭସ୍ମାବଶେଷ ଉପରେ ପ୍ରତିଷ୍ଠିତ ହେବ?" ଏହି ଚିଠିଟିକୁ ମହାତ୍ମାଗାନ୍ଧୀ 'ଉତ୍କଳର ଚିତ୍କାର' ନାମରେ ୧୮.୨.୧୯୨୦ 'ୟଙ୍ଗ୍ ଇଣ୍ଡିଆ' ପତ୍ରିକାରେ ପ୍ରକାଶ କରିଥିଲେ ଏବଂ ସେହି ବର୍ଷ ଡିସେମ୍ବର ମାସରେ ନାଗପୁରର ଜାତୀୟ କଂଗ୍ରେସ ଅଧିବେଶନରେ ଭାଷାଭିତ୍ତିକ ପ୍ରଦେଶ ଗଠନ ପାଇଁ ନୀତି ଗ୍ରହଣ କରିଥିଲେ। ସେହିପରି ୩୦.୩.୧୯୨୧ରେ ବ୍ରହ୍ମପୁରଠାରେ ଏକ ସଭାରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନକୁ ସମ୍ଭବପର କରିବା ସକାଶେ ମାର୍ଗ ପ୍ରସ୍ତୁତ କରିବା ଉଦ୍ଦେଶ୍ୟରେ ମହାତ୍ମା ଗାନ୍ଧୀ ଅଧିକ ବଳଶାଳୀ ଆନ୍ଧ୍ରବାସୀମାନଙ୍କୁ ଦୁର୍ବଳ ଓଡ଼ିଆମାନଙ୍କ ଦାବି ମାନିନେବା ପାଇଁ ଆହ୍ୱାନ ଜଣାଇଥିଲେ।

ମଧୁସୂଦନ ଦାସ ସ୍ୱାଧୀନତାପ୍ରାପ୍ତି ପୂର୍ବରୁ ଓଡ଼ିଶା ପ୍ରଦେଶ ଗଠନ ପାଇଁ ଅଗ୍ରାଧିକାର ଭିତ୍ତିରେ ଦାବି କରିଥିଲେ। କାରଣ ତାଙ୍କ ଦୂରଦୃଷ୍ଟି ବଳରେ ସେ ଜାଣିପାରିଥିଲେ ଯେ ସ୍ୱାଧୀନତା ପ୍ରାପ୍ତି ପରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଦାବି ଅବହେଳିତ ହୋଇଯିବାର ଆଶଙ୍କା ରହିଛି। ସ୍ୱାଧୀନୋତ୍ତର ଭାରତରେ ଓଡ଼ିଶା ପ୍ରତି କେନ୍ଦ୍ରର ଅବହେଳା ସତ୍ୟ ପ୍ରମାଣିତ ହୋଇଥିଲା। ଏଣୁ ୧୧.୧୨.୧୯୧୭ରେ କଲିକତା ଯାଇ ମଣ୍ଟେଗୁ ଚେମ୍ସ୍‌ଫୋର୍ଡ କମିଟି ଆଗରେ ମଧୁସୂଦନ ତାହାଙ୍କର ବଳିଷ୍ଠ ଓଡ଼ିଶା ଗଠନ ଦାବି ଉପସ୍ଥାପନ କରିଥିଲେ। ସେହିପରି ଭାବେ ଆମ୍ବେଦକର ୧୯୧୮ ସାଲରେ ସାଉଥବରୋ ଓ ଅନ୍ୟାନ୍ୟ କମିଟି ସମ୍ମୁଖରେ ଦଳିତ ଜାତିର ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ଅଧିକାର ପ୍ରାପ୍ତି ପାଇଁ ବିଭିନ୍ନ ପ୍ରସ୍ତାବମାନ ଦୃଢ଼ଭାବେ ଆଗତ କରିଥିଲେ।

ଭାରତୀୟ ପ୍ରଶାସନରେ ପର୍ଯ୍ୟାପ୍ତ ସଂସ୍କାର ଆଣିବା ପାଇଁ ୧୯୨୭ ସାଲରେ ଜନ୍ ସାଇମନ୍‌ଙ୍କର ଅଧ୍ୟକ୍ଷତାରେ ବ୍ରିଟିଶ ସରକାର ଏକ କମିଶନ ଗଠନ କରିଥିଲେ। ମାତ୍ର ସେଥିରେ କୌଣସି ଭାରତୀୟ ସଦସ୍ୟ ନ ଥିବାରୁ ଭରତୀୟ ଜାତୀୟ କଂଗ୍ରେସ ଏହାକୁ ପ୍ରତ୍ୟାଖ୍ୟାନ କରିଥିଲେ। ମାତ୍ର ଅନ୍ୟ ବହୁସଂଖ୍ୟାଲଘୁ ଦଳ ଆମ୍ବେଦକରଙ୍କ ଅଧ୍ୟକ୍ଷତାରେ ଦଳିତ ସମାଜ ଓ ମଧୁସୂଦନଙ୍କର ନେତୃତ୍ୱରେ ଓଡ଼ିଶାର ରାଜନୈତିକ ଦଳ ଏହାକୁ ସ୍ୱାଗତ କରିଥିଲେ। ମଧୁସୂଦନଙ୍କର ପରାମର୍ଶ କ୍ରମେ ଓଡ଼ିଆମାନେ ସାଇମନ୍

କମିଶନଙ୍କୁ ୧୨.୧୨.୧୯୨୮ରେ ପାଟନା ରେଲୱାଇ ଷ୍ଟେସନରେ ଭବ୍ୟ ସମ୍ବର୍ଦ୍ଧନା ଜଣାଇଥିଲେ ଆଉ ୧୪.୧୨.୧୯୨୮ ରେ ପାଟନା ସଚିବାଳୟର ଏହି କମିଶନ ନିକଟରେ ଦାବିପତ୍ର ଦାଖଲ କରିଥିଲେ। ଅଟଲି କମିଟିର ସୁପାରିଶକ୍ରମେ ୭.୬.୧୯୩୦ ରେ ପ୍ରକାଶିତ ସାଇମନ କମିଶନଙ୍କ ରିପୋର୍ଟରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ସ୍ଥାପନ ପାଇଁ ଅନୁମୋଦନ କରାଯାଇଥିଲା। ପୂର୍ବରୁ ୧୮୯୭ ଏବଂ ୧୯୦୭ରେ ମଧୁସୂଦନ ଲଣ୍ଡନ ଯାଇ ଏଥିପାଇଁ ଭିତ୍ତିଭୂମି ନିର୍ମାଣ କରିଥିଲେ। ସ୍ୱାସ୍ଥ୍ୟଗତ କାରଣରୁ ମଧୁସୂଦନ ଲଣ୍ଡନ ଯାଇ ନ ପାରିବାରୁ ତାଙ୍କଦ୍ୱାରା ପ୍ରେରିତ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ପ୍ରଥମ ଗୋଲଟେବୁଲ୍ ବୈଠକରେ ୧୬.୧.୧୯୩୧ରେ ଓଡ଼ିଶା ପକ୍ଷରୁ ବଳିଷ୍ଠ ଦାବି ଉପସ୍ଥାପନ କରିଥିଲେ। ପରେ ୭.୧୨.୧୯୩୨ରେ ତୃତୀୟ ଗୋଲଟେବୁଲ ବୈଠକରେ ଖଲ୍ଲିକୋଟର ରାଜା ରାମଚନ୍ଦ୍ର ମର୍ଦ୍ଦରାଜ ଓ ଭୁବନାନନ୍ଦ ଦାସଙ୍କର ଦାବି ଉପସ୍ଥାପନ ପରେ ୨୪.୧୨.୧୯୩୨ ରେ ଓଡ଼ିଶା ପ୍ରଦେଶ ସ୍ଥାପନର ସିଦ୍ଧାନ୍ତ ଉଦ୍‌ଘୋଷିତ ହେଲା। ଏଥିପାଇଁ ଅବଶ୍ୟ ମହାତ୍ମା ଗାନ୍ଧୀଙ୍କ ପକ୍ଷରୁ ପରୋକ୍ଷ ସମର୍ଥନ ମିଳିଥିଲା। ତଥାପି ଜାତୀୟବାଦୀ ନେତୃବର୍ଗ ଏହାର ତୀବ୍ର ବିରୋଧ କରିଥିଲେ ; କିନ୍ତୁ ପରିଶେଷରେ ଏହି ପ୍ରୟାସର ଅନ୍ତିମ ପରିଣତି ସ୍ୱରୂପ ଭାରତର ପ୍ରଥମ ଭାଷାଭିତ୍ତିକ ରାଜ୍ୟ ରୂପେ ୧.୪.୧୯୩୬ରେ ଓଡ଼ିଶା ପ୍ରଦେଶ ଗଠିତ ହେଲା ଆଉ ମଧୁସୂଦନ ଦାସ ସମଗ୍ର ଭାରତରେ ଭାଷାଭିତ୍ତିକ ରାଜ୍ୟ ସ୍ଥାପନର ଆଦ୍ୟ ପ୍ରବର୍ତ୍ତକ ରୂପେ ସ୍ୱୀକୃତ ହେଲେ।

ଦଳିତମାନଙ୍କ ସାମଗ୍ରିକ ଉନ୍ନତିକଳ୍ପେ ଆମ୍ବେଦକରଙ୍କୁ ମଧୁସୂଦନଙ୍କର ପ୍ରକାଶିତ ସାମ୍ବିଧାନିକ ମାର୍ଗକୁ ଗ୍ରହଣ କରିବାକୁ ପଡ଼ିଥିଲା। ସାଇମନ କମିଶନ୍ ୩.୨.୧୯୨୮ ରେ ବମ୍ବେରେ ପହଞ୍ଚିବା ପରେ ବମ୍ବେ ବିଧାନ କାଉନ୍‌ସିଲ୍‌ର ସଦସ୍ୟ ରୂପେ ତଥା ଦଳିତ ଜାତିର ଅଧକ୍ଷ୍ୟ ରୂପେ ଆମ୍ବେଦକର ପୁନାଠାରେ ଅକ୍ଟୋବର ୧୯୨୮ରେ ସାଇମନ୍ କମିଶନ୍‌ଙ୍କ ସମ୍ମୁଖରେ ସାକ୍ଷ୍ୟ ପ୍ରଦାନ କରିବା ପରେ ୩.୫.୧୯୨୯ରେ ବମ୍ବେଠାରେ ସୁବିସ୍ତାରିତ ପ୍ରସ୍ତାବମାନ ସାଇମନ୍ କମିଶନ୍‌ଙ୍କ ନିକଟରେ ଦାଖଲ କରିଥିଲେ। ଏହି ପ୍ରସ୍ତାବ ସବୁର ଆଲୋଚନା ପାଇଁ ଲଣ୍ଡନଠାରେ, ୧୯୩୦ରୁ ୧୯୩୨ ପର୍ଯ୍ୟନ୍ତ ତିନିଗୋଟି ଗୋଲଟେବୁଲ ବୈଠକ ବସିଥିଲା। ଆମ୍ବେଦକର ୧୨.୧୧.୧୯୩୦ରେ ପ୍ରଥମ ଗୋଲଟେବୁଲ୍ ବୈଠକ ଆଉ ୧୫.୯.୧୯୩୧ରେ ଦ୍ୱିତୀୟ ଗୋଲଟେବୁଲ ବୈଠକରେ ଯୋଗଦେଇ ଦଳିତ ଜାତିର ଉନ୍ନୟନପାଇଁ ବିଭିନ୍ନ ପ୍ରସ୍ତାବ ସହିତ, ଦଳିତମାନଙ୍କ ପାଇଁ ସ୍ୱତନ୍ତ୍ର ନିର୍ବାଚନମଣ୍ଡଳୀ ଗଠନ ପାଇଁ ଦାବିପତ୍ର ଉପସ୍ଥାପନ କରିଥିଲେ। ମାତ୍ର ଦ୍ୱିତୀୟ ଗୋଲଟେବୁଲ୍ ବୈଠକରେ ଯୋଗ ଦେଇଥିବା ମହାତ୍ମା ଗାନ୍ଧୀ ଦଳିତମାନଙ୍କ ପାଇଁ ସ୍ୱତନ୍ତ୍ର ନିର୍ବାଚନମଣ୍ଡଳୀ ଗଠନର ପ୍ରସ୍ତାବକୁ ତୀବ୍ର ବିରୋଧ କରିଥିଲେ। ଭାରତକୁ ଫେରିବା ପରେ ମହାତ୍ମାଗାନ୍ଧୀ ପୁନା ନିକଟସ୍ଥ ୟାରୱାଡ଼ା ଜେଲରେ ବନ୍ଦୀ ହୋଇଥିବା ସମୟରେ ବ୍ରିଟିଶ ସରକାର ୧୬.୮.୧୯୩୨ରେ ଦଳିତମାନଙ୍କ ପାଇଁ ସ୍ୱତନ୍ତ୍ର ନିର୍ବାଚନମଣ୍ଡଳୀ ଗଠନ ପ୍ରସ୍ତାବକୁ ସ୍ୱୀକୃତି ଦେଲେ ; କିନ୍ତୁ ଏହାଦ୍ୱାରା ଭାରତରେ ହିନ୍ଦୁ ସମାଜ ସବର୍ଣ୍ଣ ଆଉ ଦଳିତମାନଙ୍କ ମଧ୍ୟରେ ବିଭାଜିତ ହେବାର ଆଶଙ୍କା ଥିବାରୁ ୨୦.୯.୧୯୩୨ରେ ୟାରୱଡ଼ା ଜେଲ ବଗିଚାର ଏକ ବଡ଼ ଆମ୍ବଗଛର ଛାଇରେ ମହାତ୍ମାଗାନ୍ଧୀ ତାହାଙ୍କର ଆମରଣ ଅନଶନ ଆରମ୍ଭ କରିଥିଲେ, ଯାହା ଯୁଗାନ୍ତକାରୀ ଅନଶନର ମାନ୍ୟତା ପାଇଥିଲା। ଏ କ୍ଷେତ୍ରରେ ମହାତ୍ମାଗାନ୍ଧୀଙ୍କ

ଆମ୍ବେଦକରଙ୍କ ସହିତ କିଛି ବୁଝାମଣା ହେବା ପରେ ୨୬.୯.୧୯୩୨ରେ ମହାତ୍ମାଗାନ୍ଧୀ ଅନଶନ ଭଙ୍ଗ କରିଥିଲେ। ଏହିଭଳି ବିଭିନ୍ନ ସଂଗ୍ରାମରେ ଅବତୀର୍ଣ୍ଣ ହୋଇ ଆମ୍ବେଦକର ଦଳିତମାନଙ୍କ ପାଇଁ ବହୁ ସାମ୍ବିଧାନିକ ଅଧିକାର ହାସଲ କରିଥିଲେ।

ଆମ୍ବେଦକର ଓ ମଧୁସୂଦନ ଯେପରି ଗୋଟିଏ ଉପାଦାନରେ ଗଢ଼ା ହୋଇଥିଲେ ଏବଂ ଏକନିଷ୍ଠ ସଂକଳ୍ପବଦ୍ଧତା ସହ ଆପଣାର ଲକ୍ଷ୍ୟପ୍ରାପ୍ତି ପାଇଁ ଜୀବନବ୍ୟାପୀ ସଂଗ୍ରାମରେ ଅବତୀର୍ଣ୍ଣ ହୋଇଥିଲେ। ଉଭୟ ଦଳିତ ଜାତିର ଉନ୍ନତିକଳ୍ପେ ନିକର ଜୀବନକୁ ଉତ୍ସର୍ଗ କରିଥିଲେ। ଦଳିତମାନଙ୍କ ବିକାଶ ପାଇଁ ମଧୁସୂଦନଙ୍କ ଦ୍ୱାରା ପ୍ରତିଷ୍ଠିତ ଅନେକ ପ୍ରକଳ୍ପକୁ ମହାତ୍ମାଗାନ୍ଧୀ ପରିଦର୍ଶନ କରିଥିଲେ ଏବଂ ପରେ ମଧୁସୂଦନଙ୍କୁ ନିଜର ଅନ୍ୟତମ ମାଗଦର୍ଶକ ରୂପେ ଗ୍ରହଣ କରିଥିଲେ। ସେ ୩.୯.୧୯୩୪ରେ 'ହରିଜନ' ପତ୍ରିକାରେ ପ୍ରକାଶିତ ଏକ ନିବନ୍ଧରେ ଲେଖିଥିଲେ "ମଣିଷ ସମାଜର ଗୋଟିଏ ଭାଗ ପ୍ରତି ଯେଉଁ ନିର୍ଯାତ ଅପରାଧ କରାଯାଉଛି, ତା'ର ନିବାରଣକୁ ନେଇ ସ୍ୱର୍ଗତ ମଧୁସୂଦନ ଦାସ ମୋର ଆଖି ଖୋଲିଦେଇଥିଲେ। ଉଚ୍ଚ ଜାତିର ଲୋକେ ତଳ ଜାତିର ଲୋକଙ୍କ ଉପରେ ଯେଉଁ ଅତ୍ୟାଚାର କରିଆସୁଛନ୍ତି, ତା'ର ପ୍ରାୟଶ୍ଚିତ୍ତ ପାଇଁ ସେ (ମଧୁବାବୁ) ଗୋଟିଏ ଶିକ୍ଷାମୂଳକ ଟ୍ୟାନେରୀ ଖୋଲିଥିଲେ।"

ଆମ୍ବେଦକର ଦଳିତମାନଙ୍କ ଉନ୍ନତି ପାଇଁ ସମର୍ପିତ ନିଜ ଜୀବନର ମୂଲ୍ୟାୟନ କରି ଜୀବନର ଅନ୍ତିମ ବର୍ଷରେ ୧୯୫୬ ସାଲରେ ଲେଖିଥିଲେ, ମୋଜେସ୍ ଯେପରି ତାଙ୍କର ଅନୁଗାମୀ ଜନସମ୍ପ୍ରଦାୟକୁ ପାଲେଷ୍ଟାଇନ୍‌ରେ ଆଶ୍ରୟ ପ୍ରଦାନ କରିଥିଲେ, ସେହିଭଳି ମୁଁ ଦଳିତମାନଙ୍କୁ ସ୍ୱାଧୀନତା ପ୍ରଦାନ କରି ସେମାନଙ୍କୁ ନିର୍ଯାତନାରୁ ମୁକ୍ତ କରିଛି। ମଧୁସୂଦନ ଓଡ଼ିଆମାନଙ୍କ ପାଇଁ ଏହିଭଳି ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ ମଧ୍ୟ ସେ ପ୍ରଚାରବିମୁଖ ଥିବାରୁ ନିଜ ସମ୍ପର୍କରେ ନୀରବ ରହିଥିଲେ। ମାତ୍ର ୪.୨.୧୯୩୪ରେ ତାଙ୍କର ତିରୋଧାନରେ ଓଡ଼ିଶା ଡିଭିଜନ୍‌ର କମିଶନର ଇ.ଏସ୍. ହରନେଲ୍‌ଙ୍କର ଏହିଭଳି ଶ୍ରଦ୍ଧାଞ୍ଜଳି ଅର୍ପଣ କରିଥିଲେ।

"ପର୍ବତର ଶିଖରଦେଶରେ ଠିଆହୋଇ ମୋଜେସ୍ ଯେପରି ତାଙ୍କର ପଦଦଳିତ ଓ ନିଷ୍ପେଷିତ ବଂଶଧରଙ୍କର ଭବିଷ୍ୟତର ବାସଭୂମିକୁ ଅପଲକ ଦୃଷ୍ଟିରେ ଦେଖୁ ଦେଖୁ ଏ ସଂସାରରୁ ବିଦାୟ ନେଇଥିଲେ, ମଧୁସୂଦନ ସେହିପରି ନୂତନ ସମ୍ଭାବନାମୟ ସ୍ୱତନ୍ତ୍ର ପ୍ରଦେଶ ଗଠନର ପ୍ରାକ୍‌କାଳରେ ସଂସାରରୁ ବିଦାୟ ନେଇ ଚାଲିଗଲେ।"



# ଏକ ନିରୁଦ୍ଦିଷ୍ଟ ଭୁବନେଶ୍ୱର

ପ୍ରଫେସର ମନୋଜ ଦାସ

*ସମଗ୍ର ଓଡ଼ିଶାକୁ ବିଶ୍ୱଦରବାରରେ ସମ୍ମାନିତ କରିଥିବା, ଆର୍ନ୍ତଜାତିକ ଖ୍ୟାତିସମ୍ପନ୍ନ ସାହିତ୍ୟିକ ମନୋଜ ଦାସ 'ମୋ ଓଡ଼ିଶା'ର ୨୦୦୮ ସାରସ୍ୱତ ସଂକଳନରେ ମୁଦ୍ରିତ 'ଲାଳିତ୍ୟ ଓ ଇଙ୍ଗିତର ମିଳନିକା : ଉତ୍କଳୀୟ କିମ୍ବଦନ୍ତୀ ଓ କାହାଣୀ' ଶୀର୍ଷକ ଲେଖାଟି ପଠାଇ ଆମ୍ଭମାନଙ୍କୁ କୃତଜ୍ଞ କରିଥିଲେ। ୨୦୦୯ ସଂକଳନ ପାଇଁ ଅତି ସନ୍ତର୍ପଣରେ ଅନୁରୋଧ କଲା ପରେ ଆମେ ଆଶଙ୍କା କରୁଥିବା ତାଙ୍କର କର୍ମବ୍ୟସ୍ତତା ଜନିତ ଅସାମର୍ଥ୍ୟ ପ୍ରକଟ କରିବା ସହିତ ଆସନ୍ତା ଥରକୁ ଚେଷ୍ଟା କରିବାକୁ ଅନିଶ୍ଚିତ ପ୍ରତିଶ୍ରୁତି ମିଳିଥିଲା। ତଥାପି ଗତ ସଂଖ୍ୟା ପାଇଁ ପଠାଇଥିବା ଲେଖା ସହିତ 'ଏକ ନିରୁଦ୍ଦିଷ୍ଟ ଭୁବନେଶ୍ୱର' ଶୀର୍ଷକ ଲେଖାଟିଏ ଯୋଡ଼ି ହୋଇ ରହିଯାଇ ଥିବାରୁ ଏହା ଈଶ୍ୱରଙ୍କର ଆମ୍ଭ ପାଇଁ 'ବର' ସଦୃଶ ମନେ ହେଲା। ଆମେ ସେହି ଲେଖାଟିକୁ ପରିବେଷଣ କରୁଛୁ ଆପଣମାନଙ୍କ ପାଇଁ....*

୧୯୪୯ ମସିହା। ଏ ଲେଖକ ସେତେବେଳେ ବାଲେଶ୍ୱର ଜିଲ୍ଲା ସ୍କୁଲର ନବମ ଶ୍ରେଣୀର ଛାତ୍ର। ଘୋଷଣା ହେଲା, ଶିକ୍ଷା ବିଭାଗର ଅନୁଦାନ ଯୋଗେ ସୀମିତସଂଖ୍ୟକ ଛାତ୍ରଙ୍କୁ ଡ୍ରିଲ୍ ଶିକ୍ଷକଙ୍କ ନେତୃତ୍ୱରେ ଭୁବନେଶ୍ୱର ଦେଖାଇ ଅଣାଯିବ— ଜ୍ଞାନର ଅଭିବୃଦ୍ଧି ନିମନ୍ତେ।

ନାମ ଦେଲେ ବହୁ ଛାତ୍ର। ମନୋନୟନ ଛାଡ଼ି ଦିଆଗଲା ଭାଗ୍ୟଚକ୍ର ଉପରେ। ଆଶାର୍ଥୀମାନଙ୍କ ନାମଟିମାନ ଲେଖା କାଗଜରାଶି ରଙ୍ଗିନ୍ କନା ଗୁଡ଼ା ହୋଇ ସାମୟିକ ଭାବେ ନବଯୌବନ ଲାଭ କରିଥିବା ଗୋଟିଏ ଅବସରପ୍ରାପ୍ତ ପାଛିଆରେ ଥୁଆ ହେଲା। ସ୍କୁଲ ହଲ୍ (ଆଜି ଫକୀରମୋହନ କଲେଜ ହଲ୍) ଭିତରେ ଉତ୍କଣ୍ଠିତ ସମାବେଶ ଆଗରେ ମଞ୍ଚ ଉପରେ ସମ୍ଭବତଃ ସ୍ୱୟଂ ପ୍ରଧାନ ଶିକ୍ଷକ ମହୋଦୟ, ନିରପେକ୍ଷତାର ଯତ୍‌ପରୋନାସ୍ତି ଦୃଷ୍ଟାନ୍ତ ରୂପେ ଆଖିଯୋଡ଼ିକ ମୁଦ୍ରିତ କରି, ଖଣ୍ଡିଏ ଖଣ୍ଡିଏ କାଗଜ ଉଠାଇଲେ। ଚତୁର୍ଥ ବା ପଞ୍ଚମ ଥରକୁ ଉଠି ଆସିଲା ଏ ଲେଖକର ନାମ।

ଏକାଧିକ ଥର ପୁରୀ ଯାଇଥିଲି। ଶିଶୁ କାଳରେ ଥରେଅଧେ ଯଦି ମା'ଙ୍କ ସହିତ ଭୁବନେଶ୍ୱର ଯାଇଥିବି, ତା'ର ସ୍ମୃତି କିନ୍ତୁ ମିଳେଇ ଯାଇଥିଲା; ଅତଏବ ପୁଲକିତ ହେଲି। ପୁଲକିତ ହେଲେ ଭାଗ୍ୟଚକ୍ର (ଅନ୍ତତଃ ଚକ୍ରାକାର ପାଛିଆ) ନିର୍ଦ୍ଧାରିତ ଅନ୍ୟ ଛାତ୍ରବୃନ୍ଦ। ହାୟ, ଅଚିରେ ଅନେକଙ୍କ ପୁଲକ କିନ୍ତୁ

ବିଷାଦରେ ପରିଣତ ହେଲା । ଘୋଷଣା ହେଲା, ଅନୁଦାନ ରୂପେ ପ୍ରାପ୍ତ ଅର୍ଥର ପରିମାଣ ଯଥେଷ୍ଟ ନୁହେଁ । ପ୍ରତ୍ୟେକ ଅଭିଯାତ୍ରୀଙ୍କୁ କୋଡ଼ିଏ ଟଙ୍କା ଲେଖାଏଁ ଦେବାକୁ ପଡ଼ିବ ।

ଅନେକ ଓହରିଗଲେ । ପୁନର୍ବାର ଆବଶ୍ୟକୀୟ ସଂଖ୍ୟା ପୂର୍ତ୍ତି ସକାଶେ ଲଟାରି ହେଲା । ପରଦିନ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ଡ୍ରିଲ୍ ଶିକ୍ଷକ ମହୋଦୟ କିରାଣିବାବୁ ସମଭିବ୍ୟାହାରରେ ଅଫିସ ଘରେ ଅପେକ୍ଷା କରିବେ । ଆମକୁ ଅର୍ଥ ପଇଠ କରିବାକୁ ପଡ଼ିବ । ସୂର୍ଯ୍ୟାସ୍ତ ଆଇନ କଡ଼ାକଡ଼ି ପାଳିତ ହେବ ।

'କୋଡ଼ିଏ ଟଙ୍କା'ର ଗାମ୍ଭୀର୍ଯ୍ୟ ଆଜି ଅନେକେ ଠିକ୍ ବୁଝିବେ ନାହିଁ । ସେମାନଙ୍କ ସହାୟତା ନିମନ୍ତେ କହି ରଖେଁ, ଜଣେ ନବନିଯୁକ୍ତ ଅଧ୍ୟାପକଙ୍କ ମୌଳିକ ଦରମା ମାସକୁ ସମ୍ଭବତଃ ଏକ ଶହ ଅଶି ଟଙ୍କା ଥିଲା । ସରକାରୀ ଅଧ୍ୟାପକ ।

ତେମନ୍ତ ନବନିଯୁକ୍ତ ଅଧ୍ୟାପକ ହେଲେ ଭାଇ । ମୁହଁରେ ଯଥାସମ୍ଭବ ହରଷ ଫୁଟାଇ ତାଙ୍କ ଆଗରେ ଠିଆ ହେଲି । ସ୍ନାୟୁଜନିତ ବିଚଳିତ ଭାବ ରୋକିବା ନିମନ୍ତେ ଜର ଦୁଇଟି ହାଫ୍ ପ୍ୟାଣ୍ଟ ପକେଟ୍‌ରେ ଦୃଢ଼ ଭାବରେ ଆବଦ୍ଧ କରିଥାଏଁ ।

"କ'ଣ ବ୍ୟାପାର ?" ଭାଇ ପ୍ରଶ୍ନ କଲେ ।

ସବୁ ବ୍ୟାପାରର ଉଜ୍ଜ୍ୱଳ ଦିଗଟି ଉପରେ ପ୍ରଥମେ ଗୁରୁତ୍ୱ ଦେବାର ଔଚିତ୍ୟ ଦୃଷ୍ଟିରୁ ଜଣାଇଲି, "ସ୍କୁଲରେ ଲଟାରିରେ ମୋ ନାମ ଉଠିଛି ।"

"ମାନେ ? କ'ଣ ମିଳିବ ?"

'ମାନେ, କିଛି ଦେବାକୁ ହେବ । କୋଡ଼ିଏ ଟଙ୍କା ।'

ଲଟାରି କିତି ଟଙ୍କା ଦେବାକୁ ପଡ଼େ, ଏ ଅଭିନବ ବାର୍ତ୍ତା ଭାଇଙ୍କ ସାଧାରଣ ଜ୍ଞାନକୁ କେତେଦୂର ସମୃଦ୍ଧ କଲା ଜାଣେନା, ସେ ଆମୋଦିତ ଭାବରେ ଅନାଇଲେ । ତେଣିକି ଅନର୍ଗଳ କହିଗଲି । ଜଣେ ଭଦ୍ରୀୟମାନ ଐତିହାସିକ ଭାବରେ ଭାଇ ଭୁବନେଶ୍ୱର ଭଳି ଐତିହାସିକ ସ୍ଥାନ ପ୍ରତି ମୋର ଆକର୍ଷଣ ହୃଦୟଙ୍ଗମ କରିବେ, ମୋର ଅନର୍ଗଳତାର ଥିଲା ତାହା ହିଁ ଆଭିମୁଖ୍ୟ ।

ସେ ବିନା ବାକ୍ୟବ୍ୟୟରେ ଟେବୁଲ୍ ଡ୍ରୟର୍‌ରେ ଥିବା ସମ୍ପଦ ସହ ନିଜର ଗୋଟିଏ ଯୋଡ଼ିଏ ପକେଟ୍ ତଲାସ କରି ଆବଶ୍ୟକୀୟ ଅର୍ଥ ମୋତେ ହସ୍ତାନ୍ତର କଲେ ।

ଭୁବନେଶ୍ୱର ବୋଇଲେ ଆଜି ପାଠକମାନଙ୍କ ମାନସଚକ୍ଷୁରେ ଏବଂ ମହାନଗରୀଟିର ଭାଗ୍ୟବାନ ବାସିନ୍ଦାମାନଙ୍କର ସ୍ଥୂଳ ଚକ୍ଷୁରେ ଯେଉଁ ଚିତ୍ରଗୁଡ଼ିକ ଭାସି ଉଠୁଥିବ— ମନ୍ତ୍ରୀ, ହାକିମ, ମାଇକ୍ରୋଫୋନ୍, ଦୁର୍ଘଟଣା, ଚେନ୍-ସ୍ନେଚର ଓ ପ୍ରଦୂଷଣସମ୍ବଳିତ ରାଜଧାନୀ – ସେତେବେଳେ ସେସବୁର ଆଭାସ ନ ଥିଲା । ସେତେବେଳର ଭୁବନେଶ୍ୱର ଏକାମ୍ର, ଲିଙ୍ଗରାଜ ମନ୍ଦିର, ବିନ୍ଦୁସରୋବର, କେଦାରଗୌରୀ ଓ ବନ୍ଧୁ

ଦେବାଳୟ ସମନ୍ୱିତ ସୁପ୍ରାଚୀନ ତୀର୍ଥ, ଯାହାର ଐତିହାସିକ ଦିଗ୍‌ବଳୟର ମହାନ୍ ଚିହ୍ନ ହେଲେ ଧଉଳି, ଖଣ୍ଡଗିରି ଓ ଉଦୟଗିରି। ପର୍ବଦିନମାନ ଛାଡ଼ିଦେଲେ ଜନବିରଳ।

ବିନ୍ଦୁ ସରୋବର ତୀରବର୍ତ୍ତୀ ଏକ ପରିଚ୍ଛନ୍ନ ଧର୍ମଶାଳାର ଦ୍ୱିତଳରେ ଆମ ପାଇଁ ଦୁଇ ତିନି-ରାତ୍ର ବିଶ୍ରାମର ବ୍ୟବସ୍ଥା ହୋଇଥାଏ। ବାଲେଶ୍ୱରର କୌଣସି ମାନ୍ୟଗଣ୍ୟ ସଜ୍ଜନଙ୍କ ପ୍ରଭାବରେ ଜଣେ ସ୍ଥାନୀୟ କଣ୍ଟ୍ରାକ୍ଟର ଆମ ପାଇଁ ଗାଡ଼ିଟିଏ ବ୍ୟବସ୍ଥା କରିଦେବାର ପ୍ରତିଶ୍ରୁତି ଦେଇଥିଲେ। ସେ ସମ୍ବାଦ ଆମକୁ ହରଷିତ କରିଥିଲା। ଗାଡ଼ି ପହଞ୍ଚିଲା। ଗୋଟିଏ ଟ୍ରକ୍, ତା'ର ଉନ୍ମୁକ୍ତ କାଷ୍ଠାଧାର ଉପରେ କୋଡ଼ା ଡୁବିଯିବା ଭଳି ମୂଲାଏମ୍ ଧୂଳିରାଶି। ପ୍ରତି ଚକ୍ରାବର୍ତ୍ତରେ ଏକଶତ ବିସ୍ଫୋରଣ ଘଟାଇ ଗତିଶୀଳ ସେ ଯାନ ଆମର ହରଷକୁ ତିଳେ ବି ଊଣା କରି ନ ଥିଲା। ତାହାହିଁ ଆରୋହଣ କରି ଆମେ ଗଲୁଁ ବିସ୍ତୀର୍ଣ୍ଣ ପ୍ରାନ୍ତର ଅତିକ୍ରମ କରି ଧଉଳି। ପର୍ଯ୍ୟାପ୍ତ ସନ୍ଧାନ ପରେ, ଅକସ୍ତ ଗୁଳ୍ମଲତା ଅପସାରଣ କରି ଆମେ ହାତୀ ଗୁମ୍ଫା ଦର୍ଶନ କରିଥିଲୁଁ। ଅନାବୃତ ଶିଳାଲିପି ଉପରେ ଜମିଥାଏ କିଛି କିଛି ଆବର୍ଜନା।

ସେହି ଘର୍ଘରକ ଟ୍ରକ ଯୋଗେ ଆମେ ପୁଣି ଦେଖିଥିଲୁ ବନାକୀର୍ଣ୍ଣ ଖଣ୍ଡଗିରି-ଉଦୟଗିରି। ସେ ଅଭିଯାନ ପ୍ରାୟ ସାମରିକ ଦୁଃସାହସିକତାରେ ପରିଣତ ହୋଇଥିଲା। କାରଣ ଟ୍ରକଟିକୁ ଦଖଲ କରି ନେବାରେ ପ୍ରୟାସୀ ହୋଇଥିଲେ ଦଳେ ଦୁର୍ଦ୍ଧର୍ଷ ପାତି ମାଙ୍କଡ଼। ସେମାନଙ୍କ ବଂଶଧରମାନେ ଆଜିକାଲି ଅପେକ୍ଷାକୃତ ମାର୍ଜିତ। ଏପରିକି ରୁଚିବନ୍ତ, ସୌନ୍ଦର୍ଯ୍ୟପ୍ରିୟ ମଧ୍ୟ। ଦୁଇ ତିନିବର୍ଷ ତଳେ ଏ ଲେଖକ ଚିନାବାଦାମ ଦେବା ସତ୍ତ୍ୱେ ସେ ପାତିମାନେ ଦଳେ ଅତ୍ୟାଧୁନିକ ଯୁବତୀଙ୍କୁ ବେଷ୍ଟନ କରି ସେମାନଙ୍କୁ ହିଁ ସାନ୍ନିଧ୍ୟ ଦେଲେ, ଏ ଲେଖକକୁ ନୁହେଁ।

ଅବଶେଷରେ ଆମେ କେତେ ପ୍ରସ୍ତ ନାଲି ଧୂସର ଧୂଳିର ଖୋଳରୁ ମୁକ୍ତି ପାଇଁ କେଦାରଗୌରୀ ଭିତରକୁ ଲମ୍ଫ ଦେଇଥିଲୁଁ। ଅବିସ୍ମରଣୀୟ ସେ ଶୀତଳ ସ୍ନାନ। କିନ୍ତୁ ହା ହତୋସ୍ମି ! ସ୍ନାନାନ୍ତେ ଉପରକୁ ଉଠି ଆସି ପଥର ପ୍ରାଚୀର ଉପରେ ଥୁଆ ହୋଇଥିବା ମୋ ଟ୍ରାଉଜର୍ସ ଖଣ୍ଡିକ ତୋଳିବାମାତ୍ରେ ପକେଟରେ ସୁରକ୍ଷିତ ମୋ ହାତଘଡ଼ି ଗୋଟିକ ଅତି ସାବଲୀଳ ଶୈଳୀରେ ଖସିଗଲା କୁଣ୍ଡ ଗର୍ଭକୁ। ସମ୍ଭବତଃ ସେ ପର୍ଯ୍ୟଟକ ଦଳରେ ଏକମାତ୍ର ମୁଁ ଥିଲି ହାତଘଡ଼ି ସୁଶୋଭିତ ସଭ୍ୟ। ଭାରତରେ ସେଭଳି ଚିଜ ନିର୍ମାଣ ନିମନ୍ତେ ବହୁ ବର୍ଷ ବାକି ଥିଲା। ସବୁ ସୁଇଜରଲ୍ୟାଣ୍ଡରୁ ଆମଦାନି।

କାହାକୁ କିଛି କହିବାର ଦରକାର ହୋଇନାହିଁ। ତିନି ଚାରି ଜଣ ସହପାଠୀ ତତ୍‌କ୍ଷଣାତ୍ ହେଲେ ଡୁବ ଦେବାରେ ବ୍ରତୀ। ହତାଶ ହୋଇ ଅନାଇଥାଏ। ସବୁ ଡୁବନ୍‌ବୀର ଚାରି ପାଞ୍ଚ ପ୍ରଚେଷ୍ଟା ଅନ୍ତେ କ୍ଷାନ୍ତ ହେଲେ। କିନ୍ତୁ ହେଲେ ନାହିଁ ମୋର ଅନ୍ତରଙ୍ଗ ବନ୍ଧୁ ସୁଦର୍ଶନ (ନାୟକ)। ଅଷ୍ଟମ ବା ନବମ ଡୁବନ୍ ଅନ୍ତେ ସେ ଯେତେବେଳେ କୁଣ୍ଡ ପୃଷ୍ଠରେ ପ୍ରକଟିତ ହେଲେ, ସେତେବେଳେ ମୁହଁ ବ୍ୟାପୀ ଧାର ଧାର ଜଳ ଭିତରୁ ଫୁଟିଥାଏ ସାଫଲ୍ୟର ମୃଦୁ ହସ। ସେତେବେଳର ସେଭଳି ଆଚରଣ, ମିତ୍ର ପାଇଁ ସେ ଭଳି ଶ୍ରମ ସ୍ୱୀକାର ଇତ୍ୟାଦିରେ କୌଣସି ପ୍ରତ୍ୟାଶା ନ ଥିଲା। କେଡ଼େ ସ୍ୱତଃସ୍ଫୂର୍ତ୍ତ, ସ୍ୱାଭାବିକ ସୌହାର୍ଦ୍ଦ୍ୟର ସେସବୁ ଉଜ୍ଜ୍ୱଳ ଝଲକ!

ଆଜି ବି, ଅର୍ଦ୍ଧଶତାବ୍ଦୀରୁ ଊର୍ଦ୍ଧ୍ୱକାଳ ପରେ ସୁଦର୍ଶନ ସହ ଦେଖା ହେଲେ ସେ ସ୍ମୃତି ଏତେ ସଜୀବ ହୋଇଉଠେ, ମନେହୁଏ ତାହା ମାତ୍ର କେଇଦିନ ତଳର ବ୍ୟାପାର। ପରବର୍ତ୍ତୀ ଚାରି ପାଞ୍ଚବର୍ଷ ଭୁବନେଶ୍ୱର ଯିବାର କୌଣସି ଯୋଗ ପଡ଼ି ନ ଥିଲା।

୧୯୫୩। ସଦ୍ୟ କଟକରୁ ରାଜଧାନୀ ଅପସାରିତ ହୋଇଥାଏ ଐତିହାସିକ ଭୁବନେଶ୍ୱର ଉପାନ୍ତବର୍ତ୍ତୀ ଭୌଗୋଳିକ ବିସ୍ତୃତି ଭିତରକୁ। ନାମ ନିଉ କ୍ୟାପିଟାଲ। ସାହସିକ ପଦକ୍ଷେପ ନେଇ ପ୍ରଥମ ପର୍ଯ୍ୟାୟରେ ବିଧାନସଭା ରେଭେନ୍ସା ମହାବିଦ୍ୟାଳୟ ମେଳାରୁ ସ୍ଥାନାନ୍ତରିତ ହୋଇଥାଏ ବାଲୁକା ପ୍ରାନ୍ତର ଭିତରେ ନବନିର୍ମିତ ସର୍ଦ୍ଦାର ପଟେଲ୍ ହଲ୍‌କୁ। ଗ୍ରୀଷ୍ମଋତୁର ଏକ ମଧ୍ୟାହ୍ନରେ ମୁଁ ଏବଂ ଜଣେ ବନ୍ଧୁ ବିଧାନସଭାର ଅଧିବେଶନ ଦେଖିବା ମାନସରେ କଟକରୁ ଯାଇ ତହିଁ ଉପନୀତ ହେଲୁଁ। ଜଣେ ସୁପରିଚିତ ଏମ୍.ଏଲ୍.ଏ.ଙ୍କ ସୌଜନ୍ୟରୁ ପ୍ରବେଶପତ୍ର ମିଳିଗଲା ମଧ୍ୟ। ବାଲ୍‌କୋନୀରୁ ଘଣ୍ଟାଏ ପର୍ଯ୍ୟନ୍ତ ଆଲୋଚନା ଶୁଣିବା ଭିତରେ ଅନୁଭୂତ ହେଲା ଏକପ୍ରକାର ଶୀତଳ ବିଷଣ୍ଣ ଭାବ। ବାହାରି ଆସିଲୁଁ। ସେହି ଦାରୁଣ ଗରମ ସତ୍ତ୍ୱେ ନିଜ ମନର ସେ ଶୀତଳତାକୁ ସ୍ଥୂଳ ତାହା ଯୋଗେ ପ୍ରଶମିତ କରିବାର ଛଳନା ଟିକକ ଅତ୍ୟାବଶ୍ୟକ ମନେହେଲା।

ଚତୁର୍ଦ୍ଦିଗରେ ବାଲି ଓ ବୁଦା। ବିଧାନସଭାର ଆଠଦଶଗୋଟି ଅଫିସ୍ କୋଠରି ଏବଂ ସେତେବେଳକୁ ବନ୍ଦ ହୋଇଯାଇଥିବା ମାନ୍ୟବରମାନଙ୍କ ସକାଶେ ଉଦ୍ଦିଷ୍ଟ ଅସ୍ଥାୟୀ ଖାଦ୍ୟପେୟ ବିପଣୀଟିଏ ବ୍ୟତୀତ ଆଖପାଖରେ ଦୋକାନବଜାର ତ ଦୂରର କଥା, ଘରଦ୍ୱାର ବି ବୋଧହୁଏ ନ ଥିଲା— ସ୍ମୃତି ଯେଉଁ ଚିତ୍ର ଉପସ୍ଥାପନ କରୁଛି। ସେତେବେଳକୁ ଏମ୍.ଏଲ.ଏ.ମାନଙ୍କ ବସାଘରଟିମାନ ତିଆରି ହେଲାଣି ହୁଏତ; କିନ୍ତୁ ସବୁ ଶୂନ୍‌ଶାନ୍ ଲାଗୁଥାଏ।

ଆମେ ଚାଲୁଥିଲୁଁ। ଏକ ଫର୍ଲଙ୍ଗ ଦୂରରେ ଗୋଟାଏ ଗୁମୁଟି। ଭିତରେ ଚୁଲି ଜଳିବାର ଏବଂ ତହିଁ ପରେ ପାତ୍ରଟିଏ ଥୁଆ ହୋଇଥିବାର ସେ ଦୃଶ୍ୟ ଚୁମ୍ବକ ଭଳି ଆମକୁ ଟାଣିଲା। ଓଏସିସ୍ ଆଉ କାହାକୁ କହନ୍ତି ! ଗୁମୁଟି ଆଗରେ ଛୋଟ ଚାଳି। ଯୋଡ଼ିଏ ଷ୍ଟୁଲରୁ ଖଣ୍ଡିଏ ଅକ୍ତିଆର କରିଥିଲେ ନିଶବନ୍ତ ଜଣେ ପୃଥୁଳ ଯୁବକ। ଅନ୍ୟ ଷ୍ଟୁଲଟିରେ ଆରାମ କରୁଥିଲା ତାଙ୍କ ପାଦଯୁଗଳ। ସେ ନିଦ୍ରିତ ପ୍ରାୟ ଅବସ୍ଥାରେ ଆଉଜି ଚାହିଁଥିଲେ ଗୋଟିଏ ଦୁର୍ବଳ ବାଉଁଶ ଖମ୍ବକୁ। ପ୍ରଥମ ଦେଖାରେ ମୋର ସେ ଖୁମ୍ବ ପ୍ରତି ଅନୁକମ୍ପା ଜାତ ହେଲା। ତାଙ୍କ ହାତ ପଙ୍ଖାଟି ଖସି ଚଟାଣ ଉପରେ ପଡ଼ିଥିଲା।

ଚାଳିର ଅନ୍ୟ ପ୍ରାନ୍ତରେ ଖଣ୍ଡିଏ ବେଞ୍ଚ୍। ମନେ ହେଉଥିଲା ସଦ୍ୟ ଭୂଗର୍ଭରୁ ଆବିଷ୍କୃତ କୌଣସି ବିସ୍ମୃତ ସଭ୍ୟତାର ନିଦର୍ଶନ।

ନିର୍ବାକ୍, ନିଷ୍ଟଳ ଭାବରେ ବି ସ୍ୱାଗତ କରିବା ସମ୍ଭବ। ବାର ତେର ବର୍ଷର ଛିଣ୍ଡା ମଇଳା ହାଫ୍ ପ୍ୟାଣ୍ଟ ପରିହିତ ବାଳକଟିଏ ତାହାହିଁ ପ୍ରମାଣ କଲା ବୋଲି ଆମେ ଧରିନେଲୁ।

"ଚାହା ମିଳିବ?"

"ବ-ବ-" ପିଲାଟି କଥା କହିଲା ।

"ହଇରେ, ଆଉ କେତେ ଶିଖାଇବି ? ବସନ୍ତୁ ନ ପଇଟିଲା ନାହିଁ, ବସ ବସ ବୋଲି କହି ଆସିଲାନି ଆଜିଯାଏ ?" ଯୁବକ ତଳୁ ପଙ୍ଖାଟି ଉଠାଇନେବା ଅବସରରେ ଧମକ ଦେଲେ । ତେବେ ସେ ଧମକରେ ସ୍ନେହ ଥିଲା ।

ଅଚିରେ ଯୋଡ଼ିଏ କୁନି କୁନି ଗ୍ଲାସରେ ଆମକୁ ଚାହା ପରଶି ଦିଆଗଲା । ଆମେ ପଇସା ଦେଇଦେଲୁଁ । ଦୁଇ ଅଣା । ଜିନିଷଟିର ଗୁଣାତ୍ମକ ଦିଗ ଯାହା ହେଲେ ବି ବୈଧାନିକ ପ୍ରଭାବରୁ ମୁକୁଳିବା ନିମନ୍ତେ ଗୋଟାଏ ଅବଲମ୍ବନ ପାଇଁ କୃତଜ୍ଞ ଅନୁଭବ କରୁଥିଲି ।

ଧୂ ଧୂ ଦ୍ୱିପ୍ରହର, ଧୂ ଧୂ ପ୍ରାନ୍ତର । ସେ ନିଷ୍ଫଳତାକୁ ସାମାନ୍ୟ ଚହଲେଇ ଦେବା ସକାଶେ କହିପକାଇଲି, ମୋ ବନ୍ଧୁକୁ ଉଦ୍ଦେଶ୍ୟ କରି– "ବାଃ, ଭଲ ଚାହା ତ!"

ସାମ୍ନାରେ ଘଟିଗଲା ଗୋଟାଏ ଦୃଶ୍ୟମାନ ପରିବର୍ତ୍ତନ । ମାଲିକ ଯୁବକ କଣକ ପ୍ରଥମେ ସଳଖି ବସିଲେ ଓ ମୋ ଆଡ଼େ କଟମଟ ଅନାଇଲେ । (କଟମଟର ତାତ୍ପର୍ଯ୍ୟ ବି ଯେ ଅପ୍ରତ୍ୟାଶିତ ହୋଇପାରେ, ସେ କଥା ବୁଝିଲି ମୁହୂର୍ତ୍ତକ ପରେ ।)

"କ'ଣ କହିଲେ ?" ସେ ଠିଆ ହୋଇ, ଆମ ଆଡ଼େ ଦୁଇ ପାଦ ଅଗ୍ରସର ହେଉ ହେଉ ପଚାରିଲେ ।

"ଆଜ୍ଞା ? କିଛି ନୁହେଁ ତ !" କୈଫିୟତ୍ ଦେଲି ।

"କହିଲେ ତ କିଛି ଏଇନେ ! କ'ଣ ?"

"କହିଲି କି ଚାହା ଭଲ ହୋଇଛି!" ଶଙ୍କିଯାଇ ଉତ୍ତର ଦେଲି ।

"ଭଲ ହୋଇଛି ?"

"ଭଲ ହୋଇଛି - ହଁ - ଅବଶ୍ୟ ଭଲ ହୋଇଛି ! "

ଯୁବକଙ୍କ ମୁହଁରେ ଯାହା ଫୁଟି ଉଠିଲା, ତାହା ରୋମାଞ୍ଚ । ସେ ହାତ ଧୋଇ ଚୁଲି ପାଖକୁ ଗଲେ । ମୃଦୁମଧୁର କଣ୍ଠରେ ଆମକୁ କଣାଇଲେ, "ଆପଣ ଯାହା ପିଉଛନ୍ତି, ତାହା ଖାଲି ଚାହା । ଏକ ନମ୍ବର । ଏହା ଉପରେ ଅଛି ମୋର ସ୍ପେଶାଲ୍ ଚାହା, ଦୁଇ ନମ୍ବର । ତା' ଉପରେ ଅଛି ମୋର ଇସ୍‌ପେସିଆଲ୍ ଚାହା, ତିନି ନମ୍ବର । ଆପଣଙ୍କୁ ଇସ୍‌ପେସିଆଲ୍ ଚାହା ନ ପିଆଇ ଛାଡ଼ୁନାହିଁ ।"

"ନା, ନା, ଦରକାର ନାହିଁ ।"

"ମୁଁ କ'ଣ କହିଲି ଆପଣଙ୍କର ଦରକାର ?"

ଏହାପରେ ଯୁକ୍ତିର ଅବକାଶ ନ ଥିଲା । ସେ ଇସ୍‌ପେସାଲ୍ ଚାହା ତିଆରି କରୁ କରୁ ଗପିଲେ ତାଙ୍କର ଆତ୍ମକଥା । ପରିବାର ଚାହେଁ, ସେ ଚାକିରି କରନ୍ତୁ । କିନ୍ତୁ ତାଙ୍କର ପ୍ରେରଣା, ସେ ନିଜ ଗୋଡ଼ରେ ଠିଆ ହେବେ ବେପାର ବ୍ୟବସାୟ ଦ୍ୱାରା ।

"ଆଜି ମୋର କ୍ଷତି ଛଡ଼ା ଲାଭ ନାହିଁ । ଚଳିଯାଉଛି । ଘରେ ଖାଇପିଇ ଆସୁଛି । କିନ୍ତୁ ଦିନେ ନା ଦିନେ ଏଠି ବସତି ହେବ । ଭଲ ଖିଆପିଆର ଚାହିଦା ହେବ ।"

"କିଏ କହିବ ଦିନେ ତମର ଏ ଚାହା ଗୁମୁଟି ବଡ଼ ହୋଟେଲରେ ପରିଣତ ନ ହେବ! " ମନ୍ତବ୍ୟ ଦେଲି ।

ଯୁବକଟି ତାଙ୍କ ଆରାଧ୍ୟଙ୍କ ଉଦ୍ଦେଶ୍ୟରେ ଚଟାପଟ ଥରେ ଜୁହାର କରି ପକାଇଲେ । କିୟତ୍କ୍ଷଣ ପୂର୍ବରୁ ତାଙ୍କ ପାଦଯୁଗଳ ଧାରଣ କରିଥିବା ଷ୍ଟୁଲଟିକୁ ଆଣି ଆମ ଆଗରେ ଥୋଇ ଫୁଙ୍କ ଦ୍ୱାରା ତାକୁ ପବିତ୍ର କଲେ ଏବଂ ତହିଁ ପରେ ଚାହା ଭର୍ତ୍ତି ଯୋଡ଼ିଏ ବଡ଼ ବଡ଼ କପ୍ ଥୋଇଲେ । ସରମୟ ଦୁଧ, ନାନାଦି ମସଲ୍ଲାର ବାସ୍ନା । ଆମେ ପିଇଲୁଁ, ସେ ଗପିଲେ । ଅଧଘଣ୍ଟାଏ ବିତିଗଲା । ଏଥର ଯିବାକୁ ହେବ ।

ପଇସା ବାହାର କରି ପଚାରିଲି, "ଇସ୍ପେସ୍ୟାଲ୍ ପାଇଁ କେତେ..."

ସେ ମୋ ହାତ ଧରି ପକାଇଲେ, "ଆପଣଙ୍କର କ'ଣ ସେ ଚାହା ଦରକାର ଥିଲା ?" ଏଥର କଣ୍ଠରେ ପୁଣି ଧମକର ସ୍ୱର ।

"ନା, କିନ୍ତୁ ବଡ଼ ଚମତ୍କାର ଚାହା । ଦାମ୍ ନେବାକୁ ହେବ ।"

"କାହିଁକି ନେବାକୁ ହେବ ? ମୋ ଇଚ୍ଛାରେ ମୁଁ ଦେଲି । ଦାମ ନେବି ! ମୁଁ କ'ଣ ଏଡ଼େ ଅଧମ? ଆପଣ ଚାହାର ସମଝ୍ଦାର । ତାହା ହିଁ ମୋର ଆନନ୍ଦ ।"

ନମସ୍କାର ପ୍ରତି ନମସ୍କାର ଅନ୍ତେ ବିଦାୟ ନେଲୁଁ ।

ଆଜିର ଚକ୍ମକ୍ ଅଟ୍ଟାଳିକା ଶୋଭିତ ଜନବହୁଳ ବିଧାନସଭା ରାସ୍ତା ଦେଇ ଗଲାବେଳେ ସ୍ମୃତିରେ ଭାସିଉଠେ ସେ ମୁହଁ । ଆଶାକର୍ଣ୍ଣେ ସମୃଦ୍ଧ ହୋଟେଲ ସବୁ ଭିତରୁ ଗୋଟିକର ମାଲିକ ସେଦିନର ସେ ଆତ୍ମାଭିମାନୀ ଯୁବକ । ହୁଏତ ତାଙ୍କ ସନ୍ତାନମାନେ ତାଙ୍କ ସାହସ ଓ ଶ୍ରମଲବ୍ଧ ଐଶ୍ୱର୍ଯ୍ୟକୁ ପାଇଥିବେ ଉତ୍ତରାଧିକାରୀ ସୂତ୍ରେ ।

କିନ୍ତୁ ଉତ୍ତରାଧିକାରୀ ସୂତ୍ରେ ପାଇଥିବେ କି ତାଙ୍କର ସେ ରୋମାଞ୍ଚକର ହସ ଏବଂ ସର୍ବୋପରି ସେ ଇସ୍ପେସ୍ୟାଲ ଦରାଜ ଦିଲ୍ ?



# ଆମେରିକାରେ
# ପ୍ରଭୁ ଶ୍ରୀ ଜଗନ୍ନାଥଙ୍କ ରଥଯାତ୍ରା

ପ୍ରଫେସର ଶାନ୍ତନୁ କୁମାର ଆଚାର୍ଯ୍ୟ

*ଓଡ଼ିଶାର ଦ୍ରୁତ ପ୍ରଗତି ସଙ୍ଗେ ସଙ୍ଗେ ଓଡ଼ିଆମାନେ ଭାରତର ଅନ୍ୟ ପ୍ରଦେଶଗୁଡ଼ିକ ସହିତ ପୃଥିବୀର ବିଭିନ୍ନ ଦେଶରେ ବିଭିନ୍ନ ଦିଗରେ କାର୍ଯ୍ୟ କୁଶଳତା ପ୍ରଦର୍ଶନ କରି ନିଜର ଓ ନିଜ ରାଜ୍ୟର ସୁନାମ ଅର୍ଜନ କରିଛନ୍ତି । ପ୍ରଭୁ ଜଗନ୍ନାଥ ସାରା ଜଗତର ନାଥ ବା ବିଶ୍ୱ ଦେବତା । ତାଙ୍କର ନିବାସ ଶ୍ରୀମନ୍ଦିର ଓଡ଼ିଶାର ପୁରୀରେ ଥିବାରୁ ସାରା ବିଶ୍ୱରୁ ଭକ୍ତସମୂହ ତାଙ୍କର ଦର୍ଶନ ପାଇଁ ଛୁଟି ଆସୁଛନ୍ତି । ସବୁଠାରୁ ଆକର୍ଷଣୀୟ ଶ୍ରୀ ଜଗନ୍ନାଥଙ୍କ ରଥଯାତ୍ରା କ୍ରମେ ପୁରୀରୁ ସାରା ବିଶ୍ୱ ପରିକ୍ରମା କଲାଣି । ବିଶ୍ୱର ବିଭିନ୍ନ କୋଣ ଅନୁକୋଣରେ ଆସ୍ଥାନ ଜମାଇଥିବା ଓଡ଼ିଆ ଅଧିବାସୀ ସେ ସ୍ଥାନଗୁଡ଼ିକରେ ଶ୍ରୀ(ଜଗନ୍ନାଥ)ମନ୍ଦିର ନିର୍ମାଣ କରିବା, ତାଙ୍କର ଯାନିଯାତ୍ରା କରିବା ସହିତ ବିଶ୍ୱପ୍ରସିଦ୍ଧ ରଥଯାତ୍ରା ପାଳନର ଆୟୋଜନ କରୁଛନ୍ତି । ସେହି ଉପଲକ୍ଷେ ଆୟୋଜିତ ଆଲୋଚନା ଚକ୍ରକୁ ଓଡ଼ିଶାର ବାଗ୍ମୀ, ପଣ୍ଡିତମାନଙ୍କୁ ନିମନ୍ତ୍ରଣ କରି ନେଉଛନ୍ତି । ସେହିପରି ନିମନ୍ତ୍ରିତ ହୋଇ ଆମେରିକା ରଥଯାତ୍ରା ଉତ୍ସବରେ ଯୋଗ ଦେଇଥିବା ଅଧ୍ୟାପକ ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କ ଅନୁଭୂତି ଆମେ ଆପଣମାନଙ୍କୁ ପରିବେଷଣ କରୁଛୁ......*

ବିଦେଶରେ, ବିଶେଷତଃ ଯୁକ୍ତରାଷ୍ଟ୍ର ଆମେରିକାରେ ପ୍ରଭୁ ଜଗନ୍ନାଥଙ୍କ ରଥଯାତ୍ରା ଆମ ଓଡ଼ିଆମାନଙ୍କ ପାଇଁ ନିଶ୍ଚିତ ଏକ ଗର୍ବର ବିଷୟ । ଏହା କେବଳ ଅହଙ୍କାରସର୍ବସ୍ୱ ନୁହେଁ; ଏଥିରେ ଅନ୍ତର୍ନିହିତ ରହିଚି ଓଡ଼ିଆଙ୍କ ଆତ୍ମପରିଚୟର ପ୍ରସଙ୍ଗ ।

ସାଂପ୍ରତିକ କେଇ ଦଶନ୍ଧି ଅନ୍ତରାଳରେ, ଆମେରିକାରେ ଜଗନ୍ନାଥଙ୍କ ରଥଯାତ୍ରା ଗୋଟିଏ ଅତ୍ୟନ୍ତ ଆଖିଦୃଶିଆ ସାମାଜିକ ଅନୁଷ୍ଠାନରେ ପରିଣତ ହୋଇସାରିଛି । ଏଇ କେତେବର୍ଷ ଭିତରେ ଆମେରିକାର ବହୁ ବହୁ ସହରର ହିନ୍ଦୁ ମନ୍ଦିରରେ ପ୍ରତିଷ୍ଠିତ ମହାପ୍ରଭୁ ଜଗନ୍ନାଥଙ୍କ ରଥଯାତ୍ରା ଉତ୍ସବ ପ୍ରବଳ ଜନସମାଗମର କେନ୍ଦ୍ର ପାଲଟିବାରେ ଲାଗିଛି । ଏହି ଉତ୍ସବରେ ଯୋଗଦେବାକୁ କେବଳ ସ୍ଥାନୀୟ ଲୋକେ ନୁହନ୍ତି, ଉଭୟ ଉତ୍ତର ଓ ଦକ୍ଷିଣ ଆମେରିକା, କାନାଡ଼ା ସମେତ ୟୁରୋପରୁ ମଧ୍ୟ ଭାରତୀୟ ଓ ଅଣଭାରତୀୟମାନେ ଆସନ୍ତି । ସେମାନଙ୍କ ଗହଣରେ ସବୁଠୁ ବେଶି ଆଖିଦୃଶିଆ ହୋଇସଡ଼ନ୍ତି ଓଡ଼ିଆମାନେ । କାରଣ ରଥଯାତ୍ରା ଉତ୍ସବଟା ପ୍ରକୃତରେ ତାଙ୍କ ଠାକୁର, ତାଙ୍କ ଇଷ୍ଟଦେବତାଙ୍କର । ସେଇମାନେ ହିଁ ବେଶୀ କାର୍ଯ୍ୟତତ୍ପର ହୋଇପଡ଼ିଥା'ନ୍ତି । ଠାକୁରମାନଙ୍କର ସେବା ପୂଜାର୍ଚ୍ଚନାଠାରୁ ଆରମ୍ଭ କରି ପହଣ୍ଡି ବିଜେ

ସମୟର ବିଭିନ୍ନ ଧାର୍ମିକ ରୀତିନୀତି କର୍ତ୍ତବ୍ୟ ପାଳନ ପଦ୍ଧତି ଏମାନଙ୍କୁ ଜଣା। ପୁଣି, ରଥଟଣାବେଳେ ଏକ ନିର୍ଦ୍ଦିଷ୍ଟ ପଦ୍ଧତିରେ ଘଣ୍ଟଘଣ୍ଟି, ଶଙ୍ଖ, କାହାଳି ମର୍ଦ୍ଦଳ ବାଦ୍ୟବାଜଣା ସହିତ ଠାକୁରମାନଙ୍କର ଆଲଟ ଚାମର ସେବାର ଢଙ୍ଗରଙ୍ଗ ଏମାନଙ୍କୁ ସବୁଠୁ ଭଲକରି ଜଣା। ଏଇ ହେଲା ସେମାନଙ୍କର ବୈଶିଷ୍ଟ୍ୟ ପ୍ରତିପାଦନର ସୁଯୋଗ। ଏହାହିଁ ସେମାନଙ୍କର ଗର୍ବର କାରଣ। ଏଇ ହେଲା ତାଙ୍କ ଆତ୍ମ ପରିଚୟର ପ୍ରକୃତ ଅର୍ଥାତ୍ ସାଂସ୍କୃତିକ ପାସପୋର୍ଟ୍।

**ଆମେରିକାରେ ରଥଯାତ୍ରାର ସଂକ୍ଷିପ୍ତ ଇତିହାସ :**

ଆମେରିକାରେ ପ୍ରଭୁ ଜଗନ୍ନାଥଙ୍କ ରଥଯାତ୍ରାର ଇତିହାସଟି ସେତେ ପୁରୁଣା ନୁହେଁ। ୧୯୯୩ ପୂର୍ବରୁ, ମୋ ଜାଣିବାରେ ଆମେରିକାରେ ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ହେବାର କିଛି ରେକର୍ଡ ନାହିଁ। ହଁ, କୁହାଯାଏ କିଛି ବର୍ଷ ଆଗରୁ ଆମେରିକାର ସାନ୍‌ଫ୍ରାନ୍‌ସିସ୍‌କୋ ସହରର ଲୋକେ ଜଗନ୍ନାଥଙ୍କ ମୂର୍ତ୍ତି ଦେଖିବାର ସୁଯୋଗ ପାଇଥିଲେ ଆର୍ନ୍ତଜାତିକ କୃଷ୍ଣ ଚେତନା ସଂଘର ପ୍ରବର୍ତ୍ତକ ଶ୍ରୀଳ ପ୍ରଭୁପାଦଙ୍କ ପ୍ରଚେଷ୍ଟାରୁ ; କିନ୍ତୁ ସମୟକ୍ରମେ କୃଷ୍ଣଚେତନା ସଂଘର ଉପାସ୍ୟ ହେଲେ ଭାଗବତର ଶ୍ରୀକୃଷ୍ଣ ଓ ବଡ଼ଭାଇ ବଳରାମ। ଇସ୍‌କନ୍ ମନ୍ଦିରର ପୂଜା ମଣ୍ଡପରେ ସେଇ ମାନବ ଅବୟବର ଅବତାର ଦୁହେଁ ହେଲେ ଉପାସ୍ୟ। ଜଗନ୍ନାଥ ବଳଭଦ୍ର ନୁହନ୍ତି, ସେମାନେ କେବଳ ପାର୍ଶ୍ୱ ବିଗ୍ରହ। ଏଠାରେ ମୁଁ ସେ ସମସ୍ୟାର ଆଲୋଚନା କରିବାକୁ ଇଚ୍ଛୁକ ନୁହେଁ। ତେଣୁ ଆମେ କେବଳ ଆମ ଓଡ଼ିଆମାନଙ୍କ ଇଷ୍ଟଦେବ ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ପ୍ରସଙ୍ଗ ଆଲୋଚନା କରିବା।

୧୯୯୩ ରେ ଯୁକ୍ତରାଷ୍ଟ୍ର ଆମେରିକାର ଟେନେସୀ ରାଜ୍ୟର ପ୍ରଧାନ ସହର ନ୍ୟାସଭିଲ୍‌ରେ ଯେଉଁ ରଥଯାତ୍ରା ପ୍ରଥମ ଥର ପାଇଁ ଅନୁଷ୍ଠିତ ହୋଇଥିଲା, ସୌଭାଗ୍ୟକ୍ରମେ ମୁଁ ସେ ଉତ୍ସବର ଜଣେ ଅତିଥି ଭାବେ ନିମନ୍ତ୍ରିତ ହୋଇ ଯୋଗ ଦେଇଥିଲି। ସେ ଉତ୍ସବର ପ୍ରଧାନ ଅତିଥି ହୋଇଥିଲେ ଓଡ଼ିଶାର ବିଶିଷ୍ଟ ଓଡ଼ିଆ ଭାଷା ସାହିତ୍ୟ ପ୍ରଫେସର କାହ୍ନୁ ଚରଣ ମିଶ୍ର। ଅନ୍ୟତମ ବରେଣ୍ୟ ଅତିଥି ଥିଲେ - ସ୍ୱନାମଧନ୍ୟା କଣ୍ଠଶିଳ୍ପୀ ସୁନନ୍ଦା ପଟ୍ଟନାୟକ ଓ ଆମେରିକାର ଭାରତୀୟ ଦୂତାବାସରେ ଅବସ୍ଥାପିତ ବରିଷ୍ଠ କୂଟନୀତିଜ୍ଞ ଶ୍ରୀ ମଳୟ ମିଶ୍ର। ସେ ବର୍ଷର ରଥଯାତ୍ରା ସଭା ପ୍ରଥମ ଥର ପାଇଁ ଅନୁଷ୍ଠିତ ହେଉଥିବାରୁ ତା'ର ମର୍ଯ୍ୟାଦା ଥିଲା ସ୍ୱତନ୍ତ୍ର। ପରେ ପରେ ନ୍ୟାସଭିଲ୍‌ର ସେଇ ହିନ୍ଦୁ ମନ୍ଦିର ଆନୁକୂଲ୍ୟରେ ଜଗନ୍ନାଥଙ୍କ ରଥଯାତ୍ରା ଏକ ବାର୍ଷିକ ଆନ୍ତର୍ଜାତିକ ଉତ୍ସବରେ ପରିଣତ ହୋଇସାରିଛି। ବର୍ଷ ପରେ ବର୍ଷ ଏ ଉତ୍ସବକୁ ନିମନ୍ତ୍ରିତ ହୋଇ ଆସିଛନ୍ତି ଓଡ଼ିଶାରୁ ଓ ଓଡ଼ିଶା ବାହାରୁ ବହୁ ଖ୍ୟାତନାମା ବ୍ୟକ୍ତିତ୍ୱ। ସେମାନଙ୍କ ଭିତରେ ଅଛନ୍ତି ପୁରୀର ଗଜପତି ମହାରାଜା ଶ୍ରୀ ଦିବ୍ୟସିଂହ ଦେବ, ଭାରତର ସୁପ୍ରିମ୍‌କୋର୍ଟର ସର୍ବୋଚ୍ଚ ନ୍ୟାୟାଧୀଶ ରଙ୍ଗନାଥ ମିଶ୍ର, ଆମେରିକାରେ ଅବସ୍ଥାପିତ ଭାରତୀୟ ରାଷ୍ଟ୍ରଦୂତ ଶ୍ରୀ ଲଳିତ ମାନସିଂଙ୍କ ସମେତ ସାହିତ୍ୟିକ ମନୋଜ ଦାସ, ହୃଦାନନ୍ଦ ରାୟ, ରଜତ କର, କବି ଜୀବନ ପାଣି, ଚନ୍ଦ୍ରଶେଖର ରଥ, ଡଃ ନୃସିଂହ ଚରଣ ପଣ୍ଡା, ସମାଜ ସଂପାଦିକା ମନୋରମା ମହାପାତ୍ର ଏବଂ ଓଡ଼ିଶୀ ନୃତ୍ୟଗୁରୁ କେଳୁଚରଣ ମହାପାତ୍ର, ଗୁରୁ ଗଙ୍ଗାଧର ପ୍ରଧାନ, ଗୁରୁ ମନୋରଞ୍ଜନ ପ୍ରଧାନ ଓ ବହୁ ବହୁ ବିଶିଷ୍ଟ ନୃତ୍ୟାଙ୍ଗନା, କଣ୍ଠଶିଳ୍ପୀ।

ପରବର୍ତ୍ତୀ ସମୟରେ ଏ ରଥଯାତ୍ରା ପରମ୍ପରାର ଦ୍ରୁତ ସଂପ୍ରସାରଣ ଘଟିଛି । ତାହୁଁ ତାହୁଁ ଆମେରିକାର ଅନ୍ୟୁନ ଏଗାରଟି ମୁଖ୍ୟ ସହରର ଓଡ଼ିଆ ଏନ୍.ଆର୍.ଆଇ.ମାନେ ନିଜ ନିଜ ସହରର ହିନ୍ଦୁ ମନ୍ଦିରରେ ମହାପ୍ରଭୁମାନଙ୍କ ଚତୁର୍ଦ୍ଧା ମୂର୍ତ୍ତିଗୁଡ଼ିକୁ ସମଭିବ୍ୟାହାରରେ ପ୍ରତିଷ୍ଠା କରାଇଲେ ଓ ନିତ୍ୟନୈମିତିକ ପୂଜାର୍ଚ୍ଚନା ସେବା ଚାଲୁ କଲେ । ପରେ ପରେ ବିଧିବଦ୍ଧ ଭାବେ ପ୍ରତିବର୍ଷ ଘୋଷଯାତ୍ରା ଉତ୍ସବ ପାଳନ କଲେ । ଯେଉଁ ଯେଉଁ ସହରରେ ୨୦୦୬ ସୁଦ୍ଧା ଏଭଳି ଘୋଷଯାତ୍ରା ପ୍ରଚଳନର ତାଲିକା କରାଯାଇଥିଲା, ତାହା ନିମ୍ନରେ ଦିଆଗଲା ।

୧. ନ୍ୟାସଭିଲ୍, ଟେନେସୀ (ସଭା ପ୍ରଥମ - ୧୯୯୩), ୨. ସିନସିନାଟି, ଓହାୟୋ, ୩. ହଣ୍ଟ୍‌ସଭିଲ୍, ଆଲବାମା (ଏଠାରେ ଏକ ବିଶାଳ ଓଡ଼ିଶୀ ଶୈଳୀ ସ୍ଥାପତ୍ୟରେ ନିର୍ମିତ ହିନ୍ଦୁ ମନ୍ଦିର ସ୍ଥାପିତ ହୋଇଛି, ଯେଉଁଥିରେ ଜଗନ୍ନାଥ ମୁଖ୍ୟ), ୪. ଫୋନିକ୍ସ, ଆରିଜୋନା, ୫. ଡାଲାସ, ଟେକ୍ସାସ୍, ୬. ମିନିଆପଲିସ୍, ମିନେସୋଟା, ୭. ଓହ୍ମା, ନେବ୍ରାସ୍କା, ୮. କ୍ଲିଭଲ୍ୟାଣ୍ଡ, ଓହାୟୋ, ୯. ବଲ୍‌ଟିମୋର, ଓ୍ୱାଶିଂଟନ ଡି.ସି. ୧୦. ନ୍ୟୁଜର୍ସି, ୧୧. ସାନ୍‌ଫ୍ରାନ୍‌ସିସ୍‌କୋ, କାଲିଫର୍ଣ୍ଣିଆ ।

ଏ ହେଲା ୨୦୦୬ ପର୍ଯ୍ୟନ୍ତ ସଂଗ୍ରହ କରାଯାଇଥିବା ରଥଯାତ୍ରା ସ୍ଥାନର ତାଲିକା । ଏହି ତିନିବର୍ଷ ନିଶ୍ଚିତ ଭାବେ ଏ ପରମ୍ପରା ଆମେରିକାରେ ଅନ୍ୟାନ୍ୟ ମୁଖ୍ୟ ସହରମାନଙ୍କୁ ବ୍ୟାପି ଯାଇସାରିଥିବ ବୋଲି ଆଶା କରାଯାଏ ।

ଶ୍ରୀଜଗନ୍ନାଥଙ୍କ ରଥଯାତ୍ରାର ଆଦର ଆମେରିକାରେ ଏଭଳି ଅଭୂତପୂର୍ବ ଭାବେ ବଢ଼ିଯିବା ପଛରେ କାରଣ ଥାଇପାରେ, ତାହା ଗବେଷଣା ସାପେକ୍ଷ । ଅନୁସନ୍ଧାନରୁ ଜଣାଯାଏ, ଏ ରଥଯାତ୍ରା ଯଦିଓ ଓଡ଼ିଆମାନଙ୍କର ନିଜସ୍ୱ; ତଥାପି ଏହାକୁ କେବଳ ଓଡ଼ିଆମାନେ କରୁନାହାନ୍ତି । ଇଚ୍ଛାକଲେ ବି ଏକା ଏକା କରିପାରିବେ ନାହିଁ । କାରଣ ଏ ଏକ ବ୍ୟୟବହୁଳ ଯାତ୍ରା ଉତ୍ସବ, ଯୋଉଠି ଠାକୁରମାନଙ୍କୁ ସ୍ୱତନ୍ତ୍ର ଭାବେ ନିର୍ମିତ ଯାନ ବା ରଥରେ ବସାଇ ଶୋଭାଯାତ୍ରାରେ ନଗର ପରିକ୍ରମା କରାଇବା ଆବଶ୍ୟକ । ଏ ପ୍ରକାର ବ୍ୟବସ୍ଥା ଅନ୍ୟ ଭାରତୀୟ ଦେବାଦେବୀଙ୍କ ପୂଜାବିଧି ସହିତ ସଂଯୁକ୍ତ ହୋଇନାହିଁ । ପୁଣି ଦିନେ ନୁହେଁ, ନଅଦିନ ଧରି ବାହୁଡ଼ା ପର୍ଯ୍ୟନ୍ତ ଏ ଉତ୍ସବକୁ ନିତ୍ୟମୁଖରିତ କରାଯିବା ଆବଶ୍ୟକ । ସେଥିପାଇଁ ବିରାଟ ଆୟୋଜନ ଦରକାର । ଉଭୟ ଅର୍ଥବଳ ଓ ଜନବଳ ବିନା ଏଭଳି ଏକ ଉଚ୍ଚାଭିଳାଷ ପ୍ରବଣ ଧାର୍ମିକ ଅନୁଷ୍ଠାନକୁ ଚାଲୁ ରଖିବା ଆମେରିକାର ବା ଅନ୍ୟ କୌଣସି ଦେଶର ସ୍ୱଳ୍ପସଂଖ୍ୟକ ଓଡ଼ିଆ ଏନ.ଆର୍.ଆଇ.ଙ୍କ ପକ୍ଷରେ ପ୍ରାୟ ଅସମ୍ଭବ । ତେଣୁ ସେମାନେ ବାହ୍ୟ ସମର୍ଥନ ପ୍ରତି ଆଶାୟୀ ହେବାକୁ ବାଧ୍ୟ । ସୁଖର କଥା, ଏ ସମର୍ଥନ ଅକୁଣ୍ଠିତ ଭାବେ ମିଳେ ଆମେରିକାର ବୃହତ୍ତର ଭାରତୀୟ ଏନ୍.ଆର.ଆଇ.ମାନଙ୍କ ତରଫରୁ ଗୋଟିଏ ସର୍ତ୍ତରେ ।

**ଅତିଥିରେ ରଥଯାତ୍ରା :**

ଆମେରିକାରେ ଭାରତୀୟ ଏନ.ଆର.ଆଇ.ମାନେ ସାମୂହିକ ଭାବେ ଓଡ଼ିଆଙ୍କ ରଥଯାତ୍ରା ଉତ୍ସବକୁ ସମର୍ଥନ କଲେ ମଧ୍ୟ ସେମାନେ ଗୋଟିଏ ଦିଗରେ ଏ ଉତ୍ସବରେ ସହଯୋଗ ନିମିତ୍ତ ଏକ ସର୍ତ୍ତ

ଆରୋପ କରିବାକୁ ବାଧ୍ୟ ହୁଅନ୍ତି । ସେଇଟି ହେଲା – ଅତିଥିରେ ରଥଯାତ୍ରା । ଏଥିପାଇଁ ଗୋଟିଏ ଗୁରୁତ୍ୱପୂର୍ଣ୍ଣ କାରଣ ରହିଛି ।

ଏହା ନିଶ୍ଚିତ ଯେ ରଥଯାତ୍ରା ଭଳି ଏକ ସାରାଦିନ ବ୍ୟାପୀ ଉତ୍ସବରେ ଯୋଗ ଦେବାକୁ ହେଲେ ଆମେରିକାରେ କର୍ମରତ ପ୍ରତ୍ୟେକ ଲୋକ ପାଇଁ ଆବଶ୍ୟକ ପଡ଼େ ଏକ ଛୁଟିଦିନ । କିନ୍ତୁ ପ୍ରତିବର୍ଷ ରଥଯାତ୍ରା ତିଥି ଅର୍ଥାତ୍ ଆଷାଢ଼ ଶୁକ୍ଳ ଦ୍ୱିତୀୟା ତିଥି କୌଣସି ସରକାରୀ ଛୁଟିଦିନ ବା ୱିକ ଏଣ୍ଡ ଅର୍ଥାତ୍ ଶନିବାର ବା ରବିବାର ପଡ଼ିବା ସମ୍ଭବ ନୁହେଁ । ଆମେରିକାରେ ଏ ଯାବତ ହିନ୍ଦୁଙ୍କ ରଥଯାତ୍ରା ଉତ୍ସବକୁ ସେ ଦେଶର ଜାତୀୟ ପର୍ବ ରୂପେ ସରକାରୀ ସ୍ୱୀକୃତି ମିଳି ନ ଥିବାରୁ ରଥଯାତ୍ରା ପାଇଁ ଆମ ଓଡ଼ିଆ ପଞ୍ଜିକାରେ ନିର୍ଦ୍ଧାରିତ ତିଥି ଅର୍ଥାତ୍ ଆଷାଢ଼ ଶୁକ୍ଳ ଦ୍ୱିତୀୟା ଦିନଟିକୁ ଏଠାରେ ଅଫିସିଆଲ୍ ଛୁଟିଦିନ ରୂପେ ପାଳିବା ସମ୍ଭବ ନୁହେଁ । ତେଣୁ ଏଥିପାଇଁ ତିଥି ପଡୁଥିବା ସପ୍ତାହର ଶେଷ ଦୁଇଦିନ ବା ୱିକ୍‌ଏଣ୍ଡ ଶନିବାର, ରବିବାରକୁ ଏଠାରେ ରଥଯାତ୍ରାର ଦିନ ରୂପେ ପୂର୍ବରୁ ଘୋଷଣା କରାଯାଇଥାଏ । ଏ ଘୋଷଣାକୁ ଦୃଷ୍ଟିରେ ରଖି ସମଗ୍ର ଆମେରିକା ତଥା ଆମେରିକା ବାହାରର ଭାରତୀୟ ଲୋକେ ନିର୍ଦ୍ଦିଷ୍ଟ ସହରର ରଥଯାତ୍ରାରେ ଯୋଗଦେବାକୁ ସପରିବାର ଆସିବାର କାର୍ଯ୍ୟକ୍ରମ ବହୁପୂର୍ବରୁ ସ୍ଥିର କରିଥା'ନ୍ତି । ଫଳତଃ ସାରା ଆମେରିକାର ବିଭିନ୍ନ ସହରରେ ଅନୁଷ୍ଠିତ ରଥଯାତ୍ରାରେ ଜନସମାଗମ ହୁଏ । ସେ ଦୃଷ୍ଟିରୁ ଆମେରିକାରେ ଜଗନ୍ନାଥଙ୍କ ରଥଯାତ୍ରା ଅତିଥିରେ ହୁଏ ବୋଲି ଯେଉଁ ଭାରତୀୟମାନେ ସେଠାର ଆୟୋଜକମାନଙ୍କୁ ଦୋଷ ଦିଅନ୍ତି, ତାହା ଅବାସ୍ତବ ।

ଏହି ଦୋଷରେ ମଧ୍ୟ ଆମର ସ୍ୱଦେଶୀ ଜଗନ୍ନାଥ ପ୍ରେମୀମାନେ ବିଦେଶରେ ଆନ୍ତର୍ଜାତିକ କୃଷ୍ଣଚେତନା ସଂଘକୁ (ଇସ୍‌କନ୍) ଦୋଷୀ ସାବ୍ୟସ୍ତ କରନ୍ତି ; କିନ୍ତୁ ପ୍ରତି ଦେଶର ଭୌଗୋଳିକ ଓ ଅନ୍ୟାନ୍ୟ ଆନୁଷଙ୍ଗିକତାକୁ ବିଚାରକୁ ନେଲେ ଏହାର ଯଥାର୍ଥତା ହୃଦୟଙ୍ଗମ କରିହେବ ।

**ମିନିଆପଲିସ ରଥଯାତ୍ରା, ୨୦୦୮- ଏକ ସଂକ୍ଷିପ୍ତ ବିବରଣୀ :**

ମିନିଆପଲିସ ଯୁକ୍ତରାଷ୍ଟ୍ର ଆମେରିକାର ଏକ ଧନାଢ୍ୟ ରାଜ୍ୟ, ମିନେସୋଟାର ରାଜଧାନୀ । ଏଠାରେ ଭାରତୀୟ ଏନ୍.ଆର୍.ଆଇ.ମାନଙ୍କର ଏକ ଆଖିଦୃଷ୍ଟିଆ ଉପସ୍ଥିତି ଦେଖିବାକୁ ମିଳେ । ଓଡ଼ିଆମାନଙ୍କର ସଂଖ୍ୟା ମଧ୍ୟ କମ୍ ନୁହେଁ । ଏମାନେ ବହୁ ପ୍ରତିଷ୍ଠିତ ଏବଂ ବହୁ ବର୍ଷ ଧରି ଏ ସହରରେ କାର୍ଯ୍ୟ କରିଆସୁଥିବା ଉଚ୍ଚଶିକ୍ଷିତ ଗୋଷ୍ଠୀର ଡାକ୍ତର, ଇଞ୍ଜିନିୟର, ଧନୀ ବ୍ୟବସାୟୀ, କମ୍ପାନୀ ମାଲିକ । ଏବକୁ ସେମାନଙ୍କ ସହିତ ଯୋଗ ଦେଇଛନ୍ତି ଆଇ.ଟି.କମ୍ପାନୀମାନଙ୍କର ନୂଆ ପିଢ଼ିର ଅନେକ ଉଚ୍ଚ ବୈଷୟିକ ଶିକ୍ଷାପ୍ରାପ୍ତ ଓଡ଼ିଆ ଯୁବକଯୁବତୀ । ଏ ସମସ୍ତଙ୍କର ମିଳିତ ସହଯୋଗରେ ଗଲା ଦୁଇ ବର୍ଷ ୨୦୦୮ ଓ ୨୦୦୯ ରେ ଏଠାକାର ହିନ୍ଦୁ ମନ୍ଦିରରେ ପ୍ରତିଷ୍ଠିତ ଶ୍ରୀଜଗନ୍ନାଥଙ୍କ ବାର୍ଷିକ ରଥଯାତ୍ରା ବହୁ ଆଡ଼ମ୍ବରରେ ପାଳିତ ହୋଇଯାଇଛି । ପରମ ସୌଭାଗ୍ୟବଶତଃ ୨୦୦୮ର ରଥଯାତ୍ରାରେ ମୁଖ୍ୟ ଅତିଥିଭାବେ ଯୋଗଦେବା ପାଇଁ ମୁଁ ନିମନ୍ତ୍ରିତ ହୋଇଥିଲି । ସେଇ ସୁଯୋଗ କ୍ରମେ ମୁଁ ଏଠାରେ ପାଠକମାନଙ୍କୁ ପ୍ରଥମେ ଆମେରିକାରେ

ଭାରତୀୟତା ଓ ହିନ୍ଦୁଧର୍ମର ଐତିହାସିକତା ସଂପର୍କରେ ଅଳ୍ପ କିଛି ସୂଚନା ଦେବାର ଆବଶ୍ୟକତା ଅନୁଭବ କରୁଚି ।

**ଆମେରିକାରେ ଭାରତୀୟତା ଓ ହିନ୍ଦୁଧର୍ମର ଚେର କେତେ ତଳେ ?**

ଆମେରିକା କହିଲେ ସାଧାରଣତଃ ଆମେ ଯୁକ୍ତରାଷ୍ଟ୍ର ଆମେରିକାକୁ ହିଁ ଦୃଷ୍ଟିରେ ରଖୁ; କିନ୍ତୁ ଆମେରିକାରେ ଭାରତୀୟତାର ଇତିହାସ ଖୋଜି ବସିଲେ ଆଶ୍ଚର୍ଯ୍ୟ ହେବାକୁ ପଡ଼େ । ଅନୁସନ୍ଧାନରୁ ଜଣାପଡ଼େ ଆଜିର ଯୁକ୍ତରାଷ୍ଟ୍ର ନୁହେଁ, ଦିନେ ଆମେରିକା କହିଲେ ସୁଦୂର ଦକ୍ଷିଣର ମେକ୍ସିକୋ ଓ ତତ୍‌ସଂଲଗ୍ନ କେନ୍ଦ୍ର ଆମେରିକା ଓ ତା'ର ଦକ୍ଷିଣ ଦିଗରେ ଆଣ୍ଡିଜ ପର୍ବତମାଳାର ପାଦଦେଶରେ ଅବସ୍ଥିତ ବିଶାଳ ସମୃଦ୍ଧ କଲମ୍ବିଆ ଓ ପେରୁ ପ୍ରଭୃତି ରାଜ୍ୟକୁ ଆଜିର ଆମେରିକା ଇତିହାସର ଉତ୍ପତ୍ତିସ୍ଥଳ ବୋଲି ବୁଝାଯାଉଥିଲା । ଏ ବିସ୍ତୀର୍ଣ୍ଣ ଭୂଭାଗରେ ସମୃଦ୍ଧି ଲାଭ କରିଥିଲା ତିନୋଟି ପ୍ରାଚୀନ ସଭ୍ୟତା ମୟ, ଆସ୍ତିକ ଓ ଇନ । ଏ ତିନୋଟିଯାକ ସଭ୍ୟତାର ନାମୋଲ୍ଲେଖ ରହିଚି ଭାରତୀୟ ପୁରାଣମାନଙ୍କରେ । ଆଜି ଏ ତିନିଟି ସଭ୍ୟତାର ନାଁ ଇତିହାସ ବହିରେ ଯଥାକ୍ରମେ ମାୟା, ଆଜଟେକ ଓ ଇନକା ।

ପ୍ରାଚୀନ ସଭ୍ୟତାମାନଙ୍କୁ ଧ୍ୱଂସ କରି ତା' ଉପରେ ଆଜିର ପାଶ୍ଚାତ୍ୟ ସଭ୍ୟତା ଓ ଧର୍ମକୁ ଜୋରଜବରଦସ୍ତି ଲଦି ଦିଆଯାଇଚି ମାତ୍ର ପାଞ୍ଚଶହ ବର୍ଷ ତଳେ । ଏହାର ସବିଶେଷ ଇତିହାସ କଲମ୍ବସ ପରବର୍ତ୍ତୀ ଉପନିବେଶବାଦୀ ଯୁଗର "ସ୍ପାନିସ୍ କଂକ୍ୱିଷ୍ଟାଡ଼ର"ମାନଙ୍କ ଅକଥନୀୟ ଲୁଣ୍ଠନ, ଦମନ, ଗଣହତ୍ୟାର ସବିଶେଷ ବିବରଣୀରୁ ଜଣାଯାଏ । ଏହାର ପର୍ଯ୍ୟାପ୍ତ ବିବରଣୀ ଲିପିବଦ୍ଧ ହୋଇ ଗ୍ରନ୍ଥାଗାରମାନଙ୍କରେ ଗଚ୍ଛିତ ।

ସ୍ପାନିସମାନେ କେବଳ ଲୁଣ୍ଠନକାରୀ ନ ଥିଲେ, ଜାହାଜ ଜାହାଜ ଭର୍ତ୍ତି ସୁନା ମେକ୍ସିକୋ ଓ ପେରୁ ପ୍ରଭୃତି ରାଜ୍ୟରୁ ଅପହରଣ କରି ସ୍ପେନକୁ ପଠାଇବା ସହିତ ସେମାନଙ୍କର ମୁଖ୍ୟ କାମ ଥିଲା — ସ୍ଥାନୀୟ ଧର୍ମ, ଭାଷା, ସଂସ୍କୃତି ଓ ଆତ୍ମ ପରିଚୟର ସମୂଳ ବିନାଶ । ଇତିହାସର ଏକ ଘୃଣ୍ୟ ଅଧ୍ୟାୟଗୁଡ଼ିକ ସ୍କୁଲକଲେଜ ପାଠ୍ୟପୁସ୍ତକମାନଙ୍କରେ ଏ ପର୍ଯ୍ୟନ୍ତ ଅନାଲୋଚିତ ବା କ୍ୱଚିତ୍ ଆଲୋଚିତ ହେଲେ ବି ଏହା ଏକ ଜଣାଶୁଣା କଥା ଯେ ମେକ୍ସିକୋ ଅର୍ଥାତ୍ ଦୁଇ ଆମେରିକାର ସଂଯୋଗକାରୀ କେନ୍ଦ୍ର ଆମେରିକାରେ ଓ ତତ୍‌ସଂଲଗ୍ନ ପେରୁରେ ତିନୋଟି ସୁପ୍ରାଚୀନ ସଭ୍ୟତା ହଜାର ହଜାର ବର୍ଷ ଧରି ସମୃଦ୍ଧି ଲାଭ କରିଆସିଥିଲା । ଏ ସଭ୍ୟତା ଦୁଇଟିର ଐତିହାସିକ ନାମ ଯଥାକ୍ରମେ — ମୟ, ଆସ୍ତିକ ଓ ଇନ (ସୂର୍ଯ୍ୟ) ।

ଏ ତିନୋଟିଯାକ ସଭ୍ୟତାର ଚେର ଖୋଜିଲେ ଆମକୁ ଫେରିବାକୁ ହେବ ପୌରାଣିକ ଯୁଗକୁ । ରାମାୟଣ ଓ ମହାଭାରତରେ ଏଇ ତିନୋଟି ସଭ୍ୟତାର ସବିଶେଷ ଉଲ୍ଲେଖ ରହିଚି । ଏ ତିନୋଟିଯାକ ସଭ୍ୟତା ପାତାଳର ବୋଲି ପୁରାଣରେ ବର୍ଣ୍ଣିତ । ମୟ ସଭ୍ୟତାର ସ୍ରଷ୍ଟା ଥିଲେ ମୟ । ମୟ ଜଣେ ବିଖ୍ୟାତ ସ୍ଥପତି (ଆର୍କିଟେକ୍ଟ) । ସେ ମଧ୍ୟ ରାମାୟଣର ଲଙ୍କାପତି ରାବଣଙ୍କ ଶ୍ୱଶୁର ରୂପେ ପରିଚିତ ଓ ସେ ସ୍ୱର୍ଣ୍ଣଲଙ୍କାର ନିର୍ମାତା । ମୟଙ୍କୁ ଦାନବ ବୋଲି ଆଖ୍ୟାୟିତ କରିଛନ୍ତି ପୁରାଣକାରମାନେ । କାରଣ ସେ

ପାତାଳର ରାଜା ଥିଲେ । ପାତାଳ ଅସୁରରାଜ ବଳୀଙ୍କ ରାଜ୍ୟ ବୋଲି ମଧ୍ୟ ବିଖ୍ୟାତ । ସମ୍ଭବତଃ ମୟ ଅସୁରରାଜ ବଳୀଙ୍କ ବଂଶଜ ; କିନ୍ତୁ ସେ ଥିଲେ ଦେବଲୋକର ସ୍ଥପତି— ବିଶ୍ୱକର୍ମାଙ୍କ ସମତୁଲ୍ୟ ସ୍ଥପତି ଏହା ମଧ୍ୟ ସ୍ୱୀକୃତ ମହାଭାରତରେ । ଧୃତରାଷ୍ଟ୍ରଙ୍କ ଚକ୍ରାନ୍ତ କ୍ରମେ ହସ୍ତିନାପୁରରୁ ବିତାଡ଼ିତ ପାଣ୍ଡବମାନେ ଅଗମ୍ୟ ଅରଣ୍ୟ ଖାଣ୍ଡବପ୍ରସ୍ଥରେ ନୂଆ ରାଜଧାନୀ ଇନ୍ଦ୍ରପ୍ରସ୍ଥ ସ୍ଥାପନ ପାଇଁ ଶ୍ରୀକୃଷ୍ଣଙ୍କ ପରାମର୍ଶ କ୍ରମେ ଏହି ମୟଙ୍କୁ ଦାୟିତ୍ୱ ଅର୍ପଣ କରିଥିଲେ । ଏସବୁ କିମ୍ବଦନ୍ତୀରୁ ମୟଙ୍କ ପରିଚୟ ମିଳିବା ସହିତ ପାତାଳରେ ରାମାୟଣ ମହାଭାରତ ଯୁଗରେ ପ୍ରତିଷ୍ଠିତ ମାୟା ସଭ୍ୟତା ସଂପର୍କରେ ସମ୍ୟକ ସୂଚନା ମିଳେ ।

ସେହିପରି କେନ୍ଦ୍ର ଆମେରିକାର ଅନ୍ୟତମ ପ୍ରାଚୀନ ସଭ୍ୟତା ଆଜେତକକୁ ପୁରାଣରେ ନାମିତ କରାଯାଇଥିଲା "ଆସ୍ତିକ" । ଏ ନାମ ଭାଗବତରେ ବର୍ଣ୍ଣିତ ମହାରାଜ ଜନ୍ମେଜୟଙ୍କ ସର୍ପଯଜ୍ଞ ପ୍ରସଙ୍ଗରେ ଆସେ । ଗାଁଗହଳର ଲୋକେ ଏବେ ମଧ୍ୟ ରାତି ଅନ୍ଧାରରେ ବାଟ ଚାଲିବାବେଳେ 'ଆସ୍ତିକ ଆସ୍ତିକ' ଗୁଣୁ ଗୁଣୁ ହୁଅନ୍ତି । କାରଣ ଭାଗବତରେ ରୋମାଞ୍ଚକର କାହାଣୀ ମାଧ୍ୟମରେ ସେଇ ଐତିହାସିକ ସତ୍ୟଟି ବର୍ଣ୍ଣିତ ହୋଇଚି ଯେ ଜନ୍ମେଜୟଙ୍କ ସର୍ପଯଜ୍ଞରେ ଯେତେବେଳେ ପୂର୍ଣ୍ଣାହୁତି ଦେବାର ସମୟ ଆସିଥିଲା, ଯାହାର ପରିଣତି ହୋଇଥା'ନ୍ତା ସ୍ୱର୍ଗରେ ଇନ୍ଦ୍ରଙ୍କ ପାଳିତ ନାଗରାଜ ତକ୍ଷକଙ୍କ ସମେତ ସ୍ୱର୍ଗ ମର୍ତ୍ତ୍ୟ ପାତାଳ ତ୍ରିଲୋକରୁ ସର୍ପବଂଶ ସଂପୂର୍ଣ୍ଣ ନିଃଶେଷ । ସେଇ ଚରମ ପରିଣତି ସମୟରେ ଯଜ୍ଞସ୍ଥଳରେ ଉପସ୍ଥିତ ହୋଇଥିଲେ ନାଗବଂଶର ପରମଗୁରୁ ମହର୍ଷି ଆସ୍ତିକ । ଆସ୍ତିକଙ୍କ ବଳିଷ୍ଠ ହସ୍ତକ୍ଷେପ ଫଳରେ ସର୍ପକୂଳ ସୃଷ୍ଟିରୁ ସଂପୂର୍ଣ୍ଣ ବିଲୋପ ହେବାଭଳି ଏକ ଜଘନ୍ୟ ମାନବିକ କୁକର୍ମରୁ ରକ୍ଷା ପାଇଥିଲା । ନଚେତ୍ ମାନବିକ ସ୍ୱାର୍ଥ ଓ ଅହମିକା ସୃଷ୍ଟିର ତୁଷ୍ଟି ପାଇଁ ସୃଷ୍ଟିର ପ୍ରାକୃତିକ ପରିବେଶର ଅପୂରଣୀୟ କ୍ଷତି ସାଧିତ ହୋଇଥା'ନ୍ତା । ଆଜିର ପରିବେଶ ବିଜ୍ଞାନର ଏ ଜ୍ଞାନ ଓ ସଚେତନତା ବାସ୍ତବିକ କେତେ ପୁରୁଣା, ତା'ର ପ୍ରମାଣ ମିଳେ ଏଇ ଆସ୍ତିକ କାହାଣୀରୁ । ତେଣୁ ସର୍ପବଧ ନିଷେଧ ସହିତ ପୁରାଣ କାଳରୁ ମଣିଷମାନେ ସର୍ପଭୟରୁ ନିଜକୁ ସଂରକ୍ଷିତ ରଖିବାକୁ ମହର୍ଷି ଆସ୍ତିକଙ୍କ ନାମ ସ୍ମରଣ କରିବାକୁ ପୁରାଣର ଋଷିବାକ୍ୟ ଏ ଯାବତ୍ ଭାରତର ଜନସାଧାରଣ ପାଳି ଆସୁଛନ୍ତି । ସେଇ ଆସ୍ତିକଙ୍କ ନାମରେ ନାମିତ ପାତାଳ (ନାଗଲୋକ) ର ସଭ୍ୟତାକୁ 'ଆଜଟେକ' ନାଁ ଦିଆଯାଇଚି ବୋଲି ଭାରତର ପଣ୍ଡିତମାନଙ୍କ ମତ (କାଞ୍ଚିର ପୂର୍ବତନ ଶଙ୍କରାଚାର୍ଯ୍ୟ ଚନ୍ଦ୍ରଶେଖରାନନ୍ଦ ସରସ୍ୱତୀଙ୍କ ପ୍ରଣୀତ 'ଦି ହିନ୍ଦୁ ଧର୍ମ', ପ୍ରକାଶକ ଭାରତୀୟ ବିଦ୍ୟାଭବନ, ଗ୍ରନ୍ଥ ଦ୍ରଷ୍ଟବ୍ୟ)

ସେଇ ସୂତ୍ରରୁ ଆହୁରି ମଧ୍ୟ ପ୍ରମାଣିତ ହୁଏ ଯେ ଦକ୍ଷିଣ ଆମେରିକାର ପେରୁର ଇତିହାସ ସମର୍ଥିତ ଲୋକଧର୍ମ 'ଇନ୍‌କା' ବାସ୍ତବିକ ରାମାୟଣ ବର୍ଣ୍ଣିତ ଇନ ବା ସୂର୍ଯ୍ୟବଂଶର ଏକ ଶାଖା ବ୍ୟତୀତ ଅନ୍ୟ କିଛି ନୁହେଁ । ଇନ ଶବ୍ଦର ଅର୍ଥ - ସୂର୍ଯ୍ୟ । ରାମାୟଣରେ ରାମଚନ୍ଦ୍ରଙ୍କୁ ଇନବଂଶଜ ବୋଲି ବର୍ଣ୍ଣିତ । ଏହାର ପ୍ରମାଣ ମିଳେ ପେରୁରେ ଏ ଯାବତ ପ୍ରଚଳିତ ସୂର୍ଯ୍ୟ ଉପାସନାର ଜୀବନ୍ତ ପରମ୍ପରାଗୁଡ଼ିକରୁ । ଆହୁରି ମଧ୍ୟ ଏ ପ୍ରସଙ୍ଗରେ ସବିଶେଷ ଆଲୋଚନା କରାଯାଇଛି ପ୍ରସିଦ୍ଧ ଗବେଷକ ଚମନଲାଲଙ୍କ ବହୁଚର୍ଚ୍ଚିତ ଗ୍ରନ୍ଥ 'ହିନ୍ଦୁ ଆମେରିକା' (୧୯୫୬) ରେ ।

"ହିନ୍ଦୁ ଆମେରିକା" ଏକ ପ୍ରାମାଣ୍ୟ ଐତିହାସିକ ଓ ପ୍ରତ୍ନତାତ୍ତ୍ୱିକ ଗବେଷଣା ଗ୍ରନ୍ଥ । ଏଥିରେ ବହୁ ପାଶ୍ଚାତ୍ୟ ପଣ୍ଡିତ ତଥା ବିଜ୍ଞ ବ୍ୟକ୍ତିମାନଙ୍କର ମତ ଉଦ୍ଧାର କରାଯାଇଛି । ସେଥିରୁ ସୁସ୍ପଷ୍ଟ ହୁଏ ଯେ ଭୂଗୋଳ ମାନଚିତ୍ରରେ ବାରହଜାର ମାଇଲ ପରିବ୍ୟାପ୍ତ ବିଶାଳ ଜଳରାଶିର ପରିବ୍ୟାପ୍ତିକୁ ପ୍ରଶାନ୍ତ ମହାସାଗର ନାମରେ ନାମିତ କରାଯାଏ । ଏ ମହାସାଗର ସଂପର୍କରେ ସାଧାରଣତଃ ଧାରଣା ପୋଷଣ କରାଯାଏ ଯେ ପ୍ରାଚୀନ କାଳରୁ ମଧ୍ୟଯୁଗ ଦେଇ ଆଧୁନିକ ବାଷ୍ପଚାଳିତ ପୋତର ଉଦ୍ଭାବନର ବହୁପୂର୍ବରୁ ମଣିଷମାନେ କଦାପି ସାଧାରଣ ନୌକା ବା ପାଲଟଣା ବୋଇତରେ ଏ ବିଶାଳ ମହାସାଗରକୁ ପାରି ହୋଇପାରି ନ ଥିବେ । ସେ ଧାରଣା ଯେ ସଂପୂର୍ଣ୍ଣ ଭ୍ରାନ୍ତ, ଏହା "ହିନ୍ଦୁ ଆମେରିକା" ଗ୍ରନ୍ଥ ଅଧ୍ୟୟନ ପରେ ପାଠକ ଜାଣିପାରିବେ ।

ଚମନଲାଲଙ୍କ ମତରେ ସୁଦୂର ଅତୀତରେ ଏ ମହାସାଗରକୁ ସାଧାରଣ ନୌକା ସାହାଯ୍ୟରେ ଭାରତୀୟ ଲୋକେ ବାରମ୍ବାର ଅତିକ୍ରମ କରିଆସିଛନ୍ତି । ଏମାନେ ସେଇ ଭାରତୀୟ, ଯୋଉମାନେ ପାଲଟଣା ଡଙ୍ଗାରେ ଆଜିର ଇଣ୍ଡୋନେସିଆ ବୋଲାଉଥିବା ଦେଶର ବାଲି, ଜାଭା ସମେତ ସୁମାତ୍ରା, ବୋର୍ଣ୍ଣିଓ, ଶ୍ୟାମ (ଥାଇଲାଣ୍ଡ), କମ୍ବୋଜ (କାମ୍ବୋଡ଼ିଆ) ପର୍ଯ୍ୟନ୍ତ ବ୍ୟବସାୟ ବାଣିଜ୍ୟ କରୁଥିଲେ ଓ ସେ ଦେଶମାନଙ୍କରେ ଭାରତୀୟ ତାମ୍ବାର ଦେବାଳୟ ନିର୍ମାଣ ସହିତ ନିଜର ସାଂସ୍କୃତିକ ଉପସ୍ଥିତିକୁ ପ୍ରତିଷ୍ଠା କରିଥିଲେ । ପରେ ପରେ ସେଇ ସାମୁଦ୍ରିକ ଅଭିଯାତ୍ରୀ ଦଳ ଆସ୍ତେ ଆସ୍ତେ ପ୍ରଶାନ୍ତ ମହାସାଗର ମଧ୍ୟସ୍ଥ ହଜାର ହଜାର କ୍ଷୁଦ୍ର ବୃହତ୍ ଦ୍ୱୀପଗୁଡ଼ିକୁ ଆବିଷ୍କାର କରିଥିଲେ ସେଇ ପାଲଟଣା ପୋତଗୁଡ଼ିକ ସାହାଯ୍ୟରେ । କାଳକ୍ରମେ ସେମାନେ ପହଞ୍ଚିଥିଲେ ଇଷ୍ଟର ଆଇଲାଣ୍ଡରେ, ଯୋଉଠି ବର୍ତ୍ତମାନ ବିଦ୍ୟମାନ ବିଶାଳକାୟ ପଥରମାନଙ୍କରେ ଖୋଦିତ ଦେବତାମାନଙ୍କ ମୂର୍ତ୍ତିସମୂହ । ପରେ ପରେ ସେମାନେ ପହଞ୍ଚିଥିଲେ ଦକ୍ଷିଣ ଆମେରିକାର ପଶ୍ଚିମରେ ଆଣ୍ଡିକ୍ ପର୍ବତମାଳାର ପାଦଦେଶର ସମତଳ ଅଞ୍ଚଳରେ । ଏହିଠାରୁ ଆରମ୍ଭ ଆମେରିକା ମହାଦେଶଦ୍ୱୟରେ ହିନ୍ଦୁ ଭାରତୀୟମାନଙ୍କ ଉପସ୍ଥିତି । ସେମାନେ ପେରୁ ସମେତ ମଧ୍ୟ- ଆମେରିକାର ମେକ୍ସିକୋ, ଗ୍ୱାଟାମାଲା, ହଣ୍ଡୁରାସ ପ୍ରଭୃତି ବ୍ୟାପକ ଅଞ୍ଚଳରେ ବହୁବହୁ ହିନ୍ଦୁ ମନ୍ଦିର ପ୍ରତିଷ୍ଠା କରିଥିଲେ । ସ୍ପାନିସମାନେ ଏହି ମନ୍ଦିରମାନଙ୍କର ଧ୍ୱଂସପ୍ରକ୍ରିୟା ଆରମ୍ଭ କରିଥିଲେ ଷୋଡ଼ଶ ଶତାବ୍ଦୀରେ ।

କେନ୍ଦ୍ର ଆମେରିକା ଓ  ପେରୁରେ ହଜାର ହଜାର ବର୍ଷ ଧରି ମୂର୍ତ୍ତି ଉପାସନା ଚାଲିଆସିଥିଲା ଷୋଡ଼ଶ ଶତାବ୍ଦୀରେ ସେଇ ବର୍ବର ଯୁଗର ଆରମ୍ଭ ପର୍ଯ୍ୟନ୍ତ । ସେ ମନ୍ଦିରମାନଙ୍କରେ ପୂଜା ପାଉଥିବା ମୂର୍ତ୍ତିମାନେ ବର୍ତ୍ତମାନ ମ୍ୟୁଜିୟମ୍‌ରେ ଦର୍ଶନୀୟ ସାମଗ୍ରୀ । ସେ ଯାହାହେଉ, ଏଠାକାର ସଂଗ୍ରହାଳୟମାନଙ୍କରେ ଗଚ୍ଛିତ ହଜାର ହଜାର ଭଗ୍ନ ମୂର୍ତ୍ତି, ଚିତ୍ରପଟ ଓ ଧ୍ୱଂସସ୍ତୂପମାନଙ୍କରେ ମାଟିତଳୁ ମିଳୁଥିବା ଅସଂଖ୍ୟ ହିନ୍ଦୁ ମୂର୍ତ୍ତିମାନଙ୍କ ଭିତରେ ଅଛନ୍ତି — ଶିବ, ଗଣପତି, ହନୁମାନ, ଜଳଦେବତା, ବରୁଣ ପ୍ରଭୃତି ହିନ୍ଦୁଙ୍କର ବହୁବହୁ ଦେବାଦେବୀ । ସେ ବିଷୟରେ ଅଧିକ ଆଲୋଚନା ଏଠାରେ ସମ୍ଭବ ନୁହେଁ । କେବଳ ଏତିକି କୁହାଯାଇପାରେ ଯେ ଆମେରିକାରେ ଆଜିର ହିନ୍ଦୁ ମନ୍ଦିର ସବୁ ପ୍ରତିଷ୍ଠାର ସହସ୍ରାଧିକ ବର୍ଷ ପୂର୍ବରୁ ଆମେରିକା ମାଟିରେ ହିନ୍ଦୁ ଭାରତୀୟଙ୍କ ଉପସ୍ଥିତି ସଂପୂର୍ଣ୍ଣଭାବେ ପ୍ରମାଣିତ ।

ଉପରୋକ୍ତ ସୂଚନା ବ୍ୟତୀତ ଏଠାରେ ମୁଁ ପୁଣି ଥରେ ବ୍ୟକ୍ତ କରିବାକୁ ଇଚ୍ଛୁକ ଯେ ୧୯୯୭ ଆମେରିକା ଭ୍ରମଣ ସମୟରେ କନେକ୍ଟିକଟ୍ ରାଜ୍ୟର 'ଓ୍ୱାସିଂଟନ୍' ନାମକ ଏକ ରେଡ୍ ଇଣ୍ଡିଆନ ରିଜର୍ଭ ଅଞ୍ଚଳର ସାଂସ୍କୃତିକ ସଂଗ୍ରହାଳୟରେ ଆମ ଓଡ଼ିଆଙ୍କ ଉପାସ୍ୟ ଶ୍ରୀ ଜଗନ୍ନାଥଙ୍କ ଏକ ମୂର୍ତ୍ତି ଆବିଷ୍କାର କରିଥିଲି । ଏ ମୂର୍ତ୍ତିର ତଳେ ଲେଖାଯାଇଛି "ଦ ହାଉସ୍ ଡିଟି ଅଫ୍ ଆମେରିକାନ ଇଣ୍ଡିଆନ୍‌ସ"— ଅର୍ଥାତ୍ ଆମର ଜଗନ୍ନାଥଙ୍କ ପ୍ରତିକୃତି ଏଠାକାର ଆଦିବାସୀମାନଙ୍କର ଇଷ୍ଟଦେବ । ଏ ସଂପର୍କରେ ମୁଁ ମୋର ପ୍ରକାଶିତ ଭ୍ରମଣୋପନ୍ୟାସ "ତୃଷ୍ଣା - ଏକ ଅନାବିଷ୍କୃତ ଆମେରିକା" (୧୯୯୯) ବହିରେ ଉଲ୍ଲେଖ କରିଛି ।

ମେକ୍ସିକୋ ତଥା ପେରୁ ପ୍ରଭୃତି ଆମେରିକୀୟ ଭୂଖଣ୍ଡରେ ହିନ୍ଦୁ ଧର୍ମ ତଥା ଏଠାର ଆଦିବାସୀମାନଙ୍କର ଧର୍ମର ବ୍ୟାପକ ଉପସ୍ଥିତିର ପରିପ୍ରେକ୍ଷୀରେ ଆଜିର ବିଂଶ ଓ ଏକବିଂଶ ଶତାବ୍ଦୀର ଯୁକ୍ତରାଷ୍ଟ୍ର ଆମେରିକାରେ ଶ୍ରୀ ଜଗନ୍ନାଥଙ୍କ ଉଦ୍ଭବ ନିଶ୍ଚିତ ଭାବେ ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । ଏ ବିଷୟରେ ସବିଶେଷ ଆଲୋଚନା ଆବଶ୍ୟକ । କିନ୍ତୁ ଏଠାରେ ମୁଁ କେବଳ ଆଜିର ଆମେରିକାରେ ଜଗନ୍ନାଥଙ୍କ ରଥଯାତ୍ରାର ଜନପ୍ରିୟତା ସଂର୍ପକରେ ଯେଉଁ ପୂର୍ବାଭାସ ଦେଇ ୨୦୦୯ରେ ମିନିଆପଲିସ୍‌ରେ ଅନୁଷ୍ଠିତ ରଥଯାତ୍ରା ପ୍ରସଙ୍ଗ ଅଧା କରିଥିଲି, ତାହାର ସଂପୂର୍ଣ୍ଣ ଚିତ୍ର ଦେଉଛି ।

**ମିନେସୋଟା (ମିନିଆପଲିସ୍) ରଥଯାତ୍ରା-୨୦୦୮ :**

ବର୍ତ୍ତମାନ ମୂଳ ବିଷୟକୁ ଫେରିଆସିବା । ୨୦୦୮, ଜୁଲାଇ, ୧୩ ତାରିଖରେ ମିନିଆପଲିସ୍‌ରେ ଜଗନ୍ନାଥ ମହାପ୍ରଭୁଙ୍କ ରଥଯାତ୍ରା ସଂପର୍କରେ ପୂର୍ବରୁ ଉଲ୍ଲେଖ କରିଛି । ଏ ରଥଯାତ୍ରାର କ୍ଷେତ୍ର (ଭେନ୍ୟୁ) ଥିଲା ମିନିଆପଲିସ୍‌ର ହିନ୍ଦୁ ମନ୍ଦିର । ଏ ମନ୍ଦିରଟି ଅତି ବିଶାଳ ଓ ଦେଖିବାକୁ ଅନେକଟା ଦକ୍ଷିଣ ଭାରତୀୟ ସ୍ଥାପତ୍ୟ ଶୈଳୀରେ ଗଠିତ । ଏଠି କହି ରଖେ, ଆମେରିକାରେ ଅଧୁନା ନିର୍ମିତ ଅଧିକାଂଶ ହିନ୍ଦୁ ମନ୍ଦିର ଏହି ଦକ୍ଷିଣଭାରତୀୟ ଶୈଳୀରେ ଗଢ଼ା । ତାର କାରଣ ଆମେରିକାରେ ପ୍ରଥମେ ଏଇ ଦକ୍ଷିଣଭାରତୀୟ ଏନ.ଆର୍.ଆଇ.ମାନେ ମନ୍ଦିର ନିର୍ମାଣର ସ୍ୱପ୍ନ ଦେଖିଥିଲେ ଓ ନିଜ ସ୍ୱପ୍ନକୁ ସାକାର କରିଥିଲେ । ସେମାନେ ସ୍ୱଭାବତଃ ଅତ୍ୟନ୍ତ ଧର୍ମପରାୟଣ ଓ ନିଜ ପରମ୍ପରାର ସଂରକ୍ଷଣ ଦିଗରେ ସର୍ବଦା ଉତ୍ସାହୀ । ନିଜ ଅର୍ଜନର ବହୁଭାଗ ସେମାନେ ଅକାତରରେ ଖର୍ଚ୍ଚ କରିଆସିଛନ୍ତି ନିଜର ଭାରତୀୟ ପରିଚୟ ବଜାୟ ପାଇଁ ଓ ବିଶେଷତଃ ହିନ୍ଦୁଧର୍ମର ସଂରକ୍ଷଣ ପାଇଁ । ତାରି ଫଳରେ ସେମାନେ ଦକ୍ଷିଣ ଭାରତୀୟ ପ୍ରସିଦ୍ଧ ସ୍ଥପତିମାନଙ୍କର ପରାମର୍ଶକ୍ରମେ ସେଇ ଦକ୍ଷିଣ ଭାରତୀୟ ଶୈଳୀର ଉପଯୋଗରେ ନିର୍ମାଣ କରାଇଛନ୍ତି ଶତାଧିକ ହିନ୍ଦୁ ମନ୍ଦିର ଆମେରିକାର ମାଟିରେ । ମିନିଆପଲିସ୍ ହିନ୍ଦୁ ମନ୍ଦିରଟି ସେଇ ସୂତ୍ରରେ ନିର୍ମିତ ହୋଇଥିବା ଜଣାପଡ଼େ ।

ତେବେ ଏଇ ମନ୍ଦିରର ଗର୍ଭଗୃହଟି ଅତ୍ୟନ୍ତ ବିଶାଳ । ଏଠି ଗୋଟିଏ ନୁହେଁ, ବହୁବହୁ ହିନ୍ଦୁ ଦେବଦେବୀଙ୍କ ମୂର୍ତ୍ତି ପ୍ରତିଷ୍ଠିତ । ପ୍ରତ୍ୟେକଟି ଉପାସ୍ୟ ମୂର୍ତ୍ତି ପାଇଁ ଗୋଟିଏ ଗୋଟିଏ ପାର୍ଶ୍ୱମନ୍ଦିର ଏହି ଗର୍ଭଗୃହରେ ହିଁ ବିରାଜମାନ କରୁଥାଏ । ଦେବଦେବୀମାନଙ୍କ ଭିତରେ ହିନ୍ଦୁଙ୍କ ସମସ୍ତ ସଂପ୍ରଦାୟର ଆରାଧ୍ୟ ଦେବାଦେବୀ ଏଠାରେ ନିଜ ନିଜ ମଣ୍ଡପରେ ପ୍ରତିଷ୍ଠିତ । ସେମାନଙ୍କ ଭିତରେ ଗାଣପତ୍ୟ, ଶୈବ, ଶାକ୍ତ,

ବୈଷ୍ଣବ ଓ ସୌର ସଂପ୍ରଦାୟର ଉପାସ୍ୟ ମୂର୍ତ୍ତି ସବୁ ପ୍ରାଧାନ୍ୟ ଲାଭ କରିଥା'ନ୍ତି । ତେବେ ଅଧିକାଂଶ ହିନ୍ଦୁ ମନ୍ଦିରର ମୁଖ୍ୟ ଦେବତା ହେଲେ ଗଣପତି । ତେଣୁ ଗଣେଶଙ୍କୁ କେନ୍ଦ୍ରରେ ରଖି ଅନ୍ୟଦେବଦେବୀଙ୍କ ମଣ୍ଡପସବୁ ଏଠାକାର ମନ୍ଦିରମାନଙ୍କରେ ପ୍ରତିଷ୍ଠା କରାଯାଇଛି । ମିନିଆପଲିସ୍ ହିନ୍ଦୁ ମନ୍ଦିରରେ ପ୍ରତିଷ୍ଠା ପାଇଥିବା ଦେବମୂର୍ତ୍ତିଗୁଡ଼ିକ ଭିତରେ ଅଛନ୍ତି – ଶ୍ରୀ ବରଦରାଜ (ବିଷ୍ଣୁ), ଶ୍ରୀ ଦେବୀ (ଲକ୍ଷ୍ମୀ) ଭୂଦେବୀ (ଅଣ୍ଡାଲ), ଶ୍ରୀ ଗଣେଶ, ଶ୍ରୀ ଜଗନ୍ନାଥ, ଶ୍ରୀ ଶିବ-ପାର୍ବତୀ, ସୁବ୍ରମନ୍ୟମ (କାର୍ତ୍ତିକ), ଶ୍ରୀ ରାମ ସୀତା ଲକ୍ଷ୍ମଣ, ହନୁମାନ, ଭେଙ୍କଟେଶ୍ୱର, ରାଧାକୃଷ୍ଣ, ଶ୍ରୀ ଆୟ୍ୟପ୍ପା, ସତ୍ୟନାରାୟଣ, ଦତ୍ତାତ୍ରେୟ, ସରସ୍ୱତୀ, ଦୁର୍ଗା, ମହାବୀର (ଜୈନ) ନବଗ୍ରହ, ନନ୍ଦି ଓ ଗରୁଡ଼ଙ୍କ ମୂର୍ତ୍ତି ।

ମିନିଆପଲିସ ହିନ୍ଦୁ ମନ୍ଦିରରେ ଅବଶ୍ୟ ୨୦୦୬ ମସିହାରେ ପ୍ରତିଷ୍ଠା ପାଇଲେ ହିନ୍ଦୁମାନଙ୍କର ଅନ୍ୟତମ ପ୍ରଧାନ ଦେବତା ଶ୍ରୀଜଗନ୍ନାଥ । ସେ ଏକ ଲମ୍ବା କାହାଣୀ । ମିନିଆପଲିସରେ ଜଗନ୍ନାଥଙ୍କ ପ୍ରତିଷ୍ଠା ନେଇ ମୂଳରୁ ମୂଳରୁ କେତେକ ପ୍ରତିବନ୍ଧକ ଦେଖାଯାଇଥିବା ସତ୍ତ୍ୱେ ସ୍ଥାନୀୟ ଓଡ଼ିଆମାନଙ୍କର ଐକ୍ୟବଦ୍ଧତା ଓ ସହଯୋଗ ଫଳରେ ୨୦୦୬ରେ ଠାକୁରମାନଙ୍କର ଚତୁର୍ଦ୍ଧାମୂର୍ତ୍ତି ଏକ ସୁଦୃଶ୍ୟ ସ୍ୱତନ୍ତ୍ର ପାର୍ଶ୍ୱ ମନ୍ଦିରରେ ସୁପ୍ରତିଷ୍ଠିତ ହୋଇପାରିଛନ୍ତି ।

ଏ ମନ୍ଦିରରେ ପୂଜକ ମୁଖ୍ୟତଃ ଦକ୍ଷିଣଭାରତୀୟ ବ୍ରାହ୍ମଣ । ସେମାନେ ବହୁସଂଖ୍ୟାରେ ଆମେରିକାର ହିନ୍ଦୁ ମନ୍ଦିରମାନଙ୍କରେ ଗତ ଅନେକ ବର୍ଷ ଆଗରୁ ପୂଜକ ରୂପେ ନିଯୁକ୍ତି ପାଇଆସିଛନ୍ତି । ତା'ର କାରଣ, ଦକ୍ଷିଣଭାରତରେ ଜାତିଗତ ଅସ୍ପୃଶ୍ୟ । ସେ ଯାହାହେଉ, ମିନିଆପଲିସ୍‌ର ଏ ନୂଆ ମନ୍ଦିରଟି ଯଦିଚ ୨୦୦୬ରେ ପ୍ରତିଷ୍ଠା ପାଇଛି, ତେବେ ଏ ସହରରେ ଗତ କୋଡ଼ିଏ ବର୍ଷ ତଳେ ପ୍ରଥମ ହିନ୍ଦୁ ମନ୍ଦିରଟି ପ୍ରତିଷ୍ଠିତ ହୋଇଥିଲା । ଏକ ପୁରାତନ ଖ୍ରୀଷ୍ଟିଆନ ଚର୍ଚ୍ଚକୁ ସ୍ଥାନୀୟ ହିନ୍ଦୁମାନେ ଖରିଦ କରି ତା' ସ୍ଥାନରେ ପୁରୁଣା ହିନ୍ଦୁ ମନ୍ଦିରଟି ପ୍ରତିଷ୍ଠା କରିଥିଲେ । ଏବେ ପ୍ରାୟ ଅଶୀ ଏକର ପରିମିତ ଏକ ବ୍ୟାପକ ସ୍ଥାନ ଖରିଦ୍ କରି ହିନ୍ଦୁମାନେ ନିର୍ମାଣ କରିଛନ୍ତି ଆଜିର ଏ ନୂଆ ଭବ୍ୟ ସୁଦୃଶ୍ୟ ନୂଆ ମନ୍ଦିର । ଏ ଦିଗରେ ସ୍ଥାନୀୟ ଭାରତୀୟ ଏନ୍.ଆର୍.ଆଇ.ଙ୍କ ସହିତ ସମସ୍ତ ଓଡ଼ିଆ ଏନ୍.ଆର୍.ଆଇ.ଙ୍କ ମିଳିତ ଅବଦାନ ରହିଛି । ସେମାନଙ୍କ ଭିତରେ ମନ୍ଦିରର ଟ୍ରଷ୍ଟି ବୋର୍ଡର ଜଣେ ମୁଖ୍ୟ ଓଡ଼ିଆ ସଭ୍ୟ ଡକ୍ଟର ଶୀତିକଣ୍ଠ ଦାଶ ଓ ତାଙ୍କ ସହଧର୍ମିଣୀ ଶ୍ରୀମତୀ କଳ୍ପନା ଦାଶଙ୍କ ନାମ ଏଠାରେ ଉଲ୍ଲେଖନୀୟ । ଶୀତକଣ୍ଠ ବାବୁ ଏ ସହରରେ ବହୁବର୍ଷ ଧରି ରହିଆସିଛନ୍ତି । ସେ ଜଣେ ବିଶିଷ୍ଟ ଶିଳ୍ପପତି । ସେ ଓ ତାଙ୍କ ପତ୍ନୀ କଳ୍ପନା ଉଭୟ ଅତ୍ୟନ୍ତ ଅତିଥିପରାୟଣ । ମୁଁ ଓ ମୋର ପତ୍ନୀଙ୍କୁ ସମସ୍ତ ଯାତ୍ରାଖର୍ଚ୍ଚ ଦେଇ ସେ ହାର୍ଟଫୋର୍ଡ ସହରରୁ ପ୍ଲେନ୍‌ରେ ଅଣାଇଥିଲେ ।

ଏ ରଥଯାତ୍ରାରେ ଏ ବର୍ଷ ମତେ ମୁଖ୍ୟ ଅତିଥି ରୂପେ ନିମନ୍ତ୍ରିତ କରାଯାଇଥିଲା । ମୁଁ ଓ ମୋର ସହଧର୍ମିଣୀ ଶ୍ରୀମତୀ ନିରୂପମା ଆଚାର୍ଯ୍ୟ ଉତ୍ସବରେ ଯୋଗ ଦେଇଥିଲୁ । ସୁଖର କଥା ଏ ମହତ୍ତ୍ୱପୂର୍ଣ୍ଣ ରଥଯାତ୍ରା ଉତ୍ସବରେ ଯୋଗ ଦେଇଥିଲେ ହଜାରରୁ ଅଧିକ ଭାରତୀୟ । ତାଙ୍କ ଭିତରେ ଥିଲେ ବହୁସଂଖ୍ୟାରେ ଓଡ଼ିଆ ଓ ଓଡ଼ିଆଣୀ । ମୁଖ୍ୟତଃ ବହୁସଂଖ୍ୟାରେ କିଶୋରକିଶୋରୀ ଓ ଶିଶୁଙ୍କ ଉପସ୍ଥିତି ସ୍ଥାନଟିକୁ

ଉତ୍ସବମୁଖର କରିଥିଲା । ଏହା ନିଶ୍ଚିତଭାବେ ଏକ ଶୁଭ ସୂଚନା । ଆମେରିକାରେ ଦ୍ୱିତୀୟ ପିଢ଼ିର ଏନ୍.ଆର୍. ଆଇ.ମାନଙ୍କୁ ନିଜ ସଂସ୍କୃତିମନସ୍କ କରାଇବାରେ ହିନ୍ଦୁ ମନ୍ଦିରମାନଙ୍କରେ ଜଗନ୍ନାଥଙ୍କ ରଥଯାତ୍ରା ଉତ୍ସବ ଏକ ଚମତ୍କାର ସାମାଜିକ କାର୍ଯ୍ୟକ୍ରମ ରୂପେ ପ୍ରମାଣିତ । ଆଗନ୍ତୁକମାନଙ୍କ ଭିତରେ ଅନେକ ଗୋରା ଆମେରିକାନ୍‌ଙ୍କ ଉପସ୍ଥିତି ଉତ୍ସବକୁ ଆହୁରି ଅର୍ଥପୂର୍ଣ୍ଣ କରିପାରିଥିଲା । ସେମାନେ ମଧ୍ୟ ହର୍ଷୋତ୍‌ଫୁଲ୍ଲ ଚିତ୍ତରେ ରଥ ଟାଣିବା ଲକ୍ଷ୍ୟ କରିଥିଲି ।

ଏଠାରେ ଚାରି ମହାପ୍ରଭୁଙ୍କ ପାଇଁ ଗୋଟିଏ ମାତ୍ର ରଥର ବ୍ୟବସ୍ଥା ଏ ପର୍ଯ୍ୟନ୍ତ କରାଯାଇପାରିଛି । ଏହି ରଥଟିକୁ ମନ୍ଦିର ଚତୁଃପାର୍ଶ୍ୱରେ ଏକ ବିରାଟ ହତା ଅନ୍ତର୍ଗତ ରାସ୍ତାକୁ ରଥଦାଣ୍ଡ ଭାବେ ବ୍ୟବହାର କରାଯାଏ । ସେ ଦାଣ୍ଡରେ ଠାକୁରମାନଙ୍କ ରଥଟିକୁ ହରିବୋଲ, ହୁଳହୁଳି, କାହାଳୀ, ଘଣ୍ଟଘଣ୍ଟା ଓ ଶଙ୍ଖନାଦ ଭିତରେ ଟଣାଯାଇ ପୁନଶ୍ଚ ଏକ ସ୍ୱତନ୍ତ୍ର ମାଉସୀ ମା' ମନ୍ଦିର ବୋଲାଉଥିବା ହଲ ଭିତରକୁ ଅଣାଯାଏ । ଏଠାରେ ଠାକୁରମାନେ ବାହୁଡ଼ା ପର୍ଯ୍ୟନ୍ତ ବିରାଜମାନ କରନ୍ତି । ପ୍ରତିଦିନ ଏଠାରେ ପୂଜାପ୍ରାର୍ଥନା ସହିତ ନୃତ୍ୟଗୀତ, ଧାର୍ମିକ ଶାସ୍ତ୍ର ଆଲୋଚନା କରାଯାଏ । ସେ ଭିତରେ ଓଡ଼ିଶୀ ନୃତ୍ୟ ପରିବେଷଣ ଏକ ମୁଖ୍ୟ ଅଙ୍ଗ । ୨୦୦୮ ରଥଯାତ୍ରାରେ ଓଡ଼ିଶୀ ନୃତ୍ୟ ପରିବେଷଣ କରିବାକୁ ଓଡ଼ିଶାର ପ୍ରସିଦ୍ଧ ନୃତ୍ୟାଙ୍ଗନା କଟକର ମୀନା ସାହୁଙ୍କୁ ନିମନ୍ତ୍ରଣ କରାଯାଇଥିଲା । ପୂର୍ବରୁ ସ୍ଥାନୀୟ ଓଡ଼ିଆ ଯୁବକଯୁବତୀମାନେ ଶ୍ରୀଜଗନ୍ନାଥଙ୍କ ନୀଳମାଧବ - ଇଜିତା, ବିଦ୍ୟାପତି ନାଟକ ମଞ୍ଚସ୍ଥ କରିଥିଲେ ।

ଏ ଆଲୋଚନାରେ ସେଦିନ ପ୍ରଧାନ ଅତିଥିଭାବେ ମତେ ନିମନ୍ତ୍ରିତ କରାଯାଇଥିଲା 'ବିଶ୍ୱରେ ଜଗନ୍ନାଥ ଧର୍ମର ମହିମା ସହିତ ଚଳିତ ସମୟର ଅର୍ଥନୈତିକ ଜଗତୀକରଣ' ପରିପ୍ରେକ୍ଷୀରେ ଏକ ଆଲୋଚନା ଚକ୍ରର ଉଦ୍‌ଘାଟନ ପାଇଁ । ପୂର୍ବରୁ ଠାକୁରମାନଙ୍କର ରଥ ସମ୍ମୁଖରେ ଛେରାପହଁରା କରିବା ପାଇଁ ମୁଖ୍ୟ ଅତିଥିଙ୍କୁ ଅନୁରୋଧ କରିବାର ଏକ ବିଧି ଏଠାକାର ଅଧିକାଂଶ ସହରର ଜଗନ୍ନାଥ ମନ୍ଦିରମାନଙ୍କରେ ପ୍ରଚଳିତ ଅଛି । ତଦନୁଯାୟୀ ପୂର୍ବ ବର୍ଷର ରଥଯାତ୍ରାର ମୁଖ୍ୟ ଅତିଥି ମିନିଆପଲିସ୍ ସହରର ମେୟର ତଥା ସିନେଟରଙ୍କୁ ନିମନ୍ତ୍ରିତ କରାଯାଇଥିଲା । ଚଳିତ ୨୦୦୮ରେ ସେ ସୌଭାଗ୍ୟ ମୋତେ ଅର୍ପଣ କରାଯାଇଥିଲା । ପୂର୍ବରୁ ଅବଶ୍ୟ ଆଉ ଥରେ ମୁଁ ଏ ସୁଯୋଗ ଲାଭ କରିଥିଲି ୨୦୦୩ରେ 'ଜଗନ୍ନାଥ ସୋସାଇଟି ଅଫ୍ ଆମେରିକାଜ୍' ଦ୍ୱାରା ଆୟୋଜିତ ନ୍ୟାସଭିଲଠାରେ ଅନୁଷ୍ଠିତ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ରଥଯାତ୍ରାରେ । ଠାକୁରମାନଙ୍କର ରଥ ସମ୍ମୁଖରେ ପବିତ୍ର ଛେରା ପହଁରା କାର୍ଯ୍ୟ— ଯାହା କେବଳ ପୁରୀର ଠାକୁରରାଜାଙ୍କର ପ୍ରାପ୍ୟ, ସେଇ ଦୁର୍ଲଭ ସୌଭାଗ୍ୟ ମତେ ଅର୍ପଣ କରାଯାଇଥିବାରୁ ମୁଁ ମନ୍ଦିର ପରିଚାଳକ ତଥା ଟ୍ରଷ୍ଟି ବୋର୍ଡର ଚେୟାରମ୍ୟାନ ଡଃ ଶାନେ, ଶ୍ରୀମତୀ ଶାନେ ଏବଂ ଡଃ ଶୀତିକଣ୍ଠ ଦାଶ ଓ ଶ୍ରୀମତୀ କଳ୍ପନା ଦାଶଙ୍କ ନିକଟରେ ଚିରକୃତଜ୍ଞ ।



# ଅପୂଜ୍ୟ ପୂଜା ଓ ଦୁର୍ନୀତି

ଶ୍ରୀ ଗୋପାଳ ଚନ୍ଦ୍ର ନନ୍ଦ

*ବର୍ତ୍ତମାନ ଆମ ସମାଜରେ ନିଜର ଉଚ୍ଚ ଗୁଣମାନ ବୃଦ୍ଧି ଦିଗରେ ପ୍ରଚେଷ୍ଟା ପରିବର୍ତ୍ତେ ବୃଥାରେ ଅପଦାର୍ଥମାନଙ୍କର ଗୁଣଗାନ ପାଇଁ ତାମସିକ ଭାବାପନ୍ନ ଥୋକେ ଲୋକ ନିଜର ଶକ୍ତି ସାମର୍ଥ୍ୟ ଅଯଥାରେ ବ୍ୟୟ କରି ବାହାବା ନେବାର ଅପଚେଷ୍ଟା ସର୍ବତ୍ର ଚଳାଇଥିବା ଦେଖାଯାଉଛି । ଆରକ୍ଷୀ ବିଭାଗରେ କାର୍ଯ୍ୟକରି ମହାନିର୍ଦ୍ଦେଶକ ପଦ ମଣ୍ଡନ କରି ଅବସର ନେଇଥିବା ଶ୍ରୀ ଗୋପାଳ ଚନ୍ଦ୍ର ନନ୍ଦ ଏ ଦିଗଟି ପ୍ରତି ଦୃଷ୍ଟି ଦେଇଥିବାରୁ ଆମେ ତାଙ୍କୁ ସାଧୁବାଦ ଜଣାଇବା ସହିତ ତାଙ୍କ କଲମରୁ ସୃଷ୍ଟ 'ଅପୂଜ୍ୟ ପୂଜା ଓ ଦୁର୍ନୀତି' ଶୀର୍ଷକ ପ୍ରବନ୍ଧଟି ଉପସ୍ଥାପନ କରୁଛୁ ଆପଣମାନଙ୍କ ପାଇଁ.......*

କେବଳ ଆମ ଦେଶରେ କାହିଁକି, ପୃଥିବୀର ବହୁ ରାଷ୍ଟ୍ରରେ ପୂଜ୍ୟପୂଜାର ପରମ୍ପରା ରହିଛି । ଯେଉଁ ବରପୁତ୍ରମାନଙ୍କର ରାଷ୍ଟ୍ର ତଥା ମାନବ ସମାଜର ହିତ ପାଇଁ ବିଭିନ୍ନ କ୍ଷେତ୍ରରେ ଅବଦାନ ରହିଛି, ସେମାନଙ୍କୁ ସ୍ମରଣ କରିବା ଓ ତାଙ୍କ ପ୍ରତି ସମ୍ମାନ ଦେବାର ପରମ୍ପରା ବହୁକାଳରୁ ରହିଆସିଛି । ସ୍ୱର୍ଗାରୋହଣ ପରେ ଓ ଜୀବିତାବସ୍ଥାରେ ସମାଜ ସେମାନଙ୍କୁ ସମ୍ମାନ କରେ । ମହାତ୍ମା ଗାନ୍ଧୀ, ଜବାହରଲାଲ ନେହରୁ, ସର୍ଦ୍ଦାର ପଟେଲ, ଗୋପବନ୍ଧୁ ଦାସ, ମଧୁସୂଦନ ଦାସ ଆଦି ମହାପୁରୁଷଗଣ ଏ ଦେଶ ବା ରାଜ୍ୟର ମଙ୍ଗଳ ପାଇଁ ଯେଉଁ ତ୍ୟାଗ କରିଯାଇଛନ୍ତି, ତାହା ଚିରସ୍ମରଣୀୟ ହୋଇ ରହିବ । ସେମାନଙ୍କର ଜନ୍ମୋତ୍ସବ ଓ ଶ୍ରାଦ୍ଧୋତ୍ସବରେ ସ୍ୱର୍ଗୀୟ ଆତ୍ମା ପ୍ରତି ବ୍ୟକ୍ତିଗତଭାବରେ ବା ଆନୁଷ୍ଠାନିକଭାବରେ ଶ୍ରଦ୍ଧାଞ୍ଜଳି ଦିଆଯାଏ । କିନ୍ତୁ ଦୁଃଖର ବିଷୟ, ଏହି ପୂଜ୍ୟପୂଜାର ପରମ୍ପରା କ୍ରମଶଃ ଶିଥିଳ ପଡ଼ିଯାଉଛି ।

କେତେକ କ୍ଷେତ୍ରରେ ନିଷ୍ଠାର ଅଭାବ ପରିଲକ୍ଷିତ ହୁଏ । ସଂଗଠକ ଓ ପୂଜ୍ୟପୂଜା ଉଦ୍ଦେଶ୍ୟରେ ନିମନ୍ତ୍ରିତ କେତେକ ବିଶିଷ୍ଟ ଅତିଥିଙ୍କର ପୃଷ୍ଠଭୂମି ଦେଖିଲେ ଦୁଃଖ ଲାଗେ । ପୂଜ୍ୟପୂଜାରେ ଅପୂଜ୍ୟଙ୍କ ଉପସ୍ଥିତି ଯନ୍ତ୍ରଣାଦାୟକ ଓ ଭବିଷ୍ୟତ ପାଇଁ ଏହା ଏକ ଅଶୁଭ ସଙ୍କେତ । ପୂଜ୍ୟପୂଜା ନାମରେ ବହୁ କ୍ଷେତ୍ରରେ ଅପୂଜ୍ୟକୁ ପୂଜା କରାଯାଉଛି, ଏହି ଅପୂଜ୍ୟମାନେ ସେଥିପାଇଁ ସେମାନଙ୍କର ଅର୍ଥବଳ ବିନିଯୋଗ କରନ୍ତି । ସେମାନେ କେବଳ ଅର୍ଥ ଲାଳସାରେ ସନ୍ତୁଷ୍ଟ ନୁହନ୍ତି , ସେମାନଙ୍କର ଦରକାର ହୁଏ କ୍ଷମତା ଓ ସମ୍ମାନ । ସେମାନଙ୍କର ଜନ୍ମ ଉତ୍ସବ ବା ସେମାନଙ୍କର ତଥାକଥିତ ଅବଦାନ ପାଇଁ ସ୍ୱତନ୍ତ୍ର ଉତ୍ସବମାନ ଆୟୋଜନ କରାଯାଇଥାଏ । ସେମାନଙ୍କର ଚାଟୁକାରମାନେ ମଧ୍ୟ ସେଥିପାଇଁ ତତ୍ପର । ଶୁଣାଯାଏ,

କେତେକ ତଥାକଥିତ ପୂଜ୍ୟପୂଜା ଅନୁଷ୍ଠାନରେ ଏହି ଅପୂଜ୍ୟ ବ୍ୟକ୍ତିମାନେ ବିଭିନ୍ନ ଉପାଧି କ୍ରୟ କରିଥା'ନ୍ତି । କେହି ରାଷ୍ଟ୍ରରତ୍ନ ତ କେହି କେହି ଜାତିରତ୍ନ ଓ ଆଉ କେତେକ ରାଷ୍ଟ୍ର-ଗୌରବ ବା ଜାତି-ଗୌରବ ଉପାଧି ପାଇଥା'ନ୍ତି । ଏପରି ଉପାଧି ଯେଉଁମାନେ ଦିଅନ୍ତି ବା ନିଅନ୍ତି, ସେମାନଙ୍କର ପୃଷ୍ଠଭୂମି ଉପରେ ତଦନ୍ତ କରାଗଲେ ସେମାନଙ୍କର ଅସଲ ସ୍ୱରୂପ ସମାଜ ଜାଣିପାରନ୍ତା । ଏହି ଅପୂଜ୍ୟ ପୂଜାର ପ୍ରସାର ସମାଜ ପାଇଁ ହାନିକାରକ । ଭବିଷ୍ୟତ ପିଢ଼ିଙ୍କ ପାଇଁ ଏହା ଏକ ଖରାପ ଉଦାହରଣ । ବିଦ୍ୟାଳୟମାନଙ୍କରେ ମହାପୁରୁଷମାନଙ୍କର ଫଟୋ ରଖାଯାଏ ପିଲାମାନଙ୍କୁ ଉଦ୍‌ବୁଦ୍ଧ କରିବା ପାଇଁ ସେମାନଙ୍କ ତ୍ୟାଗ ଓ ଅବଦାନକୁ ଆଦର୍ଶ ରଖି । କିନ୍ତୁ ଅପୂଜ୍ୟ ପୂଜାର ପ୍ରସାର ଦ୍ୱାରା ଯୁବପିଢ଼ି ପ୍ରଭାବିତ ହେବା ସ୍ୱାଭାବିକ । ଅର୍ଥ ଓ କ୍ଷମତା ଜୀବନରେ ସବୁକିଛି— ଏପରି ଏକ ଭାବନା ସେମାନଙ୍କର ମନରେ ଆସେ । ଆମ ସମାଜର ଯେଉଁ ମୂଲ୍ୟବୋଧ ଅଛି, ଉପରୋକ୍ତ ଅପୂଜ୍ୟମାନଙ୍କୁ ଦେଖି ଆଜିର ଯୁବପିଢ଼ି ସେ ମୂଲ୍ୟବୋଧରୁ ଦୂରେଇ ଯାଉଛନ୍ତି । ସମ୍ପତ୍ତି ଆହରଣ ଓ ଜୀବନକୁ ଉପଭୋଗ କରିବା ଜୀବନର ଲକ୍ଷ୍ୟ ଭାବେ ଆଦରି ନିଅନ୍ତି । ଦେଶ ଓ ସମାଜ ସେମାନଙ୍କ ପାଇଁ ଗୌଣ ହୁଏ । ଭବିଷ୍ୟତରେ ଦେଶ ଓ ଜାତିର ଦାୟିତ୍ୱ ନେବାପାଇଁ ଯେଉଁ ପ୍ରକାରର ମାନସିକ ପ୍ରସ୍ତୁତି ଦରକାର, ତା'ର ଅଭାବ ପରିଲକ୍ଷିତ ହୁଏ । ଏହା ଏକ ଅଶୁଭ ସଙ୍କେତ ।

ଏହି ଅପୂଜ୍ୟ ବ୍ୟକ୍ତିମାନେ କିଏ ? ସମାଜ କ'ଣ ସେମାନଙ୍କୁ ଜାଣେନାହିଁ ? ସେମାନେ ଏହି ସମାଜରୁ ସୃଷ୍ଟି ହୋଇଛନ୍ତି । ସେମାନଙ୍କର କାର୍ଯ୍ୟକଳାପ ସମସ୍ତଙ୍କ ଅଜଣା ନୁହେଁ । ଏସବୁ ସତ୍ତ୍ୱେ ସମାଜ ସେମାନଙ୍କୁ ଗ୍ରହଣ କରେ କିପରି ? ସେମାନଙ୍କୁ ସମ୍ମାନ ଦେବା ଓ ଆଦର କରିବା ଏକ ଗର୍ହିତ କାର୍ଯ୍ୟ । ଏହି ଅପୂଜ୍ୟ ବ୍ୟକ୍ତିମାନଙ୍କ ମଧ୍ୟରୁ ଅନେକଙ୍କର ଅପରାଧ ଓ ଦୁର୍ନୀତି ସହ ନିବିଡ଼ ସଂପର୍କ ରହିଛି । କେହି କେହି ଅସାମାଜିକ ବ୍ୟକ୍ତି ବିଭିନ୍ନ ଅପରାଧ କରି ସମାଜରେ ଏକ ସମୟରେ ପ୍ରତିଷ୍ଠିତ ବ୍ୟକ୍ତି ହିସାବରେ ରହିବା ପାଇଁ ଚେଷ୍ଟା କରନ୍ତି । କ୍ରମଶଃ ଲୋକ ମଧ୍ୟ ସେମାନଙ୍କର ଅତୀତକୁ ଭୁଲିଯାଆନ୍ତି । କୁହାଯାଏ, ଲୋକମାନଙ୍କର ସ୍ମରଣଶକ୍ତି କମ୍, ତାହାର ସୁଯୋଗ ନିଅନ୍ତି ଏହି ଅସାମାଜିକ ବ୍ୟକ୍ତିମାନେ । ତା'ଛଡ଼ା ବହୁତ ଦୁର୍ନୀତିଗ୍ରସ୍ତ ବ୍ୟବସାୟୀ, ସରକାରୀ କର୍ମଚାରୀ, ତଥାକଥିତ ଦେଶସେବୀ ବା ଲୋକସେବକ କ୍ରମଶଃ ଏହି ସମାଜରେ ପ୍ରଭାବ ବିସ୍ତାର କରି ଚାଲିଛନ୍ତି । କଳା ଧନକୁ ନେଇ ସମାଜର ବିଭିନ୍ନ ସ୍ତରରେ ସେମାନେ ଆସ୍ଥାନ ଜମାଇ ସାରିଲେଣି । ଏମାନଙ୍କୁ ନେଇ ଏକ ନୂତନ ଶ୍ରେଣୀର ଆବିର୍ଭାବ ହୋଇଛି । ସେମାନଙ୍କ ମଧ୍ୟରେ ସାମାଜିକ ଓ ଅର୍ଥନୈତିକ ସଂପର୍କ କ୍ରମଶଃ ନିବିଡ଼ ହେଉଛି । ବିଭିନ୍ନ ଅନୁଷ୍ଠାନର ସେମାନେ ହୁଅନ୍ତି କର୍ମକର୍ତ୍ତା । କ୍ଷମତାର କେନ୍ଦ୍ରଗୁଡ଼ିକୁ କ୍ରମଶଃ କାବୁ କରିବା ପାଇଁ ସେମାନେ ଚେଷ୍ଟିତ । ଦେଶ ଓ ଜାତିର ସ୍ୱାର୍ଥ ସେମାନଙ୍କ ପାଇଁ କିଛି ନୁହେଁ । ସାଧାରଣ ଗରିବ ବା ଖଟିଖିଆଙ୍କ ପାଇଁ ସେମାନଙ୍କର ସହାନୁଭୂତି ନାହିଁ । କୁହାଯାଏ, ଉନ୍ନୟନ କାର୍ଯ୍ୟ ପାଇଁ ଉଦିଷ୍ଟ ଅର୍ଥ ବହୁ ପରିମାଣରେ ବାଟମାରଣା ହୁଏ, ଏମାନେ ହିଁ ସେଥିପାଇଁ ମୁଖ୍ୟତଃ ଦାୟୀ । ଦୁର୍ନୀତି ପ୍ରଗତିର ପରିପନ୍ଥୀ, ଏଥିରେ ଦ୍ୱିମତ ନାହିଁ । ଦୁର୍ନୀତିର ସୁଫଳ ପାଆନ୍ତି ଏହି କେତେକ ମୁଷ୍ଟିମେୟ ବ୍ୟକ୍ତି ଓ କୁଫଳ ଭୋଗନ୍ତି ୯୦ରୁ ୯୫ ଭାଗ ସାଧାରଣ ଲୋକ । ସେମାନଙ୍କ ବ୍ୟକ୍ତିତ୍ୱର ଅପରପାର୍ଶ୍ୱ ଲୋକଲୋଚନକୁ ଆସୁନାହିଁ । ସେମାନଙ୍କର ବିଳାସପୂର୍ଣ୍ଣ

ଜୀବନଯାପନ ଓ ଆସୁରିକ ପ୍ରବୃତ୍ତି ସମ୍ବନ୍ଧରେ ସହଜରେ ଆଭାସ ମିଳେନି । ଫଳରେ, ସେମାନଙ୍କର ସାମାଜିକ ପ୍ରତିପତ୍ତି ଅତୁଟ ରହେ ଓ ସାଧାରଣ ଜନତା ସେମାନଙ୍କର ପ୍ରବଞ୍ଚନାର ଶିକାର ହୁଅନ୍ତି ।

ଦୁର୍ନୀତି ଆଜି ଭାରତୀୟ ଗଣତନ୍ତ୍ର ପାଇଁ ସବୁଠାରୁ ବଡ଼ ବିପଦ । ଜନସାଧାରଣଙ୍କ ଆଶା ଆକାଂକ୍ଷା ପୂରଣ ପାଇଁ ଦୁର୍ନୀତି ଏକ ପ୍ରତିବନ୍ଧକ । ପ୍ରଶାସନ ଓ ଜନସାଧାରଣଙ୍କ ମଧ୍ୟରେ ଏହା କ୍ରମଶଃ ଏକ ପ୍ରାଚୀର ଭାବରେ ଦଣ୍ଡାୟମାନ । ଏ ପ୍ରାଚୀରର ଉଚ୍ଚତା ଯେତେ ବୃଦ୍ଧି ପାଇବ, ଜନସାଧାରଣ ପ୍ରଶାସନଠାରୁ ସେତିକି ଦୂରେଇ ଯିବେ । ଏଥିପାଇଁ ଜନସଚେତନତା ଅତ୍ୟନ୍ତ ଆବଶ୍ୟକ । ସାମାଜିକ ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ଦରକାର । ଦୁର୍ନୀତିଗ୍ରସ୍ତ ବ୍ୟକ୍ତିଙ୍କୁ ଦଣ୍ଡ ଦେବା ପାଇଁ ଆଇନଗତ କାର୍ଯ୍ୟାନୁଷ୍ଠାନ ହେବା ବିଧେୟ; କିନ୍ତୁ ଏ ସମସ୍ୟାର ସମାଧାନ ପାଇଁ ସେତିକି ଯଥେଷ୍ଟ ନୁହେଁ । ସମାଜ ପ୍ରଥମେ ଏ ବ୍ୟକ୍ତିମାନଙ୍କୁ ଭଲକରି ଚିହ୍ନୁ ଏବଂ ସେମାନଙ୍କୁ ସମ୍ମାନ ଦେବା ପରିବର୍ତ୍ତେ ସାମାଜିକ ବାସନ୍ଦ କରୁ । ଅପୂଜ୍ୟ ପୂଜା ବନ୍ଦ ହେଉ । ପୂଜ୍ୟକୁ ପୂଜା ଅପୂଜ୍ୟଙ୍କ ହାତରେ ନ କରାଯାଉ । ଛୋଟ ଛୋଟ ପିଲାମାନଙ୍କୁ ଓ ଯୁବପିଢ଼ିଙ୍କୁ ଏହି ଅପୂଜ୍ୟମାନଙ୍କଠାରୁ ଦୂରରେ ରଖାଯାଉ । ଅପୂଜ୍ୟଙ୍କ ସାମୟିକ ଉଦାରତାରେ କେହି ପ୍ରଭାବିତ ନ ହୁଅନ୍ତୁ । ସମୟେ ସମୟେ ଏ ବ୍ୟକ୍ତିମାନେ ରାଷ୍ଟ୍ରର ବା ଜନସାଧାରଣଙ୍କର କୋଟି କୋଟି ଟଙ୍କା ଲୁଣ୍ଠନ କରି କିଛି ଅର୍ଥ ମନ୍ଦିର ତୋଳା, ଗରିବଙ୍କୁ ଦାନ ବା ବିଦ୍ୟାଳୟ ପ୍ରତିଷ୍ଠା ଆଦି ସାମାଜିକ କାର୍ଯ୍ୟରେ ବିନିଯୋଗ କରିବାରେ କୁଣ୍ଠାବୋଧ କରନ୍ତି ନାହିଁ । ସେଥିପାଇଁ ସେମାନଙ୍କୁ ଦୟାବାନ ବା ହୃଦୟବାନ୍ କହିବା ଭବିଷ୍ୟତ ବଂଶଧରଙ୍କ ପାଇଁ କ୍ଷତିକାରକ । ନିଜର ପ୍ରଭାବ ବିସ୍ତାର ଓ ଅନ୍ୟମାନଙ୍କୁ ଭୟଭୀତ କରିବା ଉଦ୍ଦେଶ୍ୟରେ ସେମାନଙ୍କ ମଧ୍ୟରୁ କେତେକ କଳାଧନକୁ ବିନିଯୋଗ କରି ନିଜ ନିଜର ସମ୍ବାଦପତ୍ର ମଧ୍ୟ ପ୍ରକାଶ କରିଥା'ନ୍ତି । ନିରପେକ୍ଷ ଓ ସାଧୁ ଲୋକସେବକ ଓ ସେମାନଙ୍କର ସମାଲୋଚକଙ୍କୁ ମାନସିକ ଅଶାନ୍ତି ଦେବାକୁ ସେମାନେ ପଛାଇ ନ ଥା'ନ୍ତି । କୌଣସିମତେ ଶତ୍ରୁମାନଙ୍କୁ ରାସ୍ତାରୁ ହଟାଇବା ପାଇଁ ସେମାନେ କଠୋର ପନ୍ଥା ଅନୁସରଣ କରନ୍ତି । ବହୁ ଅପୂଜ୍ୟ ବ୍ୟକ୍ତିଙ୍କର ଉତ୍ତରାଧିକାରୀମାନେ ସେମାନଙ୍କର ସ୍ମୃତି ଉଦ୍ଦେଶ୍ୟରେ ବିଭିନ୍ନ ପୁରସ୍କାରମାନ ବ୍ୟବସ୍ଥା କରିଥା'ନ୍ତି । ଏପରି ପୁରସ୍କାର କୌଣସି ଅନୁଷ୍ଠାନ ଗ୍ରହଣ କରିବା ସ୍ପୃହଣୀୟ ନୁହେଁ । କେତେକ କ୍ଷେତ୍ରରେ ସେମାନଙ୍କର ପ୍ରତିମୂର୍ତ୍ତି ସ୍ଥାପନ କରାଯାଇ ବହୁ ଆଡମ୍ବରରେ ଉନ୍ମୋଚନ କରାଯାଉଛି । କୋମଳମତି ଶିଶୁମାନେ ବିଦ୍ୟାଳୟକୁ ଯିବା ସମୟରେ ସେମାନଙ୍କୁ ଦେଖନ୍ତି । ସେମାନଙ୍କ ମନରେ ନିଶ୍ଚିତ ପ୍ରଶ୍ନ ଉଠୁଥିବ– ଏହି ମହାନ୍ ବ୍ୟକ୍ତିମାନେ କିଏ ଓ ସେମାନଙ୍କର ଅବଦାନ କ'ଣ ? ଏହି ଅବାଞ୍ଛିତ ବ୍ୟକ୍ତିଙ୍କ ସ୍ମୃତି ଯେତେ ଶୀଘ୍ର ଲିଭିଯାଏ, ଏ ଦେଶ ପାଇଁ ସେତେ ଭଲ ।

ଦିନ ଥିଲା, ଦେଶର ବହୁ ଉଦୀୟମାନ ଯୁବକ ଦେଶର ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିଲେ, କୌଣସି ପଦ ପଦବୀର ଲାଳସାରେ ନୁହେଁ । ସେଥିପାଇଁ ସେମାନଙ୍କର ପିତାମାତାଙ୍କୁ ମଧ୍ୟ ଧନ୍ୟବାଦ ଦେବାର କଥା । ସମସ୍ତଙ୍କ ମନରେ ଜାତୀୟତାର ଭାବ ପୂର୍ଣ୍ଣମାତ୍ରାରେ ଥିଲା । ସ୍ୱାଧୀନତାର ପରବର୍ତ୍ତୀ କାଳରେ ପ୍ରାୟ ଦୁଇ ଦଶନ୍ଧି ପର୍ଯ୍ୟନ୍ତ ସେହି ମହାନ୍ ବ୍ୟକ୍ତିମାନଙ୍କର ପ୍ରଭାବ ସାଧାରଣ ଜୀବନରେ ଅନୁଭୂତ

ହେଉଥିଲା । ଦୁର୍ନୀତି ଏକ କଟିଳ ସମସ୍ୟା ନ ଥିଲା । ସ୍ୱଚ୍ଛତା ବା ସାଧୁତା ଦୃଷ୍ଟିରୁ ସେ ସମୟରେ ହୁଏତ ଭାରତର ସ୍ଥାନ ପୃଥିବୀର ପ୍ରଥମ ଦଶଟି ରାଷ୍ଟ୍ର ମଧ୍ୟରେ ଥିବ । କ୍ରମଶଃ ସାଧାରଣ ଜୀବନରେ ଅବାଞ୍ଛିତ ବ୍ୟକ୍ତି ପ୍ରବେଶ କରିବାରେ ଲାଗିଲେ । ସେମାନଙ୍କ ଉଦ୍ଦେଶ୍ୟ ନିଶ୍ଚିତଭାବେ ଜନସେବା ନୁହେଁ । ନିଜର ସ୍ୱାର୍ଥ ହାସଲ ପାଇଁ ଶଠତା ଆଚରଣ କଲେ । ସମାଜର ବିଭିନ୍ନ କ୍ଷେତ୍ରରେ ସେମାନଙ୍କର ପ୍ରଭାବ ଓ ଉପସ୍ଥିତି ଅଧିକରୁ ଅଧିକତର ଅନୁଭୂତ ହେଲା । ଦେଶପ୍ରେମୀ ତଥା ନିଷ୍ଠାବାନ୍ ଦେଶସେବୀଙ୍କର ସଂଖ୍ୟା କାଳକ୍ରମେ କମିବାରେ ଲାଗିଛି । ବିଶେଷକରି ସାଧାରଣ ଜୀବନରେ ଏମାନଙ୍କ ମଧ୍ୟରୁ ଅନେକ ନିଜର ସମ୍ମାନକୁ ଜଗି ସାଧାରଣ ଜୀବନରୁ ଦୂରେଇ ଯାଉଛନ୍ତି । ନୂତନ ପିଢ଼ିରୁ ମଧ୍ୟ ବହୁତ କମ୍ ମହତ୍ ଉଦ୍ଦେଶ୍ୟ ନେଇ ସାଧାରଣ ଜୀବନକୁ ପ୍ରବେଶ କରୁଛନ୍ତି । ପରିବାରର ଆକାର କ୍ରମଶଃ ଛୋଟ ହୋଇଯାଉଛି । ଯୌଥ ପରିବାରର ପରମ୍ପରା କ୍ରମଶଃ ଦୁର୍ବଳ ହେଉଛି । ସେହି ପରିପ୍ରେକ୍ଷୀରେ ପିତାମାତାମାନେ ପିଲାମାନଙ୍କୁ ସାଧାରଣ ଜୀବନରେ ପ୍ରବେଶ କରିବାକୁ ପ୍ରବର୍ତ୍ତାଇବା ଦୂରେ ଥାଉ, ନିବର୍ତ୍ତାଉଛନ୍ତି । ଫଳସ୍ୱରୂପ ବହୁ ଅବାଞ୍ଛିତ ବ୍ୟକ୍ତି ଦେଶସେବାକୁ ଏକ ପେଷା ହିସାବରେ ଆଦରି ନେଇଛନ୍ତି । ରାତାରାତି ଧନୀ ହେବାର ସ୍ୱପ୍ନ ଦେଖୁଛନ୍ତି । କେତେକ କ୍ଷେତ୍ରରେ ହେଉଛନ୍ତି ମଧ୍ୟ । ସେମାନଙ୍କ ଦୃଷ୍ଟିରେ ସଫଳତା ପାଇଁ ପରିଶ୍ରମର ଆବଶ୍ୟକତା ନାହିଁ । ଯେନତେନ କ୍ଷମତା ହାସଲ କରି ସମ୍ପତ୍ତି ଆହରଣ କରିବା ସେମାନଙ୍କର ଜୀବନର ଲକ୍ଷ୍ୟ । ସେମାନଙ୍କୁ ସମାଜ ଭଲକରି ଚିହ୍ନୁ । ସାଧାରଣ ଜୀବନରୁ ଏମାନଙ୍କୁ ଅପସାରଣ ନ କଲେ ଭାରତୀୟ ଗଣତନ୍ତ୍ରର ଭବିଷ୍ୟତ ଅନ୍ଧକାର ହେବ ।

ଶିକ୍ଷାର ପ୍ରସାର, ଜନସଚେତନତା, ଜନମତର ସୁସଂଗଠନ ଓ ଉଦୀୟମାନ ଯୁବପିଢ଼ିଙ୍କୁ ସାଧାରଣ ଜୀବନରେ ସକ୍ରିୟ ହେବାପାଇଁ ପ୍ରେରଣା ଦ୍ୱାରା ଦୁର୍ନୀତିଗ୍ରସ୍ତ ତଥାକଥିତ ଦେଶସେବୀ ବା ଲୋକସେବକଙ୍କର ମୁକାବିଲା କରିହେବ । ଦେଶ ପାଇଁ ଅନ୍ୟ ପନ୍ଥା ନାହିଁ । ପୂଜ୍ୟପୂଜା ପରମ୍ପରାର ପୁନଃପ୍ରତିଷ୍ଠା ହେଉ । ସ୍ୱର୍ଗୀୟ ମହାନ୍ ଆତ୍ମାଗଣ ଆମ୍ଭମାନଙ୍କର ପୂଜା ଗ୍ରହଣ କରିବେ– ଯେବେ ଅପୂଜ୍ୟ ପୂଜା ବନ୍ଦ ହେବ ଓ ସେମାନଙ୍କୁ ପୂଜ୍ୟପୂଜାରୁ ଦୂରେଇ ରଖାଯିବ । ଯେଉଁ ପୂଜ୍ୟ ବ୍ୟକ୍ତିଗଣ ଜୀବିତ ଅଛନ୍ତି, ସେମାନଙ୍କୁ ସମାଜ ଉଚ୍ଚସ୍ଥାନ ଦେଇ ଅପୂଜ୍ୟଙ୍କୁ ବାସନ୍ଦ କଲେ ଦେଶସେବୀ ଯୁବପିଢ଼ିର ଆବିର୍ଭାବ ନିଶ୍ଚିତ ହେବ । ଅର୍ଥଦ୍ୱାରା ସମ୍ମାନ କ୍ରୟ କରି ହେବ, ଏପରି ଧାରଣାର ଅବସାନ ଘଟୁ ।

*ପୂର୍ବତନ ନିର୍ଦ୍ଦେଶକ, ଦୁର୍ନୀତି ନିବାରଣ ନିର୍ଦ୍ଦେଶାଳୟ*
*ଓ ପୂର୍ବତନ ଆରକ୍ଷୀ ମହାନିର୍ଦ୍ଦେଶକ, ଓଡ଼ିଶା, କଟକ*



# ଓଡ଼ିଆ ଓ ଓଡ଼ିଶା

ଡଃ ଦେବୀପ୍ରସନ୍ନ ପଟ୍ଟନାୟକ

*ଓଡ଼ିଆ ଭାଷା, ସାହିତ୍ୟର ଅନ୍ୟତମ ମହାରଥୀ ଡଃ ଦେବୀପ୍ରସନ୍ନ ପଟ୍ଟନାୟକ ଗବେଷଣା କ୍ଷେତ୍ରରେ ଚରମ ସୋପାନ ଅତିକ୍ରମ କରିଥିଲେ ମଧ୍ୟ ଚଲାପଥରେ ଅଙ୍ଗେ ନିଭାଇଥିବା ନାନା ଘାତ-ପ୍ରତିଘାତକୁ ରୂପାୟିତ କରିଛନ୍ତି ତାଙ୍କ ଦ୍ୱାରା ଲିଖିତ 'ଓଡ଼ିଆ ଓ ଓଡ଼ିଶା' ଶୀର୍ଷକ ଏହି ପ୍ରବନ୍ଧରେ। ପରସ୍ପର ମଧ୍ୟରେ ବିଭେଦ, ଅସହିଷ୍ଣୁତା, ପରଶ୍ରୀକାତରତା ବିଶେଷକରି ସଂକୀର୍ଣ୍ଣତା ଓଡ଼ିଆ ଜାତିର ଅସ୍ମିତାକୁ କିପରି ଧ୍ୱଂସ କରିଛି, ଓଡ଼ିଆଙ୍କୁ କିପରି ହୀନ ଓ ହେୟ କରି ପରିଚୟ ଦେଇଛି; ଡଃ ପଟ୍ଟନାୟକ ସେଥିପାଇଁ କ୍ଷୋଭ ପ୍ରକାଶ କରିଛନ୍ତି ଏଇ ପ୍ରବନ୍ଧଟିରେ। ବହୁ ତଥ୍ୟ ସମ୍ବଳିତ ଏହି ଲେଖାଟିକୁ ଆମେ ଉପସ୍ଥାପନ କରୁଛୁ ଆପଣମାନଙ୍କ ପାଇଁ.....*

ଓଡ଼ିଆ ଓ ଓଡ଼ିଶା ବିଷୟରେ କିଛି ଲେଖିବାକୁ ଯେତେବେଳେ ଅଭୟ ସାମନ୍ତରାୟ ମତେ କହିଲେ, ମୋ ମନରେ ପ୍ରଥମ ପ୍ରଶ୍ନ ଉଠିଲା, "ସତ କହିବି କି ମିଛ କହିବି, ନା ଯାହା ଅଙ୍ଗେ ନିଭାଇଚି ତା' କହିବି? ଇତିହାସ ସତମିଛର କଥା। କଳାହାଣ୍ଡିର ରେଣ୍ଡୋ ମାଝିଙ୍କ କାହାଣୀ ମାତ୍ର ଦେଢ଼ଶ ବର୍ଷ ତଳର କଥା। ସିଏ ଥିଲେ ଇଂରେଜମାନଙ୍କ ବିରୋଧରେ ଗଣ୍ଡ ଆନ୍ଦୋଳନର ନେତା। ଆଦିବାସୀମାନଙ୍କ ଆନ୍ଦୋଳନକୁ ଭାରତର ସ୍ୱାଧୀନତା ଆନ୍ଦୋଳନର ଇତିହାସରେ ଆମେ ସ୍ଥାନ ଦେଇନାହୁଁ। ତେଣୁ ତହିଁରୁ କେତେ ସତ, କେତେ ମିଛ କହିବା କଠିନ। ରାସବିହାରୀ ବେହେରା ତାଙ୍କର ରକ୍ତ ତୀର୍ଥ ଉପନ୍ୟାସରେ ଲେଖିଛନ୍ତି, "ବହୁବାର ଯୁଦ୍ଧ ପରେ, ଯୁଦ୍ଧବନ୍ଦୀ ରେଣ୍ଡୋ ମାଝିଙ୍କୁ ରସୁଲକୋଣ୍ଡା(ବର୍ତ୍ତମାନର ଭଞ୍ଜନଗର) ଜେଲରେ ପକ୍ଷପାତପୂର୍ଣ୍ଣ ବିଚାର ବଳରେ ଫାଶି ଦିଆଯାଇଥିଲା। ରିଣ୍ଡୋ ହସି ହସି ଫାଶି ଖୁଣ୍ଟରେ ଝୁଲି ପଡ଼ିଥିଲେ।" ପ୍ରାଧ୍ୟାପକ ଅନନ୍ତ ଚରଣ ସାହୁଙ୍କ ସମ୍ପାଦକତ୍ୱରେ ଏଟିଡ଼ିସି ପକ୍ଷରୁ ଗୋଟିଏ ବହି ଛପାଯାଇଚି। ସେଥିରେ କୁହାଯାଇଚି ଯେ ବ୍ରିଟିଶ କର୍ଣ୍ଣେଲ ରାଗିଯାଇ ତାଙ୍କ ପାଖରେ ଠିଆ ହୋଇଥବା ସିପାହୀର ବନ୍ଧୁକ ଛଡ଼େଇନେଇ ରିଣ୍ଡୋଙ୍କୁ ଗୁଳି ମାରିଦେଲେ। ଲୋକଙ୍କ ମୁହଁରେ ଏବେ ବି ଅଛି ଯେ ରିଣ୍ଡୋଙ୍କୁ ଗଛରେ ଝୁଲାଇ ପିଟି ମାରିଦିଆଗଲା। ସବୁଠାରୁ ମଜାର କଥା ହେଉଛି ଯେ, ରିଣ୍ଡୋ ସ୍ମୃତିସ୍ତମ୍ଭରେ ଯେଉଁ ଫଳକ ଦିଆଯାଇଚି, ତହିଁରେ ତାଙ୍କ ନାଁ ନାହିଁ। ମୁଁ ଭାବିଲି, ଏ ବୟସରେ ସତମିଛ କନ୍ଦଳରେ ନ ପଶି କିଛି ଅଙ୍ଗେ ଲିଭେଇବା କଥା କହିବି। ପୁଣି ଯେତେବେଳେ ଭାବିଲି ଯେ ଏହା ଓଡ଼ିଆ କିମ୍ବା ଓଡ଼ିଶା ସମ୍ପର୍କିତ ହେବ, ସେତେବେଳେ ମନ ମରିଗଲା। ଜୀବନର ସୃଷ୍ଟିଶୀଳ ୪୫ ବର୍ଷ ଓଡ଼ିଶା ବାହାରେ କଟିଲା। ସେଥିରୁ ଏଗାର ବର୍ଷ ଶାନ୍ତିନିକେତନରେ, ଛ' ବର୍ଷ ପୁନାରେ ଆଉ ଅଠେଇଶ ବର୍ଷ ମହୀଶୂରରେ। କଅଣ ଲେଖିବି?

ମୋର ପ୍ରଥମ ସ୍ୱପ୍ନ ଓଡ଼ିଆ। ସେଥିପାଇଁ ଅଧ୍ୟାପକ ଓ ଶୁଭେଚ୍ଛୁମାନଙ୍କ ଉପଦେଶକୁ ଆଡ଼େଇ ଦେଇ ଅର୍ଥନୀତି ବଦଳରେ ଓଡ଼ିଆ ଏମ୍.ଏ. ପଢ଼ିଲି। ମୋ ପରେ ବି.ଏ. ଅନର୍ସରେ କିଏ ଭକ୍ତମଧୁ ସୁନାପଦକ ପାଇଛନ୍ତି କି ନାହିଁ ମୁଁ ଜାଣେ ନାହିଁ; କିନ୍ତୁ ମୁଁ ପ୍ରଥମେ ପାଇଲି। ମୋର ବି.ଏ.ର ଦୁଇ ଅଧ୍ୟାପକ, ଗୌରୀକୁମାର ବ୍ରହ୍ମା ଓ ବାନାମ୍ବର ଆଚାର୍ଯ୍ୟ ମୋ ମୁଣ୍ଡରେ ଯେଉଁ ଆଶୀର୍ବାଦ ବର୍ଷିଥିଲେ, ତାହା ଏମ୍.ଏ.ରେ ମୋର ସମ୍ବଳ ହେଲା। ଏମ୍.ଏ.ରେ ସେ ତିଗିରିଆର ଭୁବନେଶ୍ୱର ବଡ଼ପଣ୍ଡାଙ୍କ ନାତି ଜୟକୃଷ୍ଣ ମିଶ୍ର, ଯିଏ ପରେ ସଂସ୍କୃତ ରଚନା ପାଇଁ ଉତ୍କଳ ଗୌରବ ହେଲେ, ସିଏ ମୋର ଅଧ୍ୟାପକ ହେଲେ। ତାଙ୍କ ସାଙ୍ଗକୁ କୁଞ୍ଜବିହାରୀ ତ୍ରିପାଠୀ ଆଉ କରୁଣାକରଙ୍କର। ସଂସ୍କୃତ ପଢ଼ିବା ପାଇଁ ଏ ସମସ୍ତେ ମୋର ପ୍ରେରଣା। କରୁଣାକର କର ଓ କୁଞ୍ଜବିହାରୀ ତ୍ରିପାଠୀ ପାଲି, ପ୍ରାକୃତ ପଢ଼ିବାପାଇଁ ମୋର ପ୍ରେରଣା। ଆଉ ଜଣେ ପ୍ରେରଣାର ଉତ୍ସ ଥିଲେ ପ୍ରହ୍ଲାଦ ପ୍ରଧାନ। ମୁଁ ଶାନ୍ତିନିକେତନ ଗଲାବେଳକୁ ସିଏ ଛାଡ଼ିଲେଣି। କିନ୍ତୁ ତାଙ୍କ ନାଁ ପାଠନିଷ୍ଠ ଶାନ୍ତିନିକେତନ ପାଣିପବନରେ ଘୂରି ବୁଲୁଥିଲା। ମୁଁ ତାଙ୍କର ସିଧାସଳଖ ଛାତ୍ର ନ ଥିଲେ ସୁଦ୍ଧା ତାଙ୍କୁ ଗୁରୁ ମାନି ନେଇଥିଲି। ବଂଶୀଧର ମହାନ୍ତି, କଳା ଜାନକୀ, ଗୋରା ଜାନକୀ, ଗୋପାଳ ମିଶ୍ର ମୋର ଅଧ୍ୟାପକ ଥିଲେ; କିନ୍ତୁ ସେମାନେ କେହି ଗୁରୁ ଆସନ ପାଇପାରିଲେ ନାହିଁ, ବନ୍ଧୁ ହୋଇ ରହିଗଲେ । ଅଧ୍ୟାପକ ଗୋଲକ ବିହାରୀ ଧଳ ଭାଷାବିଜ୍ଞାନରେ ମୋର ପୂର୍ବସୂରୀ ହେଲେହେଁ ଘନିଷ୍ଠ ବନ୍ଧୁ।

ପର ଜୀବନରେ ମୁଁ ଭାଷାତତ୍ତ୍ୱ/ଭାଷାବିଜ୍ଞାନରେ ଡିଗ୍ରୀ କଲି। ଭାରତରେ ଓ ପୃଥିବୀରେ ନାଁ କଲି। ମୋର ଭାଷା ପରିଚୟ ସାହିତ୍ୟ ପରିଚୟକୁ ଘୋଡ଼େଇ ପକେଇଲା। ମୋର ପ୍ରଥମ ବହି କବିଲିପି। ରାଧାନାଥ-ଗଙ୍ଗାଧରଙ୍କୁ ଲେଖିଥିବା ଚିଠି, ଓଡ଼ିଆରେ ପ୍ରଥମ ପତ୍ର ସାହିତ୍ୟ। ତା'ଛଡ଼ା ସମାଲୋଚନାତ୍ମକ ପ୍ରବନ୍ଧର ସମାହାର ସାହିତ୍ୟ ଦୀକ୍ଷା। ଏଥିରେ ଥିବା ଚମ୍ପୂ ପ୍ରବନ୍ଧଟି ସମସାମୟିକ ଆଲୋଚନା କ୍ଷେତ୍ରରେ ବ୍ୟତିକ୍ରମ। ଶଂସିତ ପ୍ରବନ୍ଧରେ ସଙ୍ଗୀତଶାସ୍ତ୍ର ବିଚାରକୁ ନେଇ କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ ଉଭୟ ସଙ୍ଗୀତଶାସ୍ତ୍ର ଓ କାବ୍ୟଶାସ୍ତ୍ର ଅନୁସାରେ ଯେ ଚମ୍ପୂ— ଏକଥା ଦେଖେଇ ଦିଆଗଲା। ଅଥଚ କେହି ଜଣେ ହେଲେ ଏହି ଆଲୋଚନାକୁ ଆଗେଇ ନେଲେନାହିଁ। ଏଥିରେ ଦିଆଯାଇଥିବା ଆଉ ଗୋଟିଏ ପ୍ରବନ୍ଧ ହେଉଛି ରୁଦ୍ର ସୁଧାନିଧି। ରୁଦ୍ର ସୁଧାନିଧି ପଦ୍ୟ କି ଗଦ୍ୟ, ଏ ବିଷୟରେ ବିବାଦ ଚାଲିଥାଏ। ମୁଁ ଲେଖିଲି ରୁଦ୍ରସୁଧାନିଧି ଗଦ୍ୟ, ସାଙ୍ଗୀତିକ ଗଦ୍ୟ। ସଙ୍ଗୀତଶାସ୍ତ୍ରରେ ୬' ପ୍ରକାର ଗଦ୍ୟ ଗେୟ। କୁହାଯାଇଚି ଉତ୍କଳିକା ଗଦ୍ୟଗେୟ, ଗାତବ୍ୟୋତ୍କଳିକା। ଗୋବିନ୍ଦ ବିରୁଦାବଳୀ ଚୂର୍ଣ୍ଣକ। ଏହା ମଧ୍ୟ ଗେୟ। ରୁଦ୍ରସୁଧାନିଧି ଏହି ଦୃଷ୍ଟିରୁ ବିଚାର୍ଯ୍ୟ। ମୁଁ ଦୁଇଟି ଲେଖା ଲେଖିଥିଲି। କିନ୍ତୁ ପ୍ରଥମଟି ବାହାରିଲା ପରେ ଜଣେ ସମ୍ମାନାସ୍ପଦ ଅଧ୍ୟାପକ ଅନ୍ୟ ଜଣଙ୍କୁ କହିଲେ, "ଦେବୀ ବାନାମ୍ବର ଆଚାର୍ଯ୍ୟଙ୍କ କଥାରେ ଆମ ବିରୋଧରେ ଲେଖୁଚି।" ଦ୍ୱିତୀୟଟି ମୁଁ ଚିରି ଫୋପାଡ଼ି ଦେଲି। ସେଇ ଲେଖା ସେଇଠି ବନ୍ଦ ହେଲା। କିନ୍ତୁ କେହି ତ ଏ ବିଷୟରେ ଲେଖି ଆଲୋଚନାକୁ ଆଗେଇ ନେଲେନାହିଁ ! ଜଣେ କହିଲେ, ଆଜିକାଲି ସଂସ୍କୃତ ପଢ଼ିଥିବା ଓଡ଼ିଆ ମାଷ୍ଟ୍ର ନାହାନ୍ତି। ଆଜିକାଲି ଓଡ଼ିଆ ପଢ଼ିଥିବା ଓଡ଼ିଆ ମାଷ୍ଟ୍ର ମଧ୍ୟ ନାହାନ୍ତି। କୌଣସି ଭାରତୀୟ ଭାଷାରେ ଦକ୍ଷତା ଥିବା ଓଡ଼ିଆ ମାଷ୍ଟ୍ର ନାହାନ୍ତି। ଏଥିରେ ଓଡ଼ିଆ ଭାଷା ଓ ସାହିତ୍ୟର ଉନ୍ନତି ହେବ କେମିତି?

ମୋ ଅଭିଜ୍ଞତାରୁ ଆଉ ଗୋଟିଏ ଉଦାହରଣ ଦେଲେ ଯଥେଷ୍ଟ ହେବ । ହୁଏନ୍‌ସାଂଙ୍କ ବିବରଣୀକୁ ଓଡ଼ିଆ, ବଙ୍ଗଳା ଓ ଆସାମ କ୍ଷେତ୍ରରେ ଭିନ୍ନ ଭିନ୍ନ ଭାବରେ ବ୍ୟାଖ୍ୟା କରିଥିବାରୁ ପ୍ରାୟ ବର୍ଷେ କାଳ ସୁନୀତି କୁମାର ଚାଟାର୍ଜୀଙ୍କ ସହିତ ମୋର ପତ୍ରାଳାପ ହୋଇଥିଲା । ଶେଷକୁ ସେ ତାଙ୍କର ମତ ପରିବର୍ତ୍ତନ ପାଇଁ ରାଜି ବୋଲି କହିଥିଲେ । ସେଇ ଚିଠିଗୁଡ଼ିକ ପ୍ରକାଶ ପାଇଁ ସେ କୁଣ୍ଠା ପ୍ରକାଶ କରିବାରୁ ମୁଁ ପ୍ରବନ୍ଧ ଆକାରରେ ଲେଖିଲି ଏବଂ ତହିଁର ପାଦଟୀକାରେ ସୁନୀତିବାବୁଙ୍କ ପତ୍ରାଳାପର ଉଲ୍ଲେଖ କଲି । ଏହା ଓଡ଼ିଶା ହିଷ୍ଟରିକାଲ୍ ରିସର୍ଚ୍ଚ ଜର୍ଣ୍ଣାଲ୍ ଛପେଇଲେ । ତା'ର ଓଡ଼ିଆ ଅନୁବାଦ ଝଙ୍କାରରେ ପ୍ରକାଶ ପାଇଥିଲା । ସେ ବିଷୟରେ କୌଣସି ଗମ୍ଭୀର ଆଲୋଚନା ମୋ ଆଖିରେ ପଡ଼ିନାହିଁ । ସବୁଠାରୁ ଦୁଃଖ ଓ ଲାଜର କଥା ଯେ, ଏହାର କେତେ ବର୍ଷ ପରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ସୁନୀତିବାବୁଙ୍କୁ ନିମନ୍ତ୍ରଣ କରି ତାଙ୍କ ପୁରୁଣା ମତକୁ ଖାଲି ଦୋହରାଇଲେ ନାହିଁ, ଛପେଇଲେ ମଧ୍ୟ । ଏକାଡେମୀର କୌଣସି ସଭ୍ୟ ଏବଂ ଉପସ୍ଥିତ କୌଣସି ବିଦ୍ୱାନ ମୋ ଆହ୍ୱାନର ଉଲ୍ଲେଖ କଲେନାହିଁ ।

ଏବେ ସମାଲୋଚନା ସାହିତ୍ୟକୁ ଦେଖିଲେ ଦୁଃଖ ଓ ରାଗ ଲାଗେ । ଦ୍ୱାଦଶରୁ ଷୋଡ଼ଶ ଶତାବ୍ଦୀ ମଧ୍ୟରେ ଗଙ୍ଗବଂଶୀ ଓ ସୂର୍ଯ୍ୟବଂଶୀ ରାଜାମାନଙ୍କ କାଳରେ ଓଡ଼ିଆ ଭାଷା ସଂସ୍କୃତି, ସମ୍ମାନ ଓ ଆତ୍ମଗୌରବର ଚରମ ସୀମା ଛୁଇଁଥିଲା । ପରବର୍ତ୍ତୀ ପଚାଶ ବର୍ଷରେ ପ୍ରବଞ୍ଚନା, କ୍ଷୁଦ୍ରତା ଓ ହତାଶା ଭିତରେ ଏକ ଉଚ୍ଚାଭିଳାଷୀ ଜାତିର ମେରୁଦଣ୍ଡ ଭାଙ୍ଗିଗଲା । ତାହାର ପରବର୍ତ୍ତୀ କାଳ ଅଧୋଗତିର କାଳ । ଏହା ସତ୍ତ୍ୱେ ଯାହା ଓଡ଼ିଆ ଜାତିକୁ ବଞ୍ଚେଇ ଅଭିବୃଦ୍ଧି ଦିଗରେ ଘେନିଗଲା, ତାହା ହେଉଚି ଓଡ଼ିଆଙ୍କର ଗ୍ରାମଭିତ୍ତିକ ସଂସ୍କୃତି ଓ ଗଣତାନ୍ତ୍ରିକ ପରମ୍ପରା । ଲୋକସାହିତ୍ୟ ଓ ଲୋକଧର୍ମରେ ପ୍ରତିଷ୍ଠିତ ସମ୍ପୂର୍ଣ୍ଣ ସହନଶୀଳତା ଓ ପାରସ୍ପରିକ ସମ୍ମାନରୁ ସୃଷ୍ଟ ଜଗନ୍ନାଥ ଚେତନା । ଏହା ସାହିତ୍ୟିକ ଅଭିବୃଦ୍ଧିରେ ସହାୟକ ହୋଇଥିଲେ ହେଁ, ସମାଲୋଚନାକୁ ଛୁଇଁଥିଲା ପରି ମନେହୁଏନାହିଁ । ଫଳରେ ଏହି ଅଭିବୃଦ୍ଧିର ରୂପ, ରଙ୍ଗ, ଲୟ ବୁଝି ବୁଝେଇବାର ଭିତ୍ତିଭୂମି ଦୁର୍ବଳ ହେବାରେ ଆଶ୍ଚର୍ଯ୍ୟ କିଛି ନାହିଁ ।

ଇଏ ତ ଗଲା ଲେଖା । ମୁଁ ଏ ବିଷୟରେ ଅଧିକ ନ କହି ଅନୁଷ୍ଠାନ ବିଷୟରେ ଅଙ୍ଗେ ନିଭେଇବା କଥା କିଛି କହିବି । ପ୍ରଥମ ହେଉଛି ଜ୍ଞାନପୀଠ ପ୍ରତିଷ୍ଠା ସମ୍ମିଳନୀ । ତାଙ୍କ ନିମନ୍ତ୍ରଣ ପାଇଁ ମୁଁ ଯିବା ନିଷ୍ପତ୍ତି କଲି । ସେତେବେଳେ ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ସର୍ବୋମୟ କର୍ତ୍ତା ହରେକୃଷ୍ଣ ମହତାବ । ଏମିତିକି ଖ୍ରୀଷ୍ଟ କଲେଜରୁ ରେଡିଓ ଡିବେଟ୍‌କୁ କିଏ ଯିବେ, ସେ କଥା ସ୍ଥିର କରୁଥିଲେ ମହତାବ । ଓଡ଼ିଶା ବାହାରୁ ଶାନ୍ତିନିକେତନରୁ ମୁଁ ଯିବି, ଏକଥା ସେ ନିଶ୍ଚୟ ଭାବି ନ ଥିଲେ । ମତେ ଦେଖି ଟିକିଏ ଆଶ୍ଚର୍ଯ୍ୟ ହୋଇଗଲେ । ତା'ପରେ କିଛି ସମୟ ବାଦ ମୋ ପାଖକୁ ଆସିଲେ । କହିଲେ, "ଓଡ଼ିଶା ପାଇଁ ଗୋଟିଏ କମିଟି ଗଢ଼ାଯିବ । ତା'ର ସଭାପତି ପଦ ପାଇଁ ଜାନକୀଙ୍କ ନାଁ ଦେଲେ କେମିତି ହେବ ?" ମୁଁ କହିଲି', "ଜାନକୀବାବୁ ସୁସାହିତ୍ୟିକ, ସାମ୍ବାଦିକ । ତାଙ୍କର ବଡ଼ ବଳ ହେଉଛି ସେ ଆପଣଙ୍କ ସାଙ୍ଗରେ କାମ କରୁଛନ୍ତି । ସିଏ ଏ କାମ ପାଇଁ ଯୋଗ୍ୟ ।" ମହତାବ ଖୁସି ହେଇ ଚାଲିଗଲେ । ଆମେ ଯେଝା କାଗାକୁ ଫେରିଗଲୁ । ମୁଁ ରମା ଜୈନଙ୍କ ଠାରୁ ଚିଠି ପାଇଲି, "ଆପଣ ଓଡ଼ିଶା କମିଟିର ସଭାପତି ପଦ ପାଇଁ ମନୋନୀତ ହୋଇଛନ୍ତି ।"

ସାଙ୍ଗେ ସାଙ୍ଗେ ମୁଁ ଚିଠି ଲେଖିଦେଲି ଯେ ଏ ବିଷୟରେ ମୁଁ ହରେକୃଷ୍ଣ ମହତାବଙ୍କ ସାଙ୍ଗରେ କଥା ହୋଇଚି । ମୁଁ ତାଙ୍କ ସହିତ ସହମତ ହୋଇଚି ଯେ ଜାନକୀବଲ୍ଲଭ ପଟ୍ଟନାୟକ ଓଡ଼ିଶା କମିଟିର ସଭାପତି ପାଇଁ ଯୋଗ୍ୟ ବ୍ୟକ୍ତି । ତାଙ୍କର ଦ୍ୱିତୀୟ ଚିଠି ଆସିଲା, "ସବୁକଥା ବିଚାରକୁ ନିଆଯାଇ ଆପଣଙ୍କୁ ମନୋନୀତ କରାଯାଇଚି । ଆପଣଙ୍କ କମିଟିର ଦୁଇଜଣ ସଭ୍ୟ ପ୍ରାଣକୃଷ୍ଣ ପରିଜା ଓ ରାଧାନାଥ ରଥ । ମୁଁ ସାଙ୍ଗେ ସାଙ୍ଗେ ଚିଠି ଲେଖିଲି ଯେ ସେମାନେ ଏତେ ବଡ଼ ଯେ କେବଳ ଓଡ଼ିଶାରେ ନୁହେଁ, ଭାରତରେ ସେମାନଙ୍କ ନାଁ ଡାକ । ତାଙ୍କ ଭିତରୁ କେହି ଜଣେ ସଭାପତି ହେଲେ ମୁଁ ସଭ୍ୟ ହେବାକୁ ରାଜି । ତାଙ୍କର ତୃତୀୟ ଚିଠି ଆସିଲା : "ସେମାନେ ଲେଖି ଦେଇଛନ୍ତି ଯେ କେବଳ ଆପଣ ସଭାପତି ହେଲେ ସେମାନେ ସଭ୍ୟ ହେବେ ।" ଶେଷକୁ ମୁଁ ରାଜି ହେଲି । ଓଡ଼ିଶାର ପ୍ରଥମ ଜ୍ଞାନପୀଠ କମିଟିର ସଭାପତି ମୁଁ ଆଉ ସଭ୍ୟ ସ୍ୱନାମଧନ୍ୟ ପ୍ରାଣକୃଷ୍ଣ ପରିଜା ଓ ସମାଜ ସମ୍ପାଦକ ରାଧାନାଥ ରଥ ।

ଓଡ଼ିଶା ସାହିତ୍ୟ ଏକାଡେମୀ ଆଉ ଜାତୀୟ ସାହିତ୍ୟ ଏକାଡେମୀର ମୁଁ ସଭ୍ୟ ରହିଛି । କିନ୍ତୁ ଉଭୟରେ ତିକ୍ତ ସ୍ୱାଦ । ମତେ ଯେତେବେଳେ ଜାତୀୟ ଏକାଡେମୀର ଉପସଭାପତି ପଦ ପାଇଁ ପ୍ରାର୍ଥୀ ହେବାକୁ ବିଭିନ୍ନ ମହଲରୁ ଚାପ ଆସିଲା, ମୁଁ ସଭାପତି ପଦ ପାଇଁ ପ୍ରାର୍ଥୀ ୟୁ.ଆର୍. ଅନନ୍ତମୂର୍ତ୍ତିଙ୍କୁ ଫୋନରେ ପଚାରିଲି, ତାଙ୍କ ମନୋନୀତ ଆଉ କେହି ପ୍ରାର୍ଥୀ ଅଛନ୍ତି କି ? ସେ ନାହିଁ କଲେ । ମୋ ପ୍ରାର୍ଥୀତ୍ୱ ବିଷୟରେ ସେ କହିଲେ, "ଆପଣ ଆସିଲେ ମୋ ପକ୍ଷରେ ଗର୍ବ ଓ ଗୌରବର ବିଷୟ ହେବ ।" ମୁଁ ପ୍ରାର୍ଥୀପତ୍ର ଦାଖଲ କଲି । ପରେ ଯେତେବେଳେ ଜଣାପଡ଼ିଲା ଯେ ବିରଳା ସମର୍ଥିତ ପ୍ରାର୍ଥୀ ଭାବେ ରମାକାନ୍ତ ରଥ ଠିଆ ହେବେ, ସେତେବେଳେ ଏକ ଅସ୍ୱସ୍ତିକର ପରିସ୍ଥିତି ସୃଷ୍ଟି ହେଲା । ଜଣେ ମତେ କହିଲେ, "ଆପଣ ଆପଣଙ୍କ ଭୋଟ ଛଡ଼ା ଅଧିକ ଭୋଟ ପାଇବେ ନାହିଁ । ମୁଁ ସ୍ଥିର କଲି ଯେ ମୁଁ ଓହରି ଯିବି ନାହିଁ । ଜଣେ ମତେ କହିଲେ, ଦି'ଜଣ ଓଡ଼ିଆ ଏକା ପଦ ପାଇଁ ଲଢ଼ିଲେ ସୁନ୍ଦର ଦେଖାଯିବ ନାହିଁ । ମୁଁ କହିଲି— ତମେ ରମାକାନ୍ତଙ୍କୁ ଏ ପ୍ରଶ୍ନ ପଚାରିଚ ? ମୁଁ ଠିଆ ହୋଇଥିବା ଜାଣି ସିଏ ଯେତେବେଳେ ଲଢ଼ିବାକୁ ସ୍ଥିର କଲେ, ସେତେବେଳେ ଓଡ଼ିଆ ବିରୋଧରେ ଲଢ଼ିବା କଥା ଭାବିଲେ ନାହିଁ କାହିଁକି ? ସେ ଯାହାହେଉନା କାହିଁକି, ରମାକାନ୍ତ ଜିଣିଲେ । ମୁଁ ଷୋଳଟି ଭୋଟ ପାଇଲି । ଏଥିପାଇଁ ମୋର ତାଙ୍କ ଉପରେ ରାଗରୋଷ ନାହିଁ । ଏବେ ବି ସିଏ ମୋର ସ୍ନେହର ପାତ୍ର । କିନ୍ତୁ ମୋର ଦୁଃଖର କାରଣ ଯେ ଅନନ୍ତମୂର୍ତ୍ତି ଦିଲ୍ଲୀରେ ହୋଇଥିବା ଫକୀରମୋହନ ସେମିନାରର ପ୍ରବନ୍ଧଗୁଡ଼ିକର ସମ୍ପାଦନାର ଦାୟିତ୍ୱ ମତେ ଦିଆଗଲା ବୋଲି ସାଧାରଣରେ ଘୋଷଣା କରିଥିଲେ, ତାହା କୌଣସି କାରଣରୁ କାର୍ଯ୍ୟକାରୀ ହେଲାନାହିଁ । ଏଥିରେ ବ୍ୟକ୍ତିଗତ ଲାଭକ୍ଷତିର ହିସାବ ଯାହାହେଉନା କାହିଁକି, ଓଡ଼ିଆ ସାହିତ୍ୟର ଯେ କ୍ଷତି ହେଲା, ଏଥିରେ ସନ୍ଦେହ ନାହିଁ ।

କେବେହେଲେ ଓଡ଼ିଆଙ୍କର ଦଳ ନାହିଁ କି ଏକତା ନାହିଁ । ସହଯୋଗ ଓ ସମର୍ଥନ ଦୂରର କଥା, ଓଡ଼ିଆଏ କେହି କାହାକୁ ସହିପାରନ୍ତି ନାହିଁ । ଥରେ କୃଷ୍ଣ କୃପାଳିନୀ ମତେ କହିଥିଲେ, "ତାଙ୍କ ଅଫିସକୁ ଯେତେ ଓଡ଼ିଆ ଆସିଛନ୍ତି, ସେମାନେ ଚାରି, ନ, ଖୁବ୍ ବେଶୀ ହେଲେ ତେର ମିନିଟ୍ ପରେ ଅନ୍ୟ ଓଡ଼ିଆଙ୍କ

ବିରୋଧରେ କହିବାକୁ ଆରମ୍ଭ କରନ୍ତି । ସିଏ କହିଲେ– ତମେ କୋଡ଼ିଏ ମିନିଟ୍ ବସିଲେ ମଧ୍ୟ କାହାରି ବିରୁଦ୍ଧରେ କିଛି କହିନ । ଲାଜରେ ମୋ ମୁହଁ ପୋଡ଼ିଗଲା ।

ଗତ ଷାଠିଏ ବର୍ଷ ଭିତରେ ଓଡ଼ିଶାକୁ ମୁଁ ଯେତିକି ଜାଣିଚି, ତହିଁରେ ଦୁଃଖ, ଲାଜ ଛଡ଼ା ଆଉ କିଛି ମିଳିନାହିଁ । ଏଠି ରାଜନୀତିକ ଲୋକ ହୁଅନ୍ତୁ କି ଅମଲାତନ୍ତ୍ର ହେଉ, ସମସ୍ତେ ବ୍ୟକ୍ତିଗତ ଲାଭ ଓ ଲୋଭର ଦାସ । ଓଡ଼ିଶାର ଉନ୍ନତି ପାଇଁ କାହାରି ପ୍ରତିବଦ୍ଧତା ନାହିଁ । ଓଡ଼ିଶା ହେଉଚି ଏକମାତ୍ର ରାଜ୍ୟ, ଯେଉଁଠି ରାଜ୍ୟ ଭାଷାର କଦର ନାହିଁ । ଏଠି ଓଡ଼ିଆ ନ ଜାଣିଥିବା ଲୋକ ମୁଖ୍ୟମନ୍ତ୍ରୀ ହୋଇପାରନ୍ତି । ଓଡ଼ିଶା ହେଉଚି ଏକମାତ୍ର ରାଜ୍ୟ, ଯେଉଁଠି ବଡ଼ ବଡ଼ ସଂସ୍ଥା ଓ ସାନ ସାନ ଦୋକାନମାନଙ୍କରେ ବିଜ୍ଞାପନ ଓଡ଼ିଆରେ ଲେଖା ହୁଏ ନାହିଁ । ବଜାରରେ ଓଡ଼ିଆ ଗୀତ ବୋଲାଯାଏ ନାହିଁ । ଓଡ଼ିଆ ହାତକାମର ଆଦର ନାହିଁ । ଓଡ଼ିଶା ଏପରି ଏକ ରାଜ୍ୟ, ଯେଉଁଠି ଓଡ଼ିଆ ନ ପଢ଼ି ପିଲା ବି.ଏ., ଏମ୍.ଏ. ଡିଗ୍ରୀ ପାଇପାରେ । ଓଡ଼ିଶା ଏପରି ଏକ ରାଜ୍ୟ, ଯେଉଁଠି ଶିଳ୍ପ ନାଁରେ ଓ ବିକାଶ ନାଁରେ ଲୋକଙ୍କୁ ବେଘର କରିଦେଇ ସେମାନଙ୍କର ପୁନର୍ବାସ ପାଇଁ ନୀତି ନାହିଁ ।

ଓଡ଼ିଶାରେ ଲକ୍ଷପତିଙ୍କ ସଂଖ୍ୟା ବଢ଼ିଲେ ମଧ୍ୟ ଦାରିଦ୍ର୍ୟ ରେଖାତଳେ ଥିବା ଲୋକଙ୍କ ସଂଖ୍ୟା ବଢ଼ି ଚାଲିଚି । ଓଡ଼ିଶାରେ ବାଳିକା ଭ୍ରୂଣ ହତ୍ୟା, ଶିଶୁ ମୃତ୍ୟୁହାର, ଯୌତୁକ ମୃତ୍ୟୁହାର ଦେଖିଲେ ଆତଙ୍କିତ ହେବାକୁ ହୁଏ । ବାଳିକା ଓ ଯୁବତୀ ବିକ୍ରି, ଧର୍ଷଣ ସୀମା ଡେଇଁଲାଣି । ଜଗନ୍ନାଥଙ୍କ ରାଜ୍ୟରେ ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିୟାନଙ୍କ ଭିତରେ ଧାର୍ମିକ ଭେଦଭାବ ସୃଷ୍ଟି କରାଯାଉଚି । ଓଡ଼ିଶା ହେଉଚି ଏପରି ଏକ ରାଜ୍ୟ, ଯେଉଁଠି ଆଦିବାସୀ ଲୋକସଂଖ୍ୟାର ଚବିଶ ପ୍ରତିଶତ ହେଲେ ମଧ୍ୟ ସେମାନଙ୍କଠାରୁ ଜଳ, ଜମି, ଜଙ୍ଗଲ ଛଡ଼େଇ ସେମାନଙ୍କୁ ବେଘର କରି, ସେମାନଙ୍କ ଭାଷାକୁ ମାରି ସେମାନଙ୍କ ମୁହଁ ବନ୍ଦ କରି, ସେମାନଙ୍କ ସଂସ୍କୃତି ଓ ଅସ୍ମିତାକୁ ପାଦରେ ଦଳି ସେମାନଙ୍କୁ ଆତଙ୍କବାଦୀ ଘୋଷଣା କରାଯାଉଚି ।

ଓଡ଼ିଶାରେ ଭାରତର ୨୧ ପ୍ରତିଶତ ଖଣିଜ ସମ୍ପଦ, ୧୨ ପ୍ରତିଶତ ଜଳସମ୍ପଦ, ୯ ପ୍ରତିଶତ ବଣ୍ୟସମ୍ପଦ, ୮ ପ୍ରତିଶତ ସାମୁଦ୍ରିକ ସମ୍ପଦ ଅଛି । ତଥାପି ଓଡ଼ିଶା ଦରିଦ୍ରତମ ରାଜ୍ୟମାନଙ୍କ ଭିତରେ ଗଣାଯାଏ । ଓଡ଼ିଶାର ବିସ୍ତୃତ ଅଞ୍ଚଳ ବିହାର, ବଙ୍ଗଳା, ମଧ୍ୟପ୍ରଦେଶ ଓ ଆନ୍ଧ୍ରପ୍ରଦେଶ ମାଡ଼ି ବସିଲେ । ଏହା କେବଳ ଇତିହାସର କଥା ନୁହେଁ, ଏବେ ବି ଆନ୍ଧ୍ରପ୍ରଦେଶ ଓଡ଼ିଶାର କେତୋଟି ଗାଁ ଜୋରଜବରଦସ୍ତ ଦଖଲ ଚେଷ୍ଟାରେ ଅଛି । ସମସ୍ତ ରାଜିନାମାକୁ ବେଖାତିର କରି ଆନ୍ଧ୍ର ଓ ଛତିଶଗଡ଼ ଓଡ଼ିଶାକୁ ତା'ର ନ୍ୟାୟପାଣ୍ଠିରୁ ବଞ୍ଚିତ କରି ଆପଣା ଆପଣା ଅଞ୍ଚଳର ବିକାଶ ପାଇଁ କାମ କରି ଯାଉଛନ୍ତି । ଓଡ଼ିଶାରେ ଏସବୁର ପ୍ରତିବାଦ ନାହିଁ । ରାଜନୈତିକ ଦଳମାନଙ୍କର ନିର୍ବାଚନ ଇସ୍ତାହାରରେ ଏସବୁର ଉଲ୍ଲେଖ ନାହିଁ । ଏଥିପାଇଁ କୌଣସି ରାଜନୈତିକ ଦଳ ଜନ ଆନ୍ଦୋଳନର ଡାକରା ଦେଇନାହାନ୍ତି । ଏହାହିଁ ଓଡ଼ିଶାର ସବୁଠୁ ବଡ଼ ଦୁର୍ଭାଗ୍ୟ ।



# ବିଗତ ଦଶନ୍ଧିରେ ଓଡ଼ିଶାର ଶିଳ୍ପାୟନରେ ମୋର ଅନୁଭୂତି

ଡକ୍ଟର ହରପ୍ରସନ୍ନ ମିଶ୍ର

*ସ୍ୱାଧୀନତା ପରବର୍ତ୍ତୀ ସମୟରେ ଓଡ଼ିଶାରେ ରାଉରକେଲା ଲୁହାକାରଖାନା, ହୀରାକୁଦ ବନ୍ଧ ଆଦି ଅନେକ ପ୍ରଗତିମୂଳକ କାର୍ଯ୍ୟ ଆରମ୍ଭ ହେଲା । ଡଃ ମହତାବଙ୍କ ଠାରୁ ଶ୍ରୀ ବିଜୁ ପଟ୍ଟନାୟକଙ୍କ ପର୍ଯ୍ୟନ୍ତ ଜନନାୟକମାନେ ବିଭିନ୍ନ ଦିଗରୁ ଓଡ଼ିଶାର ପ୍ରଗତି ଲାଗି ନାନା ଯୋଜନା ରୂପାୟିତ କଲା ବେଳେ ଯୁବ ଇଞ୍ଜିନିୟର ଡଃ ହରପ୍ରସନ୍ନ ମିଶ୍ର ଜର୍ମାନୀରୁ ରସାୟନ ବିଜ୍ଞାନରେ ଉଚ୍ଚ ଉପାଧି ନେଇ ଫେରିଥାନ୍ତି । ଡଃ ମିଶ୍ର ବାରଙ୍ଗ କାଚ କାରଖାନା, ବୋକାରୋ ଇସ୍ପାତ୍ କାରଖାନାରେ କାମ କରି ଅର୍ଜନ କରିଥିବା ଅଭିଜ୍ଞତାକୁ ଅଧିକ କ୍ରିୟାଶୀଳ ଓ ଲାଭଦାୟୀ କରିବାକୁ ରାଉରକେଲା ଇସ୍ପାତ ଓ ସାର କାରଖାନାରେ ନିଯୁକ୍ତି ଦିଆ ଯାଇଥିଲା । ପରେ ପରେ ଶିଳ୍ପ ବିକାଶ ପାଇଁ ସୃଷ୍ଟ ଇପିକଲର ଅଧ୍ୟକ୍ଷ କରାଯାଇଥିଲା । ଡଃ ମିଶ୍ରଙ୍କ ପ୍ରତ୍ୟୁତ୍ପନ୍ନମତିତା ଯୋଗୁଁ ସେ ସମୟର ଓଡ଼ିଶାରେ ଅନେକ ନୂତନ ଶିଳ୍ପ ମୁଣ୍ଡ ଟେକିଥିଲା । ଆମ୍ଭମାନଙ୍କ ଅନୁରୋଧରେ ଡଃ ମିଶ୍ର ଆପଣମାନଙ୍କ ପାଇଁ ଉପସ୍ଥାପନ କରିଛନ୍ତି 'ବିଗତ ଦଶନ୍ଧିରେ ଓଡ଼ିଶାର ଶିଳ୍ପାୟନରେ ମୋର ଅନୁଭୂତି...'*

ଓଡ଼ିଶା ଏହାର ପ୍ରାକୃତିକ ସଂପଦ, ନଦୀ ଓ ସମୁଦ୍ରତଟ ନିମନ୍ତେ ଏକ ସମୃଦ୍ଧ ରାଜ୍ୟ ହୋଇପାରିବାର ସାମର୍ଥ୍ୟ ରଖିଛି । ଏହି ପ୍ରାକୃତିକ ସଂପଦକୁ ଜାତୀୟ ସମ୍ପତ୍ତିରେ ପରିଣତ କରିବାପାଇଁ ଶିଳ୍ପର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଶିଳ୍ପ ସମ୍ପର୍କରେ ମୁଁ ମୋର ରାଜ୍ୟ ତଥା ବିଦେଶର ଅନୁଭୂତିରୁ ଏ ଲେଖା ଆରମ୍ଭ କରୁଛି ।

କଲିକତା ବିଶ୍ୱବିଦ୍ୟାଳୟରେ ଏମ୍.ଟେକ୍. ଛାତ୍ର ଥିବା ସମୟରେ ୧୯୪୯ ମସିହା ଜୁନ୍‌ରେ ମୋତେ ଟିସ୍କୋ କମ୍ପାନୀରେ ତାଲିମ ନେବାର ସୁଯୋଗ ମିଳିଥିଲା । ସେଠାରେ ଇସ୍ପାତ ଉତ୍ପାଦନ ପଦ୍ଧତିରେ ମୋର ଆଗ୍ରହ ବହୁତ ବଢ଼ିଗଲା ଓ ଟିସ୍କୋ ଶିଳ୍ପରେ ବୃତ୍ତି କରିବା ପାଇଁ ମୋତେ ଉତ୍ସାହିତ କଲା ।

ଏମ୍.ଟେକ୍. ପରେ ମୁଁ ରସାୟନ୍‌ବିତ୍ ଭାବରେ ଓଡ଼ିଶା ଇଣ୍ଡଷ୍ଟ୍ରିଜ୍‌ର ବାରଙ୍ଗ କାରଖାନାରେ ନିଯୁକ୍ତି ପାଇଲି । ସେହି ସମୟରେ ଏ କାରଖାନାରେ ରିଫ୍ରାକ୍ଟରିକ୍, ପଥର ନିର୍ମିତ ପଦାର୍ଥ ଓ ବିଭିନ୍ନ ପ୍ରକାରର କାଚ ଜିନିଷ ଉତ୍ପାଦନ କରାଯାଉଥିଲା । ଡକ୍ଟର ହରିବନ୍ଧୁ ମହାନ୍ତି ସେ ସମୟରେ ଓଡ଼ିଶା ସରକାରଙ୍କର ଶିଳ୍ପ ପରାମର୍ଶଦାତା ଥିଲେ । ସେ ମୋତେ ଏ ଦିଗରେ ବହୁତ ଉତ୍ସାହିତ କରିଥିଲେ । ବାରଙ୍ଗରେ କିଛିଦିନ କଟାଇଲା ପରେ ମୁଁ ଭାରତ ସରକାରଙ୍କ ପରିଚାଳନାଧୀନ ସିନ୍ଧ୍ରି ଫର୍ଟିଲାଇଜରରେ ସିନିୟର କେମିଷ୍ଟ୍ ପଦବୀରେ ୧୯୫୧ ମସିହାରେ ଯୋଗଦାନ କଲି । ସିନ୍ଧ୍ରି ଫର୍ଟିଲାଇଜର ଚାକିରି ଦ୍ୱାରା ମୋତେ କେମିକାଲ୍

ଇଣ୍ଡଷ୍ଟ୍ରିକ୍‌କୁ ଭଲଭାବରେ ଜାଣିବାର ଅପୂର୍ବ ସୁଯୋଗ ମିଳିଥିଲା । ୧୯୫୩ ମସିହାରେ ମୁଁ ପଶ୍ଚିମ ଜର୍ମାନୀ ତାଲିମ୍ ପାଇଁ ଗଲି ଓ ପରବର୍ତ୍ତୀକାଳରେ ସେଠାରେ T.H.Aachan ରୁ ଇଞ୍ଜିନିୟରିଂରେ ଡକ୍ଟରେଟ୍ ଲାଭ କଲି ।

ଓଡ଼ିଶାରେ ଶିଳ୍ପକ୍ଷେତ୍ରରେ ମୋର ପୁନଃପ୍ରବେଶ ୧୯୫୫ ମସିହାରେ ରାଉରକେଲା ଷ୍ଟିଲ୍ ପ୍ଲାଣ୍ଟରୁ ଆରମ୍ଭ ହେଲା । ଜର୍ମାନୀରେ ଥିଲାବେଳେ ଏହି ନିଯୁକ୍ତି ପାଇଁ ବଛା ଯାଇଥିଲା । ରାଉରକେଲା ଷ୍ଟିଲ୍ ପ୍ଲାଣ୍ଟ୍ ଜର୍ମାନ ସହାୟତାରେ ପ୍ରତିଷ୍ଠା କରାଯାଇଥିଲା । ଡକ୍ଟର ହରିବନ୍ଧୁ ମହାନ୍ତିଙ୍କର ଏହି ଶିଳ୍ପ ସ୍ଥାପନରେ ଅନେକ ଅବଦାନ ଥିଲା । ରାଉରକେଲା ଷ୍ଟିଲ୍ ପ୍ଲାଣ୍ଟ ଅଧୀନସ୍ଥ ରାଉରକେଲା ଫର୍ଟିଲାଇଜର ପ୍ଲାଣ୍ଟର ପ୍ରମୁଖ କାର୍ଯ୍ୟକର୍ତ୍ତା ହିସାବରେ ତାଳଚେର ଶିଳ୍ପସମୂହ ସ୍ଥାପନ ଦାୟିତ୍ୱ ମୋତେ ଦିଆଯାଇଥିଲା । ତାଳଚେରର କୋଇଲା ଓ ବୈତରଣୀର ଲୁହାପଥରକୁ ବିନିଯୋଗ କରି ଏହି ଷ୍ଟିଲ୍ ଓ ଫର୍ଟିଲାଇଜର କାରଖାନା ଗଢ଼ି ଉଠିଥିଲା । ଏହି ସମୟରେ ଛତ୍ରପୁରର ଇଣ୍ଡିଆନ୍ ରେୟର୍ ଆର୍ଥ, ଇଷ୍ଟକୋଷ୍ଟ ସଲ୍‌ଟ ଓ ଫେରୋକ୍ରୋମ୍ ପ୍ଲାଣ୍ଟ୍ ଯୋଜନା ମଧ୍ୟ ଆରମ୍ଭ ହୋଇଥିଲା ।

ପଞ୍ଚମ ଦଶନ୍ଧିରେ ରାଜଗାଙ୍ଗପୁରଠାରେ ଓଡ଼ିଶା ସିମେଣ୍ଟ ଓ ହୀରାକୁଦ ବନ୍ଧ, ହୀରାକୁଦଠାରେ ଇଣ୍ଡିଆନ୍ ଆଲୁମିନିୟମ୍ ସ୍ଥାପନ କରାଗଲା । ଆମର ପୂର୍ବତନ ମୁଖ୍ୟମନ୍ତ୍ରୀ ସ୍ୱର୍ଗତ ବିଜୁ ପଟ୍ଟନାୟକ ଚୌଦ୍ୱାର ଠାରେ ଓ.ଟି.ଏମ୍., କଳିଙ୍ଗ ଟିଉବ୍‌ସ ଓ ବଡ଼ବିଲ୍ ଠାରେ କଳିଙ୍ଗ ଆଇରନ୍ ୱାର୍କସ୍ ସ୍ଥାପନ କରାଇଥିଲେ । ହୀରାକୁଦ ଓ ତାଳଚେରଠାରେ ଉତ୍ପାଦିତ ଶସ୍ତା ବିଦ୍ୟୁତଶକ୍ତି ଓଡ଼ିଶାରେ ବୃହତ୍ ଶିଳ୍ପ ସ୍ଥାପନ ତଥା ମଧ୍ୟମ ଓ କ୍ଷୁଦ୍ର ଶିଳ୍ପର ପ୍ରସାର ନିମନ୍ତେ ସହାୟକ ହୋଇଥିଲା ।

ସପ୍ତମ ଦଶନ୍ଧିର ପ୍ରାରମ୍ଭରେ ସ୍ୱର୍ଗତ ବିଜୁ ପଟ୍ଟନାୟକ ଓଡ଼ିଶାର ମୁଖ୍ୟମନ୍ତ୍ରିତ୍ୱ ଗ୍ରହଣ କଲେ । ସେ ରାଜ୍ୟର ଉନ୍ନତି ପାଇଁ ଚିନ୍ତାଶୀଳ ବ୍ୟକ୍ତିମାନଙ୍କୁ ଶିଳ୍ପ, ଜଳସେଚନ ଓ ଶକ୍ତି କ୍ଷେତ୍ରରୁ ଚୟନ କରି ଏକ ସହାୟକ ଗୋଷ୍ଠୀ କଲେ । ଏହି ପରିପ୍ରେକ୍ଷୀରେ ଶିଳ୍ପ ଉନ୍ନୟନ ନିଗମ ଓ ଓଡ଼ିଶା ଖଣି ନିଗମ ଜନ୍ମଲାଭ କଲା । ଏଥିସହ ସେ ଶିଳ୍ପୋଦ୍ୟୋଗୀ ଓ ଖଣି ଉତ୍ତୋଳକମାନଙ୍କୁ ଏକ ବ୍ୟାବସାୟିକ ଦୃଷ୍ଟିଭଙ୍ଗୀ ଦେଇଥିଲେ । ଶିଳ୍ପ ଉନ୍ନୟନର ପ୍ରଥମ ସୋପାନ ସ୍ୱରୂପ ସେ ବୈତରଣୀ-ପାରାଦ୍ୱୀପ ଏକ୍ସପ୍ରେସ୍ ହାଇୱେ ଓ ପାରାଦ୍ୱୀପ ବନ୍ଦର ସ୍ଥାପନ କଲେ । ତାଙ୍କର ଓ ଡକ୍ଟର ହରିବନ୍ଧୁ ମହାନ୍ତିଙ୍କ ପ୍ରରୋଚନାରେ ମୁଁ ଓଡ଼ିଶା ଶିଳ୍ପ ଉନ୍ନୟନ ନିଗମର ମୁଖ୍ୟ ପରିଚାଳକ ରୂପେ ୧୯୬୩ ମସିହାରେ ଯୋଗଦେଲି । ମୋର ତତ୍ତ୍ୱାବଧାନରେ ଫେରୋ-ଏଲୟ୍‌ଜ୍, ସିମେଣ୍ଟ, ଫର୍ଟିଲାଇଜର, ବିଚ୍ ସ୍ୟାଣ୍ଡ ଉପରେ ଅନେକ ପ୍ରାଥମିକ କାର୍ଯ୍ୟ ଶିଳ୍ପ ଉନ୍ନୟନ ନିଗମର ପ୍ଲାନିଂ ଏଣ୍ଡ ଡିଜାଇନ୍ ସେଲ୍ ଦ୍ୱାରା କରାଯାଇଥିଲା । ମୁଁ ୧୯୬୭ ମସିହାରେ ଭାରତ ସରକାରଙ୍କର ଅଧୀନସ୍ଥ ବୋକାରୋ ଷ୍ଟିଲ୍ କମ୍ପାନୀରେ ଚିଫ୍ ସୁପରିଣ୍ଟେଣ୍ଡେଣ୍ଟ ପଦରେ ଯୋଗଦେଲି । ଏ ସମୟରେ, ଦେଶରେ ଶିଳ୍ପ ପ୍ରତିଷ୍ଠା ମନ୍ଥର ଥିଲା ଓ ଏହି ପରିସ୍ଥିତି ୧୯୭୦ ମସିହା ପର୍ଯ୍ୟନ୍ତ ରହିଥିଲା ।

୧୯୭୦ ମସିହାରେ ତତ୍କାଳୀନ ମୁଖ୍ୟମନ୍ତ୍ରୀ ସ୍ୱର୍ଗତ ରାଜେନ୍ଦ୍ର ନାରାୟଣ ସିଂହଦେଓ, ତତ୍କାଳୀନ ଶିଳ୍ପସଚିବ ସ୍ୱର୍ଗତ ବିଶ୍ୱରାଜ ପଟେଲ ଓ ଶ୍ରୀ. କେ.ସି. ଗନ୍ତାୟତ, ଚେୟାରମ୍ୟାନ୍ ଇଲେକ୍ଟ୍ରିସିଟି ବୋର୍ଡଙ୍କ ଦ୍ୱାରା ଉତ୍ସାହିତ ହୋଇ ମୁଁ ପୁନର୍ବାର ଓଡ଼ିଶା ସରକାରଙ୍କ ଅଧୀନକୁ ଫେରିଲି ଓ ଶିଳ୍ପ ଉନ୍ନୟନ ନିଗମର

ପରିଚାଳନା ନିର୍ଦ୍ଦେଶକ ପଦବୀରେ ଯୋଗଦେଲି। ୧୯୭୦-୭୪ ମଧ୍ୟରେ ତାଳଚେର ଫର୍ଟିଲାଇଜର ପ୍ଲାଣ୍ଟ, ଇଡ୍‌କଲର ବରଗଡ଼ ସିମେଣ୍ଟ, ଯାଜପୁରଠାରେ ଫେରୋକ୍ରୋମ୍ ପ୍ଲାଣ୍ଟ୍, କଳିଙ୍ଗ ଆଇରନ୍ ୱାର୍କସ୍ ପ୍ରସାରଣ ଓ ଥେରୁବାଲି ଫରୋସିଲିକନ୍ ପ୍ଲାଣ୍ଟ୍ ପ୍ରତିଷ୍ଠା ହୋଇଥିଲା। ଏହି ସମୟରେ ପାରାଦ୍ୱୀପଠାରେ ଷ୍ଟିଲ୍ ପ୍ଲାଣ୍ଟ ପ୍ରତିଷ୍ଠା ପାଇଁ ଉଦ୍ୟମ କରାଯାଇଥିଲା। ମାତ୍ର ଭାରତ ସରକାରଙ୍କ ଅବହେଳା ଓ କୋହଳ ମନୋଭାବ ଯୋଗୁଁ ଏଥିରେ ଅଗ୍ରଗତି କରାଯାଇପାରିଲା ନାହିଁ। ଏହି ସମୟରେ ଆମ ରାଜ୍ୟରେ ରେଳଲାଇନ୍, ରାସ୍ତା ଓ ଜଳଯୋଗାଣର ଅଭାବ ଯୋଗୁଁ ଶିଳ୍ପଦ୍ୟୋଗୀମାନଙ୍କୁ ଆକୃଷ୍ଟ କରିବା କଷ୍ଟକର ବୋଲି ଅନୁଭୂତ ହେଲା। ୧୯୭୪ ରେ କଂଗ୍ରେସ ସରକାର ରାଜ୍ୟରେ କ୍ଷମତାକୁ ଆସିଲା ପରେ ଇଡ୍‌କଲ୍‌କୁ ସରକାରଙ୍କର ଅଧୀନସ୍ଥ ବୃହତ୍ ଓ ମଧ୍ୟମ ଶିଳ୍ପ ଯଥା - କଳିଙ୍ଗ ଆଇରନ୍ ୱାର୍କସ୍, ଫେରୋକ୍ରୋମ୍, ସିମେଣ୍ଟ, କେବୁଲ, ରୋଲିଂ ମିଲ୍, ଇଷ୍ଟକୋଷ୍ଟ ସଲ୍ଟ ଇତ୍ୟାଦିର ପରିଚାଳନା ଦାୟିତ୍ୱ ଦିଆଗଲା ଏବଂ ମହାରାଷ୍ଟ୍ରର ସିକମ୍ (SICOM) ଢାଞ୍ଚାରେ ବୃହତ୍ ଓ ମଧ୍ୟମ ଶିଳ୍ପ ଉଦ୍ୟୋଗ ଓ ଅର୍ଥଲଗାଣ ପାଇଁ ଇପିକଲ (IPICOL) ଗଠନ କରାଗଲା। ମୁଁ ଏହାର ପ୍ରଥମ ଚେୟାରମ୍ୟାନ୍ ଥିଲି ଓ ୧୯୮୪ ମସିହାରେ ଅବସର ଗ୍ରହଣ କରିବା ପର୍ଯ୍ୟନ୍ତ ରହିଥିଲି।

୧୯୭୪-୮୪ ମଧ୍ୟରେ ଓଡ଼ିଶାର ଶିଳ୍ପାୟନ କ୍ଷେତ୍ରରେ ଦ୍ରୁତ ଅଗ୍ରଗତି ଘଟିଥିଲା। ଖଣିଜ ପଦାର୍ଥ ବିନିଯୋଗ କରି ଆଲୁମିନା / ଆଲୁମିନିୟମ୍, ସ୍ପଞ୍ଜ ଆଇରନ୍, ଷ୍ଟିଲ୍ ଓ ଫର୍ଟିଲାଇଜର, ପେପର, ସିନ୍ଥେଟିକ୍ ଫାଇବର ଇତ୍ୟାଦି ଶିଳ୍ପ ପ୍ରତିଷ୍ଠା ନିମନ୍ତେ ପ୍ରାଥମିକ କାର୍ଯ୍ୟ ସଂପୂର୍ଣ୍ଣ କରାଯାଇଥିଲା। ମୁଁ ଏଠାରେ ଦୃଢ଼ତାର ସହ କହିବାକୁ ଚାହେଁ, ଓଡ଼ିଶାରେ ସମ୍ପଦଭିତ୍ତିକ ଶିଳ୍ପ ପ୍ରତିଷ୍ଠା କେବଳ ସମ୍ଭବପର। ଏଗୁଡ଼ିକ ପ୍ରତିଷ୍ଠା ନିମନ୍ତେ ମୁଖ୍ୟତଃ ସହାୟକ ଅନୁଷ୍ଠାନମାନଙ୍କର ଭୂମିକା ଗୁରୁତ୍ୱପୂର୍ଣ୍ଣ। ଇପିକଲ୍ ତା'ର ଅଭିଜ୍ଞ ଇଞ୍ଜିନିୟରମାନଙ୍କର ଦଳଗତ କାର୍ଯ୍ୟକ୍ରମ ଓ National Mineral Laboratory, Regional Research Laboratory ପରି ଜାତୀୟ ସଂସ୍ଥା ସହାୟତାରେ ଏହି ଭୂମିକା ସୁଚାରୁରୂପେ ତୁଲାଇ ଆସିଛି। ଏହି ସମୟରେ ଇପିକଲ୍ ଶିଳ୍ପ ଭିତ୍ତିଭୂମି ଯୋଗାଇ ଶିଳ୍ପାଞ୍ଚଳ ପ୍ରତିଷ୍ଠା କରିବାର ମୂଳଦୁଆ ପକାଇ ପାରିଥିଲା। ଚନ୍ଦକା, ମଞ୍ଚେଶ୍ୱର (ଭୁବନେଶ୍ୱର ନିକଟସ୍ଥ), ଖୋର୍ଦ୍ଧା, ଜଗତପୁର ଇତ୍ୟାଦି ଏହି ଉଦ୍ୟମର ଫଳ।

ପରବର୍ତ୍ତୀ କାଳରେ ଇଡ୍‌କୋ ଏକ ପୃଥକ୍ ସଂସ୍ଥା ଭାବେ ଏହି ଦାୟିତ୍ୱ ନେଇଥିଲା। ଏହିସବୁ ସଂସ୍ଥାର ମିଳିତ ଉଦ୍ୟମ ଯୋଗୁ ନାଲ୍‌କୋ, କେଉଁଝରର ବିଲେଇପଦା ଓ ପଳାସପଙ୍ଗାଠାରେ ସ୍ପଞ୍ଜ ଆଇରନ୍, କୋରାପୁଟର ଜୟପୁରଠାରେ ସେଓ୍ୱା ପେପର୍ ମିଲ୍; ବାମନପାଳ, ଚୌଦ୍ୱାର, ଭଦ୍ରକରେ ଫେରୋ-ଏଲୟଜ୍, ପାରାଦ୍ୱୀପରେ ଫର୍ଟିଲାଇଜର କାରଖାନାମାନ ସ୍ଥାପିତ ହୋଇପାରିଛି।

୧୯୮୪ ମସିହା ପରେ ଶିଳ୍ପ ସ୍ଥାପନ ପ୍ରକ୍ରିୟା ଶିଥିଳ ହୋଇଯାଇଥିଲା, ଯାହାକି ଆଜି ପର୍ଯ୍ୟନ୍ତ ସୁଧୁରି ପାରିନାହିଁ। ଉପଯୁକ୍ତ କଞ୍ଚାମାଲ ଓ ବଜାରର ତାଳମେଳ ତଥା ଗ୍ଲୋବାଲାଇଜେସନ୍ ଫଳରେ ବହୁସଂଖ୍ୟାରେ ମଧ୍ୟମ ଓ କ୍ଷୁଦ୍ର ଶିଳ୍ପ ସ୍ୱଚ୍ଛଳତା ହରାଇ ବସିଛନ୍ତି। ମୋଟ ଉପରେ କହିବାକୁ ଗଲେ, ସରକାର ତଥା ଶିଳ୍ପ ସଂକ୍ରାନ୍ତୀୟ ସଂସ୍ଥାମାନଙ୍କର ଦୂରଦୃଷ୍ଟି ଓ ବିଶ୍ୱସନୀୟତା ଅଭାବରୁ ଏ ପ୍ରକାର ପରିବେଶରୁ ଉଦ୍ଧାର ମିଳିପାରୁନାହିଁ। ମୁଁ ଯୋର ଦେବାକୁ ଚାହେ ଯେ ଔଦ୍ୟୋଗିକ ସଂସ୍ଥାଗୁଡ଼ିକ

ଶିଳ୍ପୋଦ୍ୟୋଗୀମାନଙ୍କ ସହଯୋଗୀ ଭୂମିକା ଗ୍ରହଣ କରିବା ଉଚିତ, ସେମାନଙ୍କର ପର୍ଯ୍ୟବେକ୍ଷକ ଭାବରେ ନୁହେଁ ।

ଇପିକଲ୍, ଇଡ୍‌କୋ ଓ ଇଡ୍‌କଲ ସଂସ୍ଥାଗୁଡ଼ିକ ବହୁ ଅନୁଧ୍ୟାନ ଓ ଅନୁଶୀଳନ ପରେ ସ୍ଥାପନ କରାଯାଇଥିଲା । ମୁଖ୍ୟତଃ ଏଗୁଡ଼ିକରେ ବୃତ୍ତିଧାରୀ ନେତୃତ୍ୱ ଦରକାର ଓ ତା' ମଧ୍ୟ ଦୀର୍ଘମିଆଦୀ ନିଯୁକ୍ତି ସହ । ସରକାରଙ୍କର ସ୍ୱଳ୍ପମିଆଦୀ ନିଯୁକ୍ତି ତଥା ଅବସର ଗ୍ରହଣ କରିବାକୁ ଥିବା ବ୍ୟକ୍ତିମାନଙ୍କର କାମଚଳା ନିଯୁକ୍ତି ଏହି ସଂସ୍ଥାଗୁଡ଼ିକର ଅବକ୍ଷୟ ପାଇଁ ମୁଖ୍ୟତଃ ଦାୟୀ ।

ଗତ ଦୁଇ ଦଶନ୍ଧି ଧରି (୧୯୮୪ ମସିହାରୁ ଆଜି ପର୍ଯ୍ୟନ୍ତ) ସରକାର ୪ ଥର ବଦଳିଲେଣି । ୧୯୮୪-୮୮ କଂଗ୍ରେସ ସରକାର ସମୟରେ ମୁଁ ଅବସର ଗ୍ରହଣ କରି ଆବାସିକ ନିର୍ଦ୍ଦେଶକ ରୂପେ ୧୯୮୪ ମସିହା ପରେ M.N.Dastur & Co ନାମକ ବିଖ୍ୟାତ ମେଟାଲର୍ଜିକାଲ୍ କମ୍ପାନୀରେ ଯୋଗଦେଇ ଭୁବନେଶ୍ୱରରେ ଅବସ୍ଥାପିତ ହେଲି । ସେ ସମୟରେ ବହୁ ଶିଳ୍ପୋଦ୍ୟୋଗୀ ଓଡ଼ିଶା ପ୍ରତି ବିମୁଖ ହୋଇ ମହାରାଷ୍ଟ୍ର ଓ ମଧ୍ୟପ୍ରଦେଶରେ ଶିଳ୍ପ ସ୍ଥାପନ କରିଥିଲେ । ଏହାର କାରଣ ମୁଖ୍ୟତଃ ରାଜ୍ୟ ସରକାରଙ୍କର ଉଦାସୀନତା । ଏହି ପରିବେଶ ୧୯୮୯ ମସିହା ପରେ ଶ୍ରୀ ବିଜୁ ପଟ୍ଟନାୟକଙ୍କ ଜନତା ସରକାର ସମୟରେ ମଧ୍ୟ ଜାରି ରହିଥିଲା । ସରକାରୀ ଜଳ ଶିଳ୍ପୋଦ୍ୟୋଗୀମାନଙ୍କୁ ଆକୃଷ୍ଟ କରିବାରେ ସଫଳ ହୋଇ ପାରି ନ ଥିଲେ । ନୀଳାଚଳ ଇସ୍ପାତ ନିଗମର ସ୍ଥାପନ କାର୍ଯ୍ୟ କେନ୍ଦ୍ର ସରକାରଙ୍କର ସାହାଯ୍ୟ ସତ୍ତ୍ୱେ ବିଶେଷ କିଛି ଅଗ୍ରସର ହୋଇପାରି ନ ଥିଲା । ମେସ୍କୋ ପିଗ୍ ଆଇରନ୍ କମ୍ପାନୀ ଯଦିଓ ଚୀନ୍ କମ୍ପାନୀ ସହାୟତାରେ ପ୍ରତିଷ୍ଠା କରାଗଲା, ଏହା କାର୍ଯ୍ୟକ୍ଷମ ହୋଇପାରିଲା ନାହିଁ । ଏହାର ଆର୍ଥିକ ପରିଚାଳନାରେ ଗୁରୁତର ତ୍ରୁଟି ପରିଲକ୍ଷିତ ହେଲା । ୧୯୯୬ରେ ଏହା ଶତକଡ଼ା ୯୦ ଭାଗ ଶେଷ ହୋଇଥିବା ସତ୍ତ୍ୱେ ସଂସ୍ଥାଟି ଏବେ ବି ଅଚଳ ଅଛି ।

୧୯୯୪ ପରେ କଂଗ୍ରେସ ସରକାର ପୁନର୍ବାର ଶାସନକୁ ଫେରିଲେ । ସେମାନଙ୍କର ନୀତି ଅନୁଯାୟୀ ସରକାରଙ୍କର ଅଂଶଧନ ଫେରାଇ ନେଇ ସରକାରୀ ଶିଳ୍ପ ସଂସ୍ଥାଗୁଡ଼ିକୁ ଘରୋଇ କମ୍ପାନୀକୁ ହସ୍ତାନ୍ତର କରିବା ସ୍ଥିର କରାଗଲା । ଏହା ଫଳରେ ଏହି ଶିଳ୍ପଗୁଡ଼ିକର ପ୍ରସାରଣ ପାଇଁ କୌଣସି ଉଦ୍ୟମ ନ କରି ଏହାକୁ ହସ୍ତାନ୍ତର କରିବାର କାର୍ଯ୍ୟ ଚାଲୁ ରହିଲେ ମଧ୍ୟ ସରକାର ନିର୍ଦ୍ଦିଷ୍ଟ ଭାବରେ କିଛି ସ୍ଥିର କରିପାରିଲେ ନାହିଁ; ଯାହାଦ୍ୱାରା କି ଇଡ୍‌କଲର କଳିଙ୍ଗ ଆଇରନ୍ ୱାର୍କସ୍, ଫେରୋକ୍ରୋମ ଓ ସିମେଣ୍ଟ ଶିଳ୍ପ ସଂସ୍ଥାଗୁଡ଼ିକ ରୁଗ୍‌ଣ ହୋଇପଡ଼ିଲା । ଏବେ ମଧ୍ୟ ଏହି ପରିସ୍ଥିତି ଚାଲୁ ରହିଛି । ଏହା ମଧ୍ୟରେ ଇଡକଲ୍ ସିମେଣ୍ଟ କାରଖାନା ଏ.ସି.ସି.କୁ ବିକ୍ରି ହୋଇଯାଇଛି ।

ମୋ ମତରେ ସରକାରଙ୍କର ସାଧାରଣ ଉଦ୍ୟୋଗ (Public Sector) ରେ ମୁଖ୍ୟ ଶିଳ୍ପଜାତ ପଦାର୍ଥ ଉତ୍ପାଦନ କରିବାର ଉଦ୍ଦେଶ୍ୟ ଥିଲା ମିଶ୍ରିତ ଅର୍ଥନୀତିକୁ ପ୍ରୋତ୍ସାହନ, ଦେଶର ଆମଦାନି ବୃଦ୍ଧି ଓ ନିଯୁକ୍ତି ସୁଯୋଗ ସୃଷ୍ଟି କରିବା । ଘରୋଇ ଉଦ୍ୟୋଗ ମଧ୍ୟ ସରକାରୀ ଉଦ୍ୟୋଗ ସହ ସମତାଳରେ ପ୍ରତିଷ୍ଠିତ ହେଉଥିଲା । କିନ୍ତୁ ଏହା ମୁଖ୍ୟ (Core) ସାମଗ୍ରୀ ଉତ୍ପାଦନଠାରୁ ପୃଥକ୍ ରହୁଥିଲା । କିନ୍ତୁ ସରକାରଙ୍କର ସରକାରୀ ଉଦ୍ୟୋଗ ପ୍ରତି ଉଦାସୀନତା ଆମ ପରି ଏକ ପ୍ରଗତିଶୀଳ ଦେଶର ମିଶ୍ରିତ ଅର୍ଥନୀତି ଓ

ଉନ୍ନତି ପଥରେ ନିଷ୍ଚିତ ଅନ୍ତରାୟ ସୃଷ୍ଟି କରୁଛି । ଏହା ଏକ ଚିନ୍ତାର ବିଷୟ । ଏହା ଫଳରେ ଅଭିଜ୍ଞ ବୃତ୍ତିଧାରୀ କର୍ମଚାରୀମାନେ ସରକାରୀ ଉଦ୍ୟୋଗରେ ନୈତିକତା ହରାଇ ବସିଲେଣି । ଶିଳ୍ପୋଦ୍ୟୋଗୀମାନଙ୍କୁ ପ୍ରୋତ୍ସାହିତ କରାଇବାର ପ୍ରକ୍ରିୟା ସଂପର୍କରେ ସରକାରଙ୍କର ନିର୍ଦ୍ଦିଷ୍ଟ ନୀତି ନାହିଁ କିମ୍ବା ଇଚ୍ଛା ଶକ୍ତି ନାହିଁ ।

ଉଦାହରଣସ୍ୱରୂପ ଟିସ୍କୋକୁ ଗୋପାଳପୁରଠାରେ ଓ ଇଣ୍ଡିଆନ୍ ଅଏଲ୍‌କୁ ପାରାଦ୍ୱୀପଠାରେ ସରକାର ଜମି ଯୋଗାଇ ଦେଇଛନ୍ତି । ବନ୍ଦର ନିକଟସ୍ଥ ଜମି ଶିଳ୍ପାୟନର ପ୍ରବେଶ ପଥ, ଏହା ରାଜ୍ୟର ଅମୂଲ୍ୟ ସମ୍ପଦ । ଏଗୁଡ଼ିକର ଅଚଳ ଅବସ୍ଥା ସମଗ୍ର ରାଜ୍ୟବାସୀଙ୍କ ପାଇଁ ପରିତାପର ବିଷୟ । ସରକାର ଏହି ଶିଳ୍ପ ସଂସ୍ଥାଗୁଡ଼ିକ ସ୍ଥାପନ ନିମନ୍ତେ ଯଥାକ୍ରମେ ପଦକ୍ଷେପ ନେବା ଉଚିତ ।

ପରିଶେଷରେ ଓଡ଼ିଶାର ଶିଳ୍ପାୟନ ପାଇଁ ମୋର କେତୋଟି ମନ୍ତବ୍ୟ :-

୧. ଶିଳ୍ପାୟନର ଏକ ମାଷ୍ଟର ପ୍ଲାନ୍ ରହିବା ଉଚିତ । ପ୍ରତି ପଞ୍ଚବାର୍ଷିକ ଯୋଜନାରେ ଏହି ମୁଖ୍ୟଧାରାକୁ ନେଇ ଯୋଜନା କରାଯିବା ଉଚିତ୍ । ଏହାକୁ ଘନ ଘନ ପରିବର୍ତ୍ତନ କରାଯିବା ରାଜ୍ୟ ପାଇଁ କ୍ଷତିକାରକ ।

୨. ଶିଳ୍ପ ସ୍ଥାପନା ପାଇଁ ଉପଯୁକ୍ତ ଭିତ୍ତିଭୂମି ସୃଷ୍ଟିକରି ଏହାକୁ ଇଣ୍ଡଷ୍ଟ୍ରିଆଲ୍ ବେଲ୍ଟ ହିସାବରେ ରାଜ୍ୟର ଉତ୍ତର-ପଶ୍ଚିମରୁ ଦକ୍ଷିଣ-ପୂର୍ବ ପର୍ଯ୍ୟନ୍ତ ପ୍ରସାରଣ କରାଯାଇ ପାରିବ ।

୩. ଇପିକଲ୍, ଇଡ୍‌କଲ୍ ଓ ଇଡ୍‌କୋ ରାଜ୍ୟର ଶିଳ୍ପାୟନର ମୁଖ୍ୟ ସାରଥୀ । ଏଠାରେ କୁଶଳୀ ମାନବ ସମ୍ବଳ ନିଯୁକ୍ତି ଦରକାର । ଏଇ ଶିଳ୍ପ ସଂସ୍ଥାଗୁଡ଼ିକର କାର୍ଯ୍ୟକଳାପର ସମୀକ୍ଷା କରି ଶିଳ୍ପାୟନ ନିମନ୍ତେ ଉପଯୁକ୍ତ ବ୍ୟକ୍ତିଙ୍କୁ ନିଯୁକ୍ତି ଦିଆଯାଉ ।

୪. ରାଜ୍ୟର ଶିଳ୍ପାୟନ ରାଜନୀତିର ସୁବିଧାବାଦ ନୁହେଁ । ଏଥିନିମନ୍ତେ ବୃତ୍ତିଧାରୀ ଅଭିଜ୍ଞ ବ୍ୟକ୍ତିମାନଙ୍କର ନିଯୁକ୍ତି ଆବଶ୍ୟକ । ରାଜ୍ୟରେ ଚିନି ଓ ଟେକ୍ସଟାଇଲ ଶିଳ୍ପର ଦୁର୍ଭାଗ୍ୟ ଏହାର ଜ୍ୱଳନ୍ତ ଉଦାହରଣ । ଅତ୍ୟଧିକ ନିଯୁକ୍ତି ଓ ଅନୁପଯୁକ୍ତ ସ୍ଥାନ ନିରୂପଣ ଯୋଗୁଁ ଏ ପ୍ରକାର ଶିଳ୍ପଗୁଡ଼ିକ ବନ୍ଦ ହୋଇପଡ଼ିଛି ।

୫. ଉପଯୁକ୍ତ ଶିଳ୍ପୋଦ୍ୟୋଗୀ ଚୟନ ଓ ପ୍ରକଳ୍ପ ପ୍ରତିଷ୍ଠାରେ ସଚ୍ଚୋଟତା ଉପରେ ଶିଳ୍ପର ସଫଳତା ନିର୍ଭର କରେ । ବହୁ କ୍ଷେତ୍ରରେ ଏହାର ଅଭାବରୁ, ପ୍ରକଳ୍ପ ପ୍ରତିଷ୍ଠାର ସମୟ ବୃଦ୍ଧି, ପ୍ରକଳ୍ପର ମୂଲ୍ୟବୃଦ୍ଧି ଯୋଗୁଁ ଏହି ଶିଳ୍ପଗୁଡ଼ିକ ରୁଗ୍‌ଣ ଓ ଅସଫଳ ହୋଇଯାଉଛି ।

ମୋର ମନେହେଉଛି ଯେ ବିଗତ କିଛିଦିନ ହେଲା ଏହି ଅବସ୍ଥାରେ କିଛି ପରିବର୍ତ୍ତନ ହେଉଛି । ଲୌହଶିଳ୍ପର ପୃଥିବୀବ୍ୟାପୀ ଚାହିଦା ବଢ଼ିବା ପରେ ଆମ ଓଡ଼ିଶାରେ ଅନେକ ଶିଳ୍ପ ଉଦ୍ୟୋଗୀ ଲୌହଭିତ୍ତିକ ଶିଳ୍ପ ପ୍ରତିଷ୍ଠାନମାନ କରିବାକୁ ଆସୁଛନ୍ତି । ବର୍ତ୍ତମାନ ପାରାଦ୍ୱୀପଠାରେ ପ୍ରାକୃତିକ ଗ୍ୟାସର ସନ୍ଧାନ ମିଳିଛି । ମୋର ମନେହୁଏ ପାରାଦ୍ୱୀପ, ଦୈତାରୀ, କେନ୍ଦୁଝର, ରାଉରକେଲା ପର୍ଯ୍ୟନ୍ତ ଗ୍ୟାସ୍ ପାଇପ୍ ଲାଇନ୍‌ର ଯୋଜନା କରିବା ଉଚିତ ଓ କେଉଁ କେଉଁ ଖଣିଜଭିତ୍ତିକ ଶିଳ୍ପ ପ୍ରତିଷ୍ଠା କରାଯାଇପାରିବ ଓ କଣ ଭିତ୍ତିଭୂମି ଦରକାର, ସେ ବିଷୟରେ ଇପିକଲ୍ ବିଶଦ ପର୍ଯ୍ୟାଲୋଚନା କରିବା ଆବଶ୍ୟକ ।



# Valuminium

## From precious ...











## ... to versatile

We have the stock to cap every need



We make the life saving drink safer



We weigh less to save more



We package your needs in all measures







www.adityabirla.com

# ଗାନ୍ଧି ଓ ଗୋପବନ୍ଧୁଙ୍କ ଜୀବନାଭିମୁଖୀ ସାହିତ୍ୟ ଓ ସାମ୍ବାଦିକତା

ଶ୍ରୀ ବରେନ୍ଦ୍ରକୃଷ୍ଣ ଧଳ

*ଆମର ମାତୃଭୂମି ଓଡ଼ିଶା ଆମକୁ ଜନ୍ମଦେଇ, ଲାଳନପାଳନ କରି ଆଜି ବିଶ୍ୱଦରବାରରେ ଠିଆ କରିଛି । ଆମେ ଯେଉଁ ପ୍ରଜ୍ଞାପୁରୁଷମାନଙ୍କ ଆଦର୍ଶକୁ ପାଥେୟ କରି ପିଢ଼ି ପରେ ପିଢ଼ି ନିଜକୁ ଗଢ଼ି ଚାଲିଥାଉଁ, ସେମାନଙ୍କ ମଧ୍ୟରେ ମଧୁବାବୁ, ଗୋପବନ୍ଧୁ ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ । ଉତ୍କଳମଣି ଗୋପବନ୍ଧୁ ତାଙ୍କର ସ୍ୱଳ୍ପ ଜୀବନକାଳ ମଧ୍ୟରେ ଓଡ଼ିଶାର ଉନ୍ନତି ପାଇଁ ଯେଉଁ ଆଦର୍ଶ, ତ୍ୟାଗ ସୃଷ୍ଟି କରିଯାଇଛନ୍ତି, ତାହା ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇରହିଛି । ଗାନ୍ଧିଜୀଙ୍କ 'ହରିଜନ' ପରି ଗୋପବନ୍ଧୁଙ୍କ 'ସମାଜ' ଏକଦା ଓଡ଼ିଶାର ସମ୍ବାଦ ଓ ସାହିତ୍ୟ ରୂପେ ସମସ୍ତଙ୍କର ଆଦୃତି ଲାଭ କରିଛି ଓ ଓଡ଼ିଶାର ଜନଗଣ ତାକୁ ହିଁ ଓଡ଼ିଆ ମୁଖପତ୍ର ରୂପେ ଗ୍ରହଣ କରିଛନ୍ତି । ଓଡ଼ିଶାର ଜଣେ ପ୍ରଥମ ଶ୍ରେଣୀର ସମୀକ୍ଷକ, ସମାଲୋଚକ, ସାହିତ୍ୟିକ ଏବଂ ସାମ୍ବାଦିକ ରୂପେ ସର୍ବଜନାଦୃତ ବ୍ୟକ୍ତିତ୍ୱ ଶ୍ରୀ ବରେନ୍ଦ୍ରକୃଷ୍ଣ ଧଳ ଏ ବିଷୟରେ ଉଲ୍ଲେଖ କରିଛନ୍ତି ତାଙ୍କ ଦ୍ୱାରା ପ୍ରଦତ୍ତ ଏହି ପ୍ରବନ୍ଧଟିରେ.....*

ସର୍ବଭାରତୀୟ କ୍ଷେତ୍ରରେ ମହାତ୍ମା ଗାନ୍ଧୀ ତାଙ୍କର ରଚନାତ୍ମକ କାର୍ଯ୍ୟ ଯେଉଁକି ଭାବେ ଚଳାଇଥିଲେ, ପଣ୍ଡିତ ଗୋପବନ୍ଧୁ ଦାସ ଓଡ଼ିଶାରେ ଠିକ୍ ସେହି ଢଙ୍ଗରେ ନିଜର କାର୍ଯ୍ୟ ପରିଚାଳନା କରିଥିଲେ । ମହାତ୍ମା ଗାନ୍ଧିଙ୍କୁ ଲକ୍ଷ୍ୟକରି ଜଣେ ସାହେବ କହିଥିଲେ, "literature that does not last is journalism and journalism that lasts is literature."ଅର୍ଥାତ୍ ଯେଉଁ ସାହିତ୍ୟ ଚିରନ୍ତନ ନୁହେଁ, ତାହା ସାଂବାଦିକତା, ଯେଉଁ ସଂବାଦର ଚିରନ୍ତନ ମୂଲ୍ୟ ଥାଏ, ତାହା ସାହିତ୍ୟ । ୧୯୦୩ରେ ଦକ୍ଷିଣ ଆଫ୍ରିକାର Indian Opinion ପତ୍ରିକାଠାରୁ ଆରମ୍ଭ କରି ୧୯୪୮ ସାଲରେ ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ଗାନ୍ଧି 'ହରିଜନ' ପତ୍ରିକାରେ ନିୟମିତ ଲେଖୁଥିଲେ । ଅର୍ଦ୍ଧଶତାବ୍ଦୀ ଧରି ପତ୍ର ଓ ପତ୍ରିକା ସହ ସଂପୃକ୍ତ ରହିବା ପରେ ଗାନ୍ଧିଜୀ କହୁଥିଲେ– ଏତେ ଲେଖିବା ପରେ ମଧ୍ୟ ଏବେ ପ୍ରତ୍ୟେକ ବିବରଣୀ ଲେଖିଲା ବେଳେ ପ୍ରତ୍ୟେକ ଶବ୍ଦ ଉପରେ ସେ ଗଭୀର ଭାବେ ଚିନ୍ତା କରୁଛନ୍ତି । ଚେତନଶୀଳ ଭାବେ କଥାକୁ ଫେଣେଇ ଫେଣେଇ ବା ଅନ୍ୟକୁ ଖୁସି କରିବା ପାଇଁ ଗୋଟିଏ ହେଲେ ଶବ୍ଦ ସେ ପ୍ରୟୋଗ କରିନାହାନ୍ତି । କାରଣ ସେ କହୁଥିଲେ, "ସଂବାଦପତ୍ରର ଦାୟିତ୍ୱ ହେଉଛି ଲୋକଇଚ୍ଛାକୁ ପ୍ରକାଶ କରିବା, ଲୋକଙ୍କ ମନରେ ରାଷ୍ଟ୍ରଗଠନର ଚେତନା ସୃଷ୍ଟିକରିବା ଓ ଭୟଶୂନ୍ୟ ଭାବେ ସରକାରଙ୍କ ଦୁର୍ବଳତାକୁ ପ୍ରକାଶ କରିବା ।" କିନ୍ତୁ ଏସବୁ କରିବାକୁ ଗଲାବେଳେ ଗୋଟିଏ ଦିଗପ୍ରତି ତୀକ୍ଷ୍ଣ ନଜର ରଖିବା ଆବଶ୍ୟକ । ତା' ହେଉଛି ସମସ୍ତ ବିଷୟକୁ ଅତି ସାବଲୀଳ ଭାଷାରେ ପ୍ରକାଶ କରିବା ଉଚିତ । ନିର୍ଭୁଲ ଭାଷା ଓ ଘଟଣାର ବର୍ଣ୍ଣନା ଅତ୍ୟନ୍ତ ନିରପେକ୍ଷ ଓ

ସତ୍ୟନିଷ୍ଠ ହେବା ଉଚିତ । ତାହା ହେଲେ ହିଁ ସମ୍ବାଦଟି କେବଳ ଯେ ପଠନଯୋଗ୍ୟ ହେବ, ତା'ନୁହେଁ, ସାଧାରଣ ପାଠକମାନଙ୍କର ବିଶ୍ୱାସ ଅର୍ଜନ ମଧ୍ୟ କରିବ।

ଆମେ ଏହି ଉପକ୍ରମଣିକା ଦେଇ ଆଜିର ନିବନ୍ଧ ଆରମ୍ଭ କରିବାର ଏକମାତ୍ର ଉଦ୍ଦେଶ୍ୟ ହେଉଛି ଏହି ଯେ ସାହିତ୍ୟ ବୋଲି କେତେକ ଯାହା ବିଚାର କରନ୍ତି, ସାହିତ୍ୟ ବୋଲି କେତେକ ଯେଉଁ ସଂଜ୍ଞା ନିରୂପଣ କରିଛନ୍ତି, ତାହା କ'ଣ କେବଳ ସାହିତ୍ୟ ? ଚାମ୍ବର୍ସ୍ ଇଂଗ୍ଲିସ ଡିକ୍ସନାରୀରେ Literatureର ଅର୍ଥ ମଧ୍ୟରେ ଗୋଟିଏ ଶବ୍ଦ ଅଛି Humane Learning; ଅର୍ଥାତ୍ ମାନବୋଚିତ ଜ୍ଞାନ । ଅନ୍ୟ ଅର୍ଥରେ ସାମାଜିକ ବିଧି ବ୍ୟବସ୍ଥା ସମ୍ପର୍କରେ ରହିଥିବା ବିଚାରଧାରା ।

ଆମେ ବିଚାର କରୁ, ସାହିତ୍ୟ ହେଉଛି ଭାଷାର ଢାଙ୍କୁଣି । ଭାଷାକୁ ସାହିତ୍ୟ ପଲ୍ଲବିତ କରେ । ଯେଉଁ ସାହିତ୍ୟ ଯେତେ ଉନ୍ନତ, ସେ ଭାଷା ସେତିକି ଉଜ୍ଜ୍ୱଳ । ତେଣୁ ଭାଷା ହେଉଛି ରାଜ୍ୟର ରାଜନୀତିକ ସରହଦ । ଯେଉଁ ଭାଷା ଯେଦିତି ଦୃଢ଼, ସେଇ ରାଜ୍ୟ ସେତିକି ଶକ୍ତିଶାଳୀ। ଭାଷା ହେଉଛି ରାଜ୍ୟର ସୀମାନ୍ତ ପ୍ରହରୀ । ଭାଷାର ପ୍ରଚାର ହିଁ ସାମଗ୍ରିକ ଭାବେ ରାଜ୍ୟର ସଂହତିର ପ୍ରଚାର । ତେଣୁ ସାହିତ୍ୟର ସେବାଦ୍ୱାରା ସମଗ୍ର ଭାଷାର ଏବଂ ସମାଜର ସେବା କରାଯାଏ ବୋଲି କହିଲେ ଅତିରଂଜନହେବନାହିଁ ।

ସାହିତ୍ୟକୁ କେତେକ ସତ୍ୟ-ଶିବ-ସୁନ୍ଦର ବୋଲି ତ କହିଥା'ନ୍ତି ! ତେଣୁ ମନେହୁଏ, ଗୋପବନ୍ଧୁ ସମାଜସେବା ପାଇଁ ସାମ୍ବାଦିକତା ଓ ସାହିତ୍ୟକୁ ମୂଳ ଆଧାର ରୂପେ ବାଛି ନେଇଥିଲେ। 'ସମାଜ' ପ୍ରକାଶନ ପୂର୍ବରୁ ସତ୍ୟବାଦୀ ପତ୍ରିକାରେ ଏବଂ ତା' ପୂର୍ବରୁ 'ଉତ୍କଳ ଦୀପିକା'ରେ ସେ ନିଜର ଅନୁଭୂତି ବର୍ଣ୍ଣନା କରୁଥିଲେ । ଯାଜପୁର ଓ କେନ୍ଦ୍ରାପଡ଼ାର ଭୟଙ୍କର ବନ୍ୟା ସଂପର୍କରେ ୧୯୦୭ ମସିହା ସେପ୍ଟେମ୍ବର ୨୧ ତାରିଖରେ 'ଉତ୍କଳ ଦୀପିକା'ରେ ସେ ଯେଉଁ ବିବରଣୀ ଲିପିବଦ୍ଧ କରିଥିଲେ, ତାହା ଆଜି ଆଉ ସାମ୍ବାଦିକତା ମଧ୍ୟରେ ସୀମାବଦ୍ଧ ନ ହୋଇ ସାହିତ୍ୟରେ ପରିଣତ ହୋଇଯାଇଛି । ଏଇଠି ଗାନ୍ଧୀଙ୍କ ଭଳି ଗୋପବନ୍ଧୁଙ୍କ ପ୍ରତିବେଦନ କେବଳ ନିଛକ ବନ୍ୟା ବିବରଣୀ ନୁହେଁ, ଓଡ଼ିଶାର ସମସାମୟିକ ସମାଜଚିତ୍ର ଏବଂ ଓଡ଼ିଆ ଭାଷା ସାହିତ୍ୟର ଅଂଶବିଶେଷ । ସାମ୍ବାଦିକତାକୁ ଗୋପବନ୍ଧୁ ଆଦରି ନେଇଥିଲେ ଏଇଥିଲାଗି ଯେ ସମାଜସେବା ପାଇଁ ଏହା ସବୁଠାରୁ ଉତ୍କୃଷ୍ଟ ପଥ । ସମାଜରେ ନିତିପ୍ରତି ଘଟୁଥିବା ଦୁଃଖ, ଦାରିଦ୍ର୍ୟ, ବେଦନା ଆଉ ଅସହାୟତାର ଏହା ଏକ ଦର୍ପଣ ସଦୃଶ ।

ଗୋପବନ୍ଧୁ ବିଚ୍ଛିନ୍ନ ଉତ୍କଳର ମିଶ୍ରଣ ପାଇଁ ଉତ୍କଳ ଗୌରବ ମଧୁସୂଦନଙ୍କ ନେତୃତ୍ୱକୁ ସ୍ୱୀକାର କରିଥିଲେ । ଓଡ଼ିଶାର ବିଭିନ୍ନ ଅଂଚଳ ଘୂରିବୂରି ସେ ଉତ୍କଳ ସମ୍ମିଳନୀର ଆୟୋଜନ କରିଥିଲେ । ଓଡ଼ିଆ ଭାଷାର ପ୍ରସାର ପାଇଁ ଭାଷଣ ଦେଇଥିଲେ । କାରଣ ପ୍ରତି ଓଡ଼ିଆ ନିଜର ଭାଷାର ସୁରକ୍ଷା କଲେ ହିଁ ସାମଗ୍ରିକ ଭାବେ ଓଡ଼ିଶାର ସଂହତି ଓ ସୀମା ସରହଦ୍ ରକ୍ଷା କରାଯାଇ ପାରିବ । ଓଡ଼ିଆ ଭାଷା-ଭାଷୀ ଲୋକେ ହିଁ ଓଡ଼ିଶା ଦେଶବାସୀଙ୍କ ପ୍ରକୃତ ପ୍ରହରୀ ଓ ସୀମାରେଖା । ତେଣୁ ଗୋପବନ୍ଧୁଙ୍କ ସହ କାର୍ଯ୍ୟ କରୁଥିବା ପଞ୍ଚସଖାଙ୍କ ମଧ୍ୟରୁ ପ୍ରାୟ ସମସ୍ତେ ଜଣେ ଜଣେ ଭାଷାତତ୍ତ୍ୱବିଦ୍ ଓ ସାହିତ୍ୟରଥି । ନୀଳକଣ୍ଠ ଦାସ, ଗୋଦାବରୀଶ ମିଶ୍ର, ଆଚାର୍ଯ୍ୟ ହରିହର ଓ କୃପାସିନ୍ଧୁ ସମସ୍ତେ ଥିଲେ ସାହିତ୍ୟ-ସେବକ । ସମସ୍ତଙ୍କର ସେଇ ଗୋଟିଏ ନୀତି । ସାହିତ୍ୟ ଭାଷାକୁ ଦୃଢ଼ କରିବ, ଭାଷା ଓଡ଼ିଆ ଲୋକଙ୍କ ମଧ୍ୟରେ ସଂହତି

ଆଣିବ । ତେଣୁ ପ୍ରତ୍ୟେକ ଓଡ଼ିଆ, ବିଶେଷ କରି ସୀମାନ୍ତ ଅଂଚଳର ଓଡ଼ିଆମାନେ ନିଜ ଭାଷାର ସମୃଦ୍ଧି ପାଇଁ କାର୍ଯ୍ୟ କରିବାକୁ ସେମାନେ ପ୍ରବର୍ତ୍ତାଉ-ଥିଲେ । ଲୋକ ମୁହଁରେ ସାହିତ୍ୟ ଥିଲା । ଶହ ଶହ ବର୍ଷ ତଳେ ପୋଥିରେ ସାହିତ୍ୟ ଲେଖା ହେଉଥିବା ବେଳେ ଲୋକଙ୍କ ମୁହଁକୁ ତାହା ଗଲା କିପରି ? କାରଣ ତା' ଉପରେ ଚର୍ଚ୍ଚା ଥିଲା । ମୁହଁରୁ ମୁହଁକୁ ଭାଷା ସାହିତ୍ୟ ଡେଇଁ ଡେଇଁ ଚାଲିଲା । ସେଇ ମୁହଁର ବୋଲିରେ ମହାଭାରତ, ରାମାୟଣଠାରୁ ଆରମ୍ଭ କରି ଚଉତିଶା, ଛାନ୍ଦ, ଜଣାଣ ସବୁ ରହିଥିଲା । ତାହା ହିଁ ସର୍ବୋତ୍ତମ ସାହିତ୍ୟ ସେବା । ସେଇ ସେବା ହିଁ ଓଡ଼ିଆ ଭାଷାକୁ ବଂଚାଇ ରଖିବାରେ ସାହାଯ୍ୟ କରିଥିଲା । ଗୋପବନ୍ଧୁଙ୍କ ସାହିତ୍ୟ, ବିଶେଷ କରି କବିତା ଲୋକମୁଖର ଭାଷା ହୋଇପାରିଥିଲା । ଭାରତବର୍ଷରେ ପ୍ରଥମେ ଓଡ଼ିଶା ପ୍ରଦେଶ ଭାଷାସୂତ୍ରରେ ଗଠନ କରାଗଲା । ଆମର ଅନେକ ଅଞ୍ଚଳ ଆମ ପରବର୍ତ୍ତୀ ନେତୃବୃନ୍ଦଙ୍କ ଅପାରଗତାରୁ ଏବେ ମଧ୍ୟ ଓଡ଼ିଶା ବାହାରେ ରହିଛି । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ହେବାର ଆଠବର୍ଷ ପୂର୍ବରୁ ଗୋପବନ୍ଧୁ ପ୍ରାଣତ୍ୟାଗ କରିଥିଲେ । ଗୋପବନ୍ଧୁ ଯଦି ବଂଚିଥା'ନ୍ତେ, ଭାଷାସୂତ୍ରରେ ଗଠନ ହେଉଥିବା ଓଡ଼ିଶାର ରୂପ କ'ଣ ହୋଇଥା'ନ୍ତା, କହିବା ସମ୍ଭବ ନୁହେଁ । ମାତ୍ର ଏ କଥା ନିଶ୍ଚିତ ଭାବେ ଅନ୍ତତଃ କୁହାଯାଇ ପାରିବ ଯେ ଗୋପବନ୍ଧୁ ଏଥିପାଇଁ ତାଙ୍କ ସାମ୍ବାଦିକତାର ଅସ୍ତ୍ର ପ୍ରୟୋଗ କରିଥିଲେ । ଗୋପବନ୍ଧୁଙ୍କ ସାମ୍ବାଦିକତା ହିଁ ବାସ୍ତବବାଦୀ ସାହିତ୍ୟ । ଏ ସାହିତ୍ୟର ମୂଳ ଉତ୍ସ ରହିଛି ଓଡ଼ିଶାର ମାଟିରେ, ପାଣି ଆଉ ପବନରେ । ଏହା କଳ୍ପନାପ୍ରସୂତ ନୁହେଁ । ଏହା ହିଁ ଗୋପବନ୍ଧୁଙ୍କର ମନ ଆଉ ପ୍ରାଣର ଭାଷା ।

୧୯୨୦ ମସିହା ଜୁନ୍ ୧୯ ତାରିଖ 'ସମାଜ'ରେ ଗୋପବନ୍ଧୁ ଭାରତସମ୍ରାଟଙ୍କ ବଡ଼ପୁଅଙ୍କ ବିହାର-ଓଡ଼ିଶା ରାଜଧାନୀ ପାଟନାରେ ପଦାର୍ପଣ କରିବା ଘଟଣା ଉପରେ ଏକ ସଂପାଦକୀୟ ଟିପ୍ପଣୀ ଦେଇଥିଲେ । ସେଥିରେ ଉଲ୍ଲେଖ କରିଥିଲେ, "ଆଗାମୀ ଜାନୁଆରୀ ମାସରେ ଭାରତସମ୍ରାଟଙ୍କ ବଡ଼ପୁଅ ବିହାର-ଓଡ଼ିଶା ରାଜଧାନୀ ପାଟନାରେ ବିଜେ ହେବେ । ତାଙ୍କ ଅଭ୍ୟର୍ଥନା ସକାଶେ ଆଗାମୀ ଜୁଲାଇ ୩ ତାରିଖରେ ସେଠାରେ ଏକ ସାଧାରଣ ସଭା ହେବ । ରାଜପୁତ୍ରଙ୍କ ଦର୍ଶନ ପାଇବା ପାଟନା ପକ୍ଷେ ଅବଶ୍ୟ ପରମ ଗୌରବର ବିଷୟ । ସରକାରୀ ହିସାବରେ ଏହି ପ୍ରାଦେଶିକ ଗୌରବରେ ଓଡ଼ିଶାର ଅବଶ୍ୟ ଭାଗ ରହିଛି । ମାତ୍ର ବିଚ୍ଛିନ୍ନ ଓ ପର ଆଶ୍ରିତ ଓଡ଼ିଆଙ୍କର ଏ ଗୌରବ ବା ସୌଭାଗ୍ୟରେ ପ୍ରକୃତ ସୁଖ ହେବ ନାହିଁ । ମା'ମଲା ପିଲାର ଷଠିଘର କ'ଣ ?"

ଗୋପବନ୍ଧୁଙ୍କ ଜୀବନରେ ସବୁ ସମୟରେ ମୂଳ ଲକ୍ଷ୍ୟ ଥିଲା ସମାଜସେବା । ସେଇଥିପାଇଁ ୧୯୧୯ ମସିହା ସେପ୍ଟେମ୍ବର ମାସରେ ଗୋଟିଏ ସାପ୍ତାହିକ ଖବର କାଗଜ ପ୍ରକାଶକରିବା ପାଇଁ ଯେତେବେଳେ ନିଷ୍ପତ୍ତି କଲେ, ତା'ର ନାଁ ଦେଲେ 'ସମାଜ' । ସମାଜର ପ୍ରକୃତ ଚିତ୍ର 'ସମାଜ'ରେ ପ୍ରକାଶ କରି ସରକାର ଓ ଜନସାଧାରଣଙ୍କ ଦୃଷ୍ଟି ଆକର୍ଷଣ କରିବା ଥିଲା ତାଙ୍କର ମୂଳ ଉଦ୍ଦେଶ୍ୟ ।

ସେ 'ସମାଜ'ର ପ୍ରଥମ ସଂଖ୍ୟା ୪।୧୦।୧୯୧୯ ତାରିଖରେ ଲେଖିଥିଲେ, "ଗଡ଼ଜାତ ରାଜ୍ୟମାନ ଓଡ଼ିଶାର ବାହାରେ । ସେଠା ଲୋକଙ୍କ ସୁଖଦୁଃଖ ଓଡ଼ିଶା ଲୋକେ ଜାଣୁନାହାନ୍ତି । ଜାଣିଲେ ସୁଦ୍ଧା ସେଥିରେ ପାଟି ଫିଟେଇବାକୁ ବାଟ ନାହିଁ ।"

ଓଡ଼ିଆ ମୂଲକ ସବୁ ଛିନ୍ନ-ଛିନ୍ନ । ଭାଇକି ଭାଇ ଚିହ୍ନୁ ନାହିଁ । ଚହ୍ନିଲେ କାନ୍ଧକୁ କାନ୍ଧ ଲଗାଇ

ଚାଲିବାର ସୁଯୋଗ ନାହିଁ । ଆହା, କେଡ଼େ ବଡ଼ ଓଡ଼ିଆ ସମାଜ କିପରି ଖଣ୍ଡବିଖଣ୍ଡ । ପ୍ରତିକାରର ଉଦ୍ୟମ ସେପରି କିଛି ନାହିଁ । ଏଥିରେ କି ଏ ଜାତି ଅଧିକ ଦିନ ରହିବ ବୋଲି ଆଶା ହୁଏ ! ମନକୁ ଏ ଭାବନା ଆସିଲେ ପ୍ରାଣ ଶୁଖିଯାଏ । ଏ ଶୁଖିଲା ପ୍ରାଣରେ ନିରାଶା ଘେନି 'ସମାଜ' କାଗଜ ଆରମ୍ଭ କରୁଅଛି । ଭରସା କେବଳ ଏତିକି ଯେ କୌଣସି ଜାତି ବା ସମାଜ ସହଜରେ ମରେନାହିଁ । ଏହି ବିଶ୍ୱାସ ହୃଦୟରେ ଅଦ୍ୟାପି ଦୃଢ଼ ଅଛି ।"

ଭାଷା ସଂପର୍କରେ ଗୋପବନ୍ଧୁଙ୍କ ଦୃଷ୍ଟିକୋଣ ଅତ୍ୟନ୍ତ ଉଦାର । ଗୋପବନ୍ଧୁଙ୍କ ଭାଷାରେ, "ଯେଉଁ ଭାଷା, ଭାବ ଓ ସଭ୍ୟତାର ଏକତାରେ ପ୍ରାଦେଶିକ ସ୍ୱାତନ୍ତ୍ର୍ୟ ମଧ୍ୟରେ ଭାରତୀୟ ସଭ୍ୟତା ଆଜିଯାଏ ଜୀବିତ ରହିଅଛି, ଉପସ୍ଥିତ କ୍ଷେତ୍ରରେ ପ୍ରାଦେଶିକ ସଭ୍ୟତାର ବ୍ୟକ୍ତିତ୍ୱ ରକ୍ଷା ନିମନ୍ତେ ସେହି ପନ୍ଥା ଅବଲମ୍ବନ କରିବାକୁ ହେବ । ଟିକେ ଚଳେଇ ଦେଖିଲେ ଦେଖାଯିବ, ଭାବ ଓ ସଭ୍ୟତାର ମୂଳରେ ଭାଷା । ଭାଷାର ଏକତା ଥିଲେ ଭାବର ଏକତା ସୁନିଶ୍ଚିତ ।"

ଆଜିକାଲି ଭାରତର ଏକ ଏକ ପ୍ରଦେଶରେ ନାନାବିଧ ଲୋକ ଅଛନ୍ତି । ଏହି ନାନାବିଧ ଲୋକଙ୍କ ମଧ୍ୟରେ ଏକତା ରକ୍ଷା କରିବାକୁ ହେଲେ ସେ ସମସ୍ତଙ୍କର ସେହି ଦେଶ ଭାଷା ଗ୍ରହଣ କରିବା ଉଚିତ । ତାହାହେଲେ ସେମାନଙ୍କ ଭାବ ଓ ଚିନ୍ତାରେ ସାମଞ୍ଜସ୍ୟ ଆସିବ । ସେ ପ୍ରଦେଶରେ ସଂସ୍କୃତି, ସାହିତ୍ୟ ଓ ଇତିହାସ ଆଦିକୁ ସେମାନେ ନିଜର କରିନେବେ । ଯେତେଦୂର ସମ୍ଭବ ଏକ ଭାଷା ପ୍ରଚଳିତ ସ୍ଥାନମାନ ଏକ ଶାସନାଧୀନରେ ନ ରହିଲେ ଏ ଉଦ୍ଦେଶ୍ୟ ସିଦ୍ଧ ହୋଇପାରିବ ନାହିଁ ।

ଆମେ ପୂର୍ବରୁ ଗୋପବନ୍ଧୁଙ୍କ ସାହିତ୍ୟସେବା ସମ୍ପର୍କରେ ସାମାନ୍ୟ ଉଲ୍ଲେଖ କରିଛୁ । ବନ୍ଦୀର ସ୍ୱଦେଶ ଚିନ୍ତା, ଅବକାଶ ଚିନ୍ତା କିମ୍ବା ସତ୍ୟବାଦୀରେ ପ୍ରକାଶିତ ତାଙ୍କର ସମସ୍ତ କବିତା ଓ ପ୍ରବନ୍ଧରେ ସେ କୌଣସି କ୍ଷେତ୍ରରେ କଳ୍ପନାବିଳାସୀ ହୋଇନାହାନ୍ତି । କାରଣ ଜଣେ ବାସ୍ତବବାଦୀ ମଣିଷର ସମସ୍ତ ଚିନ୍ତା, ଭାବନା ଓ ଲେଖା ବାସ୍ତବତାକୁ ସ୍ପର୍ଶକରି ଗଢ଼ିଉଠିଥାଏ । ଦେଶପ୍ରେମର ପ୍ରଚଣ୍ଡ ଆଲୋକରେ ଉଦ୍‌ଭାସିତ ହେଉଥିବା ଗୋପବନ୍ଧୁ ସେଥିପାଇଁ ସାହିତ୍ୟକୁ ସେଇ ଜନଗଣଙ୍କ ସେବା ପାଇଁ ହିଁ ଉତ୍ସର୍ଗ କରିଥିଲେ ।

ସମାଜ ଓ ସାହିତ୍ୟକୁ ଗୋପବନ୍ଧୁ ପରସ୍ପରର ପରିପୂରକ ବୋଲି ମନେ କରୁଥିଲେ ଏବଂ ତଦନୁସାରେ କାର୍ଯ୍ୟ ମଧ୍ୟ କରୁଥିଲେ । ଆଉ ତାହା ହିଁ ତାଙ୍କୁ ଜଣେ ମହତ୍ତର ସମାଜସେବକର ସମ୍ମାନ ଦେଇଥିଲା । ଗୋପବନ୍ଧୁଙ୍କ ବିଚାରଧାରାରେ 'ସାହିତ୍ୟ ଜୀବନାଭିମୁଖୀ ହେବା ଆବଶ୍ୟକ ଓ ସମାଜ ପ୍ରତି ଏହାର ଦାୟିତ୍ୱ ରହିବା ଉଚିତ ।' ଆମ ବିଚାରରେ ସାଧାରଣ ମଣିଷ ସମସ୍ୟା ଓ ସମାଧାନକୁ ନେଇ ସାହିତ୍ୟ ରଚିତ ହେବା ଉଚିତ । Humane Learning ହେଉଛି ସାହିତ୍ୟର ପ୍ରକୃତ ସଜ୍ଞା । ମଣିଷକୁ ଯଦି ଆମେ ଚିହ୍ନି ନ ପାରିବୁ, ମାନବିକ ଦୁଃଖ, ଯନ୍ତ୍ରଣା, ସଂଘର୍ଷ, ବ୍ୟଥା ଓ ବିଷାଦ ପ୍ରତି ସାହିତ୍ୟିକ ଯଦି ନିର୍ବିକାର ରହେ, ତେବେ ସାହିତ୍ୟର ମୂଳଧର୍ମ ବ୍ୟାହତ ହେବ ।

ଗାନ୍ଧୀ ଓ ଗୋପବନ୍ଧୁ ସେଇଥିପାଇଁ ତାଙ୍କ ସାହିତ୍ୟକୁ ଜୀବନାଭିମୁଖୀ କରିଥିଲେ । କାରଣ ଏକ ସୁନ୍ଦର ପବିତ୍ର ସମାଜ ଗଠନ ଭାବନା ହିଁ ସାହିତ୍ୟ ଓ ସାହିତ୍ୟିକର ମୂଳ ଲକ୍ଷ୍ୟ ମଧ୍ୟରେ ଅନ୍ୟତମ ।

ୟୁନିଟ୍-୨, ଭୁବନେଶ୍ୱର-୯



# ରାଜ୍ୟ ପୁନର୍ଗଠନ : ଓଡ଼ିଆ ଜାତୀୟ ଆନ୍ଦୋଳନ (୧୯୫୩-୧୯୫୬)

ଡକ୍ଟର ନିବେଦିତା ମହାନ୍ତି

*ଉତ୍କଳର ସାର୍ବଭୌମତ୍ୱ, ଗୌରବାବହ ଐତିହ୍ୟ ଓ ଭୂଲୁଣ୍ଠିତ ସ୍ୱାଭିମାନ ଉପରେ ଅହରହ ଗବେଷଣାରତ ଶିକ୍ଷାବିତ୍‌ମାନଙ୍କ ମଧ୍ୟରେ ଅଧ୍ୟାପିକା ଡଃ ନିବେଦିତା ମହାନ୍ତି ଏକ ଉଲ୍ଲେଖଯୋଗ୍ୟ ବ୍ୟକ୍ତିତ୍ୱ । ରାଜ୍ୟ ପୁନର୍ଗଠନ ଆନ୍ଦୋଳନରେ ତତ୍‌କାଳୀନ ଓଡ଼ିଶାର ଅବସ୍ଥା; ବିଶେଷ କରି ଓଡ଼ିଆ ଅଞ୍ଚଳ, ଓଡ଼ିଆଭାଷୀ ସମାଜ ଓ ନେତୃତ୍ୱ ତଥା କେନ୍ଦ୍ର ଓ ପଡ଼ୋଶୀ ରାଜ୍ୟ ନେତୃବୃନ୍ଦଙ୍କ ଉଦାସୀନତା ଏବଂ ସ୍ୱାର୍ଥକୈନ୍ଦ୍ରିକ ମନୋବୃତ୍ତିର ସଂକ୍ଷିପ୍ତ ସୂଚନା ଦେଇ ଡଃ ଶ୍ରୀମତୀ ମହାନ୍ତି ନିଜ ଲେଖନୀର ମହାନତା ପ୍ରଦର୍ଶନ କରିଛନ୍ତି ଏହି ପ୍ରବନ୍ଧରେ......*

ଦେଶର ଆଭ୍ୟନ୍ତରୀଣ ରାଜ୍ୟଗୁଡ଼ିକର ଭାଷାଭିତ୍ତିକ ପୁନର୍ଗଠନ ନିମନ୍ତେ ସ୍ୱାଧୀନତାର ଛଅବର୍ଷ ପରେ ୧୯୫୩ ମସିହା ଡିସେମ୍ବର ମାସରେ, ପ୍ରଧାନମନ୍ତ୍ରୀ ଜବାହରଲାଲ ନେହରୁ ଏକ ରାଜ୍ୟ ପୁନର୍ଗଠନ କମିଶନ ନିଯୁକ୍ତ କରିଥିଲେ । ଜଷ୍ଟିସ ଫଜଲ ଅଲ୍ଲୀ ଏହି କମିଶନ୍‌ର ଅଧ୍ୟକ୍ଷ ଏବଂ କେବଲମ୍ ମାଧବ ପାନିକର ଓ ହୃଦୟନାଥ କୁଞ୍ଜରୁ ଏହାର ସଦସ୍ୟ ରହିଥିଲେ । ଏହି ଦାୟିତ୍ୱ ବହନ କରିବା ନିମନ୍ତେ ଫଜଲ ଅଲ୍ଲୀ ଓଡ଼ିଶାର ରାଜ୍ୟପାଳ ପଦରୁ ଇସ୍ତଫା ଦେଇଥିଲେ । ଉଲ୍ଲେଖନୀୟ ଯେ ୧୯୨୦ ବେଳଠାରୁ କଂଗ୍ରେସ ଭାଷାଭିତ୍ତିରେ ପ୍ରାଦେଶିକ ସ୍ୱାତନ୍ତ୍ର୍ୟ ନୀତି ଗ୍ରହଣ କରିଥିଲେ ମଧ୍ୟ ପ୍ରଧାନମନ୍ତ୍ରୀ ସ୍ୱୟଂ ଭାଷାଭିତ୍ତିକ ତଥା ବହୁଳ ପ୍ରଦେଶ ସୃଷ୍ଟିର ପକ୍ଷପାତୀ ନ ଥିଲେ। ଆଞ୍ଚଳିକ ଦାବିର ପ୍ରଖରତା, ଆନ୍ଧ୍ରର ପୋଟି ଶ୍ରୀରାମୁଲୁଙ୍କର ଆମରଣ ଅନଶନରେ ମୃତ୍ୟୁ ଓ ସର୍ବଭାରତୀୟ ସ୍ତରରେ ରାଜ୍ୟ ପୁନର୍ଗଠନ ନୀତି ପ୍ରତି ସମର୍ଥନ ତାଙ୍କୁ ଏହି ପଦକ୍ଷେପ ନିମନ୍ତେ ପ୍ରଭାବିତ କରିଥିଲା ।

ଉପରୋକ୍ତ ସିଦ୍ଧାନ୍ତ ସମଗ୍ର ଓଡ଼ିଶାରେ ଏବଂ ଓଡ଼ିଶା ବାହାରେ ପଡ଼ି ରହିଥିବା ସଂଖ୍ୟାବହୁଳ ଓଡ଼ିଆଭାଷୀ ଅଞ୍ଚଳଗୁଡ଼ିକରେ ଆବେଗପୂର୍ଣ୍ଣ ଉତ୍ତେଜନା ସୃଷ୍ଟି କରିଥିଲା । ମନେହୋଇଥିଲା ସତେ ଯେପରି ଏହି ନିଷ୍ପତ୍ତି ଓଡ଼ିଶାରେ ଊନବିଂଶ ଶତାବ୍ଦୀ ଠାରୁ ୧୯୩୬ ପର୍ଯ୍ୟନ୍ତ ହୋଇଥିବା ଗୌରବମୟ ଜାତୀୟ ଆନ୍ଦୋଳନର ସର୍ବଭାରତୀୟ ସ୍ତରରେ ଏକ ଉଚିତ ମୂଲ୍ୟାୟନ ଓ ସ୍ୱୀକୃତି ତଥା ଓଡ଼ିଆ ନେତୃତ୍ୱ ନେଇଥିବା 'ଭାଷାଭିତ୍ତିକ ଆଞ୍ଚଳିକ ଅସ୍ମିତା' ଭାବଧାରା ପ୍ରତି ଆସ୍ଥା ସ୍ଥାପନର ପ୍ରତୀକ । ତେଣୁ ଦେଶର ଅନ୍ୟାନ୍ୟ ବହୁ ଅଂଚଳର ସୁସ୍ପଷ୍ଟ ସୀମା ନିର୍ଦ୍ଧାରଣ ଓ ପ୍ରଦେଶ ଭାବେ ସ୍ୱତନ୍ତ୍ରୀକରଣ ସହ ରାଜନୈତିକ ଓଡ଼ିଶାର

ମାନଚିତ୍ର ଯେ ଯଥାଶୀଘ୍ର ଏକ ପୂର୍ଣ୍ଣାଙ୍ଗ କଳେବର ଧାରଣ କରିବା ସୁନିଶ୍ଚିତ, ଓଡ଼ିଶାରେ ଏହି ଧାରଣା ବଳବତ୍ତର ହୋଇଥିଲା । ଏହି ପରିପ୍ରେକ୍ଷୀରେ ଓଡ଼ିଆ ଜାତୀୟ ଜୀବନ ସଜାଗ ହେବା ସ୍ୱାଭାବିକ ଏବଂ ଏହି ସମୟୋପଯୋଗୀ ଆନ୍ଦୋଳନ ବିଂଶ ଶତାବ୍ଦୀର ସର୍ବଶେଷ ଓଡ଼ିଆ ଜାତୀୟ ଆନ୍ଦୋଳନ ।

**ରାଜ୍ୟ ପୁନର୍ଗଠନ କମିଶନ୍ ନିଯୁକ୍ତିର ଅବ୍ୟବହିତ ପୂର୍ବର ଓଡ଼ିଶା**

ଏହା ସର୍ବଜନବିଦିତ ଯେ ସ୍ୱାଧୀନତା ପ୍ରାପ୍ତି ଓ ଗଡ଼ଜାତ ମିଶ୍ରଣ ପରେ ମଧ୍ୟ ଓଡ଼ିଶାର ଭୂଖଣ୍ଡଜନିତ ସୀମାସମସ୍ୟାର ସମାଧାନ ହୋଇ ନ ଥିଲା । ବରଂ ପୂର୍ବ ଭାରତରେ ଏହାର ପଡ଼ୋଶୀ ପ୍ରଦେଶଗୁଡ଼ିକ ଆପଣାର ସୀମାରେଖା ଜନିତ ଅଭିଳାଷ ଓ ଅଭିଯୋଗକୁ ଉଜ୍ଜୀବିତ ରଖି ପରସ୍ପରକୁ ତଥା ଓଡ଼ିଶାକୁ ଅସ୍ଥିର କରୁଥିଲେ । ବସ୍ତୁତଃ ଏହି ଅଞ୍ଚଳଗୁଡ଼ିକରେ ବିଭିନ୍ନ ଗୋଷ୍ଠୀ ଆପଣାର ରାଜନୈତିକ ସତ୍ତାର ପ୍ରତିପତ୍ତି ଓ ବିସ୍ତାର ନିମନ୍ତେ ୧୯୫୨ ସାଧାରଣ ନିର୍ବାଚନ ସମୟରେ ଏକ ପରିବର୍ଦ୍ଧିତ ସୀମାରେଖାର ମାନଚିତ୍ର ଉପସ୍ଥାପନ କରିଥିଲେ । ଯେପରିକି ବଙ୍ଗ ପ୍ରଦେଶରେ ୨୪ ଡିସେମ୍ବର ୧୯୫୨ରେ 'ବିଶାଳ ବଙ୍ଗ ଦିବସ' ପାଳିତ ହୋଇଥିଲା । ସେହିଦିନ କଟକଠାରେ 'ପ୍ରବାସୀ ବଙ୍ଗ ସାହିତ୍ୟ' ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା ଏବଂ ବଙ୍ଗ ଭାଷାରେ ନିମ୍ନଲିଖିତ ପଂକ୍ତି ଅନବରତ ଆବୃତ୍ତି କରାଯାଇଥିଲା,

"ବାଂଲାର ମାଟି ଏକ ହୋୟେଗେଛେ ଉତ୍କଳ ସୀମାନାୟ

x x x

ବଙ୍ଗ ତାଂହାର ଅଙ୍ଗ ମିଶାଲ ବୈତରଣୀର ଜଲେ ।"

ଏହି ପଂକ୍ତିଟିର ନିହିତ ଉଦ୍ଦେଶ୍ୟ ଓଡ଼ିଆମାନଙ୍କୁ ବିବ୍ରତ କରିଥିଲା । ବୈତରଣୀ ବଙ୍ଗଳାର ସୀମାରେଖା ଅର୍ଥ– ଓଡ଼ିଶାଠାରୁ ମୟୂରଭଂଜ ଓ ଉତ୍ତର ବାଲେଶ୍ୱର ଦାବି ବଙ୍ଗ ପ୍ରଦେଶର ଉଦ୍ଦେଶ୍ୟ। ଅନ୍ୟ ପକ୍ଷରେ ବିହାରଠାରୁ ମାନଭୂମ, ସାନ୍ତାଳ ପ୍ରଗଣା, ପୂର୍ଣ୍ଣିଆର କିଛି ଅଂଶ ଏବଂ ଧଳଭୂମ ଦାବିକରି ସିଂହଭୂମର ବାକି ଅଂଶ ଓଡ଼ିଶାକୁ ଫେରାଇ ଦେବାକୁ ବଙ୍ଗପ୍ରଦେଶ ପ୍ରସ୍ତାବ ଦେଇଥିଲା । ବିହାର ଏହାର ପ୍ରତିବାଦରେ "ବଙ୍ଗଳାକୁ ମୁଠାଏ ଧୂଳି ମଧ୍ୟ ଦିଆଯିବ ନାହିଁ, ବରଂ ବଙ୍ଗଳା ଓଡ଼ିଶାକୁ ଦକ୍ଷିଣ ମେଦିନୀପୁର ଫେରାଇଦେବା ଉଚିତ" ବୋଲି ଘୋଷଣା କରିଥିଲା । ଏହି ସମୟରେ ସ୍ୱତନ୍ତ୍ର ଆନ୍ଧ୍ର ପ୍ରଦେଶ ଦାବି କରି ଋଷିକୁଲ୍ୟା ନଦୀ ଏହାର ଉତ୍ତର ସୀମା ତଥା ଦକ୍ଷିଣ ଓଡ଼ିଶାର ବହୁ ଅଂଚଳ ଆକାଂକ୍ଷିତ ପ୍ରଦେଶ ଅନ୍ତର୍ଭୁକ୍ତ ହେବା ଉଚିତ ବୋଲି ତେଲ୍‌ଗୁଭାଷୀ ଆନ୍ଦୋଳନ କରୁଥିଲେ। ତତ୍‌କାଳୀନ କେନ୍ଦ୍ରୀୟ ଶ୍ରମମନ୍ତ୍ରୀ ଏବଂ ପରବର୍ତ୍ତୀ ସମୟରେ ଭାରତର ରାଷ୍ଟ୍ରପତି, ଭି.ଭି.ଗିରି ବରହମପୁରକୁ ଆନ୍ଧ୍ରସହ ସାମିଲ କରିବା ଉଚିତ ବୋଲି ବ୍ରହ୍ମପୁରଠାରେ ପ୍ରଚାର ଚଳାଇଥିଲେ।

୧୯୫୨ ନିର୍ବାଚନ ପରେ ଓଡ଼ିଶାର ଜାତୀୟ ଆନ୍ଦୋଳନର ପ୍ରବାଦପୁରୁଷ ଏବଂ ସେ ସମୟରେ ଗଣତନ୍ତ୍ର ପରିଷଦର ମୁଖ୍ୟ ଗୋଦାବରୀଶ ମିଶ୍ର ବିଧାନସଭାରେ ଓଡ଼ିଶାର ସୀମା-ସମସ୍ୟା ପ୍ରତି ଦୃଷ୍ଟି ଆକର୍ଷଣ କରିଥିଲେ । 'ବିଛିନ୍ନ ଷଡ଼େଇକଳା, ଖରସୁଆଁକୁ ବିହାରଠାରୁ ଓଡ଼ିଶାକୁ ଫେରାଇ ଆଣିବାକୁ ଓଡ଼ିଶା ସରକାର ସମ୍ବିଧାନର ଧାରା ୧୩୧ ଅନୁଯାୟୀ ସୁପ୍ରିମକୋର୍ଟର ଦ୍ୱାରସ୍ଥ ହେବା ପ୍ରୟୋଜନ' ବୋଲି

ସେ ଦୃଢ଼ମତ ପୋଷଣ କରିଥିଲେ । ଏହି ସଂକ୍ରାନ୍ତରେ ବିଚାର ବିଭାଗୀୟ ପାରଦର୍ଶିତାର ମତାମତ ଲୋଡ଼ା ହୋଇଥିବା ବେଳେ ଆଡ୍‌ଭୋକେଟ୍ ଜେନେରାଲ ପୀତାମ୍ବର ମିଶ୍ର ତାଙ୍କର ଲିଖିତ ବିବରଣୀ ( ୨୪ ଅଗଷ୍ଟ ୧୯୫୩)ରେ ଦର୍ଶାଇଥିଲେ ଯେ ଓଡ଼ିଶା ସରକାରଙ୍କର ସୁପ୍ରିମକୋର୍ଟକୁ ଅନୁରୋଧଟି ରାଷ୍ଟ୍ରପତି ରାଜେନ୍ଦ୍ର ପ୍ରସାଦଙ୍କ ଅନୁମତି ବିନା ସମ୍ଭବ ନୁହେଁ । ମହାମହିମ ରାଷ୍ଟ୍ରପତି ବିହାର ପ୍ରଦେଶବାସୀ ହୋଇଥିବାରୁ ଏ ଦିଗରେ ଓଡ଼ିଶାର ଚେଷ୍ଟା ସଫଳ ହେବା ଅବାସ୍ତବ ବୋଲି ବିଧାନ ସଭା ସଦସ୍ୟଗଣ ଉପଲବ୍ଧି କରିଥିଲେ । ପ୍ରସ୍ତାବଟି କାଟ ଖାଇବାକୁ ବାଧ୍ୟ ହୋଇଥିଲା । ଗଣମାଧ୍ୟମରେ ଏ ବିଷୟରେ ତୀବ୍ର ଆଲୋଚନା ହୋଇଥିଲା । ମହତାବ ରାଜ୍ୟର ମୁଖ୍ୟ ଥିବା ସମୟରେ ଷଡ଼େଇକଳା ଖରସୁଆଁ ହସ୍ତାନ୍ତର ହୋଇଥିଲା ବୋଲି ସେ କଟୁ ସମାଲୋଚନାର ଶିକାର ହୋଇଥିଲେ । ଏପରିକି ସେ ପଟ୍ଟାଭିସୀତାରମାୟାଙ୍କ ସହ ମିଳିତ ବିବୃତ୍ତିରେ କେତେକ ଆନ୍ଧ୍ର ଅଞ୍ଚଳ ଭୁଲରେ ଓଡ଼ିଶାକୁ ଆସିଯାଇଛି ବୋଲି ଦସ୍ତଖତ କରି ପ୍ରକାଶ କରିଥିଲେ ବୋଲି ମଧ୍ୟ ପ୍ରଚାର ହୋଇଥିଲା ।

ଓଡ଼ିଶାର ଅସମ୍ପୂର୍ଣ୍ଣ ରାଜନୈତିକ ରୂପରେଖ, ଏହାର ବିଚ୍ଛେଦଜନିତ ବେଦନା ଓ ସୀମା ପ୍ରାନ୍ତରେ ବହୁବିଧ ସମସ୍ୟା ଏବଂ ଅସ୍ଥିରତା ନିମନ୍ତେ ଓଡ଼ିଶାର କଂଗ୍ରେସ ଶାସକଗୋଷ୍ଠୀ ଦାୟୀ – ଏହି ଅଭିଯୋଗ ରୂପକ ମନୋଭାବ ଓଡ଼ିଶାରେ ପ୍ରାଧାନ୍ୟଲାଭ କରିଥାଏ । ୧୯୫୩ ଜୁଲାଇ, ସଂଖ୍ୟାରେ 'ମୁଁ କ'ଣ ନ କଲି' ଶିରୋନାମାରେ ନିଆଁଖୁଣ୍ଟ' ଲେଖିଥିଲା–

"ଆନ୍ଧ୍ରଦେଶକୁ ଦେଲି ଓଡ଼ିଶା ଟେକି,
ବିହାରେ ଦେଲି ସିଂହଭୂମିକୁ ବିକି
ଜଲି ବସ୍ଥର ଶୁଙ୍କ ପଦେ ବନ୍ଧନ
ଆଣିଲି ଦକ୍ଷିଣରୁ ଶିବ ରମଣ,
ବଙ୍ଗରେ ଭକି,
ହୃଦେ ଥାପିଲି ବ୍ରହ୍ମଦେବ ମୁଖାର୍ଜୀ x x x ।"

**ଓଡ଼ିଆ ଆନ୍ଦୋଳନ**

**ପ୍ରଥମ ପର୍ଯ୍ୟାୟ : ପ୍ରସ୍ତୁତି ଏବଂ ସ୍ମାରକୀ ପତ୍ରମାଳା**

ଉପରୋକ୍ତ ପ୍ରଚ୍ଛଦପଟରେ ରାଜ୍ୟ ପୁନର୍ଗଠନ କମିଶନ ନିଯୁକ୍ତି ଯେ ସମାଜରେ ଉଦ୍ଦୀପନା ସୃଷ୍ଟି କରିବ, ଏହା ସ୍ୱାଭାବିକ । ଓଡ଼ିଶାର ଜାତୀୟ ଅନୁଷ୍ଠାନ ଉତ୍କଳ ସମ୍ମିଳନୀ ଏକ ଜାତୀୟ ଆନ୍ଦୋଳନର ଆବଶ୍ୟକତା ଅନୁଭବ କରି ଏହାକୁ ରୂପରେଖ ଦେବା ନିମନ୍ତେ ଅଗ୍ରଣୀ ଭୂମିକା ନେଇଥିଲା । କମିଶନ ନିଯୋଗର ଦୁଇ ସପ୍ତାହ ମଧ୍ୟରେ ଉତ୍କଳ ସମ୍ମିଳନୀ ସେକ୍ରେଟାରୀ ଏବଂ ଓଡ଼ିଶା ବିଧାନସଭା ସଦସ୍ୟ କଳାହାଣ୍ଡି ମହାରାଜା ପ୍ରତାପ କେଶରୀ ଦେଓ ସମ୍ବାଦପତ୍ରମାନଙ୍କ ଜରିଆରେ ଏକ ଦେଶ ମିଶ୍ରଣ ପାଣ୍ଠି ଗଠିତ ହୋଇଥିବାର ସୂଚନା ଦେଇଥିଲେ ଏବଂ ସେଥିନିମନ୍ତେ ମୁକ୍ତ ହସ୍ତରେ ଦାନ କରି ଓଡ଼ିଆ ଜାତୀୟ ଆକାଂକ୍ଷା ପୂର୍ଣ୍ଣ କରିବାରେ ସହାୟକ ହେବା ଲାଗି ସେ ଦେଶବାସୀଙ୍କୁ ଅନୁରୋଧ କରିଥିଲେ । ଆନ୍ଦୋଳନର

ପ୍ରଥମ ପର୍ଯ୍ୟାୟରେ ଉତ୍କଳ ସମ୍ମିଳନୀ ନିଜର ଲକ୍ଷ୍ୟ ଏବଂ କାର୍ଯ୍ୟପ୍ରଣାଳୀକୁ ସ୍ପଷ୍ଟ ଉପସ୍ଥାପନା କରିଥିଲା । କଂଗ୍ରେସ ସଭ୍ୟଗଣ ସିଧାସଳଖ କୌଣସି ଆନ୍ଦୋଳନରେ ଯୋଗ ନ ଦେବାକୁ ଆରମ୍ଭରେ କଂଗ୍ରେସ ଅଧ୍ୟକ୍ଷଙ୍କ ନିର୍ଦ୍ଦେଶ ଥିଲେ ମଧ୍ୟ ଦଳ ନିର୍ବିଶେଷରେ ସମସ୍ତେ ସମ୍ମିଳନୀ ସହ ସହଯୋଗ କରିଥିଲେ । ଏକ ଜାତୀୟ ସମ୍ମିଳନୀଭାବେ ବୈଧାନିକ ପନ୍ଥାରେ ଦାବି ଓ ଆନ୍ଦୋଳନ କରିବା ନିମନ୍ତେ ଉତ୍କଳ ସମ୍ମିଳନୀ ସିଦ୍ଧାନ୍ତ ଗ୍ରହଣ କରିଥିଲା । ସମ୍ମିଳନୀର ଇତିହାସରେ କୌଣସି ହିଂସାତ୍ମକ ବା ଅସାମ୍ବିଧାନିକ ପଦକ୍ଷେପ ନେବାର ଦୃଷ୍ଟାନ୍ତ ନ ଥିଲା, ତେଣୁ ଦେଶମିଶ୍ରଣ, ବିଶେଷକରି ଷଢ଼େଇକଳା, ଖରସୁଆଁ ପୁନଃମିଶ୍ରଣ ଦାବି କରି ଏକ ତଥ୍ୟପୂର୍ଣ୍ଣ ସ୍ମାରକୀ ପତ୍ର କମିଶନକୁ ଦେବାଲାଗି ନିଷ୍ପତ୍ତି ନିଆଗଲା ।

ଏହା ସହ ମୂଳ ଓଡ଼ିଶା ଏବଂ ବିଚ୍ଛିନ୍ନାଞ୍ଚଳଗୁଡ଼ିକର ବିଭିନ୍ନ କ୍ଷେତ୍ରରୁ ସାଂଗଠନିକ ଭାବେ ଅନୁଷ୍ଠାନମାନଙ୍କରୁ ଓ ବ୍ୟକ୍ତିବିଶେଷରେ ସ୍ମାରକୀପତ୍ରମାନ କମିଶନକୁ ଦେବାର ପ୍ରୟୋଜନୀୟତା ଏବଂ ସେଥିନିମନ୍ତେ ସଚେତନତା ସୃଷ୍ଟି କରିବା ଲାଗି ସମ୍ମିଳନୀ ବହୁଳଭାବରେ ଶାଖା ସମ୍ମିଳନୀମାନ ସୃଷ୍ଟି କରିବାକୁ ଉଦ୍ୟତ ହୋଇଥିଲା । ଯେପରିକି ଓଡ଼ିଶାର ଦକ୍ଷିଣ ସୀମା ବହିର୍ଭୂତ ଶ୍ରୀକାକୁଲମ୍ ଜିଲ୍ଲାର 'ଶାସନ ସାହି' ଠାରେ ଡିସେମ୍ବର ୨୭, ୧୯୫୩ରେ ଏକ ବୈଠକ ଆୟୋଜିତ ହୋଇଥିଲା । ଏଠାରୁ ଜିଲ୍ଲାର ବିଭିନ୍ନ ଅଞ୍ଚଳରୁ ପ୍ରତିନିଧି ନେଇ ଏକ ଚାଳିଶକଣିଆ ସଭ୍ୟବିଶିଷ୍ଟ ଶାଖା ସମ୍ମିଳନୀ ଗଢ଼ା ଯାଇଥିଲା । ସିଂହଭୂମରେ 'ଧଳଭୂମ ଉତ୍କଳ ସମ୍ମିଳନୀ' ଓ 'ସିଂହଭୂମ ଉତ୍କଳ ସମ୍ମିଳନୀ' ଭାବରେ ଆଞ୍ଚଳିକ ସମ୍ମିଳନୀ କାର୍ଯ୍ୟ କରିବାକୁ ଆରମ୍ଭ କରିଥିଲେ । ମଧ୍ୟପ୍ରଦେଶର ଫୁଲଝର ଓ ତୁରେସିଂଗାରେ ଜଗଦୀଶ କାନୁନ୍‌ଗୋ ଓ ବନମାଳୀ ସାହୁ ଯଥାକ୍ରମେ ଶାଖା ସମ୍ମିଳନୀର ସଭାପତି ହୋଇଥିଲେ । ମେଦିନୀପୁର ଶାଖା ସକ୍ରିୟ ହୋଇଥିଲା ।

ଉତ୍କଳ ସମ୍ମିଳନୀର କାର୍ଯ୍ୟତତ୍ପରତାରେ ବିବ୍ରତ ହୋଇ ବିହାରର ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀକୃଷ୍ଣ ସିହ୍ନା କଲ୍ୟାଣୀଠାରେ ଆୟୋଜିତ ୧୯୫୪ ମସିହା ଜାନୁଆରୀ ୨୩ ତାରିଖରେ କଂଗ୍ରେସର କାର୍ଯ୍ୟକାରୀ କମିଟି ବୈଠକରେ ଅଭିଯୋଗ କରିଥିଲେ ଯେ ଓଡ଼ିଶାର କଂଗ୍ରେସ ନେତା ହରେକୃଷ୍ଣ ମହତାବ ଓ ରାଧାନାଥ ରଥ ଅଯଥାରେ ବିହାର ଲାଗି ସମସ୍ୟା ସୃଷ୍ଟି କରୁଛନ୍ତି । ଆନ୍ଧ୍ରସୀମା ମହାସଭା କମିଟିର ସଦସ୍ୟ ସନ୍ନ୍ୟାସୀ ରାଓ ଦକ୍ଷିଣ ଓଡ଼ିଶାର କୋରାପୁଟ ଓ ଗଂଜାମ ଜିଲ୍ଲା ଉପରେ ଆନ୍ଧ୍ର ପ୍ରଦେଶର ନ୍ୟାଯ୍ୟ ଦାବି ଅଛି ବୋଲି ଘୋଷଣା କରିଥିଲେ । ୧୯୫୪ ଜାନୁଆରୀ ୨୦ରେ ସମ୍ବଲପୁରଠାରେ ହୀରାକୁଦ ବନ୍ଧ ପ୍ରକଳ୍ପକୁ ନେଇ ଗଠିତ ଏକ ସାମ୍ବାଦିକ ସମ୍ମିଳନୀରେ ମଧ୍ୟପ୍ରଦେଶର ମୁଖ୍ୟମନ୍ତ୍ରୀ କହିଥିଲେ ଯେ ରାଜ୍ୟ ସୀମା ନିର୍ଦ୍ଧାରଣ ସମସ୍ୟା ଆନ୍ଦୋଳନ ପରିବର୍ତ୍ତେ ପାରସ୍ପରିକ ବୁଝାମଣା ମାଧ୍ୟମରେ ସମାଧାନ ହେବା ଆବଶ୍ୟକ । ବଙ୍ଗପ୍ରଦେଶ ସେତେବେଳେ ଓଡ଼ିଶାର ଷଢ଼େଇକଳା, ଖରସୁଆଁ ଦାବିକୁ ଗଣମାଧ୍ୟମ ଦ୍ୱାରା ସମର୍ଥନ କରିଥିଲା । ଉତ୍କଳ ବଙ୍ଗ ସମିତିର ସଭାପତି ସାଂସଦ କାଳୀଦାସ ନାଗ ଗ୍ରାଣ୍ଡ୍ ହୋଟେଲରେ ଏକ ମଧ୍ୟାହ୍ନ ଭୋଜନରେ ସାମ୍ବାଦିକମାନଙ୍କ ଉପସ୍ଥିତରେ ସାଂସଦ ସୁରେନ୍ଦ୍ର ମହାନ୍ତିଙ୍କୁ ଓଡ଼ିଶାର ସୀମାସମସ୍ୟା ଉପରେ ଏକ ସ୍ପଷ୍ଟ ଧାରଣା ଦେବାକୁ ଅନୁରୋଧ କରିଥିଲେ । (ସମାଜ, ୮.୨.୧୯୫୪) ।

ଜିଲ୍ଲାର ବିରୋଧୀ ମନୋଭାବକୁ ଭ୍ରୂକ୍ଷେପ ନ କରି ସିଂହଭୂମରେ ବିଶେଷକରି ଷଢ଼େଇକଳାରେ ସଂଗଠନ ଶକ୍ତିଶାଳୀ କରି ଆନ୍ଦୋଳନରେ କ୍ଷିପ୍ରତା ଆଣିବା ନିମନ୍ତେ ୧୯୫୪ ଫେବୃଆରୀ ୬ ତାରିଖ ଦିନ ଓଡ଼ିଶାର ନେତୃବର୍ଗ, ଉତ୍କଳ ସମ୍ମିଳନୀର ସଭାପତି ତଥା ପାଟଣା ମହାରାଜା ସାଂସଦ ରାଜେନ୍ଦ୍ର ନାରାୟଣ ସିଂହଦେଓ ଆଦି ଷଢ଼େଇକଳାରେ ସଭାକାର୍ଯ୍ୟ ଚାଲିଥିବା ସମୟରେ ବିହାର ଗୁଣ୍ଡାଙ୍କ ଦ୍ୱାରା ଆକ୍ରମିତ ଓ ଅପମାନିତ ହୋଇଥିଲେ । କଳାହାଣ୍ଡି ମହାରାଜା ଗୁରୁତର ଆହତ ମଧ୍ୟ ହୋଇଥିଲେ । ବିଚ୍ଛିନ୍ନାଞ୍ଚଳ ଏବଂ ସମଗ୍ର ଓଡ଼ିଶାରେ ଏହାର ତୀବ୍ର ପ୍ରତିକ୍ରିୟା ସୃଷ୍ଟି ହୋଇଥିଲା ।

ଉତ୍କଳ ସମ୍ମିଳନୀ ସେକ୍ରେଟାରୀ ନବ କିଶୋର ଦାସ ଷଢ଼େଇକଳାରୁ ଫେରି ବିବୃତି ଦେଇଥିଲେ ଯେ ଏହି ଦୁଇଟି ରାଜ୍ୟକୁ ତୁରନ୍ତ କେନ୍ଦ୍ର ସରକାର ଆପଣା ଶାସନାଧୀନ କରିନେବା ଉଚିତ । ଏହା ନ ହେଲେ ଏଠିକାର ଅଧିବାସୀ ସ୍ୱାଧୀନ ମତ ବ୍ୟକ୍ତ କରିପାରିବେ ନାହିଁ ବୋଲି ସର୍ବସାଧାରଣ ଏବଂ ଅନ୍ୟାନ୍ୟ ଅଂଚଳରୁ ମଧ୍ୟ ମତ ପ୍ରକାଶ ପାଇଥିଲା ।

ସମ୍ବଲପୁରଠାରେ ୬/୨ ଘଟଣାର ଏକ ସର୍ବଦଳୀୟ ବିରାଟ ପ୍ରତିବାଦ ସଭା ୧୪ ତାରିଖରେ ବାଲିବନ୍ଧା ଘାଟଠାରେ ଆହ୍ୱାନ କରାଯାଇଥିଲା । ଓଡ଼ିଶା ଷ୍ଟେଟ୍ କାଉନ୍‌ସିଲ୍‌ର ସଭ୍ୟ ଓ ପୂର୍ବତନ ମନ୍ତ୍ରୀ ବୋଧରାମ ଦୁବେଙ୍କର ସଭାପତିତ୍ୱରେ ଶ୍ରଦ୍ଧାକର ସୁପକାର, ବିଜୟ କୁମାର ପାଣି, ଭରତ ଚନ୍ଦ୍ର ନାୟକ ଆଦି ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ସେହିଦିନ ଯଦୁମଣି ମଙ୍ଗରାଜଙ୍କର ସଭାପତିତ୍ୱରେ ମେଦିନୀପୁର ଉତ୍କଳ ସମାଜର ସାଧାରଣ ଅଧିବେଶନରେ ୬/୨ରେ ଷଢ଼େଇକଳାଠାରେ ଘଟିଥିବା ଦମନ ଘଟଣାର ନିନ୍ଦାବାଦ କରାଯାଇଥିଲା ଏବଂ ସମଗ୍ର ଓଡ଼ିଆଭାଷୀ ଅଂଚଳ ଓଡ଼ିଶା ସହ ମିଶିବା ସପକ୍ଷରେ ଜନମତ ପ୍ରକାଶ ପାଇଥିଲା । ୯ ତାରିଖ ଫେବୃଆରୀରେ ବରହମପୁରଠାରେ ବସନ୍ତ ପାଣିଗ୍ରାହୀଙ୍କ ସଭାପତିତ୍ୱରେ ଛାତ୍ର ସମାଜ ପ୍ରତିବାଦ ସଭା କରିଥିଲେ । ଫେବୃଆରୀ ୧୮ ତାରିଖରେ କଟକରେ ହରତାଳ, ଶୋଭାଯାତ୍ରା ଓ ସାଧାରଣ ସଭା ଆହ୍ୱାନ କରାଯାଇଥିଲା । କଟକର ସମସ୍ତ ଗଣ୍ୟମାନ୍ୟ ବ୍ୟକ୍ତିଙ୍କ ସହ ମ୍ୟୁନିସିପାଲିଟି ପଡ଼ିଆରେ ଆହୂତ ସଭାରେ ପ୍ରାୟ ୧୦,୦୦୦ ଜନସମାଗମ ହୋଇଥିଲା ।

୬/୨ ଘଟଣା ଏକ ଜାତୀୟ ସଂକଟ ରୂପେ ବିବେଚିତ ହୋଇଥିଲା । ରାଜେନ୍ଦ୍ର ନାରାୟଣ ସିଂହଦେଓ 'Rape of Democracy' ବୋଲି ଉତ୍କଳ ସମ୍ମିଳନୀ ତରଫରୁ ପ୍ରକାଶିତ ପୁସ୍ତିକାଟି ପାର୍ଲିଆମେଣ୍ଟରେ ସଭ୍ୟମାନଙ୍କ ମଧ୍ୟରେ ବିତରଣ କରିଥିଲେ । ଲୋକସଭା ସାଂସଦ ଲଙ୍କା ସୁନ୍ଦରମ୍ ଷଢ଼େଇକଳା ଘଟଣାକୁ ତୀବ୍ର ନିନ୍ଦା କରି କହିଥିଲେ, " ରାଜ୍ୟ ପୁନର୍ଗଠନ କମିଶନ ସୀମା କମିଶନ ନୁହେଁ, ଏହା କେବଳମାତ୍ର ଏକ ତଦନ୍ତ କମିଶନ ।" ସୁଚେତା କୃପାଳିନୀ ଓ ଏନ.ସି, ଚାଟାର୍ଜୀ ବିହାର କାର୍ଯ୍ୟକଳାପକୁ ସମାଲୋଚନା କରି ପ୍ରଧାନମନ୍ତ୍ରୀଙ୍କୁ ପତ୍ର ଲେଖିଥିଲେ । ସଂକ୍ଷେପରେ ୬/୨ ମର୍ମନ୍ତୁଦ ଘଟଣା ସମଗ୍ର ଦେଶରେ ନିରପେକ୍ଷ ରାଜନୈତିକ ଦୃଷ୍ଟିଭଂଗୀରେ ସମାଲୋଚିତ ହୋଇଥିଲା ।

ଏହି ପରିସ୍ଥିତିରେ ବଙ୍ଗ ପ୍ରଦେଶ ସତର୍କ ହୋଇ ଓଡ଼ିଶା ସହ ଏକ ବୁଝାମଣା ସମ୍ପର୍କ ଗଢ଼ିବା ନିମନ୍ତେ ଆଗେଇ ଆସିଥିଲା । ୩୦ ଏପ୍ରିଲ ଏବଂ ୧ ମେ ୧୯୫୪ରେ ପୁରୀଠାରେ ବଙ୍ଗ ପ୍ରଦେଶ ନେତା ଅତୁଲ୍ୟ ଘୋଷ ଏବଂ ଓଡ଼ିଶା କଂଗ୍ରେସ ମଧ୍ୟରେ ଏକ ରାଜିନାମା ସ୍ୱାକ୍ଷରିତ ହୋଇଥିଲା । ଏଥିରେ ସ୍ଥିର

ହୋଇଥିଲା ଯେ ସୀମା କମିଶନ ନିକଟରେ ପଶ୍ଚିମବଙ୍ଗ ଓଡ଼ିଶାରୁ କିଛି ଦାବିର ଉପସ୍ଥାପନା କରିବ ନାହିଁ ଏବଂ ଓଡ଼ିଶା ମଧ୍ୟ ମେଦିନୀପୁରର କୌଣସି ଅଂଶ ଦାବି କରିବ ନାହିଁ। ଏହି ରାଜିନାମା ଆଲୋଚନା ସମୟରେ ସମ୍ମିଳନୀର ସଭାପତି ରାଜେନ୍ଦ୍ର ନାରାୟଣ ସିଂହଦେଓ ଉପସ୍ଥିତ ଥିଲେ ।

ସ୍ମାରକୀପତ୍ର ପହଞ୍ଚିବାର ଶେଷ ତାରିଖ ଏପ୍ରିଲ ୨୪, ୧୯୫୪ ଏବଂ ପରେ ଏହା ସାମାନ୍ୟ କୋହଳ ହୋଇଥିବାରୁ ତୁରନ୍ତ ମେ ମାସ ସୁଦ୍ଧା ଓଡ଼ିଶା ସରକାର ଓଡ଼ିଶା କଂଗ୍ରେସ ଏବଂ ଉତ୍କଳ ସମ୍ମିଳନୀ ସେମାନଙ୍କର ଦାବିପତ୍ର କମିଶନଙ୍କୁ ପଠାଇଥିଲେ । ଓଡ଼ିଶା ସରକାରଙ୍କ ତରଫରୁ ଏହାକୁ ପ୍ରସ୍ତୁତ କରିଥିଲେ ଅର୍ଥ ଶିକ୍ଷାମନ୍ତ୍ରୀ ରାଧାନାଥ ରଥ । ତାଙ୍କୁ ସାହାଯ୍ୟ କରିଥିଲେ ତତ୍‌କାଳୀନ ଆଡିସିନାଲ ହୋମ୍ ସେକ୍ରେଟାରୀ ପ୍ରାଣନାଥ ମହାନ୍ତି । ତିନୋଟି ପୁସ୍ତିକାରେ ଏହି ରିପୋର୍ଟ ବିହାରଠାରୁ ଷଡ଼େଇକଳା, ଖରସୁଆଁ ସମେତ ସମସ୍ତ ସିଂହଭୂମ ଅଞ୍ଚଳ; ମଧ୍ୟପ୍ରଦେଶଠାରୁ ଫୁଲଝର, ବିନ୍ଦ୍ରା ନୂଆଗଡ଼, ମାଲଖୋର୍ଦ୍ଧା ଓ ଚନ୍ଦ୍ରପୁର, ଆନ୍ଧ୍ରଠାରୁ ବିଶାଖାପାଟଣାର ଷୋଳଶହ ବର୍ଗ ମାଇଲ ଏବଂ ଅନ୍ୟାନ୍ୟ ଓଡ଼ିଆଭାଷୀ ଅଞ୍ଚଳ, ସମସ୍ତ ଇଛାପୁର, ସୋମପେଣ୍ଟ ଅଞ୍ଚଳର କିଛି ଅଂଶ, ଟିକାଲି, ପଟପଟନମ୍ ଆଦି ଦାବି କରିଥିଲେ । ଏକ ମଧ୍ୟବର୍ତ୍ତୀକାଳୀନ ରିପୋର୍ଟରେ ଷଡ଼େଇକଳା, ଖରସୁଆଁକୁ ତୁରନ୍ତ ଓଡ଼ିଶା ପ୍ରଦେଶ ସହ ମିଶାଇ ଦେବାକୁ ଦାବି କରାଯାଇଥିଲା। ବଙ୍ଗପ୍ରଦେଶରେ ଥିବା କୌଣସି ଓଡ଼ିଆ ଅଞ୍ଚଳ ସରକାରୀ ସ୍ତରରେ ଦାବି କରାଯାଇ ନ ଥିଲା ।

ଅନ୍ୟ ପକ୍ଷରେ ଉତ୍କଳ ସମ୍ମିଳନୀ ୨୨ ମେ ୧୯୫୪ରେ ପ୍ରେରିତ ଏହାର ପାଞ୍ଚଟି ଭାଷାରେ ଲିଖିତ ସ୍ମାରକୀ ପତ୍ରରେ ମଧ୍ୟ-ପ୍ରଦେଶ, ବିହାର, ଆନ୍ଧ୍ରପ୍ରଦେଶର ଓଡ଼ିଆଭାଷୀ ଅଂଚଳ ସହ ବଙ୍ଗ-ପ୍ରଦେଶଠାରୁ ଝାଡ଼ଗ୍ରାମ, ଖଡ଼ଗପୁର, ନାରାୟଣଗଞ୍ଜ, ଦାନ୍ତୁନ, ମୋହନପୁର, ନନ୍ଦୀଗ୍ରାମ, ତାମଲୁକ ଆଦି ଦାବି କରିଥିଲେ । ଏହାର ପ୍ରତିକ୍ରିୟା ସ୍ୱରୂପ ବଙ୍ଗପ୍ରଦେଶରୁ ଓଡ଼ିଶାର ଉତ୍ତର ବାଲେଶ୍ୱର, ଷଡ଼େଇକଳାର କିଛି ଅଂଶ ଓ ସିଂହଭୂମର ଧଳଭୂମ ଦାବି କରି ଲିଖିତ ପତ୍ର କମିଶନ ନିକଟକୁ ପଠାଯାଇଥିଲା।

ବ୍ୟକ୍ତିଗତ ଭାବେ ଏବଂ ଅଗଣିତ ଅନୁଷ୍ଠାନ ମୂଳ ଓଡ଼ିଶା ଏବଂ ବିଚ୍ଛିନ୍ନାଞ୍ଚଳରୁ ଏହି କମିଶନ ନିକଟକୁ ଆପଣାର ଦାବିପତ୍ରମାନ ପଠାଇଥିଲେ । ଷଡ଼େଇକଳାର ଟିକାୟତ ନୃପେନ୍ଦ୍ର ନାରାୟଣ ସିଂହଦେଓ 'Singhbhum, Saraikalla and Kharsuan-Through Ages' ବୋଲି ଏକ ଐତିହାସିକ ଓ ସାମାଜିକ ତଥ୍ୟସମ୍ବଳିତ ପୁସ୍ତକ ଏହି କମିଶନକୁ ଦେଇଥିଲେ । ଓଡ଼ିଆ ଆନ୍ଦୋଳନର ପ୍ରଚଣ୍ଡ ବ୍ୟକ୍ତିତ୍ୱ, ଅଗାଧ ପାଣ୍ଡିତ୍ୟର ପ୍ରତିମୂର୍ତ୍ତି ପଣ୍ଡିତ ନୀଳକଣ୍ଠ ଦାସ ୧୯୩୧-୩୨ରେ ଓଡ଼ିଶା କମିଟି ତଥା ଓଡୋନେଲ କମିଟିକୁ ସାକ୍ଷାତ କରିବାରୁ ବଞ୍ଚିତ ହୋଇଥିଲେ । ତାଙ୍କର ପୂର୍ବର ଲିଖିତ ବିବରଣୀଟି ସେ ବର୍ତ୍ତମାନର କମିଶନ ନିକଟରେ ଉପସ୍ଥାପନା କରିଥିଲେ ।

**ଦ୍ୱିତୀୟ ପର୍ଯ୍ୟାୟ : ପ୍ରଚାର କାର୍ଯ୍ୟ, ରାଜ୍ୟ ପୁନର୍ଗଠନ କମିଶନ ରିପୋର୍ଟ୍**

ଲିଖିତ ପତ୍ରମାନ ପଠାଯିବା ପରେ ପରବର୍ତ୍ତୀ ପ୍ରସ୍ତୁତି ଆରମ୍ଭ ହୋଇଥିଲା । କାରଣ କମିଶନଙ୍କର ସ୍ଥାନୀୟ ଅଞ୍ଚଳ ଗସ୍ତ ସମୟରେ ସେମାନଙ୍କୁ ଆପଣାର ସମସ୍ୟା ପୁଙ୍ଖାନୁପୁଙ୍ଖ ଭାବେ ଅବଗତ କରାଇବା ଜରୁରୀ ଥିଲା । ଓଡ଼ିଶାର ଦକ୍ଷିଣ ବିଚ୍ଛିନ୍ନାଞ୍ଚଳରେ ବହୁ ଉତ୍ସାହର ସହ ଏହି ଆନ୍ଦୋଳନ ଆରମ୍ଭ ହୋଇଥିଲା।

ଆନ୍ଧ୍ର ରାଷ୍ଟ୍ର ଓଡ଼ିଆ ସଭାର ସଭାପତି କପିଳେଶ୍ୱର ଦାସ, ଉତ୍କଳ ସମ୍ମିଳନୀ ଯୁଗ୍ମ ସମ୍ପାଦକ ଶରତଚନ୍ଦ୍ର ମହାପାତ୍ର, ଆଶା ପତ୍ରିକାର ସଂଯୁକ୍ତ ସଂପାଦକ ମହେନ୍ଦ୍ର ପଟ୍ଟନାୟକ, ଅବସର ପ୍ରାପ୍ତ ଗଂଜାମ ଜିଲ୍ଲା କଲେକ୍ଟର ଗୋପୀନାଥ ବେହେରା ଜୁନ୍ ମାସରେ ୪ ଦିନ ଧରି ଏହି ଉପାନ୍ତ ଅଂଚଳରେ ବିଭିନ୍ନ ସ୍ଥାନ ଗସ୍ତକରି ପ୍ରଚାର କାର୍ଯ୍ୟ ଚଳାଇଥିଲେ ।

ଗୋପୀନାଥ ବେହେରା ଗସ୍ତ କରିଥିବା ତରଳା ରାଜବାଟୀରେ ପ୍ରାୟ ୫୦୦ ଓଡ଼ିଆ ସଭାରେ ଯୋଗ ଦେଇଥିଲେ । ଟିକାଲି ତାଲୁକର କେଉଟ ବସତିପ୍ରଧାନ ସ୍ଥାନ ସୂତାପେଣ୍ଟ, ତେଲୁଗୁରେ ହୋଇଯାଇଛି ନୁଲୁରେଇ । ପୂର୍ବକାଳରେ ଏହା ଏକ ବନ୍ଦର ଥିଲା ବୋଲି କୁହାଯାଏ । ଏଠାରେ ୫୦୦୦ ଜନସଂଖ୍ୟା, ସମସ୍ତେ ଓଡ଼ିଆ । ରେଣ୍ଟିଗଡ଼ ବୋଲି ନିକଟରେ ଆଉ ଏକ ୩୦୦୦ ବିଶିଷ୍ଟ ଓଡ଼ିଆ ବସତି । ଏହି ସ୍ଥାନଗୁଡ଼ିକରେ ସଭାକାର୍ଯ୍ୟ ସଫଳତାର ସହ ଆଗେଇଥିଲା । ସୋମପେଣ୍ଟ ତାଲୁକର ଦୋଳଗୋବିନ୍ଦପୁର ଠାରେ ୩୦୦୦, ମାଣିକ୍ୟପୁରରେ ୨୦୦୦ରୁ ଅଧିକ ଲୋକ ଉପସ୍ଥିତ ଥିଲେ । ମଞ୍ଜୁଷାର ଦଣ୍ଡାସୀ ଓଡ଼ିଆଗୋଷ୍ଠୀ ଦଣ୍ଡାସୀ ସଭାରେ ତାଙ୍କର ଆଖଡ଼ା, ନାଟ, ସଂକୀର୍ତ୍ତନ, ପାଇକ, ସାଧନ, ଖଟଣୀ ଆଦି ସାଂସ୍କୃତିକ ପରମ୍ପରା ପ୍ରଦର୍ଶନ କରିଥିଲେ ।

ସେପ୍ଟେମ୍ବର ୧୯୫୪ରେ ଉତ୍କଳ ସମ୍ମିଳନୀର ଯୁଗ୍ମ ସମ୍ପାଦକ ଶରତଚନ୍ଦ୍ର ମହାପାତ୍ରଙ୍କ ସହ ବିଶ୍ୱନାଥ ଦାସ ଓ କାମାକ୍ଷା ପ୍ରସାଦ ଶର୍ମା ଇଛାପୁର ଦେଇ କାଞ୍ଚୁଲିଠାରେ ପ୍ରଚାର କାର୍ଯ୍ୟ କରି କରି ପହଞ୍ଚିଥିଲେ । ଆନ୍ଧ୍ର ନର୍ତ୍ତକୀମାନେ ନୃତ୍ୟ ଦେଖାଇବା ବାହାନାରେ କିପରି ଗ୍ରାମେ ଗ୍ରାମେ ଓଡ଼ିଆ ବିରୋଧୀ ପ୍ରଚାର ଚଳେଇଛନ୍ତି ତା'ର ବିବରଣୀ ଦେଇଥିଲେ । ମାଣିକ୍ୟପୁର, ଉଦ୍ୟାନଖଣ୍ଡ, ମଞ୍ଜୁଷା , ତରଳା ପ୍ରଭୃତି ଅଞ୍ଚଳରେ ଅଧିବାସୀମାନେ ଅତ୍ୟାଚାରର କରୁଣକାହାଣୀ ଓଡ଼ିଶାର ପ୍ରତିନିଧିମାନଙ୍କ ନିକଟରେ ବର୍ଣ୍ଣନା କରିଥିଲେ । ମଞ୍ଜୁଷାଠାରେ ସମସ୍ତ ସରକାରୀ ବିଦ୍ୟାଳୟରେ ଓଡ଼ିଆ ଶିକ୍ଷକମାନଙ୍କୁ ବେତନ ନ ଦିଆଯିବାରୁ ସେମାନେ ଚାକିରୀ ଛାଡ଼ୁଥିଲେ । ଏହି ସମସ୍ତ ଅଂଚଳରେ ଓଡ଼ିଆ ଶିକ୍ଷା ଅବହେଳିତ ବୋଲି ସ୍ଥାନୀୟ ଓଡ଼ିଆମାନେ ଅଭିଯୋଗ କରିଥିଲେ ।

ମଧ୍ୟପ୍ରଦେଶ, ମେଦିନୀପୁର ଆଦି ଚତୁର୍ଦ୍ଦିଗରେ ଖେଳେଇ ହୋଇ ରହିଥିବା ଓଡ଼ିଆମାନଙ୍କୁ ଏକଜୁଟ କରି ବିଚ୍ଛିନ୍ନାଞ୍ଚଳ ସମ୍ମିଶ୍ରଣ ପାଇଁ ଉପଯୁକ୍ତ ସାକ୍ଷ୍ୟ ଦେବା ଲାଗି ଗଣ ଆନ୍ଦୋଳନ ଜାରି ରହିଲା । ସିଂହଭୂମ, ବିଶେଷକରି ଷଢ଼େଇକଳା, ଖରସୁଆଁରେ କିନ୍ତୁ ସବୁ ଆଶାଆକାଂକ୍ଷା ସତେ ଯେମିତି ଲାଗି ରହିଥିଲା ।

ବିହାରରେ ଓଡ଼ିଶା ବିରୋଧରେ ଅପପ୍ରଚାର ତୀବ୍ର ଆକାର ଧାରଣ କରିଥାଏ ବୋଲି ମଧ୍ୟ ସେ ଅଂଚଳରୁ ସମ୍ବାଦମାନ ଆସୁଥାଏ । ଓଡ଼ିଆ ସାମ୍ବାଦିକଗଣ ଚାକ୍ଷୁସ ପ୍ରମାଣ ନିମନ୍ତେ ସେ ଅଂଚଳ ଗସ୍ତକରି ବିବରଣୀମାନ ଦେଇଥିଲେ । ସେଠାରେ ଓଡ଼ିଆମାନଙ୍କୁ କଂଗ୍ରେସ ସଭ୍ୟ ହେବାକୁ ଦିଆ ଯାଇନାହିଁ, ଯାହାଦ୍ୱାରା କଂଗ୍ରେସ ଉଚ୍ଚ ସ୍ତରରେ ଆପଣା ଅଭିଯୋଗ ଉପସ୍ଥାପନାରୁ ଏମାନେ ବଞ୍ଚିତ ହେଉଥିଲେ । ଷଢ଼େଇକଳାର ସମସ୍ତ ଓଡ଼ିଆ ସ୍କୁଲରେ ହିନ୍ଦୀ ପ୍ରଚଳନ କରାଯାଇଥିଲା । ଓଡ଼ିଆ କର୍ମଚାରୀ ଚାକିରି ହରାଇଥିଲେ । ସାଂସ୍କୃତିକ ଅନୁଷ୍ଠାନଗୁଡ଼ିକୁ ବନ୍ଦ କରି ଦିଆଯାଇଥିଲା । ସମସ୍ତ ପ୍ରମାଣ ସତ୍ତ୍ୱେ ଓଡ଼ିଆ

ଭାଷା ବିରୋଧରେ ଅପପ୍ରଚାର ପ୍ରବଳ ଆକାର ଧାରଣ କରିଥିଲା । ବିହାର ସରକାରଙ୍କର ଜଣେ ଶିକ୍ଷା ବିଭାଗୀୟ କର୍ମଚାରୀ ଦେବକୀନନ୍ଦନଙ୍କର କେତେକ ଅକୁହାଭାଷା, କେତେ ଉଲା ଆଶା' ତା'ର ଏକ ନମୁନା ଥିଲା । ଏଥିରେ ଷଢ଼େଇକଳା ଖରସୁଆଁର କେତେକ ଖାଣ୍ଟି ଓଡ଼ିଆ ଗୀତର ବିକୃତ ଅର୍ଥ କରି କେନ୍ଦ୍ର ସରକାରଙ୍କ ମନରେ ଏହି ରାଜ୍ୟର ଭାଷା ନେଇ ଭ୍ରମଭାବ ଆଣିବା ପାଇଁ ଅପଚେଷ୍ଟା ରହିଥିଲା । କାନ୍ଥବାଡ଼ରେ କୌଣସି ଓଡ଼ିଆ ବିଜ୍ଞାପନ, ଏପରିକି ସମାଧିମାନଙ୍କରେ ଖୋଦିତ ଓଡ଼ିଆ ଲିପିକୁ ନଷ୍ଟକରି ହିନ୍ଦୀରେ ଲେଖା ଯାଇଥିଲା । ଓଡ଼ିଆ ଆନ୍ଦୋଳନକାରୀମାନେ ଜେଲ ଭିତରେ ବନ୍ଧୁ ଭାବରେ ଅତ୍ୟାଚାରିତ ହେଉଥିଲେ । ରାତି ୧୦ଟା ପରେ ଘରୁ ବାହାରିବା ଏମାନଙ୍କ ପକ୍ଷରେ ଅସମ୍ଭବ ଥିଲା । ତେଣୁ ପ୍ରାୟ ଏହି ପଂକ୍ତିଟି ଜନ ସାଧାରଣ ବୋଲୁଥିବାର ଜଣାଯାଏ–

"ସୁନଲୋ ଓଡ଼ିଆ ସୁନଲୋ ବଙ୍ଗାଲୀ
ବିହାର୍ କା ସଉଖାଲ
ମୁଜାଫରପୁରକା ଲାଠି ମୁଙ୍ଗେର୍ ବା ବରଛା
ପାଟନା କା ତଲଵାର ।"

ଫେବୃଆରୀ ୧୯୫୫ ସମୟରେ ଓଡ଼ିଶା ଗସ୍ତ ପୂର୍ବରୁ କମିଶନ ସିଂହଭୂମରେ ପହଞ୍ଚିଥିଲେ । ୮ ତାରିଖରେ ସେମାନେ ଖରସୁଆଁ ଏବଂ ଷଢ଼େଇକଳା ଯାଇଥିଲେ । ଅଧିକାଂଶ ସମାଜ ଏବଂ ଅନୁଷ୍ଠାନ ଯଥା– ସିଂହଭୂମ ଉତ୍କଳ ସଭା, ସିଂହଭୂମ ଉତ୍କଳ କଂଗ୍ରେସ, ଉତ୍କଳ ସମ୍ମିଳନୀ, ଖରସୁଆଁ ପ୍ରଜାମଣ୍ଡଳ, ତନ୍ତୀ ସଭା ଆଦି ସାକ୍ଷ୍ୟ ଦେଇଥିଲେ । ବ୍ୟକ୍ତିଗତ ଭାବେ ଆଞ୍ଚଳିକ ନେତୃବର୍ଗ ଏବଂ ଷଢ଼େଇକଳା ରାଜା ଓ ଖରସୁଆଁ ରାଜା ସାକ୍ଷ୍ୟ ଦେଇଥିଲେ । ଖରସୁଆଁ ଓଡ଼ିଶା ସହ ମିଶିବାକୁ ଆଗ୍ରହାନ୍ୱିତ ନ ଥିବା ପରି ମନେ ହୋଇଥିଲା ।

ଫେବୃଆରୀ ୧୩/୧୪ କଟକରେ ମାଛୁଆବଜାର ସରକିଟ୍ ହାଉସଠାରେ ଉତ୍କଳ ସମ୍ମିଳନୀ, ଉତ୍କଳ ପ୍ରଦେଶ କଂଗ୍ରେସ, ଲୋକସଭାର ସଭ୍ୟଗଣ, ଗଣତନ୍ତ୍ର ପରିଷଦ, ହିନ୍ଦ୍ ସେବକ ସମାଜ, କମ୍ୟୁନିଷ୍ଟ ପାର୍ଟି, ମହିଳା ପ୍ରତିନିଧି ସରଳାଦେବୀ, ନିଶାମଣି ଦେବୀ, ଶୈଳବାଳା ଦାସ, ପ୍ରଭାମୟୀ ଦେବୀ, ସୁନ୍ଦରମଣି ପରିଜା, ନନ୍ଦିନୀ ଶତପଥୀ ଏବଂ ମଧ୍ୟପ୍ରଦେଶର ପ୍ରତିନିଧି, ସରକାରଙ୍କ ତରଫରୁ ରାଧାନାଥ ରଥ ଓ ସୋନାରାମ ସୋରେନ୍ ସାକ୍ଷ୍ୟ ଦେଇଥିଲେ । ୧୮ ତାରିଖରେ କମିଶନ ଦକ୍ଷିଣ ଓଡ଼ିଶା ଗସ୍ତରେ ଯାଇ ଆଦିବାସୀମାନଙ୍କୁ ଭେଟିଥିଲେ । ଉତ୍କଳ ସମ୍ମିଳନୀ ଓ ଉତ୍କଳ ହିତୈଷିଣୀ ସମାଜ ଆନ୍ଧ୍ରରେ ଥିବା ବ୍ୟାପକ ଓଡ଼ିଆ ଅଂଚଳକୁ ଫେରାଇ ଦେବାକୁ ଦାବି କରିଥିଲେ ।

୧୯୫୫ ଅକ୍ଟୋବରରେ କମିଶନଙ୍କର ରିପୋର୍ଟ ସମଗ୍ର ଓଡ଼ିଆଙ୍କୁ ସ୍ତମ୍ଭୀଭୁତ କରିଥିଲା । ସୂଚ୍ୟଗ୍ର ପରିମିତ ବିଚ୍ଛିନ୍ନାଞ୍ଚଳ ଓଡ଼ିଶା ଭାଗ୍ୟରେ ଜୁଟି ନ ଥିଲା । ସୁରେନ୍ଦ୍ର ମହାନ୍ତି କମିଶନ ରିପୋର୍ଟର କପିଟିଏ ଆଣି ଶ୍ରୀରାମଚନ୍ଦ୍ର ଭବନରେ ସାଧାରଣ ସଭା କରି ଏଥିରେ ନିଆଁ ଧରାଇ ଦେଇଥିଲେ; ସେ ନିଆଁ ଧାସ ଆଜି ବି ଓଡ଼ିଆ ପ୍ରାଣକୁ ଉତ୍ତପ୍ତ କରେ ।

ମୁଖ୍ୟମନ୍ତ୍ରୀ ବିଧାନସଭାରେ କମିଶନ୍‌ର ଓଡ଼ିଶା ପ୍ରତି ଉଦ୍ଦିଷ୍ଟ ସୁପାରିଶକୁ ପ୍ରତ୍ୟାଖ୍ୟାନ କରି କେନ୍ଦ୍ର

ସରକାରଙ୍କୁ ଏହାର ପୁନଃବିଚାର ଲାଗି ଅନୁରୋଧ କରିଥିଲେ । ଚତୁର୍ଦ୍ଦିଗରୁ କେନ୍ଦ୍ର ସରକାରଙ୍କ ନିକଟକୁ ବିଭିନ୍ନ ସ୍ମାରକୀ ପତ୍ରମାନ ପଠାଯାଇଥିଲା । ଲୋକସଭାରେ ରାଜେନ୍ଦ୍ର ନାରାୟଣ ସିଂହଦେଓ, ନିରଞ୍ଜନ ଜେନା, ଟି.ସାଙ୍ଗାନା ଆଦି ଓଜସ୍ୱିନୀ ଭାଷାରେ ଏହି ଅଯୌକ୍ତିକ ଓ ଭ୍ରମାତ୍ମକ ରିପୋର୍ଟକୁ କଟୁ ସମାଲୋଚନା କରିଥିଲେ ।

ଗୋଦାବରୀଶ ମିଶ୍ର ପୁରୀଠାରେ ଏକ ବିରାଟ ଜନସଭାରେ, "ଏହି କମିଶନ ଭାଷା ନୀତିକୁ ସମ୍ପୂର୍ଣ୍ଣ ଅବମାନନା କରିଛି" ବୋଲି କହିଥିଲେ । ମୁରାରୀ ତ୍ରିପାଠୀ ଯୁବକମାନଙ୍କୁ ଆହ୍ୱାନ ଦେଇ ଉତ୍କଳ ସମ୍ମିଳନୀ ତରଫରୁ 'ଉତ୍କଳ ସେବକ ବାହିନୀ' ଗଢ଼ିବାକୁ ନିର୍ଦ୍ଦେଶ ଦେଇଥିଲେ । ଯଦି ବିଚାରରେ ପରିବର୍ତ୍ତନ ନ ଆସେ, ତେବେ ଏହି ବଡ଼ ଦାଣ୍ଡରେ ଜଗନ୍ନାଥ ମନ୍ଦିର ସମ୍ମୁଖରେ ପରିସ୍ଥିତିର ମୁକାବିଲା ହେବ ବୋଲି ସେ ସତର୍କ ବାଣୀ ଶୁଣାଇ ଦେଇଥିଲେ ।

**ଅନ୍ତିମ ପର୍ଯ୍ୟାୟ : ସୀମା ଆନ୍ଦୋଳନ**

ରାଜ୍ୟ ପୁନର୍ଗଠନ କମିଶନ୍‌ଙ୍କ ବିବରଣୀ ଏବଂ ଓଡ଼ିଶା ପ୍ରସଙ୍ଗରେ ଉଲ୍ଲିଖିତ ଭ୍ରମାତ୍ମକ ସୁପାରିଶ ଯେ କେନ୍ଦ୍ର ସରକାର ନିଶ୍ଚିତ ପରିବର୍ତ୍ତନ କରିବେ, ଏ ବିଶ୍ୱାସ ଓଡ଼ିଶାରେ ଏବଂ ଏହାର ବିଚ୍ଛିନ୍ନାଞ୍ଚଳରେ ଦୃଢ଼ୀଭୂତ ହୋଇଥିଲା; କିନ୍ତୁ ଭାରତ ସରକାରଙ୍କର ୧୮ ଜାନୁଆରୀ ୧୯୫୬ର ସିଦ୍ଧାନ୍ତ ଏମାନଙ୍କୁ ସମ୍ପୂର୍ଣ୍ଣ ନିରାଶ କରିଥିଲା । ଓଡ଼ିଶା ପ୍ରତି କମିଶନ୍‌ଙ୍କର ନିଷ୍ପତ୍ତିରେ ତ କୌଣସି ପରିବର୍ତ୍ତନ ଅଣାଯାଇ ନ ଥିଲା, ବରଂ ଉତ୍ତର ସୀମା ସେ ପାଖରେ ବିହାରରେ ଥିବା ଓଡ଼ିଆ ଅଂଚଳ ବିଶେଷକରି ଷଢ଼େଇକଳା, ଖରସୁଆଁ ସମ୍ପର୍କରେ ଉଲ୍ଲେଖକରି ୯୨୫ ଅନୁଚ୍ଛେଦରେ ଲେଖାଥିଲା ଯେ "ଆମ୍ଭ ମତରେ କେବଳ ଭାଷା ଭିତରେ ଗୋଟିଏ ଜିଲ୍ଲାର ବିଭାଜନ କାମ୍ୟ ନୁହେଁ । ଉପରନ୍ତୁ, ମାନଭୂମ ବଙ୍ଗ ପ୍ରଦେଶକୁ ହସ୍ତାନ୍ତର ହେବା ଦ୍ୱାରା ଧଳଭୂମ ଏକ ଆବଦ୍ଧ ଭୂଖଣ୍ଡରେ ପରିଣତ ହେବ, ବିହାର ସହ ଏହାର ସମ୍ପର୍କ ରହିପାରିବ ନାହିଁ ।"

ଏହି ଯୁକ୍ତିରେ ନିହିତ ଔଦ୍ଧତ୍ୟ ଓଡ଼ିଆମାନଙ୍କୁ ଆତଙ୍କିତ କରିଥିଲା । ବଙ୍ଗପ୍ରଦେଶକୁ କ୍ଷତିପୂରଣ ଦେଇ ବିହାରକୁ ନିମ୍ନତମ ଭାବେ କ୍ଷତିଗ୍ରସ୍ତ କରି ଏକ ଭାରସାମ୍ୟ ରକ୍ଷା କରିବା ସତେ ଯେପରି ଏକ ସୁପରିକଳ୍ପିତ ଯୋଜନା ହିଁ ଥିଲା । କାରଣ ଏହି ଯୁକ୍ତିକୁ ସମର୍ଥନ କଲେ ମଧ୍ୟ ପ୍ରଦେଶରେ ଶଙ୍କର ଏବଂ ସେରୋଗ ଆବଦ୍ଧ ଓଡ଼ିଆ ଭୂଖଣ୍ଡ ଓଡ଼ିଶାକୁ ଫେରାଇଦେବା ଅପରିହାର୍ଯ୍ୟ ଥିଲା; ତାହା କିନ୍ତୁ ହୋଇ ନ ଥିଲା । ଇତିହାସର ପୁନରାବୃତ୍ତି ହିଁ ଘଟିଥିଲା ।

ଓଡ଼ିଶା ପ୍ରାଦେଶିକ କଂଗ୍ରେସ କମିଟି ଏହାର କଟୁ ସମାଲୋଚନା କରି ସମସ୍ତ କଂଗ୍ରେସ ସଦସ୍ୟ ଇସ୍ତଫା ପ୍ରଦାନ କରିବାକୁ ସ୍ଥିର କରିଥିଲେ । ମନ୍ତ୍ରୀ ଓ ବ୍ୟବସ୍ଥାପକଙ୍କର ଇସ୍ତଫା ପତ୍ର ଧରି ମୁଖ୍ୟମନ୍ତ୍ରୀ ଏବଂ ପ୍ରଦେଶ କଂଗ୍ରେସ ସଭାପତି ଦିଲ୍ଲୀ ଗଲେ ।

ମନ୍ତ୍ରୀ ଓ କଂଗ୍ରେସ ସଭ୍ୟମାନେ ଇସ୍ତଫା ଦେଇଦେଲେ ବୋଲି ଖବର ବାହାରିବା ସଂଗେ ସଂଗେ ଚାରିଆଡ଼େ ଚହଳ ପଡ଼ିଗଲା । ଶାସକଗୋଷ୍ଠୀଙ୍କର ସମର୍ଥନର ଆସ୍ଥା ରଖି, ସମଗ୍ର ଓଡ଼ିଶା ତଥା ବିଚ୍ଛିନ୍ନାଞ୍ଚଳ ନେତୃବୃନ୍ଦ ଜନତାଙ୍କୁ, ବିଶେଷ କରି ଛାତ୍ରସମାଜକୁ ଓଡ଼ିଶା ପ୍ରତି ଅନ୍ୟାୟ ଅବିଚାର ବିରୋଧରେ

ପ୍ରତିବାଦ ନିମନ୍ତେ ଆହ୍ବାନ ଦେଇଥିଲେ । ୧୯ ଜାନୁଆରୀ ୧୯୫୬ରେ 'ସୀମା ଆନ୍ଦୋଳନ'ରେ ପୁରୀ ଅଗ୍ରଣୀ ହୋଇଥିଲା । ତୁରନ୍ତ ଏହା ସମଗ୍ର ଓଡ଼ିଶାକୁ ବ୍ୟାପିଥିଲା । ଧର୍ମଘଟ, ରେଳବନ୍ଦ, ରାସ୍ତାରୋକୋ, ଅଫିସ ଓ ସଚିବାଳୟ ସବୁ ବନ୍ଦ ରହିଥିଲା ।

କଟକ ମ୍ୟୁନିସିପାଲିଟି ପଡ଼ିଆରେ ୨୦ ତାରିଖ ଦିନ ଯଦୁମଣି ମଙ୍ଗରାଜଙ୍କର ସଭାପତିତ୍ୱରେ ୧୦,୦୦୦ ଜନ ସମାଗମରେ ଏକ ସଭା ହୋଇଥିଲା । ସଭା ପୂର୍ବରୁ ଛାତ୍ର ଓ ଜନସାଧାରଣଙ୍କର ଦୁଇଟି ବିରାଟ ଶୋଭାଯାତ୍ରା ଭାରତ ସରକାରଙ୍କର ନିଷ୍ପତ୍ତିର ପ୍ରତିବାଦ ଧ୍ୱନି ଦେଇ ସହରର ସମସ୍ତ ପ୍ରଧାନ ପ୍ରଧାନ ରାସ୍ତା ପରିକ୍ରମା କରିଥିଲେ । ଏହି ଅବସରରେ ଜାତୀୟ କବି ବୀରକିଶୋର ଦାସଙ୍କ ଦ୍ୱାରା ଲିଖିତ ଏକ ଉନ୍ମାଦନାପୂର୍ଣ୍ଣ ଜାତୀୟ ଉଦ୍‌ବୋଧନ ସଙ୍ଗୀତ ଶ୍ରୀ ଅଦ୍ୱୈତବଲ୍ଲଭ ରାୟ ଗାନ କରିଥିଲେ । ଏହି ସଭାରେ ଓଡ଼ିଶାର ଛାତ୍ରଙ୍କର କାର୍ଯ୍ୟ ଓ ନେତୃତ୍ୱର ଭୂୟସୀ ପ୍ରଶଂସା କରାଯାଇଥିଲା । ଓଡ଼ିଶା ଛାତ୍ର ଏବଂ ଯୁବଶକ୍ତିର ସଂଗଠନ କେନ୍ଦ୍ର କଟକ ନଗରୀର ସମସ୍ତ ଛାତ୍ରଶକ୍ତି ଓଡ଼ିଶା ପ୍ରତି କରାଯାଇଥିବା ଚୂଡ଼ାନ୍ତ ଅନ୍ୟାୟର ପ୍ରତିକାର କରା ନ ଯିବା ପର୍ଯ୍ୟନ୍ତ ନିରବଚ୍ଛିନ୍ନ ଆନ୍ଦୋଳନ ଚଳାଇବା, ଏପରିକି ଆବଶ୍ୟକ ହେଲେ ହିଂସାଅହିଂସା ନିର୍ବିଚାରରେ ସମସ୍ତ ଉପାୟ ଅବଲମ୍ବନ କରିବାକୁ ବିରାଟ ଜନସଭାରେ ପ୍ରକାଶ୍ୟ ଭାବେ ଶପଥ ଗ୍ରହଣ କରିଥିଲେ । ଆସନ୍ତା ୨୬ ତାରିଖ ଶୋକ ଦିବସ ପାଳନ ନିମନ୍ତେ ନିଷ୍ପତ୍ତି ନିଆଯାଇଥିଲା । ରେଭେନ୍‌ସା କଲେଜ ଏବଂ ରାଜାବଗିଚା ହାଇସ୍କୁଲର ଯେଉଁ ଚାରିଜଣ ଛାତ୍ର ଭାରତ ସରକାରଙ୍କ ନିଷ୍ପତ୍ତିର ପ୍ରତିବାଦ କରି ଅନଶନ କରିଛନ୍ତି, ସେମାନେ ଅନଶନ ଭାଙ୍ଗି ଏହି ସକ୍ରିୟ ଆନ୍ଦୋଳନରେ ଯୋଗଦେବାକୁ ସଭାପତି ଅନୁରୋଧ କରିଥିଲେ । ଲକ୍ଷ୍ମୀଧର ମହାନ୍ତି ଛାତ୍ର ଆନ୍ଦୋଳନକୁ ସମର୍ଥନ କରି ଶାସନକଳକୁ ନିଷ୍କଳ କରିଦେବା ଲାଗି ଉପଦେଶ ଦେଇଥିଲେ ।

ନାରୀ ନେତ୍ରୀ ସରଳା ଦେବୀ ଛାତ୍ରମାନଙ୍କୁ ଆନ୍ଦୋଳନ ଜାରି ରଖିବା ସହ ବିହାରକୁ ଖଣିଜ ଦ୍ରବ୍ୟ ରାପ୍ତାନି ବନ୍ଦ କରିବା ଲାଗି ପ୍ରସ୍ତାବ ଦେଇଥିଲେ । ଏହା ହେଲେ ପ୍ରଧାନମନ୍ତ୍ରୀ ଏବଂ ବିହାରର ମୁଖ୍ୟମନ୍ତ୍ରୀ ଅନନ୍ୟୋପାୟ ହୋଇ ଆସି ଖୋସାମଦ କରିବେ ବୋଲି ସେ ମତ ବ୍ୟକ୍ତ କରିଥିଲେ ।

ଛାତ୍ରମାନଙ୍କ ପକ୍ଷରୁ ହରିଶ୍ଚନ୍ଦ୍ର ବକ୍ସିପାତ୍ର, ବିଭୂତି ଭୂଷଣ ପଟ୍ଟନାୟକ, ମନୋଜ ଦାସ, ସନ୍ତୋଷ କୁମାର ସାହୁ, ରଜତ କୁମାର କର, ଷଢ଼େଇକଳାର ଅସିତ କବି ଭାଷଣ ଦେଇ ଛାତ୍ରମାନଙ୍କ ଦାୟିତ୍ୱ ଓ କାର୍ଯ୍ୟକ୍ରମ ବିଷୟ ପ୍ରକାଶ କରିଥିଲେ । ଓଡ଼ିଶାର ଲୋକ ପ୍ରତିକ୍ରିୟା ନ ଦେଖାଇଲେ କିଛି ଲାଭ ହେବନାହିଁ ବୋଲି ଗୋଦାବରୀଶ ମହାପାତ୍ର ମତବ୍ୟକ୍ତ କରିଥିଲେ । ଆନ୍ଦୋଳନ ଚଳାଇବା ନିମନ୍ତେ ସଭାପତିଙ୍କ ନିବେଦନ କ୍ରମେ ସଭାସ୍ଥଳରେ ନଗଦ ୧୨୩ ଟଙ୍କା ଏବଂ ଗୋଟିଏ ସୁନାମୁଦି ଆଦାୟ ହୋଇଥିଲା ।

ଚତୁର୍ଦ୍ଦିଗରେ ବିକ୍ଷୋଭ ଜାରି ରହିଥିଲା ଏବଂ ୨୧ ତାରିଖରେ ପୁଣି ଏକ ସାଧାରଣ ସଭା ହୋଇଥିଲା । ଆନ୍ଦୋଳନକୁ ଆୟତ୍ତ କରିବା ପାଇଁ ଓଡ଼ିଶା ବାହାରୁ ପୋଲିସ ଫୋର୍ସ ଅଣାଯାଇ ମୁତୟନ କରାଯାଇଥିଲା ।

କଟକ, ପୁରୀ, ସମ୍ବଲପୁରରେ ପୋଲିସ ଓ ଆନ୍ଦୋଳନକାରୀଙ୍କ ମଧ୍ୟରେ ପ୍ରବଳ ଖଣ୍ଡଯୁଦ୍ଧ ଘଟିଥିଲା । ୧୯୫୬ ଜାନୁଆରୀ ୨୨ ତାରିଖରେ ପୁଲିସ ଗୁଳିରେ କଟକର କନୈକ ଛାତ୍ର ସୁନୀଲ ଦେ

ପ୍ରାଣ ହରାଇଥିଲେ । ତାଙ୍କ ମୃତଦେହ ଧରି ହଜାର ହଜାର ଲୋକ ଏକ ଶୋଭାଯାତ୍ରାରେ 'ଶହିଦ ସୁନୀଲ ଜରେ ପୁକାର / ଜବାହରଲାଲ ହୋସିଆର ।" ସ୍ଲୋଗାନ୍ ଦେଇଥିଲେ । ପୁରୀରେ ସେହି ପ୍ରକାରେ ବେଙ୍ଗପାଣିଆ ପୋଲିସ ଗୁଳିରେ ପ୍ରାଣ ହରାଇଥିବା ବେଳେ ଅନ୍ୟଜଣେ ଛାତ୍ର ହରିହର ମହାପାତ୍ର ଗୁରୁତର ଆହତ ହୋଇ ଫେବୃଆରୀ ମାସରେ ମୃତ୍ୟୁବରଣ କରିଥିଲେ ।

ସମଗ୍ର ଓଡ଼ିଶାରେ କର୍ଫ୍ୟୁ ସହ ୧୪୪ ଧାରା ଲାଗୁ କରାଯାଇଥିଲା । ଆଇନ ଅମାନ୍ୟ କରି ବହୁ ଛାତ୍ରନେତା ଗିରଫ ହୋଇଥିଲେ । ଶରତ ପଟ୍ଟନାୟକ, ମନମୋହନ ମିଶ୍ର କଟକରୁ ୨୬୦ ଜଣ ଛାତ୍ର ଓ ଯୁବକ ପୁରୀରେ ଜାନୁଆରୀ ୨୪ରେ ଗିରଫ ହୋଇଥିଲେ । ଉତ୍କଳ ସମ୍ମିଳନୀ ୨୫/୨୬ରେ କାଠଯୋଡ଼ି ନଦୀଶଯ୍ୟାରେ ସଭା କରି ଏକ ସତ୍ୟାଗ୍ରହ କମିଟି ଗଠନ କରିଥିଲେ । ସୀମା ସଂକ୍ରାନ୍ତ ସମାଧାନ ଅଦାଲତ ଅବା ସଂପୃକ୍ତ ଅଂଚଳରେ ଗଣଭୋଟ ଦ୍ୱାରା ହେବା ଉଚିତ ବୋଲି ଏଠାରେ ପ୍ରସ୍ତାବ ଆଗତ କରାଯାଇଥିଲା । ଆଇନ ଅମାନ୍ୟ ଯୋଗୁଁ ରାଜେନ୍ଦ୍ର ନାରାୟଣ ସିଂହଦେଓ, ସାରଙ୍ଗଧର ଦାସ, ସରଳା ଦେବୀ, ଗୋଦାବରୀଶ ମିଶ୍ର ୨୯ ତାରିଖରେ ଗିରଫ ହୋଇଥିଲେ ।

ଏହାପରେ ଆନ୍ଦୋଳନ ଆସେ ଆସେ ଶିଥିଳ ହୋଇଯାଇଥିଲା । ଛାତ୍ରମାନେ କାରାଗାରରୁ ମୁକ୍ତି ପାଇଁ ସ୍କୁଲ କଲେଜରେ ଯୋଗ ଦେଇଥିଲେ । ନେତୃବୃନ୍ଦ ଆସେମ୍ବ୍ଲିରେ ଆଲୋଚନା ସମାଲୋଚନାରେ ବ୍ୟସ୍ତ ରହିଲେ । କଂଗ୍ରେସ ମନ୍ତ୍ରୀମଣ୍ଡଳ ଆରମ୍ଭରୁ ଇସ୍ତଫା ପ୍ରତ୍ୟାହାର କରି ଶାସନରେ ରହିଥିଲେ ଏବଂ ଆନ୍ଦୋଳନକୁ ପ୍ରତିରୋଧ କରିବାକୁ ଆପ୍ରାଣ ଚେଷ୍ଟିତ ଥିଲେ । ବହୁ ଉଚ୍ଚାଭିଳାଷୀ ବ୍ୟକ୍ତିବିଶେଷ ଏହି ଜାତୀୟ ଆନ୍ଦୋଳନକୁ ଆପଣାର ରାଜନୈତିକ ପ୍ରତିଷ୍ଠା ନିମନ୍ତେ ସୁବର୍ଣ୍ଣ ସୁଯୋଗ ମଣିଥିଲେ ।

**ଉପସଂହାର**

ଓଡ଼ିଶାର ଜାତୀୟତାବାଦ ମୂଳତଃ ଭାଷା, ସଂସ୍କୃତି ଏବଂ ଐତିହାସିକ ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ ଥିଲା । ଊନବିଂଶ ଶତାବ୍ଦୀର ଭାଷା ଆନ୍ଦୋଳନ ସମୟରୁ ବିଂଶ ଶତାବ୍ଦୀର ରାଜ୍ୟ ପୁନର୍ଗଠନ ବେଳର ଆନ୍ଦୋଳନ ପର୍ଯ୍ୟନ୍ତ ଭାଷା ଓ ସଂସ୍କୃତି ସଂରକ୍ଷଣ ଏବଂ ରାଜ୍ୟର ସର୍ବାଙ୍ଗୀନ ଉନ୍ନତି ସାଧନ ହିଁ ଥିଲା ଏହି ଜାତୀୟତାବାଦର ଲକ୍ଷ୍ୟ । ତେଣୁ ରାଜନୈତିକ କାରଣରୁ ଖଣ୍ଡବିଖଣ୍ଡିତ ଓଡ଼ିଶାର ଏକତ୍ରୀକରଣ ଏହାର ସର୍ବପ୍ରଥମ ଆଭିମୁଖ୍ୟ ହୋଇଥିଲା । ଏହାଦ୍ୱାରା ପଡ଼ୋଶୀଭାଷୀଙ୍କ ଦ୍ୱାରା ଆକ୍ରମିତ ହୋଇ ନିଜର ସତ୍ତା ହରାଉଥିବା ପ୍ରକ୍ରିୟାକୁ ପ୍ରତିହତ କରି ଆପଣା ଭାଷାସଂସ୍କୃତିର କ୍ରମବିକାଶ ଅଭୀପ୍ସା ପୂର୍ଣ୍ଣ କରିବା ସମ୍ଭବ ବୋଲି ଦୃଢ଼ ବିଶ୍ୱାସ ଗଢ଼ି ଉଠିଥିଲା ।

ରାଜ୍ୟ ପୁନର୍ଗଠନ ସମୟର ଆନ୍ଦୋଳନର ବିଶେଷତ୍ୱ ହେଉଛି ଯେ ଏହା ସ୍ୱାଧୀନ ଭାରତରେ ଏବଂ ଏକ ସ୍ୱତନ୍ତ୍ର ପ୍ରଦେଶ ଭାବେ ଓଡ଼ିଶାର ପ୍ରଥମ ଜାତୀୟ ଆନ୍ଦୋଳନ । ଏହି ଆନ୍ଦୋଳନ ବିଶ୍ୱାସ କରୁଥିଲା ଯେ ପୂର୍ଣ୍ଣାଙ୍ଗ ଉତ୍କଳ ପ୍ରତିଷ୍ଠା ମହାଭାରତୀୟ ଏକତାର ଅନ୍ତରାୟ ହେବା ପରିବର୍ତ୍ତେ ବିଶେଷ ସହାୟକ ହେବ । ଅଧିକନ୍ତୁ, ଓଡ଼ିଶାର ଦାବିକୁ ସମର୍ଥନ କରି ନିଜର ନ୍ୟାଯ୍ୟ ଅଧିକାର ହାସଲ କରିବା ସଂଗେ ସଂଗେ ପଡ଼ୋଶୀ ରାଜ୍ୟଙ୍କ ସହ ପାରମ୍ପରିକ ବନ୍ଧୁତ୍ୱ ପ୍ରତି ସମ୍ମାନ ପ୍ରଦର୍ଶନ କରିବା ଦିଗରେ ମଧ୍ୟ ଏହି ଆନ୍ଦୋଳନ ସଂଯମିତ ଥିଲା ।

ପଡ଼ୋଶୀ ପ୍ରଦେଶ ପରି କେବଳ ଭୂଖଣ୍ଡଜନିତ ଲାଳସା ଓଡ଼ିଆ ଜାତୀୟତାବାଦକୁ କେବେହେଲେ ପ୍ରଭାବିତ କରି ନ ଥିଲା । ଉଦାହରଣ ସ୍ୱରୂପ— ଧଳଭୂମ ଭାଷା, ସଂସ୍କୃତି ଏବଂ ଐତିହାସିକ ଭିତ୍ତିଭୂମିରେ ଓଡ଼ିଶାର ଅଙ୍ଗ ହୋଇଥିଲେ ମଧ୍ୟ 'ଟାଟା ଷ୍ଟିଲ' ପରି ଏକ ଲୌହଶିଳ୍ପ ପ୍ରତିଷ୍ଠାନ ଯୋଗୁଁ ବିହାର ଏବଂ ବଙ୍ଗଳା ମଧ୍ୟରେ ବିଂଶ ଶତାବ୍ଦୀରେ ଏହାର ପ୍ରତିଷ୍ଠା ଦିନଠାରୁ ଏ ଅଂଚଳକୁ ଆପଣା ପ୍ରଦେଶରେ ସାମିଲ କରିବାର ଏକ ପ୍ରତିଦ୍ୱନ୍ଦ୍ୱିତା ଲାଗି ରହିଥିଲା । ଶେଷରେ ଏହା ବିହାରରେ ରହିଲା । ଏହାର ପରବର୍ତ୍ତୀ ଇତିହାସ ଏହି ସ୍ୱାର୍ଥାନ୍ୱେଷୀ କାରଣରୁ ହିଁ ନିୟନ୍ତ୍ରିତ ହୋଇଥିଲା । ତେଣୁ ଓଡ଼ିଶା କମିଟି ତଥା ଓ'ଡନେଲ କମିଟି ହେଉ ଅବା ରାଜ୍ୟ ପୁନର୍ଗଠନ କମିଶନ୍ ହେଉ, ଏମାନେ ପ୍ରଭାବଶାଳୀ ପ୍ରଦେଶମାନଙ୍କ ଦ୍ୱାରା ବିଭିନ୍ନ ଉପାୟରେ ନିୟନ୍ତ୍ରିତ ହୋଇ ନିରପେକ୍ଷ ଅଭିମତ ଦେବାକୁ ସକ୍ଷମ ହୋଇପାରି ନ ଥିଲେ ।

ରାଜ୍ୟ ପୁନର୍ଗଠନ ସମୟର ଓଡ଼ିଆ ଜାତୀୟ ଆନ୍ଦୋଳନର ଐତିହାସିକ ମୂଲ୍ୟାୟନ କଲାବେଳେ ସ୍ୱତଃ ଉପଲବ୍ଧ ହୁଏ ଯେ ଜାତୀୟତାବାଦ ଏକ ଉଜ୍ଜୀବିତ ଚେତନା ବୋଧ, ଯାହା ସର୍ବଦା ସଂଗଠନମୂଳକ । ତେଣୁ ସୀମା ସଂକ୍ରାନ୍ତୀୟ ଆନ୍ଦୋଳନ ସହ ପତ୍ରପତ୍ରିକା ଓ ସାହିତ୍ୟ ମାଧ୍ୟମରେ ଓଡ଼ିଶାର ଐତିହ୍ୟ ଗାଥାର ପୁନରାବୃତ୍ତି ଏବଂ ଊନବିଂଶ ଓ ବିଂଶ ଶତାବ୍ଦୀରେ ଓଡ଼ିଆ ଆନ୍ଦୋଳନର ସ୍ମୃତିଚାରଣ ସମାଜର ସବୁ ସ୍ତରରେ ସଚେତନତା ସଞ୍ଚାରଣ କରିଥିଲା । ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶଙ୍କର ଓଡ଼ିଶାର ଆଞ୍ଚଳିକ ଗୌରବମୟ ଇତିହାସର ସନ୍ଦର୍ଭଗୁଡ଼ିକ, ଐତିହାସିକ କେଦାରନାଥ ମହାପାତ୍ରଙ୍କର ଗବେଷଣାମୂଳକ ତଥ୍ୟସମ୍ବଳିତ ବିବରଣୀ, ନୃପେନ୍ଦ୍ର ନାରାୟଣ ସିଂହଦେଓଙ୍କର ସିଂହଭୂମ ପୁସ୍ତକ ଏବଂ ଅଜସ୍ର ରଚନା, ବିଦ୍ୟାଧର ସିଂହଦେଓଙ୍କର ବସ୍ତୁର ଆଲୋଚନା ଆଦି ଓଡ଼ିଶା ଇତିହାସରେ ଆଲୋକପାତ କରିବା ସହ ସମାଜରେ ଆଲୋଡ଼ନ ସୃଷ୍ଟି କରିଥିଲା । ମୂଳ ଓଡ଼ିଶା ଓ ବିଚ୍ଛିନ୍ନାଞ୍ଚଳରୁ ବହୁ ସୃଜନଶୀଳ ସାହିତ୍ୟିକ ଓଡ଼ିଆ ସାହିତ୍ୟକୁ ପରିପୁଷ୍ଟ କରିବାକୁ ଆଗେଇ ଆସିଥିଲେ । ବିଭିନ୍ନ ସଭାସମିତି, ଜୟନ୍ତୀ ଉତ୍ସବ ପାଳନ ଅବକାଶରେ ଆଦିକବି ସାରଳାଦାସ, ଉପେନ୍ଦ୍ରଭଂଜଙ୍କର ସାହିତ୍ୟକୃତି ବହୁଳ ଭାବରେ ଆଲୋଚିତ ହୋଇଥିଲା । ଓଡ଼ିଆ ଭାଷାର ପରିଭାଷା ସୃଷ୍ଟି ଓ ଲିପି ସଂସ୍କାରର ଆବଶ୍ୟକତା ଅନୁଭୂତ ହୋଇଥିଲା । ମାତୃଭାଷାକୁ ସରକାରୀ ଭାଷାରେ ପରିଣତ କରିବା ନିମନ୍ତେ ନିଷ୍ପତ୍ତି ନିଆ ଯାଇଥିଲା । ତେଣୁ ଓଡ଼ିଆ ଟାଇପ୍ ରାଇଟର୍‌ର ପ୍ରୟୋଜନୀୟତା ହୃଦୟଙ୍ଗମ କରି ସେ ଦିଗରେ ମଧ୍ୟ ଉଦ୍ୟମ ଆରମ୍ଭ ହୋଇଥିଲା ।

୧୯୫୪ ମସିହା ଏପ୍ରିଲ ମାସରେ ପ୍ରଜାତନ୍ତ୍ର ପକ୍ଷରୁ ବିଷୁବ ମିଳନ ଉତ୍ସବରେ ବଙ୍ଗଳାର ପ୍ରଖ୍ୟାତ ଭାଷାବିଦ୍ ନିମନ୍ତ୍ରିତ ଅତିଥି ସୁନୀତି କୁମାର ଚାଟାର୍ଜୀ ଓଡ଼ିଆ ଭାଷା ବଙ୍ଗଳା ଭାଷାର ବଡ଼ଭଉଣୀ ବୋଲି ତାଙ୍କ ବକ୍ତବ୍ୟରେ ପ୍ରକାଶ କରିଥିଲେ ।" ଏବେ ମଧ୍ୟ ଓଡ଼ିଆ ଭାଷାର ମହତ୍ତ୍ୱ ଓ ମୌଳିକତା ଅକ୍ଷୁଣ୍ଣ ରହିଛି, ଏବଂ ଫକୀର ମୋହନଙ୍କର ଭାଷା ବର୍ତ୍ତମାନ ଓଡ଼ିଆ ଭାଷାର ମାନଦଣ୍ଡ ହେବା ଉଚିତ " ବୋଲି ସେ ମତ ପ୍ରକାଶ କରିଥିଲେ । ଏହା ୧୮୬୮ରେ ରାଜେନ୍ଦ୍ରଲାଲ ମିତ୍ରଙ୍କର ବିସ୍ଫୋଟକ ଓଡ଼ିଆ ଭାଷା ବିରୋଧୀ ବକ୍ତବ୍ୟର ସମ୍ପୂର୍ଣ୍ଣ ବିପରୀତଧର୍ମୀ ଥିଲା ।

ଆଦିବାସୀ ଉନ୍ନୟନ, ସଂଗଠନ ଓ ବଳିଷ୍ଠ ନେତୃତ୍ୱ ଏହି ଜାତୀୟ ଆନ୍ଦୋଳନ ସମୟର ଏକ ଗୁରୁତ୍ୱପୂର୍ଣ୍ଣ ସଫଳତା । ଦକ୍ଷିଣ ବିହାରରେ ମୁଣ୍ଡ ଟେକିଥିବା ଝାଡ଼ଖଣ୍ଡ ଆନ୍ଦୋଳନ ଓଡ଼ିଶାର କେଉଁଝର,

## ବର୍ତ୍ତମାନର ଓଡ଼ିଶା ଏବଂ ବିଚ୍ଛିନ୍ନ ଓଡ଼ିଆ ଅଞ୍ଚଳ



ମୟୂରଭଂଜ, ବଣାଇ ଆଦି ଦାବି କରିବା ସଂଗେ ସଂଗେ ଓଡ଼ିଶାର ଆଦିବାସୀବହୁଳ ଅଞ୍ଚଳରେ ଆପଣାର ପ୍ରଭାବ ଅତି ଶୀଘ୍ର ବିସ୍ତାର ଲାଭକରିଥିଲା । ୧୯୫୧ରେ ପ୍ରତିଷ୍ଠିତ ନିଖିଳ ଉତ୍କଳ ଆଦିବାସୀ କଂଗ୍ରେସ ରାଜ୍ୟ ପୁନର୍ଗଠନ ସମୟରେ ଜାତୀୟ ଆନ୍ଦୋଳନରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲା । ସୋନାରାମ ସୋରେନଙ୍କର ନେତୃତ୍ୱ ଏହି ସମୟରେ ଝାଡ଼ଖଣ୍ଡର ଓଡ଼ିଶା ଅଞ୍ଚଳ ଦାବିର ମୂଳୋତ୍ପାଟନ କରିବା ସଂଗେ ସଂଗେ ଉପାନ୍ତ ଅଂଚଳରେ ଆଦିବାସୀମାନଙ୍କ ସହ ସମ୍ପର୍କର ଡୋରି ଘନିଷ୍ଠ କରିଥିଲା । ଆଦିବାସୀ ଚଳଣି ଅବ୍ୟାହତ ରଖି ମନ୍ତ୍ରୀ ସୋନାରାମ ସୋରେନ୍ ଦୂରଦର୍ଶୀ ଉନ୍ନୟନମୂଳକ ଯୋଜନାମାନ କାର୍ଯ୍ୟକାରୀ କରି ଆଦିବାସୀ ସମାଜରେ ଜାଗରଣ ସୃଷ୍ଟି କରିଥିଲେ ।

ଓଡ଼ିଆ ଜାତୀୟ ଆନ୍ଦୋଳନ ସର୍ବଦା ବୈଧାନିକ ଏବଂ ଅହିଂସା ନୀତିରେ ବିଶ୍ୱାସ ରଖିଥିଲା । 'ସୀମା ଆନ୍ଦୋଳନ' ସମୟରେ ଅଶାନ୍ତ ପରିସ୍ଥିତି ଏବଂ ଛାତ୍ରମାନଙ୍କର ମୃତ୍ୟୁ ନିଶ୍ଚିତରେ ଓଡ଼ିଶା ଇତିହାସର ଏକ କଳଙ୍କମୟ ଅଧ୍ୟାୟ, ଯେଉଁଥିଲାଗି ଏହି ଯୁବଗୋଷ୍ଠୀ ଦାୟୀ ନ ଥିଲେ । ୧୯୫୫ ଏବଂ ୧୯୫୬ର ଛାତ୍ର ଆନ୍ଦୋଳନ ସଂଗଠନମୂଳକ, ବୌଦ୍ଧିକ ଓ ଦୃଢ଼ପ୍ରତିଜ୍ଞ ଥିଲା । ହତାଶାଜନିତ ଉତ୍ତେଜନା ସ୍ୱାଭାବିକ । ତେବେ ଅଭାବନୀୟ ପରିସ୍ଥିତି ସୃଷ୍ଟି ଲାଗି ଗୃହମନ୍ତ୍ରୀ ଗଣତନ୍ତ୍ର ପରିଷଦକୁ ସମ୍ପୂର୍ଣ୍ଣ ଦାୟୀ କରିଥିଲେ ହେଁ ଏଥିପାଇଁ ପ୍ରତ୍ୟକ୍ଷରେ ଦ୍ୱିଧାଗ୍ରସ୍ତ ଦୁର୍ବଳ ଓଡ଼ିଶା ସରକାର ଏବଂ ପରୋକ୍ଷରେ କେନ୍ଦ୍ରୀୟ ଶାସନ ମୁଖ୍ୟତଃ ଦାୟୀ ଥିଲେ । ଏହି ସମୟରେ ଛାତ୍ର ଆନ୍ଦୋଳନ ଉତ୍କଳମାନର ଜାତୀୟତାବାଦର ନିଦର୍ଶନ । ଗୋଦାବରୀଶ ମହାପାତ୍ର ଛାତ୍ରଜାତିଙ୍କ ପ୍ରତି ଅଭିନନ୍ଦନ ଜଣାଇ ଲେଖିଲେ,

| | | |
|---|---|---|
| xxx ଯୁଗନନ୍ଦନ, | ଅପରାଜେୟ ହେ | ଏକ ଅଖଣ୍ଡ ଜାତି |
| ଏ ମଡ଼ା ଜାତିର | ଗତି ମୁକତିର | ଆଶା ବିଶ୍ୱାସ ସାଥୀ |
| ମୁକ୍ତି ବିଭୋଳ– | ଝର-ରଙ୍ଗୀନ | ରସ-ଉଚ୍ଛଳ ମନ |
| ମରଣ ପଥରେ | ଅଭିନନ୍ଦନ | ଘେନ ହେ ଛାତ୍ରଗଣ । xxx |

ଛାତ୍ର ଆନ୍ଦୋଳନ ଏକ ଶକ୍ତିଶାଳୀ ଯୁବଗୋଷ୍ଠୀ ଅଭ୍ୟୁଦୟର ସୂଚନା ଥିଲା । ନେତୃତ୍ୱ ନେଇଥିବା ଛାତ୍ରମାନେ ଅଧିକାଂଶ ପରବର୍ତ୍ତୀକାଳରେ ଜୀବନର ବିଭିନ୍ନ କ୍ଷେତ୍ରରେ ଯଶସ୍ୱୀ ଏବଂ ପ୍ରତିଷ୍ଠିତ ହୋଇଥିଲେ ।

ଏକ ବୌଦ୍ଧିକ ଯୁବ ସଂପ୍ରଦାୟର ବିକାଶ ସହ ପରବର୍ତ୍ତୀ ସମୟରେ 'ବିଶାଳ ଓଡ଼ିଶା ଆକାଂକ୍ଷୀ' ଅନୁଭବ କଲେ ଯେ ବିଶ୍ୱ ଏକୀକରଣର ପ୍ରବାହିତ ସ୍ରୋତରେ ରାଜନୈତିକ ସୀମାରେଖା ଶେଷକଥା ନୁହେଁ । ଅପରିବର୍ତ୍ତିତ ରାଜନୈତିକ ସୀମାରେଖାର ସ୍ଥିତି ସହ ବିଚ୍ଛିନ୍ନାଞ୍ଚଳରେ ଆପଣାର ମୂଳ ଅସ୍ମିତାକୁ ଧରି ରଖିବାର ପ୍ରବଳ ବାସନା ଓ ବିଭିନ୍ନ ସ୍ତରରେ ଓଡ଼ିଶାର ଏ ଦିଗରେ ଆପ୍ରାଣ ପ୍ରୟାସ ତଥା ସହଯୋଗ ଏକ ଜୀବନ୍ତ ସାଂସ୍କୃତିକ ସୀମାରେଖା ଗଢ଼ି ତୋଳିବାର ସମ୍ଭାବନା ରଖେ । ଆଜିର ଜାତୀୟକରଣବାଦର ଏହା ଏକ ଅତ୍ୟାବଶ୍ୟକ ଗଠନମୂଳକ ଆଭିମୁଖ୍ୟ । ବିଚ୍ଛିନ୍ନ ଓଡ଼ିଶାର ସଂଜ୍ଞା ପାଇଟି ଯାଇ ତେଣୁ ହେଉ ଅବିଚ୍ଛିନ୍ନ ବିଚ୍ଛିନ୍ନ ଓଡ଼ିଶା ।

*୨୦୦, ଖାରବେଳନଗର, ୟୁନିଟ ୩, ଭୁବନେଶ୍ୱର-୭୫୧୦୦୧*



# ଦେଶର ବିକାଶ ପାଇଁ ପ୍ରଶାସନର ଦାୟିତ୍ୱ

ଡକ୍ଟର ଲକ୍ଷ୍ମୀନାରାୟଣ କର

*ସ୍ୱାଧୀନୋତ୍ତର ଭାରତରେ ଆମ ନିକଟରେ ଆମ ସେବା ପାଇଁ ପ୍ରଶାସନ ସଜାଗ ରହିବାର ଯେଉଁ ବ୍ଲକ୍ (ମଣ୍ଡଳ) ଯୋଜନା କରାଯାଇଥିଲା, ତାହା ବ୍ୟର୍ଥ ହୋଇଛି କହିଲେ ଭୁଲ ହେବନାହିଁ। ବ୍ୟକ୍ତିର ସର୍ବନିମ୍ନ ଆବଶ୍ୟକତା (ରାସ୍ତାଘାଟ, ଜଳଯୋଗାଣ, ଶକ୍ତି, ସ୍ୱାସ୍ଥ୍ୟ ଓ ଶିକ୍ଷା ଆଦି) ପୂରଣ ସହିତ ଜୀବନଧାରଣର ମାନୋନ୍ନତି ହିଁ ତତ୍କାଳୀନ ଜନନାୟକଙ୍କମାନଙ୍କ କଳ୍ପନା ଥିଲା। ତାହାର ରୂପାୟନ ଲାଗି ଯେଉଁ ଗ୍ରାମ୍ୟ ଉନ୍ନୟନ ଯୋଜନା କରାଗଲା ବା ଗ୍ରାମଗୋଷ୍ଠୀ ଯୋଜନା ଆରମ୍ଭ ହେଲା, ସେଥିରେ ନିଯୁକ୍ତ ଅଧିକାରୀମାନେ ଜନତାର ସର୍ବାଙ୍ଗୀନ ଉନ୍ନତି ପ୍ରତି ଦୃଷ୍ଟିଦେବା ପରିବର୍ତ୍ତେ ନିଜର ତୁଷ୍ଟି ଓ ଆର୍ଥିକ ଅଭିବୃଦ୍ଧି ଦିଗରେ ଯତ୍ନବାନ୍ ହେବା ଫଳରେ ଓଡ଼ିଶାର ଆର୍ଥିକ ଦୁଃସ୍ଥିତି ବୃଦ୍ଧି ପାଇବା ସହିତ ଓଡ଼ିଶା ଅଧିକରୁ ଅଧିକ ପଛୁଆ ରାଜ୍ୟ ଭାବେ ସମଗ୍ର ଦେଶରେ ଅପଖ୍ୟାତି ଅର୍ଜନ କରିଛି ବୋଲି ଏହ ପ୍ରବନ୍ଧରେ ଉଲ୍ଲେଖ କରିଛନ୍ତି ରାଜ୍ୟର ଜଣେ କୃଷି ଅର୍ଥନୀତି ବିଶେଷଜ୍ଞ ଡକ୍ଟର ଲକ୍ଷ୍ମୀନାରାୟଣ କର.....*

ଆମର ପ୍ରଶାସନିକ ବ୍ୟବସ୍ଥା ଯେ ଜନସାଧାରଣଙ୍କ ସମସ୍ୟା ସମାଧାନ ଦିଗରେ ସଂବେଦନଶୀଳ ନୁହେଁ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ପ୍ରଶାସନ ଦାୟିତ୍ୱରେ ଥିବା ଓ ଉଚ୍ଚ ପଦବୀରେ ଅଧିଷ୍ଠିତ ଅଧିକାରୀମାନେ ନିଜ ପଦୋନ୍ନତି ଓ ଆର୍ଥିକ ଉନ୍ନତି ଦିଗରେ ଯେତିକି ବ୍ୟଗ୍ରତା ପ୍ରକାଶ କରିଥା'ନ୍ତି, ତାହାର ଏକଶତାଂଶ ଯଦି ଜନସାଧାରଣଙ୍କ ସମସ୍ୟା ସମାଧାନ ଦିଗରେ ବିନିଯୋଗ କରୁଥା'ନ୍ତେ, ତେବେ ଆମ ଦେଶ ଆଜି ଏପରି ଅନୁନ୍ନତ ଅବସ୍ଥାରେ ନ ଥା'ନ୍ତା । ଡାକ୍ତରଖାନାରେ ଡାକ୍ତରଙ୍କ ଅଭାବରୁ ରୋଗୀ ଚିକିତ୍ସାରେ ବ୍ୟାଘାତ । କଲେଜମାନଙ୍କରେ ଅଧ୍ୟାପକ ନ ଥିବାରୁ ଛାତ୍ରମାନଙ୍କ ରାସ୍ତାରୋକୋ, ଗ୍ରାମମାନଙ୍କୁ ରାସ୍ତା ନ ଥିବାରୁ ବ୍ଲକ ଅଫିସ ଘେରାଉ, ବିସ୍ଥାପିତମାନଙ୍କ ପୁନର୍ବସତି ସମସ୍ୟା କାରଣରୁ ଗଣ୍ଡଗୋଳ, ସରକାରୀ ବସ୍‌ଷ୍ଟାଣ୍ଡରେ ଶୋଚନୀୟ ଅବସ୍ଥା କରିବାରୁ ଯାତ୍ରୀ ହନ୍ତସନ୍ତ, କେବିକେ ଜିଲ୍ଲାରେ ଅନାହାରଜନିତ ମୃତ୍ୟୁ ସମ୍ବାଦ ପ୍ରଭୃତି ବିଷୟରେ ଯଦି ଆପଣ ବିଭାଗୀୟ ପ୍ରଶାସନିକ ଅଧିକାରୀମାନଙ୍କୁ ପଚାରିବେ, ଉତ୍ତର ମିଳିବ, "ଆମକୁ ଏ ବିଷୟରେ ସମ୍ବାଦ ମିଳିନାହିଁ; ବା କେହି ଆମ୍ଭ ନିକଟରେ ଅଭିଯୋଗ କରିନାହାନ୍ତି।" ଏହିସବୁ ଅଧିକାରୀମାନଙ୍କ ଅଧିନରେ ଶହଶହ କର୍ମଚାରୀ ଥିଲାବେଳେ ଓ ଏମାନଙ୍କୁ ଫୋନ, ଫାକ୍ସ, କମ୍ପ୍ୟୁଟର ପ୍ରଭୃତି ସୁବିଧା ଯୋଗାଇ ଦିଆଯାଇଥିବା ବେଳେ ଏମାନଙ୍କ ନିକଟରେ ଲୋକମାନଙ୍କ ସମସ୍ୟାର ସମ୍ବାଦ ନ ପହଞ୍ଚିବା ପାଇଁ ଦାୟୀ କିଏ ? ପ୍ରଧାନ ରାସ୍ତାମାନଙ୍କର ଶୋଚନୀୟ

ଅବସ୍ଥା ବିଷୟରେ ପଚାରିଲେ ମୁଖ୍ୟମନ୍ତ୍ରୀଙ୍କ ଠାରୁ ଉତ୍ତର ମିଳିବ, "ମତେ ତ କେହି ଏ ବିଷୟରେ କହିନାହିଁ ?" ଆଦିବାସୀ ଅଞ୍ଚଳରେ ପୁଷ୍ଟିକର ଖାଦ୍ୟ ଅଭାବରୁ ଶିଶୁମୃତ୍ୟୁ ସମ୍ବାଦ ପତ୍ରପତ୍ରିକାରେ ପ୍ରକାଶ ପାଉଥିଲେ ମଧ୍ୟ କଲେକ୍ଟରମାନେ ତାହା ଜାଣନ୍ତି ନାହିଁ ବୋଲି କହିଥା'ନ୍ତି । ସତେକି ଆମ ପ୍ରଶାସନ ବ୍ୟବସ୍ଥାରେ ଉଚ୍ଚଆସନରେ ବସିଥିବା ବରିଷ୍ଠ ଅଧିକାରୀମାନଙ୍କର ଜନସାଧାରଣଙ୍କ ସମସ୍ୟା ସମାଧାନ ଦିଗରେ ଯେପରି କୌଣସି ଦାୟିତ୍ୱ ନାହିଁ !

ଏହି ସ୍ତରର ଅଧିକାରୀମାନେ ଗ୍ରାମାଞ୍ଚଳକୁ ଯିବେ ନାହିଁ, ନିଜ ବିଭାଗ ଅଧୀନରେ କାର୍ଯ୍ୟକାରୀହେଉଥିବା ପ୍ରକଳ୍ପଗୁଡ଼ିକୁ ଦେଖିବେ ନାହିଁ, ନିଜ କର୍ମଚାରୀମାନଙ୍କଠାରୁ ସମ୍ବାଦ ସଂଗ୍ରହ କରିବେ ନାହିଁ; ବା ଲୋକମାନଙ୍କୁ ପଚାରି ସେମାନଙ୍କର ଅସୁବିଧା ବିଷୟରେ ବୁଝିବେ ନାହିଁ । ଯଦି ଆମର ପ୍ରଶାସନ ଏହିପରି ନିଜକୁ ଦାୟିତ୍ୱ ମୁକ୍ତ ଭାବରେ କାର୍ଯ୍ୟ କରେ, ତେବେ ଲୋକମାନଙ୍କ ସମସ୍ୟା ସମାଧାନ ହେବ କିପରି ? ଏ ଦିଗରେ ଆମର ମାନ୍ୟବର ମନ୍ତ୍ରୀ, ସାଂସଦ ଓ ବିଧାୟକମାନଙ୍କର ଭୂମିକା ମଧ୍ୟ ପ୍ରଶାସନିକ ଅଧିକାରୀମାନଙ୍କ ଠାରୁ ବିଶେଷ ଫରକ ନ ଥାଏ । ତେଣୁ ପ୍ରଶାସନ ଦାୟିତ୍ୱରେ ଥିବା ମାନ୍ୟବର ମନ୍ତ୍ରୀ ଓ ବରିଷ୍ଠ ଅଧିକାରୀମାନଙ୍କର ଯେତେବେଳ ପର୍ଯ୍ୟନ୍ତ ଲୋକମାନଙ୍କ ସମସ୍ୟା ଦିଗରେ ପ୍ରକୃତ ଆନ୍ତରିକତା ନ ଥିବ, ସେତେବେଳ ପର୍ଯ୍ୟନ୍ତ ଆମ ଦେଶ ଓ ରାଜ୍ୟ ଯେ ଅବହେଳିତ ଓ ଅନୁନ୍ନତ ହୋଇ ରହିବ, ଏଥିରେ ସଂଦେହ ନାହିଁ । ସ୍ୱାଧୀନତା ପ୍ରାପ୍ତିଠାରୁ ଆମ ଦେଶରେ ଅନେକ ଯୋଜନା ଓ ପ୍ରକଳ୍ପ କାର୍ଯ୍ୟକାରୀ ହୋଇଅଛି । ଶହଶହକୋଟି ଟଙ୍କା ବ୍ୟୟକରାଯାଇଅଛି ଏବଂ ହଜାର ହଜାର ଅଫିସର ଓ କର୍ମଚାରୀମାନଙ୍କୁ ନିଯୁକ୍ତି ଦିଆଯାଇଛି । ଯଦିଓ ନିଯୁକ୍ତି ପାଇଥିବା ସମସ୍ତ ଅଧିକାରୀଙ୍କର ଆର୍ଥିକ ଉନ୍ନତି ହୋଇଅଛି; କିନ୍ତୁ ଯେଉଁମାନଙ୍କ ପାଇଁ ସେମାନଙ୍କୁ ନିଯୁକ୍ତି ଦିଆଯାଇଅଛି, ସେମାନେ ଏବେ ବି ଅବହେଳିତ ହୋଇ ରହିଛନ୍ତି ଓ ଅଧିକାଂଶ ଦାରିଦ୍ର୍ୟ ସୀମାରେଖା ତଳେ ରହି ବଂଚିବା ପାଇଁ ସଂଘର୍ଷ କରୁଅଛନ୍ତି । ଏକ ସମୀକ୍ଷା ଅନୁସାରେ ଏବେ ବି ଭାରତରେ ୨୫କୋଟି ଲୋକ ରାତ୍ରିରେ ଖାଲିପେଟରେ ଶୋଉଛନ୍ତି, ୧୭କୋଟି ଲୋକ ବିଶୁଦ୍ଧ ପାନୀୟଜଳ ପାଇପାରୁ ନାହାନ୍ତି, ୨୯କୋଟି ଲୋକଙ୍କୁ ସର୍ବନିମ୍ନ ସ୍ୱାସ୍ଥ୍ୟସେବା ମିଳିପାରୁନାହିଁ ଓ ଏକଲକ୍ଷରୁ ଅଧିକ ଚାଷୀ ଋଣ ଶୁଝି ନ ପାରି ଆତ୍ମହତ୍ୟା କରିବାକୁ ବାଧ୍ୟ ହେଉଛନ୍ତି । ସରକାରୀ ରିପୋର୍ଟ୍ ଅନୁସାରେ ଭାରତରେ ୨୭ ପ୍ରତିଶତ ଲୋକ ଦାରିଦ୍ର୍ୟ ସୀମାରେଖା ତଳେ ଥିବାବେଳେ ଓଡ଼ିଶାରେ ୪୨ ପ୍ରତିଶତରୁ ଅଧିକ ଲୋକ ଦାରିଦ୍ର୍ୟ ସୀମାରେଖା ତଳେ ରହିଅଛନ୍ତି । ତେଣୁ ଏପରି ପରିସ୍ଥିତିରେ ଆମର ପ୍ରଶାସନ ଯଦି ଜନସାଧାରଣଙ୍କ ସମସ୍ୟା ପ୍ରତି ସଂବେଦନଶୀଳ ହୋଇ ତାହାର ସମାଧାନ ପାଇଁ କାର୍ଯ୍ୟ ନ କରେ, ତେବେ ଆମ ଦେଶର ପ୍ରଗତି ଯେ ବାଧାପ୍ରାପ୍ତ ହେବ, ଏଥିରେ କୌଣସି ସନ୍ଦେହ ନାହିଁ ।

**ସମାଧାନର ପନ୍ଥା :**

ଅତ୍ୟନ୍ତ ଦୁଃଖର କଥା, ସ୍ୱାଧୀନତାର ୬୨ ବର୍ଷ ପରେ ମଧ୍ୟ ଆମ ଦେଶରେ ଅନେକ ପଛୁଆ ଅଂଚଳ ଅଛି ବୋଲି ଆମ ସରକାର ସ୍ୱୀକାର କରି ତାହାର ବିକାଶ ପାଇଁ ସ୍ୱତନ୍ତ୍ର କାର୍ଯ୍ୟକ୍ରମର ଆବଶ୍ୟକତା ରହିଛି ବୋଲି ସ୍ୱୀକାର କରିଅଛନ୍ତି । ହଜାର ହଜାର ଗ୍ରାମ ସର୍ବନିମ୍ନ ସୁବିଧା ଯଥା– ରାସ୍ତା, ପୋଲ,

ବିଦ୍ୟୁତ୍, ପାନୀୟଜଳ, ଶିକ୍ଷା ତଥା ସ୍ୱାସ୍ଥ୍ୟସେବା ପାଇବାରୁ ବଂଚିତ ହୋଇଅଛି । ଆଦିବାସୀ ଅଂଚଳରେ ଏବେ ବି ଲୋକେ ପ୍ରାଚୀନ ପ୍ରସ୍ତର ଯୁଗର ଲୋକମାନଙ୍କ ପରି ଜୀବନ ନିର୍ବାହ କରୁଅଛନ୍ତି କହିଲେ ଅତ୍ୟୁକ୍ତି ହେବନାହିଁ; ବରଂ ଆଦିବାସୀ ଅଂଚଳରୁ ଅନାହାରଜନିତ ମୃତ୍ୟୁ ବା ପିଲାବିକ୍ରି ପରି ଦୁଃଖଦ ସମ୍ବାଦ ପ୍ରକାଶ ପାଉଅଛି । ସ୍ୱାଧୀନତା ପରେ ଦେଶରେ ଅନେକ ବିକାଶମୂଳକ କାର୍ଯ୍ୟ ହୋଇଥିଲେ ମଧ୍ୟ ସମସ୍ତ ଅଂଚଳରେ ସମାନ ଭାବରେ ବିକାଶ ହୋଇ ନ ଥିବାରୁ ଏ ପ୍ରକାରର ସମସ୍ୟା ଦେଖାଯାଉଅଛି। ନବମ ପାଞ୍ଚବର୍ଷୀୟ ଯୋଜନା ସମାପ୍ତ ପରେ ଦଶମ ପଞ୍ଚବର୍ଷୀୟ ଯୋଜନା କାର୍ଯ୍ୟକାରୀ ହେବାକୁ ଯାଉଥିବାବେଳେ ଗ୍ରାମ ସ୍ତରରୁ ଯୋଜନା ଆରମ୍ଭ କରିବା ପାଇଁ ଉଦ୍ୟମ ହୋଇନାହିଁ । ତେଣୁ ଦେଶରୁ ଏହି ଆଞ୍ଚଳିକ ବୈଷମ୍ୟ ଦୂରକରିବାକୁ ହେଲେ ଆମକୁ ଗ୍ରାମ୍ୟ ସ୍ତରରୁ ଯୋଜନା ପ୍ରଣୟନ କରି ତାହାକୁ ଅଗ୍ରାଧିକାର ଭିତ୍ତିରେ ଆନ୍ତରିକାର ସହିତ କାର୍ଯ୍ୟ କରିବାକୁ ହେବ । ଏହା ସହିତ ଆମ ପ୍ରଶାସନ ଦାୟିତ୍ୱରେ ଥିବା ସମସ୍ତ ଅଧିକାରୀମାନେ ଆନ୍ତରିକତାର ସହିତ କାର୍ଯ୍ୟ କରିବା ଆବଶ୍ୟକ ।

**ଯୋଜନାରେ କ'ଣ ରହିବା ଦରକାର**

୧ । ପ୍ରତ୍ୟେକ ଗ୍ରାମପଞ୍ଚାୟତ ଓ ବ୍ଲକ ପାଇଁ ଆବଶ୍ୟକ ଅନୁଯାୟୀ ଭିତ୍ତିଭୂମି ସୃଷ୍ଟି ଲାଗି ପ୍ରାଧାନ୍ୟ ଦିଆଯିବା ଆବଶ୍ୟକ । ଆବଶ୍ୟକ ଭିତ୍ତିଭୂମିର ଅଭାବରୁ ଆମର ଅନେକ ଗ୍ରାମାଞ୍ଚଳ, ବିଶେଷକରି ଆଦିବାସୀ ଅଂଚଳ ଏବେ ବି ଅତ୍ୟନ୍ତ ଅବହେଳିତ ଓ ଅନୁନ୍ନତ ଅବସ୍ଥାରେ ରହିଅଛି । ବିଶେଷକରି ରାସ୍ତା, ପୋଲ, ଜଳସେଚନ, ବିଦ୍ୟୁତ୍‌କରଣ ଯୋଗାଇ ଦେବା ପାଇଁ ବ୍ୟବସ୍ଥା ହେବା ଉଚିତ । ସ୍ୱାଧୀନତା ପରଠାରୁ ଯଦି ପ୍ରତି ବ୍ଲକରେ ପ୍ରତିବର୍ଷ ଗୋଟିଏ ଗୋଟିଏ ଗ୍ରାମକୁ ସର୍ବନିମ୍ନ ଭିତ୍ତିଭୂମି ଯୋଗାଇ ଦେବାପାଇଁ ଉଦ୍ୟମ ହୋଇଥା'ନ୍ତା, ତେବେ ଆମ ଦେଶ ଆଜି ଏତେ ଅନୁନ୍ନତ ଅବସ୍ଥାରେ ନ ଥା'ନ୍ତା ।

୨ । ଆର୍ଥିକ ଉନ୍ନତିପାଇଁ କାର୍ଯ୍ୟକ୍ରମ : ପ୍ରତ୍ୟେକ ପରିବାରର ଆର୍ଥିକ ଉନ୍ନତି ପାଇଁ ଏକ ସମନ୍ୱିତ ଯୋଜନା ମାଧ୍ୟମରେ ଉଦ୍ୟମ କରାଯିବା ଉଚିତ । ଲୋକମାନଙ୍କୁ ଚାଷ, ଗୋପାଳନ, ମାଛଚାଷ, ଉଦ୍ୟାନ, କୃଷି, କ୍ଷୁଦ୍ରଶିଳ୍ପ ପ୍ରଭୃତି ମାଧ୍ୟମରେ ରୋଜଗାର ବୃଦ୍ଧି କରିବା ପାଇଁ ସବୁ ପ୍ରକାରର ସାହାଯ୍ୟ କରାଯିବା ଉଚିତ । ବିଶେଷକରି ଗ୍ରାମର ସବୁଠାରୁ ଦରିଦ୍ର ପରିବାରମାନଙ୍କର ଯେପରି ରୋଜଗାର ବୃଦ୍ଧି ପାଇପାରିବ, ସେ ଦିଗରେ ସେମାନଙ୍କୁ ସ୍ୱତନ୍ତ୍ର ରୂପେ ସାହାଯ୍ୟ କରିବା ଆବଶ୍ୟକ। ଏପରି କରାଗଲେ ଅଳ୍ପ ହାର ବା ଅନାହାରଜନିତ ସମସ୍ୟା ସୃଷ୍ଟି ହେବନାହିଁ ।

**ଯୋଜନାକୁ କାର୍ଯ୍ୟକାରୀ କରାଇବାର ଦାୟିତ୍ୱ :**

ଆମ ପ୍ରଶାସନର ସବୁଠାରୁ ବଡ଼ ଦୁର୍ବଳତା ହେଲା ଯୋଜନାକୁ କାର୍ଯ୍ୟକାରୀ କରାଇବା ଦାୟିତ୍ୱରେ ଥିବା ବରିଷ୍ଠ ଅଧିକାରୀମାନଙ୍କର ଅନାଗ୍ରହ। ସେମାନଙ୍କର ଜାଣିବା ଦରକାର ଯେ ନଥିରେ ନିର୍ଦ୍ଦେଶ ଦେଇଦେଲେ ତାହା ସ୍ୱତଃ କାର୍ଯ୍ୟକାରୀ ହୁଏନାହିଁ । ସେଥିପାଇଁ ତଳସ୍ତରରୁ ଉପରସ୍ତର ପର୍ଯ୍ୟନ୍ତ ସମସ୍ତ କର୍ମଚାରୀଙ୍କୁ ଆନ୍ତରିକତାର ସହିତ କାର୍ଯ୍ୟ କରିବା ଦରକାର । ଯଦି ଗ୍ରାମସେବକ ଗ୍ରାମକୁ ଯିବେନାହିଁ, ଇଂଜିନିୟର ରାସ୍ତାର ଅବସ୍ଥା ଦେଖିବେ ନାହିଁ, ଡାକ୍ତରଖାନାରେ ଡାକ୍ତର ରହିବେ ନାହିଁ ବା ବସ୍ଖଣ୍ଡର ଅବସ୍ଥା ଦେଖିବାପାଇଁ କମିଶନର ବା ବିଭାଗୀୟ ସଚିବ ଯିବେନାହିଁ, ତେବେ ସମସ୍ୟା ସମାଧାନ ହେବ

କିପରି ? କଲେଜରେ ଆବଶ୍ୟକ ଅଧ୍ୟାପକ ନ ରହିଲେ ଶିକ୍ଷାଦାନ କିପରି ହେବ ? ତେଣୁ ଏହି ସମସ୍ୟାର ସମାଧାନ ପାଇଁ ଆମର ବରିଷ୍ଠ ଅଧିକାରୀ ଯଥା ବିଭାଗୀୟ ସଚିବ, କମିଶନର, ନିର୍ଦ୍ଦେଶକ, କଲେକ୍ଟର ଓ ଜିଲ୍ଲାସ୍ତରୀୟ ଅଧିକାରୀମାନଙ୍କୁ ସେମାନଙ୍କ ବିଭାଗ ଅଧୀନରେ କାର୍ଯ୍ୟକାରୀ ହେଉଥିବା କାର୍ଯ୍ୟର ସଫଳ ରୂପାୟନ ପାଇଁ ଦାୟିତ୍ୱ ନେବାକୁ ହେବ । ଯେଉଁମାନେ କର୍ତ୍ତବ୍ୟରେ ଅବହେଳା ପ୍ରଦର୍ଶନ କରିବେ, ସେମାନଙ୍କ ପ୍ରତି ଦଣ୍ଡବିଧାନର ବ୍ୟବସ୍ଥା ରହିବା ଉଚିତ । ଆମ ଦେଶ ତଥା ରାଜ୍ୟରେ ହଜାର ହଜାର ଗ୍ରାମ ଅଛି, ଯେଉଁଠାକୁ କଲେକ୍ଟର, ସଚିବ ତ ଦୂରର କଥା ବି.ଡି.ଓ.ମାନଙ୍କର ମଧ୍ୟ ପାଦ ପଡ଼ିନାହିଁ । ଯଦି ପ୍ରତ୍ୟେକ ବ୍ଲକର ବି.ଡି.ଓ. ପ୍ରତି ବ୍ଲକରେ ଥିବା ସମସ୍ତ ପଞ୍ଚାୟତ ଓ ଗ୍ରାମମାନଙ୍କୁ ନିୟମିତ ଗସ୍ତକରି ଲୋକମାନଙ୍କ ଅସୁବିଧା ଦେଖି ତାହାର ସମାଧାନ ପାଇଁ ଉଦ୍ୟମ କରୁଥା'ନ୍ତେ, ତେବେ ଆମର ଗ୍ରାମଞ୍ଚଳ ଆଦି ଏତେ ଅନୁନ୍ନତ ନ ଥା'ନ୍ତା କି ଦରିଦ୍ର ଲୋକେ ଅନାହାରରେ ମୃତ୍ୟୁବରଣ କରିବାର ସମ୍ବାଦ ପ୍ରକାଶ ପାଉ ନ'ଥାନ୍ତା ।

ତେଣୁ ଦେଶର ବିକାଶକୁ ତ୍ୱରାନ୍ୱିତ କରିବାକୁ ହେଲେ ଆମର ପ୍ରଶାସନିକ ବ୍ୟବସ୍ଥାକୁ ସଚଳ ତଥା କାର୍ଯ୍ୟକାରୀ କରିବାକୁ ହେବ । ବିଶେଷକରି ଆମର ସଚିବ, କମିଶନର, ନିର୍ଦ୍ଦେଶକ, ମୁଖ୍ୟ ଇଞ୍ଜିନିୟର ପ୍ରଭୃତି ଅଧିକାରୀ ଯଦି ବିଭିନ୍ନ ଯୋଜନା ପ୍ରକଳ୍ପ ଓ କାର୍ଯ୍ୟକ୍ରମର ସଫଳ ରୂପାୟନ ପାଇଁ ଟିକିଏ ଆଗ୍ରହ ପ୍ରକାଶ କରିବେ, ତେବେ ଅନେକ ସମସ୍ୟାର ସମାଧାନ ସହଜରେ ହୋଇପାରିବ। ସଚିବାଳୟରେ ସଚିବମାନଙ୍କର ଅଫିସରେ କମ୍ପ୍ୟୁଟର, ଫାକ୍ସ, ଇ-ମେଲ୍ ପ୍ରଭୃତି ଆଧୁନିକ ଯନ୍ତ୍ରପାତି ରହିଥିଲେ ମଧ୍ୟ ସେମାନେ ଯଦି ବିଭିନ୍ନ କାର୍ଯ୍ୟର ଅଗ୍ରଗତି ବିଷୟରେ ଅନୁଧ୍ୟାନ କରି ଉପୁଜୁଥିବା ସମସ୍ୟାର ସମାଧାନ ପାଇଁ ବ୍ୟକ୍ତିଗତ ଆଗ୍ରହ ପ୍ରକାଶ ନ କରିବେ, ତେବେ ଆମର ଦେଶର ବିକାଶ କେବେହେଲେ ହୋଇ ପାରିବନାହିଁ । ମୁଖ୍ୟମନ୍ତ୍ରୀଙ୍କ ବାରମ୍ବାର ନିର୍ଦ୍ଦେଶ ସତ୍ତ୍ୱେ ଆମର ସମ୍ମାନିତ ବିଭାଗୀୟ ସଚିବମାନେ ଜିଲ୍ଲା ଗସ୍ତକରି, ଲୋକମାନଙ୍କ ସମସ୍ୟା ବିଷୟରେ ରିପୋର୍ଟ ଦେବା ପାଇଁ କୁଣ୍ଠିତ ହେବା ନିଶ୍ଚୟ ଦୁଃଖଦାୟକ । ଆମ ଦେଶର ଲୋକେ ଯଦି ଆମ ଦେଶର ଉନ୍ନତି ପାଇଁ ଆଗ୍ରହ ନ କରିବେ, ତେବେ କ'ଣ ଆମେ ବିଦେଶରୁ ଆଣି ବିଭିନ୍ନ ବିଭାଗରେ ନିଯୁକ୍ତି ଦେବା ?

ଆଜିକାଲି ଲୋକମାନଙ୍କର ଗୋଟିଏ ଧାରଣା ହୋଇ ଯାଇଅଛି ଯେ ସରକାରୀ ପରିଚାଳିତ ଅନୁଷ୍ଠାନଗୁଡ଼ିକରେ ଭଲ କାମ ହେଉନାହିଁ। ତେଣୁ ସେମାନେ ଘରୋଇ ପରିଚାଳନାଧୀନ ସ୍କୁଲ, କଲେଜ, ଇଂଜିନିୟରିଙ୍ଗ କଲେଜ, ଡାକ୍ତରଖାନା, ପରିବହନ ବ୍ୟବସ୍ଥାକୁ ପସନ୍ଦ କରିଥା'ନ୍ତି । ଅତ୍ୟନ୍ତ ଦୁଃଖର କଥା, ଆମ ଶିକ୍ଷା ବିଭାଗ ଦାୟିତ୍ୱରେ ମନ୍ତ୍ରୀ, ସଚିବ, ନିର୍ଦ୍ଦେଶକ, ଇନ୍‌ସପେକ୍ଟର ପ୍ରଭୃତି ଅଧିକାରୀ ରହିଥିବାବେଳେ ସାରା ରାଜ୍ୟରେ ଗୋଟିଏ ମାତ୍ର ପ୍ରାଥମିକ ବିଦ୍ୟାଳୟ ବା ହାଇସ୍କୁଲ ବା କଲେଜ ଆଦର୍ଶ ଶିକ୍ଷାନୁଷ୍ଠାନର ମାନ୍ୟତା ପାଇ ପାରିଲା ନାହିଁ । ଖୋଦ ରାଜଧାନୀ ଭୁବନେଶ୍ୱରରେ ଡି.ଏ.ଭି. ସ୍କୁଲଗୁଡ଼ିକର ଆଦର ବଢୁଥିବାବେଳେ, ଏଠାରେ ଥିବା ଗୋଟିଏ ମାତ୍ର ହାଇସ୍କୁଲକୁ ଆଦର୍ଶ ସ୍କୁଲରେ ପରିଣତ କରାଯାଇପାରୁନାହିଁ ! ପରିବହନ ବିଭାଗ ଦାୟିତ୍ୱରେ ସଚିବ, କମିଶନର, ପରିଚାଳନା ନିର୍ଦ୍ଦେଶକ ପ୍ରଭୃତି ବରିଷ୍ଠ ଓ ଉଚ୍ଚ ବେତନପ୍ରାପ୍ତ ଅଫିସର ଥାଉଁ ଥାଉଁ, ଏହି ବିଭାଗ କ୍ଷତିରେ ଚାଲୁଥିବାବେଳେ ଏହାର ବସ୍

ସଂଖ୍ୟା ୬୦୦ରୁ ୨୦୦କୁ ହ୍ରାସ ପାଇବା ନିଶ୍ଚୟ ଦୁଃଖଦାୟକ; ଅଥଚ ଘରୋଇ ପରିବହନ ଅନୁଷ୍ଠାନ ଗୋଟିଏ ବସ କିଣି ଦୁଇତିନି ବର୍ଷରେ ସଂଖ୍ୟା ବୃଦ୍ଧି କରିବା ନିଶ୍ଚୟ ସେମାନଙ୍କ ବ୍ୟାବସାୟିକ ସଫଳତାର ପ୍ରମାଣ ଦେଇଥାଏ । ଆମ ରାଜ୍ୟରେ ଥିବା ୩୧୪ଟି ବ୍ଲକ ମଧ୍ୟରୁ କ'ଣ ଗୋଟିଏ ମାତ୍ର ବ୍ଲକକୁ ଏକ ଆଦର୍ଶ ବ୍ଲକରେ ପରିଣତ କରିବା ସମ୍ଭବପର ନୁହେଁ ? ନିଶ୍ଚୟ ସମ୍ଭବ । ଯଦି ଆମର ବିଭାଗୀୟ ସଚିବ, ନିର୍ଦ୍ଦେଶକ, ଜିଲାପାଳମାନେ ଗୋଟିଏ ଗୋଟିଏ ବ୍ଲକକୁ ପୋଷ୍ୟବ୍ଲକ୍ ରୂପେ ଗ୍ରହଣ କରି ଆନ୍ତରିକତାର ସହିତ କାର୍ଯ୍ୟ କରିବେ, ତେବେ ଗୋଟିଏ କାହିଁକି, ସବୁ ବ୍ଲକର ବିକାଶ ମଧ୍ୟ ତ୍ୱରାନ୍ୱିତ ହୋଇପାରିବ । ଭାରତ ସରକାର ପ୍ରତିବର୍ଷ ଅନେକ ଆଇ.ଏ.ଏସ୍. ଅଫିସରଙ୍କୁ ନିଯୁକ୍ତି ଦେଉଅଛନ୍ତି । କିନ୍ତୁ ସେମାନଙ୍କର ନିର୍ବାଚନ ଓ ତାଲିମ ବ୍ୟବସ୍ଥାରେ ବୋଧେ କିଛି ଦୁର୍ବଳତା ରହିଅଛି, ଯାହା ଫଳରେ କି ସେମାନେ ଜନସାଧାରଣଙ୍କ ସମସ୍ୟା ସମାଧାନ ଦିଗରେ ସଫଳ ହୋଇପାରୁନାହାନ୍ତି । ତେଣୁ ପ୍ରତ୍ୟେକ ସ୍ତରରେ କର୍ମଚାରୀ ବା ଅଧିକାରୀ ବାଛିବା ସମୟରେ କେବଳ ଶିକ୍ଷାଗତ ଯୋଗ୍ୟତାକୁ ବିଚାରକୁ ନ ନେଇ ଶିକ୍ଷା ସହିତ ସେମାନଙ୍କର ଜନସାଧାରଣଙ୍କ ସମସ୍ୟା ସମାଧାନର ଦକ୍ଷତାକୁ ବିଚାରକୁ ନେବା ଉଚିତ । ଆମର ଦୃଢ଼ ବିଶ୍ୱାସ, ଯଦି ସରକାରଙ୍କର ବିଭିନ୍ନ ବିଭାଗରେ କାର୍ଯ୍ୟ କରୁଥିବା ଅଧିକାରୀମାନେ ଅନ୍ତତଃ ଶତକଡ଼ା ୧୦ ପ୍ରତିଶତ ଆଗ୍ରହ ପ୍ରଦର୍ଶନ କରିବେ, ତେବେ ଦେଶର ପ୍ରଗତି ଯେ ତ୍ୱରାନ୍ୱିତ ହେବ, ଏଥିରେ ତିଳେମାତ୍ର ସଂଦେହ ନାହିଁ ।

**କାର୍ଯ୍ୟରେ ସମନ୍ୱୟ**

ସ୍ୱାଧୀନତା ପରେ ଗ୍ରାମାଞ୍ଚଳର ଉନ୍ନତି ପାଇଁ ଗ୍ରାମଗୋଷ୍ଠୀ ଯୋଜନା କାର୍ଯ୍ୟକାରୀ ହୋଇଥିଲା । ପ୍ରଶାସନିକ ଆବଶ୍ୟକତା ଦୃଷ୍ଟିରୁ ପ୍ରତ୍ୟେକ ଜିଲ୍ଲାକୁ କେତୋଟି ବ୍ଲକରେ ବିଭକ୍ତ କରାଯାଇ ପ୍ରତି ବ୍ଲକରେ ଜଣେ ବି.ଡି.ଓ ସହିତ କୃଷି, ପଶୁପାଳନ, ମତ୍ସ୍ୟଚାଷ, ସମବାୟ , ସମାଜ କଲ୍ୟାଣ, ଇଂଜିନିୟରିଙ୍ଗ ପ୍ରଭୃତି ସଂପ୍ରସାରଣ ଅଧିକାରୀମାନଙ୍କୁ ନିଯୁକ୍ତି ଦିଆଯାଇଥିଲା । ଏହାଦ୍ୱାରା ଅନେକ ଭଲ କାମ ହୋଇଥିଲା । କାଳକ୍ରମେ ବ୍ଲକ ଅନୁଷ୍ଠାନ ଉପରୁ ଗୁରୁତ୍ୱ ହ୍ରାସ କରାଯାଇ ଅନେକ ବିଭାଗ ସ୍ୱତନ୍ତ୍ର ଭାବେ କାର୍ଯ୍ୟ କରିବାକୁ ଉଚିତ ମନେକଲେ, ଫଳରେ ଲୋକମାନଙ୍କୁ ବିଭିନ୍ନ ଅଫିସମାନଙ୍କୁ ଦୌଡ଼ିବାକୁ ପଡ଼ିଲା । ତେଣୁ ସମସ୍ତ ପ୍ରକାରର ଉନ୍ନୟନ କାର୍ଯ୍ୟ ବ୍ଲକ ମାଧ୍ୟମରେ କରାଗଲେ ଏହା ଦ୍ୱାରା ବିଭିନ୍ନ ବିଭାଗ ମଧ୍ୟରେ ସମନ୍ୱୟ ରକ୍ଷା କରାଯାଇ ପାରିବ । ପୁନଶ୍ଚ ଆମର ପଞ୍ଚାୟତିରାଜ ବ୍ୟବସ୍ଥା ମାଧ୍ୟମରେ ପଞ୍ଚାୟତର କର୍ମକର୍ତ୍ତାମାନେ ମଧ୍ୟ ଏଥିରେ ସହଯୋଗ କରିପାରିବେ । ଆମେ ଜନସାଧାରଣଙ୍କ ସମସ୍ୟା ସମାଧାନ ପାଇଁ ଗୋଟିଏ ଝରକା (one window) କଥା କହୁଥିବା ବେଳେ ପ୍ରକୃତ କ୍ଷେତ୍ରରେ ତାହା ବ୍ଲକମାନଙ୍କଠାରୁ ଆରମ୍ଭ ହେବା ଉଚିତ ।

ଶେଷରେ ଆମର ନିବେଦନ – ଆମର ବରିଷ୍ଠ ଅଧିକାରୀମାନେ କ୍ଷମତା ଉପଭୋଗ କରିବା ସହିତ ଦାୟିତ୍ୱ ଗ୍ରହଣ କରନ୍ତୁ ଓ ଆନ୍ତରିକତାର ସହିତ ଜନସାଧାରଣଙ୍କ ସମସ୍ୟାର ସମାଧାନ ପାଇଁ ଉଦ୍ୟମ କରନ୍ତୁ । ଏହାଦ୍ୱାରା ଦେଶର ବିକାଶ ନିଶ୍ଚୟ ତ୍ୱରାନ୍ୱିତ ହେବ – ଏଥିରେ ସଂଦେହ ନାହିଁ ।

*ଅବସରପ୍ରାପ୍ତ ନିର୍ଦ୍ଦେଶକ ସଂପ୍ରସାରଣ ବିଭାଗ, କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ, ୨୫-ସୂର୍ଯ୍ୟନଗର, ଭୁବନେଶ୍ୱର*



# ପଶ୍ଚିମ ଓଡ଼ିଶା ବିକାଶ ପରିଷଦ ଓ ଆଞ୍ଚଳିକ ବୈଷମ୍ୟ ଦୂରୀକରଣ

ପ୍ରଫେସର ନିରଞ୍ଜନ ପଣ୍ଡା

*ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟରୁ ଜଣେ ଅଧ୍ୟାପକ ଭାବେ ଜୀବନ ଆରମ୍ଭ କରି ପ୍ରଫେସର ନିରଞ୍ଜନ ପଣ୍ଡା ନିଜର ଦକ୍ଷତା ଓ ନିଷ୍ଠା ବଳରେ ସମ୍ବଲପୁର ବିଶ୍ୱବିଦ୍ୟାଳୟର କୁଳପତି ପଦ ମଣ୍ଡନ କରିଥିଲେ । ଜଣେ କୃଷିବିଜ୍ଞାନୀ ଭାବେ, ବିଶେଷକରି ମୃତ୍ତିକା ବିଜ୍ଞାନରେ ତାଙ୍କର ଗବେଷଣା ଉଲ୍ଲେଖଯୋଗ୍ୟ । ଦୈନିକ ପ୍ରାତଃଭ୍ରମଣ ଏବଂ ଯୋଗ ଓ ବ୍ୟାୟାମ କରି ଏକ ଭିନ୍ନ ଶୈଳୀରେ ନିଜର ଜୀବନଚର୍ଯ୍ୟା କରୁଥିବା ଏହି ବ୍ୟକ୍ତିତ୍ୱ ସର୍ବଦା ସତ୍ୟ, ନିଷ୍ଠା ଓ ନିୟମାନୁବର୍ତ୍ତିତା ଉପରେ ଆଧାରଶୀଳ । ବର୍ତ୍ତମାନ ସେ ପଶ୍ଚିମ ଓଡ଼ିଶା ବିକାଶ ପରିଷଦର ଅଧ୍ୟକ୍ଷ ଅଛନ୍ତି । ଆମ୍ଭ ଅନୁରୋଧରେ ତାଙ୍କ ପ୍ରଦତ୍ତ ''ପଶ୍ଚିମ ଓଡ଼ିଶା ବିକାଶ ପରିଷଦ ଓ ଆଞ୍ଚଳିକ ବୈଷମ୍ୟ ଦୂରୀକରଣ' ପ୍ରବନ୍ଧଟି ଆପଣଙ୍କ ବିଶେଷ ଅବଗତି ପାଇଁ ଏଠାରେ ଉପସ୍ଥାପନ କରୁଛୁ.....*

ବିଂଶ ଶତାବ୍ଦୀର ଶେଷଭାଗରେ ୧୯୯୮ ମସିହାରେ ପ୍ରଥମେ ବରଗଡ଼, ବଲାଙ୍ଗୀର, ଦେବଗଡ଼, ଝାରସୁଗୁଡ଼ା, କଳାହାଣ୍ଡି, ନୂଆପଡ଼ା, ସମ୍ବଲପୁର, ସୋନପୁର ଓ ସୁନ୍ଦରଗଡ଼ ନଅଗୋଟି ଜିଲ୍ଲାକୁ ନେଇ ପଶ୍ଚିମ ଓଡ଼ିଶା ବିକାଶ ପରିଷଦ କାର୍ଯ୍ୟକାରୀ ହେଲା । ପରେ ୨୦୦୦ ମସିହାରେ ବିଧାୟକମାନଙ୍କର ଅସନ୍ତୋଷକୁ ସମ୍ମାନ ଜଣାଇ ନବୀନ ପଟ୍ଟନାୟକ ସରକାର ଏକ ନୂତନ ଅଧିନିୟମ ପ୍ରଣୟନ କଲେ । ଏଥିରେ ବୌଦ ଜିଲ୍ଲା ମଧ୍ୟ ଅନ୍ତର୍ଭୁକ୍ତ ହେଲା । ଅନୁଗୁଳ ଜିଲ୍ଲାର ଆଠମଲ୍ଲିକ ଉପଖଣ୍ଡ ପରିସରଭୁକ୍ତ ହେଲା ୨୦୦୩ ମସିହାର ସଂଶୋଧିତ ଆଇନ ବଳରେ । ପଶ୍ଚିମ ଓଡ଼ିଶା ବିକାଶ ପରିଷଦର ଉଦ୍ଦେଶ୍ୟ ହେଲା— ସଂପୃକ୍ତ ଅଞ୍ଚଳର ସାମାଜିକ, ଆର୍ଥିକ ଓ ସାଂସ୍କୃତିକ ଉନ୍ନତି ଓ ବିକାଶ ଦ୍ୱାରା ଆଞ୍ଚଳିକ ବୈଷମ୍ୟ ଦୂର କରିବା । ସଂଶୋଧିତ ଆଇନ ବଳରେ ୨୦୦୧-୦୨ ଆର୍ଥିକ ବର୍ଷରୁ ଏହି ଅନୁଷ୍ଠାନ ଓଡ଼ିଶା ସରକାରଙ୍କଠାରୁ ପ୍ରତି ବର୍ଷ ୫୦ କୋଟି ଟଙ୍କାର ଅନୁଦାନ ପାଉଥିଲା । କିନ୍ତୁ ୨୦୦୮-୦୯ ଆର୍ଥିକ ବର୍ଷରୁ ବିଭିନ୍ନ ବିକାଶମୂଳକ କାର୍ଯ୍ୟକୁ ତ୍ୱରାନ୍ୱିତ କରିବା ପାଇଁ ଅନୁଦାନକୁ ମୁଖ୍ୟମନ୍ତ୍ରୀ ଏକ ଶହ କୋଟି ଟଙ୍କାକୁ ବୃଦ୍ଧି କରିଛନ୍ତି । ଏବେ ଯେଉଁ କାମଚଳା ବଜେଟ୍ ପାସ୍ ହେଲା, ସେଥିରେ ମଧ୍ୟ ୨୦୦୯-୧୦ ଆର୍ଥିକ ବର୍ଷ ପାଇଁ ଏକଶହ କୋଟି ଟଙ୍କାର ବ୍ୟବସ୍ଥା ହୋଇଛି । ୨୦୦୦-୦୧ ବର୍ଷରେ ତିରିଶ କୋଟି ଟଙ୍କା ଓ ୧୯୯୯-୨୦୦୦ ବର୍ଷରେ ତିନିକୋଟି ପଚାଶ ଲକ୍ଷ ଟଙ୍କାର ଅନୁଦାନ ରାଶି ମିଳିଥିଲା ।

ଆଇନ ଅନୁସାରେ ପଶ୍ଚିମ ଓଡ଼ିଶା ବିକାଶ ପରିଷଦର ପରିଚାଳନା ଭାର ଏକ ପରିଷଦ (କମିଟି) ଉପରେ ନ୍ୟସ୍ତ ଅଛି । ସେହି କମିଟିରେ ଅଧ୍ୟକ୍ଷଙ୍କ ବ୍ୟତୀତ ପ୍ରତ୍ୟେକ ଜିଲ୍ଲାରୁ ଅନ୍ୟୁନ ଜଣେ ବିଧାୟକ

ହିସାବରେ ୧୧ ଜଣ ବିଧାୟକ, ଦୁଇ ଜଣ ସାଂସଦ (ଲୋକସଭା କିମ୍ବା ରାଜ୍ୟସଭା), ଉତ୍ତରାଞ୍ଚଳ ରାଜସ୍ୱ କମିଶନର, ସମ୍ବଲପୁର ଓ ପରିଷଦର ମୁଖ୍ୟ କାର୍ଯ୍ୟନିର୍ବାହୀ ଅଧିକାରୀ ସଭ୍ୟ ଅଛନ୍ତି, ଯିଏ କି ପରିଷଦର ସଂପାଦକ ହିସାବରେ କାର୍ଯ୍ୟ କରନ୍ତି । ଏତଦ୍‌ବ୍ୟତୀତ ବିଭିନ୍ନ ବୈଷୟିକ ଜ୍ଞାନସଂପନ୍ନ ଯଥା – ଶିକ୍ଷା, ପ୍ରଶାସନ, ବିତ୍ତ ପରିଚାଳନା ଇତ୍ୟାଦି ବିଷୟରେ ଜ୍ଞାନ ଥିବା ବିଶେଷଜ୍ଞ ସଭ୍ୟ ୧୦ ଜଣ ଅଛନ୍ତି । ସାଧାରଣ ଭାବରେ ପରିଷଦର ତିନି ମାସ ବ୍ୟବଧାନରେ ବର୍ଷକୁ ଚାରିଥର ବୈଠକ ବସେ । ବିଧାନସଭାର ପୂର୍ଣ୍ଣାଙ୍ଗ ବଜେଟ୍ ଅଧିବେଶନ ଓ ଅନୁପୂରକ (ସପ୍ଲିମେଣ୍ଟାରୀ) ବଜେଟ୍ ଅଧିବେଶନ ପୂର୍ବରୁ ପଶ୍ଚିମ ଓଡ଼ିଶା ବିକାଶ ପରିଷଦର ବଜେଟ୍ ପ୍ରସ୍ତାବ ଆଲୋଚନା ହୋଇ ନିର୍ଦ୍ଧାରିତ ହୁଏ । ଅନୁଦାନ ରାଶିର ଅଟକଳ ବିଭିନ୍ନ ଯୋଜନା ପ୍ରସ୍ତାବ ମାଧ୍ୟମରେ ନିର୍ଦ୍ଧାରିତ ହୋଇଥାଏ । ପ୍ରକଳ୍ପଗୁଡ଼ିକର ରୂପରେଖ ସହିତ ଅନୁମୋଦିତ ଖର୍ଚ୍ଚ ଅଟକଳ ପ୍ରସ୍ତାବ ସାଧାରଣତଃ ୨୦୦୬ ପୂର୍ବରୁ ବିଧାୟକ ଓ ସାଂସଦମାନଙ୍କ ମାଧ୍ୟମରେ ଆସୁଥିଲା । ଏକ ଅଣ-ରାଜନୈତିକ ବ୍ୟକ୍ତି ପରିଷଦର ଅଧ୍ୟକ୍ଷ ହେବା ପରେ ଅଗଷ୍ଟ ୨୦୦୬ରୁ ପରିଷଦ ଅଞ୍ଚଳର ଯେକୌଣସି ନାଗରିକ, ଏପରିକି ଜଣେ କୃଷକ ମଧ୍ୟ ପରିଷଦର ବିଚାର ପାଇଁ ବିଭିନ୍ନ ପ୍ରସ୍ତାବ ପଠାଇପାରୁଛନ୍ତି । ସାଧାରଣ ଭାବରେ ସମସ୍ତ ପ୍ରସ୍ତାବ ପ୍ରତ୍ୟେକ ଜିଲ୍ଲାର ଜିଲ୍ଲାପାଳଙ୍କ ଜରିଆରେ ଆସୁଛି । ପରିଷଦ ଦ୍ୱାରା ପ୍ରସ୍ତୁତ ହୋଇଥିବା ଆନୁମାନିକ ଖର୍ଚ୍ଚ ଅଟକଳ ସହିତ ପ୍ରକଳ୍ପ ପ୍ରସ୍ତାବ ବିଧାନସଭା ଦ୍ୱାରା ଅନୁମୋଦିତ ହେଲା ପରେ ବିଭିନ୍ନ ପ୍ରକଳ୍ପ ପାଇଁ ଯୋଜନା ଓ ଖର୍ଚ୍ଚ ଅଟକଳ ପ୍ରସ୍ତୁତ ନିମିତ୍ତ ଜିଲ୍ଲାପାଳମାନଙ୍କ ମାଧ୍ୟମରେ ବିଭିନ୍ନ ସଂସ୍ଥାକୁ ଅନୁରୋଧ ପତ୍ର ପଠାଯାଏ । ବିଭିନ୍ନ ପ୍ରକଳ୍ପ ପାଇଁ ଯୋଜନା ଓ ଖର୍ଚ୍ଚ ଅଟକଳ ପ୍ରସ୍ତୁତ ହୋଇ ବୈଷୟିକ ଅନୁମୋଦନ ପ୍ରାପ୍ତି ପରେ ପରିଷଦର କାର୍ଯ୍ୟାଳୟରେ ତାହା ପରୀକ୍ଷାନିରୀକ୍ଷା ଓ ଧର୍ଭିଶେଷରେ ସଂଶୋଧିତ ଆକାରରେ ପ୍ରଶାସନିକ ଅନୁମୋଦନ ଲାଭ କରେ । ପ୍ରଶାସନିକ ଅନୁମୋଦନ ଲାଭ କଲା ପରେ ଖର୍ଚ୍ଚ ଅଟକଳ ଆର୍ଥିକ ରାଶି ଜିଲ୍ଲାପାଳମାନଙ୍କ ପାଖକୁ ପଠାଯାଏ ।

ସାଧାରଣ ଭାବରେ ଯେଉଁ ସଂସ୍ଥା ପ୍ରକଳ୍ପର ନକ୍ସା ଓ ଖର୍ଚ୍ଚ ଅଟକଳ ପ୍ରସ୍ତୁତ କରିଥା'ନ୍ତି, ସେହି ସଂସ୍ଥା ହିଁ ପ୍ରକଳ୍ପକୁ କାର୍ଯ୍ୟକାରୀ କରିଥା'ନ୍ତି । ପଶ୍ଚିମ ଓଡ଼ିଶା ବିକାଶ ପରିଷଦ କୌଣସି ପ୍ରକଳ୍ପକୁ ନିଜେ ସଂପାଦନ କରେ ନାହିଁ । ଏଥିପାଇଁ ରାଜ୍ୟ ସରକାରଙ୍କର ବିଭିନ୍ନ ବିଭାଗ ଉପରେ କାର୍ଯ୍ୟ ସଂପାଦନ ଭାର ନ୍ୟସ୍ତ କରାଯାଏ । ଯଥା; ପୂର୍ତ୍ତ ବିଭାଗ, ଗ୍ରାମ୍ୟ ଉନ୍ନୟନ ବିଭାଗ, ଜଳସଂପଦ ବିଭାଗ (କ୍ଷୁଦ୍ର ଜଳସେଚନ, ଓଡ଼ିଶା ଉଠାଜଳ ସେଚନ ନିଗମ, ଓଡ଼ିଶା କୃଷି ଶିଳ୍ପ ନିଗମ, ବନ୍ୟା ନିୟନ୍ତ୍ରଣ ସଂସ୍ଥା), ଜନସ୍ୱାସ୍ଥ୍ୟ ବିଭାଗ (ଗ୍ରାମ୍ୟ ପାନୀୟ ଜଳ ଯୋଗାଣ), ପଞ୍ଚାୟତରାଜ ବିଭାଗ, ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗ, ନଗର ଉନ୍ନୟନ ବିଭାଗ (ପୌର ପରିଷଦ, ବିଜ୍ଞାପିତ ପରିଷଦ ଅଞ୍ଚଳ), ଶକ୍ତି ବିଭାଗ (ବିଦ୍ୟୁତକରଣ) । ପଞ୍ଚାୟତରାଜ ବିଭାଗ ବ୍ୟତୀତ ଅନ୍ୟାନ୍ୟ ବିଭାଗ ଗୁଡ଼ିକ ପ୍ରତ୍ୟେକ ପ୍ରକଳ୍ପର ଖର୍ଚ୍ଚ ଅଟକଳରେ ପ୍ରସ୍ତୁତି ସମୟରେ ପ୍ରାୟ୍ ୧୯ ପ୍ରତିଶତ ଅର୍ଥ ଅଧିକ ଯୋଡ଼ିଥା'ନ୍ତି ପ୍ରୋରାଟା ହିସାବରେ, ଯାହାର କି କୌଣସି ଯଥାର୍ଥତା ନାହିଁ । ପଶ୍ଚିମ ଓଡ଼ିଶା ବିକାଶ ପରିଷଦର ପ୍ରତିଷ୍ଠା ବିଷୟରେ ଅନୁଧ୍ୟାନ କଲେ ଜାଣିହେବ ଏହା ଆଞ୍ଚଳିକ ବୈଷମ୍ୟ ଦୂର କରିବା ପାଇଁ ଉଦିଷ୍ଟ । ପଶ୍ଚିମ ଓଡ଼ିଶାର ବିଭିନ୍ନ ନିର୍ବାଚନମଣ୍ଡଳୀର

ବିଧାୟକମାନଙ୍କ ପାଇଁ ବାର୍ଷିକ ୭୫ ଲକ୍ଷ ଟଙ୍କା ଓ ସାଂସଦମାନଙ୍କ ପାଇଁ ବାର୍ଷିକ ଦୁଇକୋଟି ଟଙ୍କାର ପାଣ୍ଠି ଅଛି; ଯାହାକି ନିଜ ଅଞ୍ଚଳର ଉନ୍ନତିମୂଳକ କାର୍ଯ୍ୟ ପାଇଁ ଉଦ୍ଦିଷ୍ଟ। ଏଥିପାଇଁ ବିଧାୟକ ଓ ସାଂସଦମାନେ ସ୍ୱଇଚ୍ଛାରେ ଅର୍ଥ ମଞ୍ଜୁର କରିଥା'ନ୍ତି ଓ ଏହି କାର୍ଯ୍ୟଗୁଡ଼ିକ ସରକାରଙ୍କର ବିଭିନ୍ନ ଉନ୍ନୟନ ବିଭାଗ ଦ୍ୱାରା ସଂପାଦିତ ହୁଏ। ସେହି କାର୍ଯ୍ୟ ପାଇଁ କୌଣସି ପ୍ରୋରାଟା ଲାଗେ ନାହିଁ।

କୌଣସି ଏକ ପ୍ରକଳ୍ପ ପ୍ରସ୍ତାବ ଅନୁମୋଦିତ ହୋଇ ସେଥିପାଇଁ ଅର୍ଥ ପୈଠ ହେବା ପର୍ଯ୍ୟନ୍ତ ସେହି ପ୍ରକଳ୍ପ ପାଇଁ ବ୍ୟକ୍ତିବିଶେଷ, କୌଣସି ଗୋଷ୍ଠୀ, ବିଧାୟକ, ପରିଷଦର ସଭ୍ୟ— ସମସ୍ତେ ତତ୍ପରତା ପ୍ରକାଶ କରନ୍ତି ଓ ସେଥିପାଇଁ ଅଧ୍ୟକ୍ଷ ଓ ମୁଖ୍ୟ କାର୍ଯ୍ୟନିର୍ବାହୀ ଅଧିକାରୀଙ୍କୁ ଏକ ରକମର ଚାପ ପ୍ରୟୋଗ କରିଥା'ନ୍ତି; କିନ୍ତୁ ଅନୁମୋଦନ ପରେ ସେ କାର୍ଯ୍ୟ ସମ୍ବନ୍ଧରେ ସେମାନେ ଚିନ୍ତା ତ ଦୂରର କଥା, କାର୍ଯ୍ୟ ସଂପାଦନ କରୁଥିବା ସଂସ୍ଥା ସହିତ କୌଣସି ସଂପର୍କ ମଧ୍ୟ ସ୍ଥାପନ କରନ୍ତି ନାହିଁ। କୌଣସି ନିୟମ ବହିର୍ଭୂତ କାର୍ଯ୍ୟକରି ଯଥା— ପ୍ରକଳ୍ପର କଳେବର ବଢ଼ାଇବା, ଅତ୍ୟଧିକ ଖର୍ଚ୍ଚ ବୃଦ୍ଧି କରିବା କିମ୍ବା ସେ ନିର୍ମାଣରେ କାଳକ୍ଷେପଣ ନୀତି ଯୋଗୁଁ ଯେତେବେଳେ ଯୋଜନାଟି ଅସଂପୂର୍ଣ୍ଣ ଭାବେ ରହିଥାଏ, ସେତେବେଳେ ବ୍ୟକ୍ତିବିଶେଷଙ୍କ ତତ୍ପରତା ପୁଣି ଦେଖିବାକୁ ମିଳିଥାଏ, ଏବଂ କେତେକ ବ୍ୟକ୍ତି ନିର୍ମାଣ କାର୍ଯ୍ୟ ପାଇଁ ବ୍ୟସ୍ତତା ଦେଖାଇ କୌଣସି ପ୍ରକାରେ ଅନୁମୋଦନ କରାଇଥା'ନ୍ତି। ଏହି କାରଣ ଯୋଗୁ କେତୋଟି ପ୍ରକଳ୍ପ ଅସଂପୂର୍ଣ୍ଣ ଭାବରେ ରହିଛି, କେତୋଟି ସଂପୂର୍ଣ୍ଣ ସମାପ୍ତି ଆଖ୍ୟା ପାଇଥିଲେ ମଧ୍ୟ କାର୍ଯ୍ୟକ୍ଷମ ହୋଇନାହିଁ। ପ୍ରକୃତରେ ଏତେ ଅର୍ଥ ବ୍ୟୟ ହୋଇ ସୁଦ୍ଧା ଆଞ୍ଚଳିକ ବୈଷମ୍ୟ କେତେ ଯେ ଦୂର ହୋଇଛି, ଏହା ବର୍ତ୍ତମାନ ଆକଳନ କରିବା କଷ୍ଟକର। ଏହି ସଂକ୍ଷିପ୍ତ ପ୍ରବନ୍ଧର ଲେଖକଙ୍କ ମତରେ କାମଚଳା ଭାବରେ ଅନେକ ପ୍ରକଳ୍ପ ନିର୍ମାଣ ହୋଇ ବିକାଶ ଦିଗରେ ସାହାଯ୍ୟ କରିଛି ସତ; କିନ୍ତୁ କେତେ ପରିମାଣରେ ଆଞ୍ଚଳିକ ବୈଷମ୍ୟ ଦୂର ହୋଇଛି ନିର୍ଦ୍ଧାରଣ କରିବା କଷ୍ଟକର ବ୍ୟାପାର। କାରଣ ପରିପ୍ରେକ୍ଷୀ ଯୋଜନା (Prospective plan) ଭାବରେ କୌଣସି ନିର୍ମାଣ ସଂପାଦିତ ହୋଇପାରିନାହିଁ। ପଶ୍ଚିମ ଓଡ଼ିଶା ବିକାଶ ପରିଷଦର ଅଧୀନରେ ଥିବା ୮୯ଗୋଟି ବ୍ଲକ୍ ମଧ୍ୟରୁ ୩୪ ଗୋଟି ବ୍ଲକ୍ ଅତି ପଛୁଆ ଓ ବିକାଶ ଦିଗରେ ଏଗୁଡ଼ିକର ସ୍ଥାନ ଅତି ନିମ୍ନରେ ବୋଲି ନିର୍ଦ୍ଧାରିତ ହୋଇଛି। ଏହି ସୂଚନା ୧୯୯୨ ମସିହାର ସତ୍ପେଇ କମିଟି ରିପୋର୍ଟରୁ ମିଳେ। ବିକାଶ ପରିଷଦର ପ୍ରଚେଷ୍ଟାରେ ପଶ୍ଚିମ ଓଡ଼ିଶାର କେତେକ ପରିମାଣରେ ବିକାଶ ନିଶ୍ଚିତ ଭାବରେ ହୋଇଛି ସତ; କିନ୍ତୁ ଆଞ୍ଚଳିକ ବୈଷମ୍ୟ ଦୂର ହୋଇଥିବାର ମନେହୁଏନାହିଁ। କାରଣ ସେ ଦିଗରେ ଆଗ୍ରହ ପ୍ରକାଶ ପାଇଲେ ମଧ୍ୟ କାର୍ଯ୍ୟକାରୀ ହୋଇପାରୁନାହିଁ। ପରିଷଦର ସଭ୍ୟ ଥିବା ବିଧାୟକମାନଙ୍କର ଅଭିମତ ହେଲା ଯେ, ସମଗ୍ର ପଶ୍ଚିମ ଓଡ଼ିଶା ପଛୁଆ ହୋଇଥିବା ଦୃଷ୍ଟିରୁ ସବୁ ବ୍ଲକ୍‌କୁ ଉନ୍ନୟନ ପାଇଁ ଏକ ନଜରରେ ଦେଖାଯିବା ଉଚିତ।

ଲେଖକଙ୍କ ଆଉ ଏକ ଅନୁଭବ ହେଲା, ପଶ୍ଚିମ ଓଡ଼ିଶା ବିକାଶ ପରିଷଦ ପରିସର ମଧ୍ୟରେ ଥିବା ୪୦ଗୋଟି ବିଧାନସଭା ନିର୍ବାଚନମଣ୍ଡଳୀ ମଧ୍ୟରେ ଅନୁଦାନ ଅର୍ଥ ଯଥାର୍ଥ ଅନୁପାତରେ ବିନିଯୋଗ ହୋଇପାରିନାହିଁ। ଆଞ୍ଚଳିକ ବୈଷମ୍ୟ କିମ୍ବା ସାମାଜିକ ବୈଷମ୍ୟ ହେଉ କୌଣସି ପ୍ରକାର ଯୁକ୍ତିକୁ ସମ୍ମାନ ଦିଆଯାଇପାରିନାହିଁ। , ଯଦି ବିଭିନ୍ନ ନିର୍ବାଚନମଣ୍ଡଳୀର ବିଧାୟକମାନେ ମୋଟାମୋଟି ଭାବରେ ଉନ୍ନୟନ

କାର୍ଯ୍ୟ ପାଇଁ ନିଜର ନିର୍ବାଚନମଣ୍ଡଳୀ କଥା ବିଚାର କରନ୍ତେ, ତାହାର କିଛି ଯଥାର୍ଥତା ଥିବାର ମନେହୁଅନ୍ତା; କିନ୍ତୁ କେତେକ ବିଧାୟକ ଓ ସାଂସଦ ଆପଣାର ପ୍ରସ୍ତାବ ଉପରେ ଜୋର ଦେବା ଛଡ଼ା ଅନ୍ୟ ଦିଗ ପ୍ରତି ଦୃଷ୍ଟି ଦିଅନ୍ତି ନାହିଁ । ଗାଁ'ଗଣ୍ଡାର ସାଧାରଣ ନାଗରିକଠାରୁ ଆରମ୍ଭ କରି ସହରାଞ୍ଚଳରେ ବାସ କରୁଥିବା ଲୋକଙ୍କ ମତରେ, ଶିକ୍ଷାର ଉନ୍ନତି ପାଇଁ ବିଦ୍ୟାଳୟ ଓ ମହାବିଦ୍ୟାଳୟ ଭିତ୍ତିଭୂମିର ବିକାଶ ନିତାନ୍ତ ଆବଶ୍ୟକ । ଜଣେ ସାଧାରଣ ନାଗରିକ ଅନୁଭବ କରେ ଯେ, ଶିକ୍ଷାର ଉନ୍ନତି ବିନା ସଚେତନତା ଅସମ୍ଭବ, ସଚେତନତା ବିନା ଯେ କୌଣସି ଆନ୍ଦୋଳନ ନିଷ୍ଫଳ ଓ ଆନ୍ଦୋଳନ ବିନା ବିକାଶ ଅସମ୍ଭବ ।

ଶିକ୍ଷାକ୍ଷେତ୍ରରେ ଭିତ୍ତିଭୂମିର ବିକାଶ ପାଇଁ ପଶ୍ଚିମ ଓଡ଼ିଶା ବିକାଶ ପରିଷଦ ଜୋର୍ ଦେଉଛି । ଅଷ୍ଟମ, ନବମ ଓ ଦଶମ ଶ୍ରେଣୀ ବିଶିଷ୍ଟ ଉଚ୍ଚ ବିଦ୍ୟାଳୟଗୁଡ଼ିକର ଅବସ୍ଥା ଭିତ୍ତିଦୃଷ୍ଟିରୁ ଅତି ଶୋଚନୀୟ । ପ୍ରାଥମିକ ଓ ଉଚ୍ଚ ପ୍ରାଥମିକ ବିଦ୍ୟାଳୟଗୁଡ଼ିକ ବିଷୟରେ ସର୍ବଶିକ୍ଷା ଅଭିଯାନ କିମ୍ବା ଜିଲ୍ଲା ପ୍ରାଥମିକ ଶିକ୍ଷା ମଣ୍ଡଳ ବୁଝୁଛନ୍ତି । ତଥାପି ସେଗୁଡ଼ିକରେ ଶ୍ରେଣୀ କୋଠରୀ, ବିଜ୍ଞାନାଗାର, ପାଠାଗାର, ବାଳିକାମାନଙ୍କ ପାଇଁ ବିଶ୍ରାମାଗାର, ପରିସ୍ରାଗାର ନାହିଁ । ଏହିପରି ଅଭାବ ସାଧାରଣ ଭାବରେ ପରିଲକ୍ଷିତ ହୁଏ । ତା'ସାଙ୍ଗକୁ ଶ୍ରେଣୀଗୃହରେ ବସିବା ପାଇଁ ବେଞ୍ଚ ଓ ଡେସ୍କର ଅଭାବ ଅତି ଦୁଃଖର କଥା । ପଶ୍ଚିମ ଓଡ଼ିଶା ବିକାଶ ପରିଷଦ କିଞ୍ଚିତ ପରିମାଣରେ ଅଭାବ ମେଣ୍ଟାଇବା ପାଇଁ ସକ୍ଷମ ହୋଇଛି ।

ବିକାଶ ଉଦ୍ଦେଶ୍ୟରେ ଯୋଜନାଗୁଡ଼ିକ କାର୍ଯ୍ୟକାରୀ କରିବା ପାଇଁ ପ୍ରସ୍ତାବସବୁ କିପରି ଆସେ, କେଉଁଠାରୁ ଆସେ, କାହା ମାଧ୍ୟମରେ ଆସେ —ସେ ବିଷୟରେ ସମ୍ୟକ୍ ସୂଚନା ପରେ ଏବେ ଦେଖିବା ଖର୍ଚ୍ଚ ଅଟକଳ ପ୍ରଶାସନିକ ମଞ୍ଜୁରୀ ପାଇସାରିଲା ପରେ କିପରି କାର୍ଯ୍ୟକାରୀ ହୁଏ । ଦୁଃଖର ସହିତ କହିବାକୁ ହେଉଛି ଯେ ବିଦ୍ୟାଳୟଗୁଡ଼ିକର ଦୁଇଗୋଟି ଅତିରିକ୍ତ ଶ୍ରେଣୀ କୋଠରୀର ନକ୍ସା ଓ ଖର୍ଚ୍ଚ ଅଟକଳ ପ୍ରସ୍ତୁତ କରିବା ପାଇଁ ଗୋଷ୍ଠୀ ଉନ୍ନୟନ ଅଧିକାରୀମାନେ ବର୍ଷ ବର୍ଷ ସମୟ ନେଇ ଯାଉଛନ୍ତି । ତା'ପରେ ସେଗୁଡ଼ିକ କାର୍ଯ୍ୟକାରୀ କରିବାରେ ତାଙ୍କର ମୋଟେ ଆଗ୍ରହ ନାହିଁ । ସେହିପରି ଅନ୍ୟାନ୍ୟ ଯୋଜନାଗୁଡ଼ିକ କାର୍ଯ୍ୟକାରୀ କରିବାରେ ବିଭିନ୍ନ ସଂସ୍ଥା ଅନେକ ସମୟ ଆବଶ୍ୟକ କରୁଛନ୍ତି । କାର୍ଯ୍ୟ ଆରମ୍ଭ କରି ଅସମ୍ପୂର୍ଣ୍ଣ ଅବସ୍ଥାରେ ଛାଡ଼ି ଦେଉଛନ୍ତି ଓ ସେଥିପାଇଁ ଆଉ ଭ୍ରୂକ୍ଷେପ ନାହିଁ । ଏସବୁ କାର୍ଯ୍ୟର ତଦାରଖରେ କାହାରି ଆନ୍ତରିକତା ନାହିଁ । ଯୋଜନା ଓ ଖର୍ଚ୍ଚ ଅଟକଳ ଜିଲ୍ଲାପାଳଙ୍କ କରିଆରେ ଯୋଜନା ବିଭାଗ କାର୍ଯ୍ୟଳୟ ମାଧ୍ୟମରେ ଆସିଲାବେଳେ କେହି ତାହାକୁ ତନଖି କରୁନାହାନ୍ତି । ଅନେକ ସମୟରେ ଖର୍ଚ୍ଚ ଅଟକଳ ଏତେ ତ୍ରୁଟିପୂର୍ଣ୍ଣ ରହୁଛି ଯେ, ତାହାକୁ ଗ୍ରହଣ କରିବା କଷ୍ଟକର ବ୍ୟାପାର । ପଶ୍ଚିମ ଓଡ଼ିଶା ବିକାଶ ପରିଷଦ ଦ୍ୱାରା ଅନୁମୋଦିତ ହୋଇଥିବା କୌଣସି ଯୋଜନା କାର୍ଯ୍ୟକାରୀ କରିବାରେ କେହି ଆଗ୍ରହୀ ନୁହଁନ୍ତି ।

ଏକ ଅବସରପ୍ରାପ୍ତ ଜିଲ୍ଲା ଗ୍ରାମୀଣ ଉନ୍ନୟନ ସଂସ୍ଥାର ନିର୍ବାହୀ ଯନ୍ତ୍ରୀ କହୁଥିଲେ ଯେ, ପଶ୍ଚିମ ଓଡ଼ିଶା ବିକାଶ ପରିଷଦର କାର୍ଯ୍ୟକୁ ମୋଟେ ଗୁରୁତ୍ୱ ଦିଆଯାଏ ନାହିଁ । ଜଳସେଚନ ପାଇଁ ଚେକ ଡ୍ୟାମ, କ୍ରସ ବନ୍ଧ, ଉଠା ଜଳସେଚନ ପ୍ରକଳ୍ପ, ବନ୍ଧ ଓ କଟାର ମରାମତି ଓ ପୁନରୁଦ୍ଧାର, ଜଳଅମଳ ପ୍ରକଳ୍ପ ନିର୍ମାଣ ଓ ଖନନ, ପକ୍କା କେନାଲ ନିର୍ମାଣ ଇତ୍ୟାଦି ପାଇଁ ଆଗ୍ରହ ପ୍ରକାଶ କରିବା ସହିତ ଏସବୁ କୃଷିର

ଉନ୍ନତି ଦିଗରେ କିପରି ଫଳପ୍ରଦ ହେଉଛି ତାହା ସମୀକ୍ଷା କରିବା ନିତାନ୍ତ ଜରୁରୀ । ଉଠା ଜଳ ସେଚନ ପ୍ରକଳ୍ପରୁ ପାଣି ପାଇ ମଧ୍ୟ ଧାନ ବ୍ୟତୀତ ଅନ୍ୟ ଫସଲ ଚାଷ କରିବା ପାଇଁ ଆଗ୍ରହ ଆଦୌ ନାହିଁ । ଗ୍ରାମ୍ୟ ରାସ୍ତା ନିର୍ମାଣ ଓ ମରାମତି ବ୍ୟତୀତ ସହରାଞ୍ଚଳରେ ମଧ୍ୟ ରାସ୍ତା ମରାମତି କାର୍ଯ୍ୟ ପରିଷଦ ପାଣ୍ଠିରୁ ହେଉଛି, ଯଦିଓ ଭାରତ ସରକାର ଏସବୁ କାର୍ଯ୍ୟ ପାଇଁ ଅନେକ ଅର୍ଥ ମଞ୍ଜୁର କରିଛନ୍ତି । ଆଞ୍ଚଳିକ ବୈଷମ୍ୟ ଦୂର ନାଁରେ ଅନେକ ଗ୍ରାମରେ ମିନି ଷ୍ଟାଡିୟମ, କମ୍ୟୁନିଟି ସେଣ୍ଟର, କଲ୍ୟାଣ ମଣ୍ଡପ ପରିଷଦର ଖର୍ଚ୍ଚରେ ନିର୍ମାଣ ହୋଇଛି । କାରଣ ସେଗୁଡ଼ିକ ପାଇଁ ଲୋକ ପ୍ରତିନିଧିମାନଙ୍କର ବିଶେଷ ଆଗ୍ରହ । ଭୋଟରମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ଏପରି କିଛି ନିର୍ମାଣ ଆବଶ୍ୟକ । କିନ୍ତୁ ସନ୍ତୁଷ୍ଟ କରିବାକୁ ଯାଇ ଗ୍ରାମେ ଗ୍ରାମେ କଲ୍ୟାଣ ମଣ୍ଡପ ନିର୍ମାଣ କେତେ ଦୂର ଯୁକ୍ତିଯୁକ୍ତ ? କୃଷିର ଉନ୍ନତି ବିନା କୌଣସି ଅଞ୍ଚଳର ବିକାଶ ଅସମ୍ଭବ । ଆମ୍ଭର ଜନ ପ୍ରତିନିଧିମାନେ ଏହି ଉକ୍ତିର ଯଥାର୍ଥତା ହୃଦୟଙ୍ଗମ କରିବା ନିତାନ୍ତ ପ୍ରୟୋଜନ । ଏତଦ୍‌ବ୍ୟତୀତ ଗୁଣାତ୍ମକ ଶିକ୍ଷା ବିନା କୌଣସି ଅଞ୍ଚଳର ବିକାଶ ସମ୍ଭବ ନୁହେଁ । କାରଣ ମାନବ ସମ୍ବଳ ହେଉଛି ଅମୂଲ୍ୟ ସଂପଦ । ଆମ୍ଭର ପ୍ରାକୃତିକ ସଂପଦ ଥିଲେ ମଧ୍ୟ ସେହି ପ୍ରାକୃତିକ ସଂପଦର ସତ୍ ଉପଯୋଗ ପାଇଁ ନିଶ୍ଚିତ ଭାବରେ ମାନବସମ୍ବଳ ଆବଶ୍ୟକ । ଯେ କୌଣସି ଗ୍ରାମର ସାମାଜିକ ସ୍ଥିତିରେ ଉନ୍ନତି ପାଇଁ ନିଶ୍ଚିତ ଭାବରେ ଜଳସେଚନର ସୁବିଧା ପ୍ରୟୋଜନ । ଏହା ବ୍ୟତୀତ ସଡ଼କ ପଥର ଅଗ୍ରଗତି, ଶିକ୍ଷା ସୁବିଧା, ଗ୍ରାମରେ ବିଦ୍ୟାଳୟ, ଆଖପାଖରେ ସ୍ୱାସ୍ଥ୍ୟକେନ୍ଦ୍ର, ସ୍ୱଚ୍ଛ ପାନୀୟ ଜଳ ଯୋଗାଣ, ବିଦ୍ୟୁତ ସଂଯୋଗ ପାଇଁ ଯଦି ପଶ୍ଚିମ ଓଡ଼ିଶା ବିକାଶ ପରିଷଦରୁ ଅର୍ଥବରାଦ ହୋଇ ବିନିଯୋଗ ହୁଅନ୍ତା, ତାହା ହେଲେ ପରିଷଦ ପ୍ରକୃତରେ ଆଞ୍ଚଳିକ ବୈଷମ୍ୟ ଦୂର କରିବା ପାଇଁ ଚେଷ୍ଟିତ ବୋଲି ମନେହୁଅନ୍ତା ।

ଏବେ ସମୀକ୍ଷା କରିବା ବିଭିନ୍ନ କ୍ଷେତ୍ରରେ କେତୋଟି ଯୋଜନା କେଉଁ ସମୟରେ ଅନୁମୋଦିତ ହୋଇଛି । ପରିଷଦ ପ୍ରତିଷ୍ଠିତ ହେଲା ପରେ ୧୯୯୯-୨୦୦୦ ଓ ୨୦୦୦-୦୧ ମସିହାରେ ସଡ଼କ ନିର୍ମାଣ ଓ ମରାମତି ପାଇଁ ୩୮ ଗୋଟି, କ୍ଷୁଦ୍ର ଜଳସେଚନ ପ୍ରକଳ୍ପ ପାଇଁ ୫ଗୋଟି, ଉଠା ଜଳସେଚନ ପ୍ରକଳ୍ପ ପାଇଁ ୪ଗୋଟି, ଶିକ୍ଷା ପାଇଁ ୪ଗୋଟି, ସ୍ୱାସ୍ଥ୍ୟସେବା ପାଇଁ ୧୧ଗୋଟି, ପାନୀୟ ଜଳ ପାଇଁ ୫ଗୋଟି ଓ ଅନ୍ୟାନ୍ୟ ଯୋଜନା ପାଇଁ ୪ଗୋଟି ପ୍ରକଳ୍ପକୁ ଅନୁମୋଦନ ଦିଆଯାଇଛି । ସେହିପରି ୨୦୦୦-୦୧ରୁ ୨୦୦୮-୦୯ ମଧ୍ୟରେ ୧୧୫୪ଟି ଗ୍ରାମ୍ୟ ରାସ୍ତା ପାଇଁ ସଡ଼କ ନିର୍ମାଣ ବିଭାଗ ଦ୍ୱାରା ୨୯୦ଟି ରାସ୍ତା ଓ ଗୃହ ନିର୍ମାଣ ବିଭାଗ ଦ୍ୱାରା କ୍ଷୁଦ୍ର ଜଳସେଚନ ପ୍ରକଳ୍ପ ପାଇଁ ୩୮୫ ଗୋଟି, ଚେକଡ୍ୟାମ ପାଇଁ ୫୫୩ଗୋଟି, ଉଠା ଜଳସେଚନ ପ୍ରକଳ୍ପ ପାଇଁ ୪୮୮, ବନ୍ଧ ଓ କଟାର ଉନ୍ନତିକରଣ ଓ ଖନନ ପାଇଁ ୩୪୬ଗୋଟି, ସ୍ୱାସ୍ଥ୍ୟସେବା ପାଇଁ ୬୫ ଗୋଟି ଓ ଶିକ୍ଷା ପାଇଁ ୧୯୮୯ ଗୋଟି, ପାନୀୟ ଜଳ ପାଇଁ ୧୯୬୬, ନଦୀବନ୍ଧ ପାଇଁ ୧୬ଟି, ବନ୍ୟା ନିୟନ୍ତ୍ରଣ ପାଇଁ ୯ ଗୋଟି ବିଦ୍ୟୁତ୍‌କରଣ ପାଇଁ ୪୬ଟି, ପୌର ପରିଷଦ ଓ ବିଜ୍ଞାପିତ ପରିଷଦ ଅଞ୍ଚଳ ପାଇଁ ୫୨ ଓ ଅନ୍ୟାନ୍ୟ (ମିନି ଷ୍ଟାଡିୟମ, କମ୍ୟୁନିଟି ସେଣ୍ଟର, କଲ୍ୟାଣ ମଣ୍ଡପ) ପାଇଁ ୧୦୯— ଏହିପରି ସର୍ବମୋଟ ୬୩୦୯ ଗୋଟି ଯୋଜନାକୁ ଅନୁମୋଦନ ଦିଆଯାଇଛି । ପଶ୍ଚିମ ଓଡ଼ିଶା ବିକାଶ ପରିଷଦ ପାଣ୍ଠିରୁ ହୀରାକୁଦ ମୁଖ୍ୟ ବନ୍ଧର ମରାମତି କାମ ମଧ୍ୟ ହୋଇଛି । ଏକ ଜିଲ୍ଲାର ସର୍କିଟ ଘରର ପ୍ରାଚୀର ନିର୍ମାଣ ହୋଇଛି । ଏକ ଜିଲ୍ଲାପାଳଙ୍କର ଆବାସିକ କାର୍ଯ୍ୟାଳୟ ନିର୍ମାଣ, ସର୍କିଟ ଘରର

ଆସବାବପତ୍ର କିଣା କାର୍ଯ୍ୟ ସଂପାଦିତ ହୋଇଛି । ଆହୁରି ମଧ୍ୟ ପଶ୍ଚିମ ଓଡ଼ିଶା ବିକାଶ ପରିଷଦ ଆଖୁଚାଷୀଙ୍କୁ ପ୍ରୋତ୍ସାହିତ କରିବା ଉଦ୍ଦେଶ୍ୟରେ ଏକ ସମବାୟ ଚିନି କଳକୁ ଇକ୍ୟୁଟି ସେୟାର ହିସାବରେ କିଛି ଅର୍ଥ ଖଟାଇ ଅଛନ୍ତି । ସେହିପରି ସମ୍ବଲପୁରୀ ବସ୍ତ୍ରାଳୟର ବୁଣାକାରମାନଙ୍କୁ ଉତ୍ସାହିତ କରିବା ଉଦ୍ଦେଶ୍ୟରେ କିଛ ଅର୍ଥ ବିନିଯୋଗ ହୋଇଛି । ପଶ୍ଚିମ ଓଡ଼ିଶାରେ ତିନିଗୋଟି ବେସରକାରୀ ଭେଷଜ ଚିକିତ୍ସାଳୟ ତଥା ମହାବିଦ୍ୟାଳୟ ପ୍ରତିଷ୍ଠା କରିବା ପାଇଁ ପ୍ରୋତ୍ସାହନ ରାଶି ହିସାବରେ ୩୦ କୋଟି ଟଙ୍କା ସାହାଯ୍ୟ କରିବା ପାଇଁ ପରିଷଦ ପ୍ରତିଶ୍ରୁତିବଦ୍ଧ ।

ପଶ୍ଚିମ ଓଡ଼ିଶା ବିକାଶ ପରିଷଦ ଅର୍ନ୍ତଭୁକ୍ତ ୪୦ ଗୋଟି ନିର୍ବାଚନମଣ୍ଡଳୀ ପାଇଁ ବିଭିନ୍ନ ସମୟରେ ଥିବା ପ୍ରକଳ୍ପଗୁଡ଼ିକ ନିମନ୍ତେ ଅନୁମୋଦିତ ହୋଇଥିବା ଅର୍ଥରାଶିର ଏକ ଟିପ୍‌ପଣୀ ମଧ୍ୟ ନିମ୍ନରେ ପ୍ରଦତ୍ତ ହେଲା ।

ଜନଗଣନା ଅନୁସାରେ ବିକାଶ ପରିଷଦ ଅଞ୍ଚଳର ଜନସଂଖ୍ୟା ୯୧.୧୬ ଲକ୍ଷ । ତହିଁରୁ ସୁନ୍ଦରଗଡ଼ ଜିଲ୍ଲାର ଲୋକସଂଖ୍ୟା ଶତକଡ଼ା ୧୯.୮୬ । ବରଗଡ଼ ଜିଲ୍ଲାର ଜନସଂଖ୍ୟା ଶତକଡ଼ା ୧୪.୬୦, ବଲାଙ୍ଗୀର ଜିଲ୍ଲାର ଜନସଂଖ୍ୟା ଶତକଡ଼ା ୧୪.୫୧ , କଳାହାଣ୍ଡି ଜିଲ୍ଲାର ଜନସଂଖ୍ୟା ଶତକଡ଼ା ୧୪.୪୯, ସମ୍ବଲପୁର ଜିଲ୍ଲାର ଜନସଂଖ୍ୟା ଶତକଡ଼ା ୧୦.୧୪ ଓ ସର୍ବନିମ୍ନ ଦେବଗଡ଼ ଜିଲ୍ଲାର ଜନସଂଖ୍ୟା ଶତକଡ଼ା ୨.୯୬ ।

ତା ୧୫.୯.୨୦୦୮ ପର୍ଯ୍ୟନ୍ତ ସଡ଼କ ପଥର ଉନ୍ନୟନ ଓ ମରାମତି ପାଇଁ ପୂର୍ତ୍ତ ବିଭାଗ, ଗ୍ରାମ୍ୟସଡ଼କ ନିର୍ମାଣ ସଂସ୍ଥା, ରାସ୍ତା ଓ ଗୃହ ନିର୍ମାଣ ସଂସ୍ଥା ବାବଦରେ ୧୬୩ କୋଟିର ଖର୍ଚ୍ଚ ପାଇଁ ଅନୁଦାନ ଦିଆଯାଇଛି ଓ ସମୁଦାୟ ୨୪୦୦ କିଲୋମିଟର ରାସ୍ତା ମରାମତି, ଗ୍ରାମ୍ୟ ରାସ୍ତା ନିର୍ମାଣ ଓ ଉନ୍ନତିକରଣ କରାଯାଇଛି । ହାରାହାରି ପ୍ରତି କିଲୋମିଟର ରାସ୍ତା ପାଇଁ ପ୍ରାୟ ୬.୬୯ ଲକ୍ଷ ଟଙ୍କା ମଞ୍ଜୁର କରାଯାଇଛି । ଚେକଡ୍ୟାମ୍/ ଡାଇଭରସନ୍ ଓୟାର ଇତ୍ୟାଦି ବାବଦରେ ବିଭିନ୍ନ ପ୍ରକଳ୍ପ ପାଇଁ ଖର୍ଚ୍ଚ ଅନୁଦାନ ହୋଇଛି ୪୬.୪୮ କୋଟି ଟଙ୍କା । ଏଥିରେ ମଧ୍ୟ ଏକ ଏକର ଆୟକଟ୍ ଭିତ୍ତି ପାଇଁ ପ୍ରାୟ ୩୪୦୦୦/- (ଚଉତିରିଶି ହଜାର) ଟଙ୍କା ହୋଇଛି । କ୍ଷୁଦ୍ର ଜଳସେଚନ ପାଇଁ ୫୪.୯୬ କୋଟି ଟଙ୍କା ଅନୁଦାନ ଦ୍ୱାରା ଏକ ଏକର ଆୟକଟ ଭିତ୍ତିପାଇଁ ଭିତ୍ତି ପାଇଁ ୩୯୦୦୦ ଖର୍ଚ୍ଚ ହୋଇଛି । ଉଠା ଜଳସେଚନ ପ୍ରକଳ୍ପଗୁଡ଼ିକ ପାଇଁ ଅନୁମୋଦନ ରାଶି ୪୩.୩୧ କୋଟି ଟଙ୍କା ମଞ୍ଜୁର ହୋଇଛି ଓ ଏଥିରେ ୧୬୦୦୦ ଏକର ଆୟକଟ୍ ପାଣି ପାଇବାର ସୂଚନା ଅଛି । ଯାହାର ଏକର ପ୍ରତି ଭିତ୍ତି ନିର୍ମାଣ ଖର୍ଚ୍ଚ ପ୍ରାୟ ୨୫୦୦୦ ଟଙ୍କା । ବନ୍ଧ ଓ କଟାର ଉନ୍ନତିକରଣ ଓ ନୂତନ ନିର୍ମାଣ ଉଦ୍ଦେଶ୍ୟରେ ମୋଟ ୩୪୬ ଗୋଟି ପ୍ରକଳ୍ପ ଅନୁମୋଦିତ ହୋଇ ୪.୪୯ କୋଟି ଟଙ୍କା ଖର୍ଚ୍ଚ ହୋଇଛି ।

ସ୍ୱାସ୍ଥ୍ୟସେବା ପାଇଁ ସମୁଦାୟ ୧୨.୫୯ କୋଟି ଟଙ୍କା ଅନୁମୋଦିତ ହୋଇଛି । ସେଥିରୁ ୬.୫ କୋଟି ଟଙ୍କା ଭବାନୀପାଟଣା ନିକଟସ୍ଥ ଜାଗିଙ୍ଗପାରେ ଏକ ବେସରକାରୀ ଭେଷଜ ଚିକିତ୍ସାଳୟ ଓ ମହାବିଦ୍ୟାଳୟକୁ ପ୍ରୋତ୍ସାହନ ହିସାବରେ ଦିଆଯାଇଛି । ରାଉରକେଲାଠାରେ ପ୍ରସ୍ତାବିତ ଭେଷଜ ଚିକିତ୍ସାଳୟ ଓ ମହାବିଦ୍ୟାଳୟର ନିର୍ମାଣ କାର୍ଯ୍ୟ ବିଭିନ୍ନ ବାଧାବିଘ୍ନ ସତ୍ତ୍ୱେ ବିଜ୍ଞାନ ଭାରତୀ ଚାରିଟେବୁଲ ଟ୍ରଷ୍ଟ ଦ୍ୱାରା

ଆଗେଇ ଚାଲିଛ । ସେହିପରି ପରିଶେଷରେ ବଲାଙ୍ଗୀରଠାରେ ପ୍ରସ୍ତାବିତ ଭେଷଜ ଚିକିତ୍ସାଳୟ ଓ ମହାବିଦ୍ୟାଳୟ ପାଇଁ ୩ଟି ସଂସ୍ଥା ସହିତ ବୁଝାମଣାପତ୍ର ସ୍ୱାକ୍ଷର ଅକାମୀ ହେଲା ପରେ ଏବେ ଆଉ ଥରେ ନୂତନ ପଦକ୍ଷେପ ନିଆଯାଇଛି । ଅତି ଶୀଘ୍ର ଏହି ବୁଝାମଣା ପତ୍ର ସ୍ୱାକ୍ଷରିତ ହେବ ।

ପଶ୍ଚିମ ଓଡ଼ିଶାର ସମସ୍ତ ଜିଲ୍ଲାମୁଖ୍ୟ ଓ ଉପଖଣ୍ଡ ଚିକିତ୍ସାଳୟଗୁଡ଼ିକର ତୁରନ୍ତ ରକ୍ତ ପରୀକ୍ଷା କରିବାପାଇଁ କ୍ୟୁବିସି ଯନ୍ତ୍ର ଯୋଗାଇ ଦିଆଯାଇଛି । ବୁର୍ଲାଠାରେ ଥିବା ବୀର ସୁରେନ୍ଦ୍ର ସାଏ ଭେଷଜ ଚିକିତ୍ସାଳୟ ଓ ମହାବିଦ୍ୟାଳୟ ପାଇଁ ଡାଏଲିସିସ୍ ଯନ୍ତ୍ର ଓ କୋବାଲ୍ଟ ୟୁନିଟ୍ ପାଇଁ ୬୦ ଲକ୍ଷ ଟଙ୍କାର ଅନୁଦାନ ଦିଆଯାଇଛି । ତତ୍‌ସହିତ ଛାତ୍ରଛାତ୍ରୀମାନଙ୍କର ସୁବିଧା ପାଇଁ ଛାତ୍ରାବାସରେ ଜଳଯୋଗାଣ ଉଦ୍ଦେଶ୍ୟରେ ପରିଷଦ ପାଣ୍ଠିରୁ ୫୧ ଲକ୍ଷ ଟଙ୍କା ଅନୁମୋଦନ କରାଯାଇଛି । ଝାରସୁଗୁଡ଼ା ଓ ନୂଆପଡ଼ା ଜିଲ୍ଲାରେ ୪୩ ଲକ୍ଷ ଟଙ୍କା ବ୍ୟୟରେ ୧୦ଗୋଟି ଅଟୋ ବ୍ଲଡ୍ ଆନାଲାଇଜର ଯନ୍ତ୍ର ଯୋଗାଇ ଦିଆଯାଇଛି । ପାନୀୟ ଜଳର ସୁବିଧା ପାଇଁ ୧୫.୯୨ ଲକ୍ଷ ଅର୍ଥ ବ୍ୟୟରେ ଅନେକ ନଳକୂପ ଖନନ କରାଯାଇଛି ଓ ୩୮ ଗୋଟି ପାଇପ୍ ଜଳ ଯୋଗାଣ ପ୍ରକଳ୍ପ କାର୍ଯ୍ୟକାରୀ କରାଯାଇଛି ।

କୃଷିର ଉନ୍ନତି ପାଇଁ ପଶ୍ଚିମ ଓଡ଼ିଶାର ଛଅଗୋଟି ଜିଲ୍ଲା ଯଥା -ସୁନ୍ଦରଗଡ଼, ଝାରସୁଗୁଡ଼ା, ସମ୍ବଲପୁର, ବରଗଡ଼, ଦେବଗଡ଼, ବୌଦ ଓ ଆଠମଲ୍ଲିକ ଉପଖଣ୍ଡର ପ୍ରାୟ ୧୩୩୨୫ ଏକର ଅମ୍ଳ ଆଟ ଓ ମାଳ ଜମିକୁ କାଗଜକଳର ଚୂନ ସ୍ଲକ୍ ଦ୍ୱାରା ଶୋଧନ କରାଯାଇଛି । ଏଥିପାଇଁ ବ୍ରଜରାଜନଗରରୁ ବିଭିନ୍ନ ସ୍ଥାନକୁ ସ୍ଲଜ୍ ପରିବହନ ପାଇଁ ପଶ୍ଚିମ ଓଡ଼ିଶା ବିକାଶ ପରିଷଦ ୧୫ ଲକ୍ଷ ଟଙ୍କା ଖର୍ଚ୍ଚ କରିଛନ୍ତି । ମୃତ୍ତିକା ଶୋଧନ ଦ୍ୱାରା ମୁଗ, ବିରି, ହରଡ଼, ଚିନାବାଦାମ ଭଳି ଫସଲ ଉତ୍ପାଦନରେ ପ୍ରାୟ ୨୦ ଶତକଡ଼ା ବୃଦ୍ଧି ପାଇଥିବାର ଜଣାଯାଏ । ଗତ ବର୍ଷ ୨୦୦୮-୦୯ ଆର୍ଥିକ ବର୍ଷ ଜାତୀୟ କୃଷି ଯୋଜନା ମାଧ୍ୟମରେ ଓଡ଼ିଶା ସରକାର ଅମ୍ଳ ମାଟିର ଶୋଧନ ପାଇଁ ଯୋଜନା ଆୟୋଗଠାରୁ ୧୦କୋଟି ଟଙ୍କାର ଅନୁଦାନ ପାଇଛନ୍ତି ।

ଉଦ୍ୟାନ କୃଷିର ଉନ୍ନତି ଓ ବିକାଶ ପାଇଁ ପଶ୍ଚିମ ଓଡ଼ିଶାର ଚିପିଲିମାଠାରେ ଏକ ଉଦ୍ୟାନ କୃଷି ମହାବିଦ୍ୟାଳୟ ପଶ୍ଚିମ ଓଡ଼ିଶା ବିକାଶ ପରିଷଦର ୬.୪୫ କୋଟି ଟଙ୍କା ପାଣ୍ଠି ବ୍ୟୟରେ ୨୦୦୮-୦୯ ଆର୍ଥିକ ବର୍ଷରେ ପ୍ରତିଷ୍ଠା ହୋଇଛି, ଯେଉଁଠାରେ କି ମୋଟ ୨୪ଗୋଟି ସ୍ଥାନରୁ ୧୯ ଗୋଟି ସ୍ଥାନରେ କେବଳ ବାଳିକାମାନେ ନାମ ଲେଖାଇଛନ୍ତି । ସେହିପରି ଦେବଗଡ଼ ଓ ବୌଦ୍ଧଠାରେ ଗୋଟିଏ ଲେଖାଏଁ ଏଗ୍ରୋ ପଲିଟେକ୍‌ନିକ୍ ପ୍ରତିଷ୍ଠା ପାଇଁ ପଶ୍ଚିମ ଓଡ଼ିଶା ବିକାଶ ପରିଷଦ, ଓଡ଼ିଶା କୃଷି ବୈଷୟିକ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱରକୁ ୨.୪ କୋଟି ଟଙ୍କାର ଅନୁଦାନ ଦେବାପାଇଁ ପ୍ରତିଶ୍ରୁତିବଦ୍ଧ ।

ଶିକ୍ଷାକ୍ଷେତ୍ରରେ ଭିତ୍ତିଭୂମିର ବିକାଶ ପାଇଁ ୧୬୦୫ ଗୋଟି ପ୍ରକଳ୍ପକୁ ପଶ୍ଚିମ ଓଡ଼ିଶା ବିକାଶ ପରିଷଦ ଅନୁମୋଦନ କରିଛି । ଯାହାକି, ୨୮.୧୯ କୋଟି ଟଙ୍କା ଅର୍ଥରାଶି ସହିତ ସଂଶ୍ଳିଷ୍ଟ । ପଶ୍ଚିମ ଓଡ଼ିଶାର ୨୫ଗୋଟି ମହାବିଦ୍ୟାଳୟକୁ ତଫସିଲଭୁକ୍ତ ଜାତି / ଜନ ଜାତି ଓ ପଛୁଆବର୍ଗର ଯୁକ୍ତ ଦୁଇ ବିଜ୍ଞାନ

ଛାତ୍ରଛାତ୍ରୀମାନଙ୍କ ପାଇଁ ସ୍ୱତନ୍ତ୍ର କୋଚିଂ ଶିକ୍ଷାର ବନ୍ଦୋବସ୍ତ କରିଛି । ଯଦ୍ୱାରା ଅନେକ ଛାତ୍ର ଉପକାର ପାଉଛନ୍ତି ଓ ବିଭିନ୍ନ ପ୍ରତିଯୋଗିତାରେ ଭଲ ପ୍ରଦର୍ଶନ କରୁଛନ୍ତି ।

ବିଦ୍ୟୁତକରଣ କ୍ଷେତ୍ରରେ ଗ୍ରାମ୍ୟ ବିଦ୍ୟୁତକରଣ ପାଇଁ ଅଧିକ ଦୃଷ୍ଟି ଦିଆଯାଇଛି । ସର୍ବମୋଟ୍ ୫୩୯ ଗୋଟି ପ୍ରକଳ୍ପକୁ ବିଦ୍ୟୁତକରଣ ପାଇଁ ପ୍ରଶାସନିକ ମଞ୍ଜୁରୀ ଦିଆଯାଇଛି ଓ ଏଥିପାଇଁ ୧୮.୬୮ କୋଟି ଟଙ୍କା ପ୍ରଦାନ କରାଯାଇଛି । ଏହି ବାବଦରେ ପ୍ରଥମ ୬ବର୍ଷରେ ୮.୪୧ କୋଟି ଟଙ୍କା ବରାଦ ହୋଇଥିଲେ ବିଗତ ୨.୫ ବର୍ଷ ମଧ୍ୟରେ ଖର୍ଚ୍ଚ ଅନୁମୋଦନ ୧୦.୨୭ କୋଟି ଟଙ୍କା ମରୁଡ଼ି ସମୟରେ ଶ୍ରମଭିତ୍ତିକ କାର୍ଯ୍ୟପାଇଁ ପ୍ରଥମ ଛଅ ବର୍ଷରେ ୨.୨ କୋଟି ଟଙ୍କା ବ୍ୟୟ ହୋଇଛି । ସେହିପରି ପୌରପରିଷଦ ଓ ବିଷ୍ଥାପିତ ପରିଷଦ ଅଞ୍ଚଳର ବିଭିନ୍ନ କାର୍ଯ୍ୟପାଇଁ ୬.୬୫କୋଟି ଟଙ୍କା ଅନୁଦାନ ପ୍ରଦାନ କରାଯାଇଛି । ଏତଦ୍‌ବ୍ୟତୀତ ଅନ୍ୟାନ୍ୟ ପ୍ରକଳ୍ପଗୁଡ଼ିକ ଉଦ୍ଦେଶ୍ୟରେ ୧୪୧ ଗୋଟି ପ୍ରକଳ୍ପ ମଞ୍ଜୁର ହୋଇଛି ଓ ସେଥିପାଇଁ ୧୮.୧୨ କୋଟି ଟଙ୍କା ବ୍ୟୟ ହୋଇଛି ।

ଜଳସେଚନ ପ୍ରକଳ୍ପଗୁଡ଼ିକର ଅନୁଦାନ ଅର୍ଥ ଉପଯୋଗ ହୋଇଥିଲେ ମଧ୍ୟ ସେଥିପାଇଁ ଆଶାନୁରୂପ ଫଳ ମିଳିଲା ଭଳି ମନେହୁଏ ନାହିଁ । ସେହି ଦୃଷ୍ଟିରୁ ଏକ ନୂତନ ଚିନ୍ତାଧାରା କାର୍ଯ୍ୟକାରୀ କରିବା ପାଇଁ ପରିଷଦ ଉଦ୍ୟମ କରୁଛି । ଭୂପୃଷ୍ଠରେ ଜଳଭଣ୍ଡାର ପ୍ରକଳ୍ପ ନିର୍ମାଣ ଓ କେନାଲରେ ଜଳ ପ୍ରବାହ ନ କରି ଏକ ସଂଭାବ୍ୟ ଯୋଜନା କାର୍ଯ୍ୟକାରୀ ହେବ, ଯଦ୍ୱାରା ବର୍ଷାଜଳ ଚାଷଜମି ଭିତରକୁ ପ୍ରବେଶ କରି ଭୂମି ତଳେ ଗଚ୍ଛିତ ରହିବ । ଏହାଦ୍ୱାରା ମରୁଡ଼ି ଆଶଙ୍କା ଦୂର ହେବା ସହିତ ବନ୍ୟାର ମଧ୍ୟ ଅବକାଶ ରହିବ ନାହିଁ । ଏହି ପ୍ରକଳ୍ପ କାର୍ଯ୍ୟକାରୀ କରିବା ପାଇଁ ହାରାହାରି ଏକ ଏକର ଜମି ପାଇଁ ମାତ୍ର ୮୦୦୦/- (ଆଠହଜାର ଟଙ୍କା) ଖର୍ଚ୍ଚ ହେବ ଯାହାକି, ଅନ୍ୟାନ୍ୟ ଜଳ ସେଚନ ପ୍ରକଳ୍ପ ତୁଳନାରେ ଅତି ସ୍ୱଳ୍ପ ।

ସରକାରଙ୍କର ପ୍ରବଳ ଇଚ୍ଛା ଓ ସହାନୁଭୂତି ଥାଇ ମଧ୍ୟ ଗତ ଆଠ ବର୍ଷ ମଧ୍ୟରେ ବିକାଶ ଦିଗରେ ଆଭ୍ୟନ୍ତରୀଣ ଆଞ୍ଚଳିକ ବୈଷମ୍ୟ କେତେ ଦୂର ହୋଇଛି, ଆକଳନ କରିବା କଷ୍ଟକର । କିନ୍ତୁ ଅନେକ ଯୋଜନା ବିକାଶ ପରିଷଦ ଦ୍ୱାରା କାର୍ଯ୍ୟକାରୀ ହୋଇ ନିଶ୍ଚିତ ଭାବରେ ଉପକୂଳ ଅଞ୍ଚଳ ତୁଳନାରେ ବିକାଶ ଦିଗରେ ସମକକ୍ଷ ହୋଇପାରିଛି ଓ ସେଥିପାଇଁ ପ୍ରୟାସ ଜାରି ରହିଛି । ପରିପ୍ରେକ୍ଷୀ ଯୋଜନାରେ ଯଦି ପ୍ରକଳ୍ପଗୁଡ଼ିକ ଯୋଜନାବଦ୍ଧ ଭାବେ ନିର୍ମାଣ କରାଯାଇ ପାରନ୍ତା, ତାହାହେଲେ ଆଞ୍ଚଳିକ ବୈଷମ୍ୟ ଓ ଆର୍ଥିକ ବିଷମତା ସଂପୂର୍ଣ୍ଣ ଭାବେ ନ ହେଲେ ମଧ୍ୟ କିଛି ପରିମାଣରେ ଦୂରୀଭୂତ ହୁଅନ୍ତା । କିନ୍ତୁ ପରିପ୍ରେକ୍ଷୀ ଯୋଜନାକୁ ଭିତ୍ତିକରି ଅଗ୍ରସର ହେବାପାଇଁ ଚେଷ୍ଟା ତ ଦୂରର କଥା, ଆମ୍ଭର ପ୍ରତିନିଧିମାନଙ୍କର ସେ ଦିଗରେ ପ୍ରୟାସ ମଧ୍ୟ ନାହିଁ । ଏଠାରେ ଉଲ୍ଲେଖ କରାଯାଇପାରେ ଯେ, ଜାତୀୟ କୃଷି ବ୍ୟାଙ୍କ ଓ ଗ୍ରାମ୍ୟ ଉନ୍ନୟନ ସଂସ୍ଥାକୁ ପରିଷଦ ୩୧ଲକ୍ଷ ଟଙ୍କା ପରାମର୍ଶ ଦେୟ ହିସାବରେ ଦେଇଛି ସମବର୍ତ୍ତୀ ସମୀକ୍ଷା ଓ ପରପ୍ରେକ୍ଷୀ ଯୋଜନା ପ୍ରସ୍ତୁତ କରିବା ପାଇଁ । ଏ ସଂପର୍କୀୟ ବିଶେଷ ଅବଗତି ପାଇଁ ନିମ୍ନଲିଖିତ ସାରଣୀ ଦ୍ରଷ୍ଟବ୍ୟ :

## ବିଧାନସଭା ନିର୍ବାଚନମଣ୍ଡଳୀ ଅନୁଯାୟୀ ପଶ୍ଚିମ ଓଡ଼ିଶା ବିକାଶ ପରିଷଦ ତରଫରୁ ପ୍ରଶାସନିକ ମଞ୍ଜୁରୀ ଦେଇଥିବା ପ୍ରକଳ୍ପର ଖର୍ଚ୍ଚ ଅଟକଳ
### ୨୦୦୧-୦୨ଠାରୁ ୧୫.୦୯.୨୦୦୯ ପର୍ଯ୍ୟନ୍ତ

| ନିର୍ବାଚନ ମଣ୍ଡଳୀ | ୧.୪.୦୧ ରୁ ୩୧.୩.୦୭ | | ୨୦୦୭ରୁ ୨୦୦୮ | | ୨୦୦୮ରୁ ୨୦୦୯ | | ମୋଟ | |
|---|---|---|---|---|---|---|---|---|
| | ପ୍ରଶାସନିକ ମଞ୍ଜୁରୀ (ଲକ୍ଷରେ) | ଶତକଡ଼ା | ପ୍ରଶାସନିକ ମଞ୍ଜୁରୀ (ଲକ୍ଷରେ) | ଶତକଡ଼ା | ପ୍ରଶାସନିକ ମଞ୍ଜୁରୀ (ଲକ୍ଷରେ) | ଶତକଡ଼ା | ପ୍ରଶାସନିକ ମଞ୍ଜୁରୀ (ଲକ୍ଷରେ) | ଶତକଡ଼ା |
| ୧ | ୨ | ୩ | ୪ | ୫ | ୬ | ୭ | ୮ | ୯ |
| ଆଠମଲ୍ଲିକ | ୨୯୬ | ୧.୧୧ | ୩୮ | ୦.୭୬ | ୪ | ୦.୨୦ | ୩୩୮ | ୧.୦୧ |
| ବରଗଡ଼ | ୬୫୨ | ୨.୪୫ | ୮୮ | ୧.୭୫ | ୨୧ | ୧.୦୬ | ୭୬୧ | ୨.୨୬ |
| ଭଟଲି | ୬୭୫ | ୨.୫୦ | ୭୨ | ୧.୪୩ | ୪୪ | ୨.୨୨ | ୭୮୧ | ୨.୩୨ |
| ବିଜେପୁର | ୯୮୩ | ୩.୭୦ | ୧୧୦ | ୨.୧୯ | ୨୮ | ୧.୪୨ | ୧୧୨୧ | ୩.୩୪ |
| ପଦ୍ମପୁର | ୭୬୯ | ୨.୮୯ | ୨୦୪ | ୪.୦୫ | ୫୦ | ୨.୫୩ | ୧୦୨୩ | ୩.୦୪ |
| ମେଲଛାମୁଣ୍ଡା | ୬୪୨ | ୨.୪୧ | ୮୭ | ୧.୭୧ | ୭୪ | ୩.୭୪ | ୮୦୨ | ୨.୩୯ |
| ବଲାଙ୍ଗୀର | ୮୩୩ | ୩.୧୩ | ୧୦୬ | ୨.୧୧ | ୯ | ୦.୪୬ | ୯୪୮ | ୨.୮୨ |
| ପାଟନାଗଡ଼ | ୮୪୫ | ୩.୧୮ | ୭୪ | ୧.୪୭ | ୨୮ | ୧.୪୨ | ୯୪୭ | ୨.୮୨ |
| ଲଇସିଂହା | ୭୧୬ | ୨.୬୯ | ୯୯ | ୧.୯୭ | ୩୯ | ୧.୯୭ | ୮୫୪ | ୨.୫୪ |
| ଟିଟିଲାଗଡ଼ | ୧୧୯୨ | ୪.୪୮ | ୮୨ | ୧.୬୩ | ୪୬ | ୨.୩୩ | ୧୩୨୦ | ୩.୯୩ |

| | | | | | | | | |
|---|---|---|---|---|---|---|---|---|
| କଣ୍ଟାବାଞ୍ଜି | ୬୦୭ | ୨.୨୮ | ୨୦୧ | ୩.୯୯ | ୧୬୭ | ୮.୪୪ | ୯୬୫ | ୨.୯୦ |
| ପଇଁତଳା | ୧୦୦୭ | ୩.୬୯ | ୧୦୭ | ୨.୧୧ | ୧୭ | ୦.୮୧ | ୧୧୨୯ | ୩.୩୭ |
| ବଉଦ | ୯୦୮ | ୩.୪୧ | ୧୧୭ | ୨.୩୧ | ୧୯ | ୦.୯୭ | ୧୦୪୩ | ୩.୧୦ |
| ଫୁଲବାଣୀ | ୩୫୧ | ୧.୩୨ | ୧୦୪ | ୨.୦୭ | ୨୦ | ୧.୦୧ | ୪୬୫ | ୧.୪୧ |
| ବାଲିଗୁଡ଼ା | ୩୪୫ | ୧.୩୦ | ୬୪ | ୧.୨୭ | ୯ | ୦.୪୭ | ୪୧୮ | ୧.୨୪ |
| ଦେବଗଡ଼ | ୧୨୧ | ୦.୪୫ | ୨୫୫ | ୫.୦୭ | ୫୨ | ୨.୬୩ | ୪୨୮ | ୧.୨୭ |
| ଝାରସୁଗୁଡ଼ା | ୧୪୧ | ୦.୫୩ | ୧୩୦ | ୨.୫୮ | ୧୪ | ୦.୭୧ | ୨୮୫ | ୦.୮୫ |
| ବ୍ରଜରାଜନଗର | ୪୫୦ | ୧.୬୯ | ୧୦୭ | ୨.୧୧ | ୪୮ | ୨.୪୩ | ୬୦୪ | ୧.୮୦ |
| ଲଇକେରା | ୬୫୦ | ୨.୮୨ | ୧୨୫ | ୨.୪୮ | ୪୯ | ୨.୪୮ | ୯୨୪ | ୨.୭୫ |
| ଭବାନୀପାଟଣା | ୯୦୫ | ୩.୪୦ | ୨୨୦ | ୪.୩୭ | ୫୯ | ୨.୯୮ | ୧୧୮୪ | ୩.୫୨ |
| କୋକସରା | ୬୬୦ | ୨.୪୮ | ୧୬୦ | ୩.୧୮ | ୨୨ | ୧.୧୧ | ୮୪୨ | ୨.୫୧ |
| ଜୁନାଗଡ଼ | ୫୮୯ | ୨.୨୧ | ୯୩ | ୧.୮୫ | ୫୭ | ୨.୮୩ | ୬୩୮ | ୨.୨୦ |
| କେସିଙ୍ଗା | ୬୩୮ | ୨.୪୦ | ୧୦୪ | ୨.୦୭ | ୨୭ | ୧.୩୭ | ୬୬୯ | ୨.୨୯ |
| ନର୍ଲା | ୮୧୪ | ୩.୦୭ | ୧୦୭ | ୨.୧୧ | ୮୦ | ୪.୦୪ | ୧୦୦୦ | ୨.୯୮ |
| ଧର୍ମଗଡ଼ | ୬୦୫ | ୨.୬୫ | ୬୬ | ୧.୫୧ | ୮୨ | ୪.୧୫ | ୮୬୩ | ୨.୫୭ |
| ନୂଆପଡ଼ା | ୬୬୩ | ୨.୪୯ | ୧୫୮ | ୩.୧୪ | ୪୧ | ୨.୦୭ | ୮୬୨ | ୨.୫୭ |
| ଖରିଆର | ୧୦୮ | ୦.୪୧ | ୧୮୩ | ୩.୬୪ | ୪୮ | ୨.୪୩ | ୩୩୯ | ୧.୦୧ |
| ସମ୍ବଲପୁର | ୧୧୭ | ୦.୪୪ | ୬୬ | ୧.୩୧ | ୮୫ | ୪.୩୦ | ୨୬୮ | ୦.୮୦ |

| | | | | | | | | |
|---|---|---|---|---|---|---|---|---|
| କୁଚିଣ୍ଡା | ୬୮୫ | ୨.୫୮ | ୧୧୬ | ୨.୩୧ | ୫୨ | ୨.୬୩ | ୮୫୩ | ୨.୫୪ |
| ରେଢ଼ାଖୋଲ | ୭୬୫ | ୨.୮୮ | ୫୮ | ୧.୧୫ | ୨୨ | ୧.୧୧ | ୮୪୫ | ୨.୫୧ |
| ସୋନପୁର | ୯୭୦ | ୩.୬୫ | ୧୫୪ | ୩.୦୬ | ୬୪ | ୩.୨୪ | ୧୧୮୮ | ୩.୫୪ |
| ବିନିକା | ୯୧୨ | ୩.୪୩ | ୮୮ | ୧.୭୫ | ୧୧୬ | ୫.୮୬ | ୧୧୧୬ | ୩.୩୨ |
| ବୀରମହାରାଜପୁର | ୫୧୮ | ୧.୯୫ | ୬୧ | ୧.୨୧ | ୩୯ | ୧.୯୭ | ୬୧୮ | ୧.୮୪ |
| ସୁନ୍ଦରଗଡ଼ | ୯୦୮ | ୩.୪୧ | ୧୨୭ | ୨.୫୨ | ୨୦ | ୧.୦୧ | ୧୦୫୫ | ୩.୧୪ |
| ରଘୁନାଥପାଲି | ୭୯୮ | ୩.୦୦ | ୧୨୪ | ୨.୪୬ | ୫୬ | ୨.୮୩ | ୯୭୮ | ୨.୯୧ |
| ବଣାଇଁ | ୭୬୫ | ୨.୮୮ | ୯୨ | ୧.୮୩ | ୧ | ୦.୦୫ | ୮୫୮ | ୨.୫୫ |
| ବୀରମିତ୍ରପୁର | ୫୦୨ | ୧.୮୯ | ୮୮ | ୧.୭୫ | ୪୩ | ୨.୧୭ | ୬୩୩ | ୧.୮୮ |
| ରାଜଗାଙ୍ଗପୁର | ୫୬୦ | ୨.୧୧ | ୪୭ | ୦.୯୩ | ୧ | ୦.୦୫ | ୬୦୮ | ୧.୮୧ |
| ରାଉରକେଲା | ୯୧୦ | ୩.୪୨ | ୧୩୬ | ୪.୬୧ | ୧୩୭ | ୬.୯୩ | ୧୨୮୪ | ୩.୮୨ |
| ତଳସରା | ୪୭୫ | ୧.୭୯ | ୭୭ | ୧.୫୩ | ୩୦ | ୧.୫୨ | ୫୮୨ | ୧.୭୩ |
| ଅନ୍ୟାନ୍ୟପ୍ରକଳ୍ପ | ୩୫୪ | ୧.୩୩ | ୪୩୧ | ୮.୫୭ | ୧୬୦ | ୮.୦୯ | ୯୪୫ | ୨.୮୧ |
| **ସମୁଦାୟ** | **୨୬୫୯୪** | **୧୦୦** | **୫୦୩୨** | **୧୦୦** | **୧୯୭୮** | **୧୦୦** | **୩୩୬୦୪** | **୧୦୦** |

## ପଶ୍ଚିମଓଡ଼ିଶା ବିକାଶ ପରିଷଦ ତରଫରୁ ପ୍ରଶାସନିକ ମଞ୍ଜୁରୀ ଦେଇଥିବା ବିଭିନ୍ନ କ୍ଷେତ୍ରରେ ପ୍ରକଳ୍ପର ଖର୍ଚ୍ଚ ଅଟକଳ
## ୦୧.୪.୨୦୦୧ ରୁ ୩୧.୦୩.୨୦୦୬ ଏବଂ ୦୧.୦୪.୨୦୦୬ ରୁ ୧୦.୧୧.୨୦୦୮ ପର୍ଯ୍ୟନ୍ତ

| କ୍ରମିକ ସଂଖ୍ୟା | ପ୍ରକଳ୍ପର ନାମ | ୦୧.୦୪.୨୦୦୧ରୁ ୩୧.୦୩.୨୦୦୬ | | ୦୧.୦୪.୨୦୦୬ରୁ ୧୦.୧୧.୨୦୦୮ | |
|---|---|---|---|---|---|
| | | ପ୍ରଶାସନିକ ମଞ୍ଜୁରୀ (ଲକ୍ଷରେ) | ଶତକଡ଼ା | ପ୍ରଶାସନିକ ମଞ୍ଜୁରୀ (ଲକ୍ଷରେ) | ଶତକଡ଼ା |
| ୧. | ରାସ୍ତା ଓ ଯୋଗାଯୋଗ (ଗ୍ରାମ୍ୟ ଉନ୍ନୟନ ପଞ୍ଚାୟତ ସମିତି ଓ ଅନ୍ୟାନ୍ୟ ରାସ୍ତା | ୬୮୩୧ | ୨୪.୬୬ | ୨୦୫୩ | ୨୦.୦୪ |
| ୨. | ରାସ୍ତା ଓ ଯୋଗାଯୋଗ (ରାସ୍ତା ଓ ଗୃହନିର୍ମାଣ) | ୬୦୩୬ | ୧୯.୦୧ | ୩୮୪ | ୩.୬୫ |
| ୩. | ପାନୀୟ ଜଳ | ୧୨୧୫ | ୩.୮୩ | ୩୬୬ | ୩.୬୮ |
| ୪. | ସ୍ୱାସ୍ଥ୍ୟ | ୫୬୪ | ୧.୬୮ | ୬୯୫ | ୬.୬୯ |
| ୫. | ଶିକ୍ଷା | ୧୫୩୪ | ୪.୮୩ | ୧୨୮୫ | ୧୨.୫୪ |
| ୬. | ବନ୍ଧବାଡ଼ | ୧୮୨୫ | ୦.୫୬ | ୧୫୦ | ୦.୧୫ |
| ୭. | ବନ୍ୟାରେ କ୍ଷୟକ୍ଷତିର ପୁନଃ ମରାମତି କାମ | ୮୮୩ | ୦.୨୮ | | |
| ୮. | କ୍ଷୁଦ୍ର ଜଳସେଚନ | ୪୩୪୬ | ୧୩.୬୮ | ୧୧୫୦ | ୧୧.୨୨ |

| | | | | | |
|---|---|---|---|---|---|
| ୯. | ଚେକ ଡ୍ୟାମ୍ | ୩୧୩୯ | ୯.୮୮ | ୧୭୦୯ | ୧୫.୭୧ |
| ୧୦. | ଉଠା ଜଳସେଚନ | ୩୧୦୨ | ୯.୭୬ | ୧୨୨୯ | ୧୨.୦୦ |
| ୧୧. | ବନ୍ଧ ଓ କଟା | ୪୯୩ | ୧.୫୫ | | |
| ୧୨. | ବିଦ୍ୟୁତକରଣ | ୮୪୧ | ୨.୬୫ | ୧୦୨୭ | ୧୦.୦୩ |
| ୧୩. | ମରୁଡ଼ି ସମୟରେ ଶ୍ରମଭିତ୍ତିକ କାର୍ଯ୍ୟ | ୨୨୦ | ୦.୬୯ | | |
| ୧୪. | ପୌର ପରିଷଦ ଓ ବିଜ୍ଞାପିତ ପରିଷଦ ଅଞ୍ଚଳକୁ ଅନୁଦାନ | ୬୨୫ | ୨.୪୪ | | |
| ୧୫. | ଅନ୍ୟାନ୍ୟ ପ୍ରକଳ୍ପ | ୧୩୯୩ | ୪.୩୯ | ୪୧୯ | ୪.୦୯ |
| | ସମୁଦାୟ | ୩୪୧୯୮ | ୧୦୦ | ୧୦୩୬୮ | ୧୦୦ |

# ଓଡ଼ିଆ ପତ୍ରପତ୍ରିକା : ଐତିହ୍ୟ, ବର୍ତ୍ତମାନ ଓ ଭବିଷ୍ୟତ

ଶ୍ରୀ ଅନ୍ନଦା ପ୍ରସାଦ ରାୟ୍

*କେବଳ ଜଣେ ବୁଦ୍ଧିଜୀବୀ ନୁହନ୍ତି, ଜଣେ ସାରସ୍ୱତ ବୁଦ୍ଧିଜୀବୀ ଭାବେ ଓଡ଼ିଆ ସାହିତ୍ୟରେ ଶ୍ରୀ ଅନ୍ନଦା ପ୍ରସାଦ ରାୟ୍ ଆଗଧାଡ଼ି ଆସନର ଅଧିକାରୀ କହିଲେ ଅତ୍ୟୁକ୍ତି ହେବନାହିଁ । ମର୍ଯ୍ୟାଦାର ସହିତ ଜୀବନ ଜୀଇଁଥିବା ଉତ୍କଳ ଜନନୀର ଏହି ସୁପୁତ୍ର ଶ୍ରୀ ରାୟ୍ ଜୀବନର ପ୍ରତ୍ୟେକ ବିଭାବକୁ ଅତି ସୂକ୍ଷ୍ମ ଦୃଷ୍ଟିରେ ନିଜ ଢଙ୍ଗରେ ପରଖିଛନ୍ତି ଓ ସୁନ୍ଦର ରୂପ ଦେଇ ବାଣୀ ମନ୍ଦିରକୁ ଉପହାର ଦେଇ ଚାଲିଛନ୍ତି । ଗତ ୨୦୦୮ 'ମୋ ଓଡ଼ିଶା'ର ସାରସ୍ୱତ ସଂକଳନରେ ଶ୍ରୀ ରାୟଙ୍କର 'ଓଡ଼ିଆ ସାହିତ୍ୟ ଓ ଓଡ଼ିଆ ସମ୍ବାଦ' ଶୀର୍ଷକ ଲେଖାଟି ଆଶାତୀତ ଜନାଦୃତି ଲାଭ କରିଥିଲା । ଏଥର ୨୦୦୯ ସଂକଳନ ପାଇଁ ଆମ ଅନୁରୋଧରେ ତାଙ୍କର ନୂତନ ସୃଷ୍ଟି "ଓଡ଼ିଆ ପତ୍ରପତ୍ରିକା: ଐତିହ୍ୟ, ବର୍ତ୍ତମାନ ଓ ଭବିଷ୍ୟତ" ଆପଣମାନଙ୍କ ପାଇଁ....*

ସ୍ୱାଧୀନତା ସଂଗ୍ରାମ କାଳରେ ଦେଶର ସମ୍ବାଦପତ୍ର ଆଗରେ ଗୋଟିଏ ଲକ୍ଷ୍ୟ ଥିଲା ସ୍ୱାଧୀନତା ଲାଭ । ଏଥିପାଇଁ ସମ୍ବାଦପତ୍ରମାନେ ଆଦର୍ଶକୁ ଗୁରୁତ୍ୱ ଦେଇଥିଲେ ଏବଂ ସାମ୍ବାଦିକତା ଥିଲା ଗୋଟିଏ ପ୍ରେରଣା-ପ୍ରବୃତ୍ତି, ଯାହାକୁ ମିଶନାରୀ ସ୍ପିରିଟ୍ ବୋଲି କହିବା ଯଥାର୍ଥ । ଗାନ୍ଧିଜୀ, ଉତ୍କଳମଣି ପ୍ରଭୃତି ଏହି ଲକ୍ଷ୍ୟରେ ସମ୍ଭବତଃ ସମ୍ବାଦପତ୍ର ପ୍ରକାଶ କରି ସାମ୍ବାଦିକତାକୁ ଦେଶସେବାର ଏକ ଉତ୍କୃଷ୍ଟ ମାଧ୍ୟମ ଭାବେ ଗ୍ରହଣ କରିଥିଲେ । ବ୍ରିଟିଶ ସରକାର ବିରୋଧରେ ଜନମତ ସୃଷ୍ଟି କରିବା ସେତେବେଳେ ସମ୍ବାଦପତ୍ରମାନଙ୍କର ଏକପ୍ରକାର ଗୌରବର କଥା ବୋଲି ମନେ କରାଯାଉଥିଲା । ଓଡ଼ିଶାରେ ସମ୍ବାଦପତ୍ରର ସଂଜ୍ଞା ଦୃଷ୍ଟିରୁ କର୍ମବୀର ଗୌରୀଶଙ୍କର ରାୟଙ୍କର 'ଉତ୍କଳଦୀପିକା' ସେହି ଦିଗରେ ପ୍ରାକ୍ ଭୂମିକା ଗ୍ରହଣ କରି ପରବର୍ତ୍ତୀକାଳରେ ଉତ୍କଳମଣି ଗୋପବନ୍ଧୁଙ୍କ 'ସତ୍ୟବାଦୀ', 'ସମାଜ'; ଶଶୀଭୂଷଣ ରଥଙ୍କୁ 'ଦୈନିକ ଆଶା' ଇତ୍ୟାଦି ଦେଶାତ୍ମବୋଧ ଭାବନାର ପ୍ରସାର ପାଇଁ ପ୍ରେରିତ କରିଥିଲା । ସମ୍ବାଦପତ୍ର ଥିଲା ରାଜଶକ୍ତି ବିପକ୍ଷରେ ଏକପ୍ରକାର ଅହିଂସା ପ୍ରତିବାଦ । ଯାହା ଗାନ୍ଧିଜୀଙ୍କୁ 'ହରିଜନ', 'ୟଙ୍ଗ୍ ଇଣ୍ଡିଆ' ଭଳି ନିର୍ଭୀକ ସମାଲୋଚନା ପତ୍ରିକା ପ୍ରକାଶ କରିବାରେ ସଫଳତା ଦେଇପାରିଥିଲା । ତାହା ପୂର୍ବରୁ ଶ୍ରୀ ଅରବିନ୍ଦ କର୍ମଯୋଗୀଙ୍କ 'ଯୁଗାନ୍ତର', ଇନ୍ଦୁ ପ୍ରକାଶଙ୍କ 'ବନ୍ଦେ ମାତରମ୍' ଇତ୍ୟାଦି ଜାତୀୟବାଦୀ ପତ୍ରିକା ଦ୍ୱାରା ଗୋଟିଏ ବୌଦ୍ଧିକ ବିଚାର ବିପ୍ଳବରେ ଶାଣିତ ପ୍ରଭାବ ସୃଷ୍ଟି କରିଥିଲା ।

ସ୍ୱାଧୀନତା ପରବର୍ତ୍ତୀ କାଳରେ ଜାତୀୟ ସମ୍ବାଦପତ୍ରମାନଙ୍କର ସ୍ୱର ଦେଶ ନିର୍ମାଣ ପାଇଁ ଉଦ୍ଦିଷ୍ଟ ହୋଇଗଲା । ବିଦେଶୀ ଶାସନର ଦୋଷଦୁଷ୍ଟ ପ୍ରଶାସନିକ ବ୍ୟବସ୍ଥା ଓ ସାମାଜିକ ଦୁର୍ଗତିର ନିରାକରଣ ପାଇଁ ସାମ୍ବାଦିକତା ବା ସମ୍ବାଦ ଜଗତକୁ ଗଣତନ୍ତ୍ର ଶାସନର ଚତୁର୍ଥ ସ୍ତମ୍ଭ ଭାବେ ଗ୍ରହଣ କରାଗଲା । ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହରୁ ସ୍ୱଭାବତଃ ଜଣେ ଜନମତ ସଚେତନ ବ୍ୟକ୍ତି ଥିଲେ ଏବଂ ସେ ନିଜେ ସମ୍ବାଦପତ୍ରକୁ ପ୍ରଧାନ ଉପଜୀବ୍ୟ ଭାବେ ମାନ୍ୟତା ଦେଇ 'ନେସନାଲ୍ ହେରାଲ୍ଡ୍' ଭଳି ଦୈନିକ ଇଂରାଜୀ ସମ୍ବାଦପତ୍ରର ପୃଷ୍ଠପୋଷକତା କରିଥିଲେ । ଓଡ଼ିଶାରେ ସ୍ୱାଧୀନତାପ୍ରାପ୍ତି ବର୍ଷରୁ ଯୁଗାନ୍ତକାରୀ ଜନନାୟକ ଡକ୍ଟର ହରେକୃଷ୍ଣ ମହତାବଙ୍କ ଦ୍ୱାରା ପ୍ରଥମେ ବାଲେଶ୍ୱରରୁ 'ପ୍ରଜାତନ୍ତ୍ର ସାପ୍ତାହିକ' ଓ ପରେ କଟକରୁ ଦୈନିକ 'ପ୍ରଜାତନ୍ତ୍ର' ପ୍ରକାଶନ ଆରମ୍ଭ ହୋଇ ଗୋଟିଏ ନୂତନ ଯୁଗର ଆଗମନକୁ ସୂଚିତ କଲା । 'ପ୍ରଜାତନ୍ତ୍ର ପ୍ରଚାର ସମିତି' ଆନୁକୂଲ୍ୟରେ 'ଇଷ୍ଟର୍ଣ୍ଣ ଟାଇମ୍ସ୍' ଇଂରେଜୀ ସାପ୍ତାହିକ ଓ ପରେ ଦୈନିକ ସମ୍ବାଦପତ୍ର ଭାବେ ପ୍ରକାଶ ପାଇଲା । ଏଥିରେ ଓଡ଼ିଶାର ସାମ୍ବାଦିକତା କ୍ଷେତ୍ରରେ ଏକପ୍ରକାର ଭିନ୍ନ ସ୍ୱାଦ, ରୁଚି ଓ ଆଭିମୁଖ୍ୟର ପରୀକ୍ଷା ନିରୀକ୍ଷା ବେଶ୍ ସଫଳତା ଲାଭ କଲା । ଏତଦ୍‌ପୂର୍ବରୁ ସ୍ୱାଧୀନତା ସଂଗ୍ରାମ କାଳରେ ଓଡ଼ିଶାର ସର୍ବମାନ୍ୟତା ଲାଭ କରୁଥିବା ସର୍ବାଧିକ ପ୍ରସାରିତ ଦୈନିକ ସମ୍ବାଦପତ୍ର 'ସମାଜ'ରେ ଉତ୍କଳମଣି ଯେଉଁ ଜାତୀୟବାଦୀ ତଥା ମାନବବାଦୀ ନୀତି ଆଦର୍ଶର ପରିପୋଷକତା କରି ଆସିଥିଲେ, ତାହାରି ଅନୁସରଣରେ ଗଣମୁଖୀ ଓ ଗଣକେନ୍ଦ୍ରିତ ସମସ୍ୟାର ଅନୁଶୀଳନ ଉପସ୍ଥାପନ ଓ ସଂଯୋଜନ ପାଇଁ ପାରମ୍ପରିକ ଶୈଳୀ ସଂକେତ, ଭାଷା ଓ ଅନୁଭୂତିକୁ ପ୍ରାଧାନ୍ୟ ଦିଆଯାଇ ଏକ ବିଶ୍ୱସନୀୟ ଦୃଷ୍ଟାନ୍ତ ସୃଷ୍ଟିରେ ପରିବର୍ଦ୍ଧିତ ଓ ପରିଶୁଦ୍ଧ କରାଗଲା । ଏଥିରେ ସ୍ୱର୍ଗତ ଲିଙ୍ଗରାଜ ମିଶ୍ରଙ୍କଠାରୁ ଆରମ୍ଭ କରି ରାଧାନାଥ ରଥଙ୍କ ବର୍ତ୍ତମାନ ସ୍ଥିତି ଯାଏ ଏକ ସୁନ୍ଦର ପରମ୍ପରା ଅବ୍ୟାହତ ରହିଛି । ଯଦିଓ ତାହା ସାମୂହିକ ବିଚ୍ୟୁତିର ଶିକାର ହୋଇଛି, ତାହା ସତ୍ତ୍ୱେ 'ସମାଜ' ଓଡ଼ିଶା ସମ୍ବାଦପତ୍ର ଜଗତରେ ମଉଡ଼ମଣି ଭାବରେ ସମାସୀନ ।

ପଚାଶ ବର୍ଷର ସମ୍ବାଦପତ୍ର ଇତିହାସରେ ଓଡ଼ିଶାର ସ୍ଥାନ ନିଶ୍ଚିତ ଭାବରେ କିଛି ଅଗ୍ରଗତି କରିଛି ; କିନ୍ତୁ ତାହା ପଡ଼ୋଶୀ ରାଜ୍ୟ ବଙ୍ଗଳା, ଆନ୍ଧ୍ର, ବିହାର ଇତ୍ୟାଦି ତୁଳନାରେ ଆଦୌ ସନ୍ତୋଷଜନକ ନୁହେଁ । ଓଡ଼ିଶାରେ ସମ୍ବାଦ ସଚେତନତା ବୃଦ୍ଧି ପାଇଛି ସତ୍ୟ; କିନ୍ତୁ ତାହା ଯେପରି ଗୁଣାତ୍ମକ ଓ ନିର୍ଣ୍ଣାୟକ ହେବା କଥା, ସେପରି ହୋଇପାରୁନାହିଁ । ସ୍ୱାଧୀନତା ପରେ ଓଡ଼ିଶାର ସମ୍ବାଦପତ୍ରମାନଙ୍କର ନୀତିଗତ ଆଭିମୁଖ୍ୟ ମୁକ୍ତ ଓ ନିର୍ଭୀକ ସତ୍ୟ ପ୍ରକାଶଠାରୁ ଅନେକ କ୍ଷେତ୍ରରେ ଦୂରେଇଗଲା । 'ସମାଜ' ଓ 'ପ୍ରଜାତନ୍ତ୍ର' ଦୁଇଟିଯାକ ମୁଖ୍ୟ ସମ୍ବାଦପତ୍ରର ସର୍ବୋମୟକର୍ତ୍ତା ଭାବେ ଥିବା ଡକ୍ଟର ରାଧାନାଥ ରଥ ଓ ଡକ୍ଟର ହରେକୃଷ୍ଣ ମହତାବ ବହୁଦିନ ଧରି ଗୋଟିଏ ରାଜନୈତିକ ଦଳରେ ଅନ୍ତର୍ଭୁକ୍ତ ହୋଇ ରହିବା ଫଳରେ ସେ ଦୁଇଟି କାଗଜ ଜନମତର ପ୍ରତିଫଳନ ଅପେକ୍ଷା ସ୍ୱମତ ପ୍ରକାଶ ପ୍ରତିଷ୍ଠାକୁ ଗୁରୁତ୍ୱ ଦେବା ସ୍ୱାଭାବିକ । ନିରୋଳା ସାମ୍ବାଦିକତାରେ ସ୍ୱର୍ଗତ ବାଳକୃଷ୍ଣ କରଙ୍କ ପ୍ରତିଷ୍ଠିତ ଓ ପ୍ରକାଶିତ ପ୍ରଥମ ଦୈନିକ 'ମାତୃଭୂମି'ର ସ୍ଥାନ ଉଲ୍ଲେଖଯୋଗ୍ୟ । ବିଭିନ୍ନ ସମୟରେ କ୍ଷମତାକୁ ଆୟୁଧ କରି ବିଜୁ ପଟ୍ଟନାୟକଙ୍କ ଦ୍ୱାରା କଟକରୁ ଦୈନିକ

'କଳିଙ୍ଗ', ବିରେନ୍ ମିତ୍ରଙ୍କୁ ଆଧାର କରି କଟକରୁ ଦୈନିକ 'ଜନଶକ୍ତି', ନନ୍ଦିନୀ ଶତପଥୀଙ୍କ ଆନୁକୂଲ୍ୟରେ ଭୁବନେଶ୍ୱରରୁ ଦୈନିକ 'ଧରିତ୍ରୀ', ସୌମ୍ୟରଞ୍ଜନ ପଟ୍ଟନାୟକଙ୍କ ପୃଷ୍ଠପୋଷକତାରେ ଭୁବନେଶ୍ୱରରୁ ଦୈନିକ 'ସମ୍ବାଦ' ପ୍ରକାଶ ପାଇଲା। ଏସବୁ ପରିସ୍ଥିତିରେ ପ୍ରଦ୍ୟୁମ୍ନ ବଳଙ୍କ ପ୍ରଚେଷ୍ଟାରେ ପ୍ରଥମେ କଟକରୁ 'ପ୍ରଗତିବାଦୀ' ସାପ୍ତାହିକ ଭାବେ ଏବଂ ପରେ ଭୁବନେଶ୍ୱରରୁ ଦୈନିକ ଭାବେ ଗୋଟିଏ ଆହ୍ୱାନମୟ ଭୂମିକା ଗ୍ରହଣ କରିଆସିଛି। ଯଦିଓ ପ୍ରଦ୍ୟୁମ୍ନବାବୁଙ୍କ ରାଜନୈତିକ ସଂପୃକ୍ତି ରହିଛି, ତାହାସତ୍ତ୍ୱେ ସେ କ୍ଷମତାର ବଳୟରେ ଆପଣାର ଆଦର୍ଶ ଓ ପ୍ରେରଣାକୁ କଳଙ୍କିତ ହେବାକୁ ଦେଇନାହାନ୍ତି। ଅଧୁନା ବ୍ରହ୍ମପୁରରୁ ପ୍ରକାଶିତ 'ଦୈନିକ ଆଶା' ମଧ୍ୟ ଏ ତଦ୍ରୂପ ନିରାସକ୍ତ ସାମ୍ବାଦିକତାର ପର୍ଯ୍ୟାୟଭୁକ୍ତ।

ସମ୍ବାଦପତ୍ର ପ୍ରକାଶନ ଏକ ବହୁ ଜଟିଳ ଏବଂ ସମ୍ବଳସାପେକ୍ଷ ପ୍ରଚେଷ୍ଟା। ଏଥିରେ ବ୍ୟବସାୟିକ ସଫଳତା କଥା ଚିନ୍ତା କରାଯାଏ ନାହିଁ। ଫଳରେ ସାମୂହିକ ଭାବପ୍ରବଣତା ବା ପୃଷ୍ଠପୋଷକତା ଯୋଗୁ ଅନେକ ସମ୍ବାଦପତ୍ର ପ୍ରକାଶ ପାଇଥିଲେ ହେଁ ତାହା ଆର୍ଥିକ ଦୁର୍ଗତିରୁ ବନ୍ଦ ହୋଇଯାଇଛି। ଫଳରେ ସାମ୍ବାଦିକତାକୁ ବାଧ୍ୟ ହୋଇ ରାଜକୀୟ ସଦିଚ୍ଛା ଓ ସହଯୋଗ ଆଗରେ ମଥାନତ କରିବାକୁ ପଡ଼ିଛି। ଏହାର ବିରୋଧାଚରଣ କରୁଥିବା ସାମ୍ବାଦିକମାନଙ୍କୁ ଅନେକ ସମୟରେ ଅକଥନୀୟ ନିର୍ଯାତନାର ଶିକାର ହେବାକୁ ପଡ଼ିଛି। ରାଜାନୁଗ୍ରହ ଲାଭ କରି ସାମ୍ବାଦିକତା ହୃଷ୍ଟପୁଷ୍ଟ ହେବା ଯେତିକି ଦୁଃଖଦାୟକ, ସେତିକି ଲଜ୍ଜାକର। ରାଜକୋପର ଶରବ୍ୟ ହେବାରେ– ଉଭୟ ଗଣତନ୍ତ୍ରର ଶତ୍ରୁ। ସାମ୍ବାଦିକତା ହିଁ ଏକମାତ୍ର ବିଷୟ, ଯାହାକୁ ଜନସାଧାରଣଙ୍କ ଦ୍ୱାରା ଏବଂ ଜନସାଧାରଣଙ୍କ ପାଇଁ, ଜନସାଧାରଣଙ୍କର ବୋଲି ଯାହା ଗଣତନ୍ତ୍ରର ମନ୍ତ୍ରବାଣୀ ରହିଛି, ତା'ରି ପ୍ରତିବିମ୍ବ। ତାହା ସେହି କାରଣରୁ ମୁକ୍ତ ଓ ସତ୍ୟନିଷ୍ଠ ହେବା କଥା। କିନ୍ତୁ ସ୍ୱାଧୀନତାର ଏହି ପଚାଶ ବର୍ଷ ଭିତରେ ଆମେ ଯାହା ଅନୁଭବ କରୁଛୁ, ସାମ୍ବାଦିକତା ସେ ଦିଗରେ ଏତେ ବେଶି ଉନ୍ମୁଖ ହୋଇପାରିନାହିଁ। ଯେତିକି ବି ହୋଇଛି, ତାହା ବିଳମ୍ବିତ ହୋଇଛି ଯୁଗେ ଯୁଗେ ସବୁ ସତ୍ୟ-ଅସତ୍ୟର ଆଘାତରେ ରକ୍ତାକ୍ତ ହେଲା ଭଳି। ସାମ୍ବାଦିକତା ରୂପୀ ସତ୍ୟ ଚେତନା ବିଦୀର୍ଣ୍ଣ ବିକ୍ଷତ ହେବା ସ୍ୱାଭାବିକ। ସମ୍ଭବତଃ ଏହି କାରଣରୁ ସମ୍ବାଦପତ୍ରକୁ ସଂପ୍ରତି ଏକ ଶିଳ୍ପ ଭାବରେ ଗ୍ରହଣ କରି ଏହାକୁ ବ୍ୟାବସାୟିକ ସଫଳତା ଲାଭ ପାଇଁ ଏକପ୍ରକାର ବୃତ୍ତି ବା ଜୀବିକା ଅର୍ଜନର ମାଧ୍ୟମ କରାଯାଇଛି। ଓଡ଼ିଶାରେ ଏହା ସ୍ପଷ୍ଟ ହେଲା ଦୈନିକ 'ସମ୍ବାଦ' ପ୍ରକାଶ ହେବା ପରଠାରୁ। ଏହା ପୂର୍ବରୁ ଏ ପ୍ରକାର ମନୋଭାବ ପ୍ରଚ୍ଛନ୍ନ ଭାବେ କାର୍ଯ୍ୟ କରୁଥିଲା।

ବର୍ତ୍ତମାନ ସୁଦ୍ଧା ପଞ୍ଜୀକୃତ ଦୈନିକ 'ସମ୍ବାଦ' ପତ୍ରର ସଂଖ୍ୟା ୪୨ ଥିବାବେଳେ ୫/୬ଟି ଦୈନିକ କାଗଜ ଜନମତକୁ ସ୍ପର୍ଶକଲା ଭଳି ଯୋଗ୍ୟତା ଅର୍ଜନ କରିଛନ୍ତି। ଅନ୍ୟମାନେ ସରକାରୀ ବିଜ୍ଞାପନ ଓ ଅନ୍ୟାନ୍ୟ ବ୍ୟକ୍ତିଗତ ଆଗ୍ରହ ଦ୍ୱାରା ପରିଚାଳିତ। ରାଜନୈତିକ ଏବଂ ଦଳୀୟ ସମ୍ବାଦପତ୍ର ଭାବେ ଓଡ଼ିଶାରେ ପ୍ରକାଶିତ କମ୍ୟୁନିଷ୍ଟ ପାର୍ଟିର ମୁଖପତ୍ର 'ନୂଆ ଦୁନିଆ', ସୋସିଆଲିଷ୍ଟ ପାର୍ଟିର ମୁଖପତ୍ର କୃଷକ, ଏସ୍.ୟୁ.ସି.ଆଇ.ର 'ସର୍ବହରା' ଇତ୍ୟାଦି ଗୋଟିଏ ଗୋଟିଏ ରାଜନୈତିକ ସମ୍ବାଦ ସାହିତ୍ୟ ସୃଷ୍ଟି କରିଥିଲେ। ସଂପ୍ରତି ମନ୍ଥନ, ନିର୍ଭୀକ, କେତେକ ସାପ୍ତାହିକ ପତ୍ର ସମ୍ବାଦଭିତ୍ତିକ ଆଲୋଚନା ଅନୁସନ୍ଧାନ ପାଇଁ ପ୍ରକାଶ

ପାଉଛି । ଏତଦ୍‌ବ୍ୟତୀତ ସାମୟିକ ସମ୍ବାଦପତ୍ର ଭାବରେ କିଛି କିଛି ସ୍ୱର ଝଙ୍କାର ସୃଷ୍ଟି ହେଉଛି । ଆନନ୍ଦର କଥା, ଗତ ଗାନ୍ଧୀଜୟନ୍ତୀ ଅବକାଶରେ ଭୁବନେଶ୍ୱରରୁ 'ସମୟ' ଦୈନିକ ସମ୍ବାଦପତ୍ର ପ୍ରକାଶ ପାଇ ବର୍ତ୍ତମାନ୍ ଖୁବ୍ କମ୍ ସମୟ ମଧ୍ୟରେ ଆଶାତୀତ ଉନ୍ନତି କରିପାରିଛି । ମୁଦ୍ରଣ ପରିପାଟୀ ଏବଂ ଓଡ଼ିଶାର ପ୍ରଥମ ରଙ୍ଗୀନ୍ ଦୈନିକ ସମ୍ବାଦପତ୍ର ଭାବେ ଏହା ଲୋକଙ୍କ ଦୃଷ୍ଟି ଆକର୍ଷଣ କରିବାରେ ସମର୍ଥ ହୋଇପାରିଛି । ବ୍ରହ୍ମପୁରରୁ 'ଅନୁପମ ଭାରତ' ଖୁବ୍ ଅଳ୍ପ ଦିନ ମଧ୍ୟରେ ପ୍ରକାଶ ପାଇ ବେଶ୍ ଲୋକପ୍ରିୟତା ହାସଲ କରିଛି ।

ସାରସ୍ୱତ ପରିଚର୍ଯ୍ୟାରେ ପୁସ୍ତକ ବା ଗ୍ରନ୍ଥ ରଚନା ଯଦିଓ ସ୍ଥାୟୀ, ତା' ସତ୍ତ୍ୱେ କ୍ଷୁଦ୍ର ପତ୍ରପତ୍ରିକାର ପ୍ରକାଶନ ନିମିତ୍ତ ଏକ ପ୍ରଚେଷ୍ଟା ବହୁଦିନ ଧରି ଚାଲିଆସିଛି । ଏହାର ପଶ୍ଚାତରେ ସ୍ରଷ୍ଟା ମାନସର ଗୋଟିଏ ପ୍ରେରଣା ନିଶ୍ଚୟ ରହିଛି । ସେ ପ୍ରେରଣା ହୁଏତ ସାମୟିକ ହୋଇପାରେ; କିମ୍ବା ଦୀର୍ଘ ହୋଇପାରେ, କିନ୍ତୁ ଉଦ୍ଦେଶ୍ୟ ମହତ୍ । ସର୍ବତୋଭାବେ ପତ୍ରପତ୍ରିକା ପ୍ରକାଶନ ହେଉଛି ସାରସ୍ୱତ ଅଟ୍ଟାଳିକାର ଉପଯୋଗୀ ସାମଗ୍ରୀ । ଏସବୁର ସମୀକରଣ ଓ ସଂଯୋଜନା ଦ୍ୱାରା ସୃଜନାତ୍ମକ କିଛି କୃତି ନିର୍ଦ୍ଦିଷ୍ଟ ଆଭିମୁଖ୍ୟ ବହନ କରେ । କେବଳ ଓଡ଼ିଆ ନୁହେଁ, ଯେକୌଣସି ଭାଷା ପକ୍ଷରେ ଏହା ସାର୍ବଜନୀନ ସତ୍ୟ । ମୁଦ୍ରିତ ଗଣମାଧ୍ୟମ କହିଲେ ପତ୍ରପତ୍ରିକାର ପ୍ରକାଶନକୁ ହିଁ ବୁଝାଏ ।

ଓଡ଼ିଆ ଭାଷାରେ ପତ୍ରପତ୍ରିକାର ବିଧିବଦ୍ଧ ପ୍ରକାଶନ ହେବା ପୂର୍ବରୁ ପ୍ରଥମେ 'କୁଜିବର' ନାମକ ଏକ ହସ୍ତଲିପି ପତ୍ରିକାର ପ୍ରକାଶନ ଉଦ୍ୟମ ହୋଇଥିଲା । ମୁଦ୍ରଣଯନ୍ତ୍ରର ଆବିର୍ଭାବ ହେବା ପରେ ପତ୍ରପତ୍ରିକାର ଗୋଟିଏ ଧାରାବାହିକ ପରମ୍ପରା ସୃଷ୍ଟି ହୋଇଛି । ୧୮୩୭ ମସିହାରେ କଟକରେ ପ୍ରଥମେ ଖ୍ରୀଷ୍ଟିଆନ୍ ମିଶନାରୀଙ୍କ ଦ୍ୱାରା ଏକ ମୁଦ୍ରଣ ଯନ୍ତ୍ର ପ୍ରତିଷ୍ଠା ହୋଇଥିଲା ଏବଂ ସେଥିରୁ କିଛି ଖ୍ରୀଷ୍ଟିୟ ସାହିତ୍ୟ ଓଡ଼ିଆରେ ପ୍ରକାଶ ପାଇଥିଲା । ୧୮୪୯ ମସିହାରେ ଏହି ସଂସ୍ଥା ତରଫରୁ 'ଜ୍ଞାନାରୁଣ' ନାମକ ଏକ ପତ୍ରିକା ପ୍ରଥମେ ଓଡ଼ିଆ ଭାଷାରେ ପ୍ରକାଶ ପାଇଥିଲା । ତାହା ପ୍ରଥମ ଓଡ଼ିଆ ପତ୍ର ପତ୍ରିକା । ଏହାପରେ ୧୮୯୬ ମସିହାରେ କର୍ମବୀର ଗୌରୀଶଙ୍କର ରାୟଙ୍କର 'ଉତ୍କଳ ଦୀପିକା' ନାମକ ଏକ ସମ୍ବାଦପତ୍ର ପ୍ରକାଶିତ ହୋଇ ଗୋଟିଏ ବିଧିବଦ୍ଧ ପରମ୍ପରା ସୃଷ୍ଟି ହୋଇଥିଲା । ୧୮୮୯ ମସିହାରେ ସମ୍ବଲପୁରରୁ ନୀଳମଣି ବିଦ୍ୟାରତ୍ନଙ୍କ ସଂପାଦନାରେ 'ସମ୍ବଲପୁର ହିତୈଷିଣୀ' ନାମକ ଏକ ପତ୍ରିକା ମଧ୍ୟ ପ୍ରକାଶ ପାଇଲା । ଏଥିରେ ତତ୍କାଳୀନ ସାରସ୍ୱତ ସାଧକ ଗଙ୍ଗାଧର ମେହେର, ରାଧାନାଥ ରାୟ, ବିଶ୍ୱନାଥ କର, ମଧୁସୂଦନ ରାଓ, ଫକୀର ମୋହନ ସେନାପତି ପ୍ରମୁଖ ସେମାନଙ୍କର ବାଣୀବିଭୂତିର ପରାକାଷ୍ଠା ପ୍ରତିପାଦନ କରିଥିଲେ । ପରବର୍ତ୍ତୀ ସମୟରେ ବିଶ୍ୱନାଥ କର 'ଉତ୍କଳ ସାହିତ୍ୟ', ଫକୀରମୋହନ ସେନାପତି 'ସମ୍ବାଦ ବାହିକା', ନୀଳମଣି ବିଦ୍ୟାରତ୍ନ 'ସମ୍ବଲପୁର ହିତୈଷିଣୀ' ନାମକ ପତ୍ରିକା ପ୍ରକାଶ କରି ଓଡ଼ିଆ ସାହିତ୍ୟରେ ଆଲୋଡ଼ନ ସୃଷ୍ଟି କରିଥିଲେ । 'ବିଜୁଳି' ଓ 'ଇନ୍ଦ୍ରଧନୁ' ନାମକ ଦୁଇଟି ପତ୍ରିକା ଓଡ଼ିଆ ସାହିତ୍ୟ ଜଗତରେ ଗୋଟିଏ ସୁସ୍ଥ ବିତର୍କ ଆରମ୍ଭ କରିଥିଲେ, ଯାହା ଓଡ଼ିଆ ସାହିତ୍ୟର ସମାଲୋଚନା ଦିଗଟିକୁ ଶାଣିତ କରିଥିଲା ।

ସ୍ୱାଧୀନତା ପୂର୍ବବର୍ତ୍ତୀ କାଳରେ ଓଡ଼ିଆ ଭାଷାରେ ଯେଉଁସବୁ ପତ୍ରପତ୍ରିକା ପ୍ରକାଶ ପାଉଥିଲା, ସେଥିରେ ତତ୍କାଳୀନ ସମାଜର ଚିତ୍ର ଓ ଚରିତ୍ର ପ୍ରଧାନ ସ୍ଥାନ ଗ୍ରହଣ କରିଥିଲା । ପ୍ରତ୍ୟେକ ପ୍ରଚେଷ୍ଟା

ମୂଳରେ ଅଙ୍ଗୀକାରବଦ୍ଧତା ମଧ୍ୟ ଥିଲା; କିନ୍ତୁ ସେ ଅଙ୍ଗୀକାରବଦ୍ଧତାର ସର୍ବକାଳୀନତା ନ ଥିଲା। କୁହାଯାଇପାରେ ଯେ, କୌଣସି ପତ୍ରପତ୍ରିକା ହେଉ, ତାହା ନାନା କାରଣରୁ ଦୀର୍ଘସ୍ଥାୟୀ ହୋଇପାରେ ନାହିଁ। ପ୍ରଥମେ ସମୟର ଆବଶ୍ୟକତା, ଦ୍ୱିତୀୟରେ ପାଠକୀୟ ଆଦୃତି, ତୃତୀୟରେ ଆଦର୍ଶଗତ ଦୃଢ଼ତା, ଚତୁର୍ଥରେ ଆନୁଷଙ୍ଗିକ ସମ୍ବଳ ସଂଗ୍ରହ। ଏହି ଚାରିଗୋଟି ଦିଗକୁ ସମତୁଲ କରି ରଖିବା ହୁଏତ ପତ୍ରପତ୍ରିକା ପ୍ରକାଶନ ବା ସଂପାଦକଙ୍କ ପକ୍ଷରେ ସମ୍ଭବ ହୋଇ ନ ଥାଏ। ଏହି ପର୍ଯ୍ୟାୟରେ ଉତ୍କଳମଣି ଗୋପବନ୍ଧୁଙ୍କ ଦ୍ୱାରା 'ସତ୍ୟବାଦୀ' ସାହିତ୍ୟ ପତ୍ରିକା ଓ 'ସମାଜ', 'ସାପ୍ତାହିକ' ସମ୍ବାଦପତ୍ରର ପ୍ରକାଶନ ସ୍ଥଗିତ ହୋଇ ରହିବା ପରେ 'ସମାଜ' ସାପ୍ତାହିକ ପତ୍ରିକାରୁ ଡଃ. ରାଧାନାଥ ରଥଙ୍କ ପ୍ରଗାଢ଼ ଅଧ୍ୟବସାୟ ଫଳରେ ଦୈନିକ ସମ୍ବାଦପତ୍ରରେ ପରିଣତ ହୋଇ ଏ ପର୍ଯ୍ୟନ୍ତ ଜନସ୍ୱୀକୃତି ଲାଭ କରିଛି ଏବଂ ବ୍ୟାପକ ଦୃଷ୍ଟିକୋଣରୁ ଓଡ଼ିଶାର ଐତିହ୍ୟ, ସଂସ୍କୃତି ଓ ଜନଚେତନାକୁ ଗୋଟିଏ ନୈତିକ ଓ ମାର୍ଜିତ ଦିଗ୍‌ଦର୍ଶନ ଦେଇପାରିଛି।

ପରବର୍ତ୍ତୀକାଳରେ ପଣ୍ଡିତ ନୀଳକଣ୍ଠ ଦାସ 'ନବଭାରତ' ଦୈନିକ ପତ୍ରିକା ପ୍ରକାଶ କରି ସେଥିରେ ଜାତୀୟ ଚେତନାର ଶିଳାନ୍ୟାସ କରିଥିଲେ। ଅବଶ୍ୟ ତାହା କିଛିଦିନ ଚାଲିବା ପରେ ବନ୍ଦ ହୋଇଗଲା। ଡକ୍ଟର ହରେକୃଷ୍ଣ ମହତାବଙ୍କ ପୃଷ୍ଠପୋଷକତାରେ 'ପ୍ରଜାତନ୍ତ୍ର' ଦୈନିକ ସମ୍ବାଦପତ୍ର ଓ 'ଝଙ୍କାର' ମାସିକ ସାହିତ୍ୟ ପତ୍ରିକାର ପ୍ରକାଶନ ଓଡ଼ିଆ ଭାଷାରେ ଆଧୁନିକ ଚିନ୍ତାଧାରାର ନବଦିଗନ୍ତ ଉନ୍ମୋଚନ କରିବାକୁ ଲାଗିଲା। ଡକ୍ଟର ମହାତବଙ୍କ କେବଳ ରାଜନୈତିକ ବ୍ୟକ୍ତିତ୍ୱର ପରାକାଷ୍ଠା ଏ ଦୁଇଟି ପତ୍ରିକାର ସ୍ଥାୟିତ୍ୱ ପାଇଁ ଦାୟୀ ବୋଲି କୁହାଯିବା ଠିକ୍ ହେବନାହିଁ, ବରଂ ଡକ୍ଟର ମହତାବଙ୍କ ସାରସ୍ୱତ ପ୍ରତିଭାର ତାହା ଥିଲା ଏକ ଜୀବନ୍ତ ପ୍ରତିମୂର୍ତ୍ତି। ତେଣୁ ତାହା ଆଜିପର୍ଯ୍ୟନ୍ତ ତା'ର ନିଜସ୍ୱ ବୈଶିଷ୍ଟ୍ୟ ବଜାୟ ରଖିପାରିଛି। ଯେହିପରି ଦୈନିକ ସମାଜ ଡ. ରାଧାନାଥ ରଥଙ୍କ ବଳିଷ୍ଠ ବ୍ୟକ୍ତିତ୍ୱର ପ୍ରଭାବରେ ଆଜିପର୍ଯ୍ୟନ୍ତ ସାମ୍ବାଦିକତାର ଉଚ୍ଚ ମୂଲ୍ୟବୋଧକୁ ଜାଗରୂକ କରିଆସିଛି। ଏହା କେବଳ ସମ୍ବାଦପତ୍ର ନୁହେଁ, ବରଂ ଓଡ଼ିଶାର ଗୋଟିଏ ସମର୍ପିତ ଜନସେବା ଓ କଲ୍ୟାଣକର ମିଶନ ଭଳି କାର୍ଯ୍ୟ କରିଆସିଛି। କଟକ ସହରରୁ ଏ ଦୁଇଟି ସମ୍ବାଦପତ୍ରକୁ ଛାଡ଼ିଦେଲେ ବ୍ୟକ୍ତିଗତ ଏକକ ଉଦ୍ୟମରେ ବାଳକୃଷ୍ଣ କର 'ମାତୃଭୂମି' ସାପ୍ତାହିକ ଓ ଦୈନିକ ଏପରି ଦୁଇଟି ପତ୍ରିକାର ପ୍ରକାଶନ କରି ନିର୍ଭୀକତା, ସ୍ପଷ୍ଟବାଦିତା ଓ ଗତିଶୀଳତାର ପରିଚୟ ରଖିଥିଲେ। ଅନିବାର୍ଯ୍ୟ କାରଣରୁ ତାହା ବନ୍ଦ ହୋଇ ବର୍ତ୍ତମାନ 'ମାତୃଭାଷା' ଦୈନିକ ସମ୍ବାଦପତ୍ର ଭାବେ ପ୍ରକାଶ ପାଉଛି। ସେହି ପରମ୍ପରାରେ ତାଙ୍କ ପୁତ୍ର ବିଚିତ୍ରାନନ୍ଦ କର ଓ ତାଙ୍କ ପୁତ୍ର ବିକାଶ କର ଅଦ୍ୟାବଧି ସେହି ଉଦ୍ୟମ ଅବ୍ୟାହତ ରଖି ଆସିଛନ୍ତି। ବାଳକୃଷ୍ଣ କର 'ମାତୃଭୂମି'କୁ ସମ୍ବାଦପତ୍ରରେ ସୀମିତ କରିଥିଲେ ମଧ୍ୟ ସେଥିରେ ସାହିତ୍ୟ ଓ ସଂସ୍କୃତିକୁ ସ୍ଥାନୀତ କରିଥିଲେ। ଏତଦ୍‌ବ୍ୟତୀତ ସେ ନିରୋଳା ସାହିତ୍ୟ ପତ୍ରିକା ଭାବେ ମାସିକ 'ସହକାର' ପତ୍ରିକା ପ୍ରକାଶ କରିଥିଲେ।

କଟକରୁ ଆଉ ଗୋଟିଏ ସାହିତ୍ୟ ପତ୍ରିକା 'ମୁକୁର' ମଧ୍ୟ ପ୍ରକାଶ ପାଉଥିଲା। ସେସବୁ ଗୋଟିଏ ଗୋଟିଏ ଯୁଗସ୍ତମ୍ଭ ଓଡ଼ିଆ ଭାଷା ଓ ସାହିତ୍ୟର ପରିପୁଷ୍ଟି ସାଧନ କରିଥିଲା। ପରବର୍ତ୍ତୀକାଳରେ ରାଜନୈତିକ ଦୃଷ୍ଟିକୋଣରୁ ପ୍ରବର୍ତ୍ତିତ 'ଗଣତନ୍ତ୍ର' ପାଟଣା ରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ପୃଷ୍ଠପୋଷକତାରେ

ଓ 'କଳିଙ୍ଗ' ଦୈନିକ ସମ୍ବାଦପତ୍ର ବିଜୁ ପଟ୍ଟନାୟକଙ୍କ ପୃଷ୍ଠପୋଷକତା କ୍ରମେ ପ୍ରକାଶ ପାଇଥିଲା । ଏହାର ସଂପାଦକ ଭାବେ ପ୍ରବୀଣ ସ୍ୱାଧୀନତା ସଂଗ୍ରାମୀ ତଥା ସାମ୍ୟବାଦୀ ନେତା ମନମୋହନ ମିଶ୍ର ଓ ସୁରେନ୍ଦ୍ର ମହାନ୍ତି ଭିନ୍ନ ଭିନ୍ନ ସମୟରେ କାର୍ଯ୍ୟ କରିଥିଲେ; କିନ୍ତୁ ତାହା ବନ୍ଦ ହୋଇଗଲା । ସେହିପରି ବୀରେନ୍ ମିତ୍ରଙ୍କ ଆନୁକୂଲ୍ୟରେ 'ଜନଶକ୍ତି' ଦୈନିକ ସମ୍ବାଦପତ୍ର ପ୍ରକାଶ ପାଇଥିଲା; କିନ୍ତୁ ତାହା ମଧ୍ୟ ବନ୍ଦ ହୋଇଗଲା । କଟକର ସାଂସ୍କୃତିକ ପୃଷ୍ଠଭୂମି ଓଡ଼ିଆ ଭାଷାର ଓ ସାହିତ୍ୟର ଉନ୍ନତି ପାଇଁ ଅଧିକ ଶକ୍ତିଶାଳୀ ଦୃଶ୍ୟମାନ ଭୂମିକା ଗ୍ରହଣ କରିଥିଲା । ଏଇଠୁ ଜନ୍ମ ନେଇଥିଲା ନନ୍ଦିନୀ ଶତପଥୀଙ୍କ 'ଧରିତ୍ରୀ' ପତ୍ରିକା, ଯାହା ବର୍ତ୍ତମାନ ଦୈନିକ ସମ୍ବାଦପତ୍ର ହୋଇଛି, ସ୍ମରଣିକା ପ୍ରକାଶ ପାଇଛି । ସେ ସବୁର ନାମୋଲ୍ଲେଖ କରିବା ଏଠାରେ ନିଷ୍ପ୍ରୟୋଜନ । କେବଳ ପତ୍ରପତ୍ରିକା ପ୍ରକାଶନର ଯେଉଁ ଧାରା ରହିଆସିଛି, ସେ ସଂପର୍କରେ ସୂଚନା ଦେବା ଆମର ଉଦ୍ଦେଶ୍ୟ । ସେ ଧାରାରେ କି କି ଉଦ୍ଦେଶ୍ୟ କାର୍ଯ୍ୟ କରୁଥିଲା, ତାହା ମଧ୍ୟ ଗୁଣାଅଧିକେ ପ୍ରକାଶ କରାଯାଉଛି । ମୋଟ ଉପରେ ପତ୍ରପତ୍ରିକା ପ୍ରକାଶନରେ ବ୍ୟକ୍ତିଗତ ଅଭିରୁଚି ଆଉ ଆଭିମୁଖ୍ୟ ସାଙ୍ଗକୁ କିଛି ସାମାଜିକ ଅଙ୍ଗୀକାରବଦ୍ଧତା ରହିଆସିଛି । ଅନିୟମିତ ହେଉ ବା ଅସ୍ଥାୟୀ ହେଉ, ସେସବୁ ପତ୍ରପତ୍ରିକା ଓଡ଼ିଆ ଭାଷା ଓ ସାହିତ୍ୟକୁ ଗୋଟିଏ ଗୋଟିଏ ମୋଡ଼ ଦେବାରେ ସହାୟକ ହୋଇଆସିଛି । ପ୍ରସିଦ୍ଧ କଥାକାର ବାଗ୍ମୀ ମନୋଜ ଦାସ ଏକଦା କଟକରୁ 'ଦିଗନ୍ତ' ନାମରେ ଗୋଟିଏ ପ୍ରଗତିବାଦୀ ସାହିତ୍ୟ ପତ୍ରିକା ପ୍ରକାଶ କରୁଥିଲେ, ତାହା ପରେ ପଦ୍ମଶ୍ରୀ ସଚ୍ଚି ରାଉତରାୟ ମଧ୍ୟ ତା'ର ପୁନଃପ୍ରକାଶ କରିଥିଲେ । ଏଥିପୂର୍ବରୁ ପ୍ରଗତିବାଦୀ ଚେତନାର ବାର୍ତ୍ତାବହ ଭାବରେ 'ଆଧୁନିକ' ଏ ପତ୍ରିକାର ଉତ୍ତରପୁରୁଷ । ଓଡ଼ିଶାରେ ସାମ୍ୟବାଦୀ ଚିନ୍ତାଧାରାର ପ୍ରବର୍ତ୍ତକ ଭଗବତୀ ପାଣିଗ୍ରାହୀ, ଅନନ୍ତ ପଟ୍ଟନାୟକ, ଗୁରୁଚରଣ ପଟ୍ଟନାୟକ, ବିଶ୍ୱନାଥ ପଣ୍ଡାୟତ ପ୍ରମୁଖଙ୍କ ଉଦ୍ୟମରେ ପତ୍ରିକା ମଧ୍ୟ ପ୍ରକାଶ ପାଇଥିଲା । କାନ୍ତକବି ଲକ୍ଷ୍ମୀକାନ୍ତଙ୍କ ପ୍ରତିଷ୍ଠିତ 'ଡଗର' ମାସିକ ପତ୍ରିକା ପରବର୍ତ୍ତୀ ସମୟରେ ନିତ୍ୟାନନ୍ଦ ମହାପାତ୍ରଙ୍କ ସଂପାଦନାରେ ବହୁଦିନ ଧରି ପ୍ରକାଶ ପାଇଥିଲା । 'ଡଗର' ଥିଲା ଏକ ପୂର୍ଣ୍ଣାଙ୍ଗ ସାହିତ୍ୟ ପତ୍ରିକା ।

୧୯୬୬ ରେ ପ୍ରକାଶ ପାଇଥିବା ଏକ ସମ୍ଭ୍ରାନ୍ତ ସାହିତ୍ୟ ପତ୍ରିକା 'ଜୀବନରଙ୍ଗ' ଶ୍ରୀ ରଣଧୀର ଦାସଙ୍କ ସଂପାଦନାରେ ପତ୍ରିକା ଜଗତରେ ସେତେବେଳେ ଆଲୋଡ଼ନ ସୃଷ୍ଟି କରିଥିଲା । ଦୀର୍ଘ ୪୦ ବର୍ଷ ଧରି ଏହି ପ୍ରକାଶନ ନିୟମିତ ଚାଲିଛି ।

୧୯୬୦ ଦଶକରୁ ଆରମ୍ଭ ହେଲା ଆଉ ଗୋଟିଏ କ୍ରାନ୍ତିଦର୍ଶୀ ଯୁଗ । ସଦାଶିବ ଦାସଙ୍କ 'ଆଭା', ପ୍ରସନ୍ନ ପାଟଶାଣୀଙ୍କ 'ବେଳା' ଏବଂ ମୋର ବ୍ୟକ୍ତିଗତ ଉଦ୍ୟମରେ 'ଅଗ୍ନିବୀଣା' ମାସିକ ପ୍ରକାଶ ପାଇଲା । ଏଥିରେ ବହୁ କ୍ରାନ୍ତିକାରୀ ସାହିତ୍ୟ ସାଧକମାନଙ୍କର ଆବିର୍ଭାବ ଘଟିଥିଲା । ଏହା ଥିଲା ତରୁଣ ପ୍ରାଣର ଦୁର୍ବାର ଉଦ୍‌ବେଳନର ପ୍ରତୀକ । ତାହା ଗୋଟିଏ ଦୁଇଟି ବର୍ଷ ପରେ ବନ୍ଦ ହୋଇଗଲା; କିନ୍ତୁ ସେ ପତ୍ରିକା ଓଡ଼ିଆ ସାହିତ୍ୟରେ ସୃଷ୍ଟି କରିଥିଲା ଆଗ୍ନେୟ ସଂକଳ୍ପ । ୧୯୬୫ରୁ ୧୯୯୦ ମସିହା ପର୍ଯ୍ୟନ୍ତ ସେଗୁଡ଼ିକ ପରିବର୍ତ୍ତିତ ସାମାଜିକ ସ୍ଥିତି ଓ ଆଧ୍ୟାତ୍ମିକ ଏଷଣାର ଗୋଟିଏ ଆହ୍ୱାନ ସୃଷ୍ଟି କରିଥିଲା । ରମେଶ ଚନ୍ଦ୍ର ରଥଙ୍କ 'ଚେତନା' ଓ 'ଯୁଗଧର୍ମ' ନାମକ ପତ୍ରିକା ପ୍ରକାଶ ପାଇବା ପରେ ବନ୍ଦ ହୋଇଗଲା । ଇତିମଧ୍ୟରେ

ପ୍ରକାଶ ପାଇଥିବା ବ୍ୟଙ୍ଗ ସମାଲୋଚନା ପତ୍ରିକା ଭାବେ 'ଦୁର୍ମୁଖ' ଅଚ୍ୟୁତାନନ୍ଦ କରଙ୍କ ସଂପାଦନାରେ ଆଜିପର୍ଯ୍ୟନ୍ତ ନିୟମିତ ପ୍ରକାଶ ପାଇଆସୁଛି।

କଲିକତାରୁ ଏହା ପୂର୍ବରୁ ୧୯୫୦ ଦଶକରୁ ପ୍ରକାଶିତ ପାତିରାମ ପରିଜାଙ୍କ ପୃଷ୍ଠପୋଷକତାରେ 'ଆସନ୍ତାକାଲି' ଏକଦା ଓଡ଼ିଆ ସାହିତ୍ୟରେ ରୋମାଣ୍ଟିକ୍ ଧାରାର ସୂତ୍ରପାତ କରିଥିଲା। ରାମକୃଷ୍ଣ ନନ୍ଦଙ୍କ ସଂପାଦିତ ଶିଶୁମାନଙ୍କ ପାଇଁ 'ସଂସାର' ଅଦ୍ୟାବଧି ପ୍ରକାଶ ପାଇଆସୁଛି। ରବି ସିଂହଙ୍କ ସଂପାଦିତ 'ଅଚଳପତ୍ର' ବନ୍ଦ ହୋଇଯାଇଛି। ଏପରି ଅନେକ ବଞ୍ଚିଛି ପୁଣି ହଜିଯାଇଛି।

ଏହିଭଳି ଅନିୟମିତ ହେଲେ ହେଁ ସାମୟିକ ଭାବପ୍ରବଣତା ଭିତରୁ ଅନେକ ପତ୍ରପତ୍ରିକାର ଜନ୍ମ ହୋଇଛି; କିନ୍ତୁ ସେସବୁ ସ୍ଥାୟୀ ହୋଇପାରିନାହିଁ। ଏହା ସତ୍ତ୍ୱେ ସେସବୁ ବହୁ ନୂତନ ସ୍ରଷ୍ଟାଙ୍କୁ ଲୋକଲୋଚନକୁ ଆଣିପାରିଛନ୍ତି ଏବଂ ସେମାନଙ୍କୁ ପ୍ରେରଣା ଯୋଗାଇଛନ୍ତି ସେମାନେ ପରବର୍ତ୍ତୀ ଅବସ୍ଥାରେ ପରିପୁଷ୍ଟ ଓ ପ୍ରତିଷ୍ଠିତ ହେବା ପର୍ଯ୍ୟନ୍ତ। ତେଣୁ ନିଶ୍ଚିତ ଭାବରେ କୁହାଯାଇପାରେ ଯେ ଓଡ଼ିଆ ପତ୍ରପତ୍ରିକା ମାଧ୍ୟମରେ ଓଡ଼ିଆ ସାହିତ୍ୟର ଗୋଟିଏ ସୁଦୃଢ଼ ଭିତ୍ତି ଅବଲୀଳା କ୍ରମେ ସ୍ଥାପିତ ହୋଇପାରିଛି। କିଛି ଆତ୍ମବିଶ୍ୱାସ ଓ ପ୍ରେରଣା ସୃଷ୍ଟିକରି ସେସବୁ ପତ୍ରିକା ହୁଏତ ବିସ୍ମୃତ ହେବେନାହିଁ। ଏହା ଓଡ଼ିଆ ଭାଷା ଆଉ ସାହିତ୍ୟର ଗୋଟିଏ ଗୋଟିଏ ମାଇଲ୍ ଖୁଣ୍ଟ ଭଳି ପରିଗଣିତ ହେବ। ଏସବୁ କେବଳ ସାହିତ୍ୟ ନୁହେଁ, ସାମ୍ବାଦିକତାର ଓ ସମାଜ ଚେତନାର ମଧ୍ୟ ସନ୍ତକ ଭାବେ ଭବିଷ୍ୟତକୁ ଆଶାବାଦର ଅଭୟ ପ୍ରଦାନ କରିବ। ବର୍ତ୍ତମାନ ଦୈନିକ ସମ୍ବାଦପତ୍ର ଭାବେ ସମାଜ, ପ୍ରଜାତନ୍ତ୍ର , ଧରିତ୍ରୀ, ସମୟ, ପ୍ରଗତିବାଦୀ, ସମ୍ବାଦ, ମାତୃଭାଷା, ସମୟ, ଅନୁପମଭାରତ, ଓଡ଼ିଶା ଭାସ୍କର ପ୍ରଭୃତି ପ୍ରକାଶ ପାଉଛି।

ଏସବୁ ସତ୍ତ୍ୱେ ଆମେ ଅସ୍ୱୀକାର କରିବା ନାହିଁ ଯେ, କେତେକ ପତ୍ରପତ୍ରିକା କେବଳ ବ୍ୟାବସାୟିକ ଓ ତତ୍କାଳୀନ ଲାଭକୁ ଦୃଷ୍ଟିରେ ରଖି ପ୍ରକାଶ ପାଇଥାଏ ଏବଂ ସେ ସବୁର କୌଣସି ଲକ୍ଷ୍ୟ ବା ଆଦର୍ଶ ନ ଥାଏ। କେବଳ ଥାଏ ଆତ୍ମପ୍ରଶସ୍ତି, ପ୍ରଚାର, କିଛି ସ୍ୱାର୍ଥପୂର୍ତ୍ତି। ତେଣୁ ଏ ପ୍ରକାର ପତ୍ରପତ୍ରିକାର ସମାଜ ପ୍ରତି, ଭାଷା ପ୍ରତି, ଦେଶପ୍ରତି ସେପରି କୌଣସି ଉତ୍ତରଦାୟିତ୍ୱ ନ ଥାଏ। ଆମେ ଏ ପ୍ରକାର ପତ୍ରପତ୍ରିକାକୁ 'ଶସ୍ତା' କହିବାକୁ ବାଧ୍ୟ ହେବୁ। ଏପରି କେତେକ ପତ୍ରପତ୍ରିକା କେବଳ କୁତ୍ସା ଓ ଯୌନତାକୁ ଆଶ୍ରୟ କରି ଏବଂ କେତେକ ଅଶୋଭନୀୟ ପ୍ରସଙ୍ଗ ଚର୍ଚ୍ଚା କରି, ରୋମାଞ୍ଚକର ହଟଚମଟ ବିବରଣୀ ପ୍ରକାଶ କରି ଲୋକପ୍ରିୟତା ଅର୍ଜନ କରିଥା'ନ୍ତି; କିନ୍ତୁ ସେ ସବୁର କୌଣସି କାଳଜୟୀ ଆଭିମୁଖ୍ୟ ନ ଥାଏ।

ସଂପ୍ରତି ଓଡ଼ିଆ ପତ୍ରପତ୍ରିକାର ଭବିଷ୍ୟତ ସଂପର୍କରେ କିଛି ମତାମତ ପ୍ରକାଶ କରିବା ଉଚିତ୍ ହେବ। ପ୍ରଶ୍ନ ହେଉଛି, ଯେଉଁସବୁ ଓଡ଼ିଆ ପତ୍ରପତ୍ରିକା ଯାହା ଛତୁ ଫୁଟିଲା ଭଳି ମାଡ଼ି ଚାଲିଛି, ତା'ର ଦେଶ ପ୍ରତି, ଜାତି ପ୍ରତି ସନ୍ଦେଶ କ'ଣ ରହିଛି ? ଉତ୍ତର ହେବ, କିଛି ନାହିଁ, ଅଛି କେବଳ ଆତ୍ମଶ୍ଲାଘା, ନିରର୍ଥକ ଆତ୍ମପ୍ରଶସ୍ତି, ଆତ୍ମତୁଷ୍ଟି, ନଚେତ୍ କିଛି ବୃଥା ପ୍ରଚାର। ହୁଏତ କୌଣସି ରାଜନେତା ବା ସମ୍ଭ୍ରାନ୍ତ ବ୍ୟକ୍ତିଙ୍କର ଆର୍ଥିକ ସାହାଯ୍ୟ ଲାଭ କରି କିଛି ଉଦ୍‌ଭ୍ରାନ୍ତ କଲମନବୀଶଙ୍କ ଯଦୃଚ୍ଛା ଲେଖା ପ୍ରକାଶ କରିବା— ଯାହାର କୌଣସି ଭିତ୍ତିନାହିଁ କି ଭବିଷ୍ୟତ ମଧ୍ୟ ନାହିଁ।

ଆହୁରି ଶଙ୍କାଜନକ ପରିସ୍ଥିତି କ୍ରମେ ଗାଢ଼ ହେବାକୁ ଲାଗିଛି। ତାହାହେଲା, ଇଲେକ୍‌ଟ୍ରୋନିକ୍ ଗଣମାଧ୍ୟମ ତଥା ଦୂରଦର୍ଶନ। ଏହା ଫଳରେ ଓଡ଼ିଆ ଭାଷା ଓ ସାହିତ୍ୟର ପଠନ ପିପାସା କ୍ରମେ ଦୁର୍ବଳ ହୋଇଯାଉଛି। ସାଧାରଣ ସାକ୍ଷରଟିଏ ଦୂରଦର୍ଶନ ମାଧ୍ୟମରେ ତା'ର ମନକୁ ଛୁଇଁଲା ଭଳି ଧାରାବାହିକ ଦେଖିକରି ତୃପ୍ତ ହୋଇପାରୁଛି। ସେ କାହିଁକି ମୁଦ୍ରିତ ପତ୍ରପତ୍ରିକା ବା ପୁସ୍ତକ ପଢ଼ିବାପାଇଁ ଅର୍ଥ ଓ ଶ୍ରମ ସ୍ୱୀକାର କରିବ ? ଏହା ସତ୍ତ୍ୱେ ଏଥିରେ ମଧ୍ୟ ଓଡ଼ିଆ ଭାଷାର ସାହିତ୍ୟ ଓ ସଂସ୍କୃତିର ପରିପୋଷକତା ପାଇଁ କିଛି ଉପାଦାନ ରହିଛି। ଯେତେ ଯାହା ହେଲେ ବି ଜଣେ ସ୍ରଷ୍ଟା ରହିଛି, ଯାହାର ସୃଷ୍ଟିକୁ ନେଇ ଯେ କୌଣସି ମାଧ୍ୟମରେ ପ୍ରସାରଣ କରାଯାଇପାରେ। ଯେପରି ବେତାର ମାଧ୍ୟମରେ ଚାଲିଛି, ସେହିପରି ଦୂରଦର୍ଶନ ମାଧ୍ୟମରେ ମଧ୍ୟ ଓଡ଼ିଆ ଭାଷା, ଐତିହ୍ୟ, ଗୌରବ, ସଂସ୍କୃତି ଓ ପରମ୍ପରାକୁ ପୁନରୁଜ୍ଜୀବିତ କରିବାର ଏକ ସୁସ୍ଥ ଅଙ୍ଗୀକାରବଦ୍ଧତା ରହିବା ଉଚିତ। ଅବଶ୍ୟ, ସ୍ୱୀକାର୍ଯ୍ୟ ଯେ ଇଲେକ୍‌ଟ୍ରୋନିକ୍ ଗଣମାଧ୍ୟମ ଯୋଗୁଁ ମୁଦ୍ରିତ ମାଧ୍ୟମ କନାଦୃତି ହରାଇବାକୁ ବାଧ୍ୟ ହେବ। ତାହା ସତ୍ତ୍ୱେ ସବୁ ଭିତରେ କିଛି ଆଶାର ଆଲୋକ ଦେଖିବାକୁ ଅପେକ୍ଷା ରଖିବାକୁ ହେବ।

ଓଡ଼ିଶାର ପତ୍ରପତ୍ରିକାର କିଛି ଐତିହ୍ୟ ଓ ବର୍ତ୍ତମାନର ଧାରା ସଂପର୍କରେ ଆମେ ଦୃଷ୍ଟିପାତ କରିବା ବେଳେ ଏହାର ଭବିଷ୍ୟତ ସଂପର୍କରେ ମଧ୍ୟ କିଛି କଳ୍ପନା କରିବା ଉଚିତ ହେବ। ପତ୍ରପତ୍ରିକା ପ୍ରକାଶନ ଏକ ସୌଖୀନ ପ୍ରବୃତ୍ତି ଦ୍ୱାରା ପରିଚାଳିତ ହେବାର ସମ୍ଭାବନାକୁ ଏଡ଼େଇ ଦେଇ ହେବନାହିଁ। ଡି.ଟି.ପି. ମୁଦ୍ରଣ ବ୍ୟବସ୍ଥାର ପ୍ରଚଳନ ଫଳରେ ବହୁ ରଙ୍ଗ ବିଶିଷ୍ଟ ସୁନ୍ଦର ପରିପାଟୀରେ ପତ୍ରପତ୍ରିକାର ବହୁଳ ପ୍ରକାଶନ ଖୁବ୍ ଶୀଘ୍ର ହୋଇପାରୁଛି। ବହୁ ପତ୍ରପତ୍ରିକା ଅତି ଚମତ୍କାର ରୂପସମ୍ଭାର ନେଇ ପ୍ରକାଶ ପାଇବାରେ ଲାଗିଛି। ତାହା ହୁଏତ ଆହୁରି ବ୍ୟାପକ ହେବ। ୱେବ୍ ସାଇଟ୍‌ରେ ପତ୍ରପତ୍ରିକା ସ୍ଥାନ ପାଉଛି। ସେ ସବୁରେ ଦେଶବିଦେଶର ସଦ୍ୟତମ ସମ୍ବାଦ ଓ ପ୍ରତିକ୍ରିୟା ପ୍ରକାଶ ପାଉଛି। ଏସବୁ ସତ୍ତ୍ୱେ ପୂର୍ବରୁ ପତ୍ରପତ୍ରିକା ପଛରେ ଯେପରି, ଗୋଟିଏ ଆଦର୍ଶବାଦ କାର୍ଯ୍ୟ କରୁଥିଲା, ଆଉ ସେଭଳି ଆଦର୍ଶବାଦ ରହିଲା ଭଳି ଲାଗୁନାହିଁ। ଏହା ମୁଖ୍ୟତଃ ସୂଚନାଧର୍ମୀ ହେଉଛି। ଇଲେକ୍‌ଟ୍ରୋନିକ୍ ମିଡ଼ିଆ କହିଲେ, ଆମ୍ଭେ ଯାହା ବୁଝୁ, ସେଥିରେ ଫଟୋଗ୍ରାଫି କୌଶଳ ଆହୁରି ଶୋଭନୀୟ ଓ ଲୋଭନୀୟ ଢଙ୍ଗରେ ଚାଲିଛି, ଯାହାଫଳରେ ପତ୍ରପତ୍ରିକା ହୋଇଉଠିଛି ଏକ ଅବସର ବିନୋଦନର ମାଧ୍ୟମ। ଏଥିରେ ସାହିତ୍ୟ, ସଂସ୍କୃତିର ଉପରଠାଉରିଆ ପରିପ୍ରଚାର ହେବା ସମ୍ଭବ। ଦୂରଦର୍ଶନ ମାଧ୍ୟମରେ ବିଭିନ୍ନ ପୌରାଣିକ ଧାରାବାହିକ, ରାମାୟଣ, ମହାଭାରତ, ଓଁ ନମଃ ଶିବାୟ ଇତ୍ୟାଦି ଯଥେଷ୍ଟ ଲୋକପ୍ରିୟତା ଅର୍ଜନ କରିଛି। ସେପରି ପତ୍ରପତ୍ରିକାର ସନ୍ନିବେଶିତ ଆକର୍ଷଣୀୟ ଓ ଉଦ୍ଦୀପକ ପ୍ରସଙ୍ଗଗୁଡ଼ିକ ଲୋକଦୃଷ୍ଟିକୁ ଆସିପାରୁଛି; କିନ୍ତୁ ସ୍ୱାଧୀନତା ପୂର୍ବବର୍ତ୍ତୀ କାଳରେ ଯେପରି ଏକ ସୃଜନାତ୍ମକ, ବର୍ଣ୍ଣନାତ୍ମକ ଓ ଶିକ୍ଷାତ୍ମକ ଚିନ୍ତାଧାରାର ଉନ୍ମେଷ ପାଇଁ ପତ୍ରପତ୍ରିକା ପ୍ରକାଶ ପାଉଥିଲା, ଆଉ ସେପରି ହେବାର ସମ୍ଭାବନା ନାହିଁ।

ସ୍ୱାଧୀନ ଭାବରେ ପ୍ରକାଶ ପାଇଥିବା ପତ୍ରପତ୍ରିକା ଅପେକ୍ଷା ଆନୁଷ୍ଠାନିକ ପତ୍ରପତ୍ରିକାଗୁଡ଼ିକର ଗୁଣାତ୍ମକମାନ ଅଧିକ ବୋଲି ଜଣାଯାଏ। କାରଣ ସେ ସବୁରେ ଯଦୃଚ୍ଛାଚାରକୁ ପ୍ରଶୟ ମିଳୁ ନ ଥିଲା।

ବିଦ୍ୟାଳୟ, ମହାବିଦ୍ୟାଳୟ, ସାହିତ୍ୟାନୁଷ୍ଠାନ ହେଉ କି କୌଣସି ଧାର୍ମିକ ଅନୁଷ୍ଠାନ ହେଉ, ସେ ସବୁରେ ରୁଚିସଂପନ୍ନ ଲେଖା ସ୍ଥାନିତ ହେଉଥିବାର ଦେଖାଯାଏ, ଯାହାର କିଛି ଚିରନ୍ତନ ମୂଲ୍ୟ ଥାଏ । କିନ୍ତୁ ସ୍ୱାଧୀନ ଭାବରେ ପ୍ରକାଶ ପାଉଥିବା ପତ୍ରପତ୍ରିକାରେ ଅନେକ ସମୟରେ ପ୍ରୟୋଗାତ୍ମକ ଦୃଷ୍ଟିକୋଣରୁ ପରିଚାଳିତ କେତେକ ଉଦ୍ଭଟ ଅନ୍ତଃସାରଶୂନ୍ୟ ଲେଖାକୁ ପ୍ରକାଶ କରାଯାଏ । ସେଥିରେ ସମ୍ପାଦକମାନଙ୍କର କିଛି ଭୂମିକା ମଧ୍ୟ ଥାଏ । ତେଣୁ ସାଧାରଣ ଭାବରେ ଅବୋଧ୍ୟ ଲେଖାସବୁ ସାହିତ୍ୟର ଗାଦି ମାଡ଼ି ବସିବାକୁ ଦୌଡ଼ ଆରମ୍ଭ କରିଦେଇଛନ୍ତି । କେବଳ ସେତିକି ନୁହେଁ, କେତେକ ବିକାରଗ୍ରସ୍ତ ମନସ୍ତତ୍ତ୍ୱର ଚର୍ଚ୍ଚା ଦ୍ୱାରା ପାଠକୀୟ ସ୍ପୃହା ବଢ଼ାଇବା ଲାଗି ମଧ୍ୟ ଏସବୁ ପତ୍ରପତ୍ରିକାର ଉଦ୍ଦେଶ୍ୟ ମଧ୍ୟ ନଥାଏ, ଥାଏ କେବଳ ବ୍ୟାବସାୟିକ ପ୍ରବୃତ୍ତି, ଯାହା ସେମାନଙ୍କୁ ଆର୍ଥିକ ଦୃଷ୍ଟିରୁ ଲାଭବାନ୍ କରିଥାଏ ।

ଓଡ଼ିଶାରେ ଏ ପ୍ରକାର ପତ୍ରପତ୍ରିକାର ମଧ୍ୟ ପ୍ରକାଶନ ହୋଇଛି; କିନ୍ତୁ ସେ ସବୁ ସାହିତ୍ୟ ସୃଷ୍ଟି ଦିଗରେ ସେପରି ଗୁଣାତ୍ମକ ଦିଗ୍‌ଦର୍ଶନ ଦେଇପାରିନାହିଁ । ତେଣୁ ଏ ସମାଜ ପ୍ରତି ସେପରି କିଛି ସନ୍ଦେଶ ରହିପାରିନାହିଁ । ଐତିହ୍ୟ ନାହିଁ କି ଗୌରବ ନାହିଁ — ମୂଲ୍ୟବୋଧ ମଧ୍ୟ ନାହିଁ । ତେଣୁ କେତୋଟି ବନ୍ଦ ହୋଇଯାଇଥିବା ପତ୍ରିକା 'ଡଗର', 'ସାମ୍ମୁଖ୍ୟ' ଇତ୍ୟାଦି ଓଡ଼ିଆ ସାହିତ୍ୟକୁ ବଳିଷ୍ଠ ଆଭିମୁଖ୍ୟ ଦେବାରେ ସମର୍ଥ ହୋଇପାରିଥିଲା ବୋଲି କୁହାଯିବ ।

ଏକଦା ଜାତୀୟସ୍ତରରେ ପତ୍ରପତ୍ରିକା ଦ୍ୱାରା ଜାତୀୟତାବାଦ, ସ୍ୱାଧୀନତା, ଏକତା, ଜାଗୃତି, ଗଠନମୂଳକ ଚିନ୍ତାଧାରା ଇତ୍ୟାଦି ମୂଲ୍ୟବୋଧଭିତ୍ତିକ ପତ୍ରପତ୍ରିକା ବୌଦ୍ଧିକ ସମାଜରେ ଆଲୋଡ଼ନ ସୃଷ୍ଟି କରୁଥିଲା । ବାଳଗଙ୍ଗାଧର ତିଳକଙ୍କ ସମ୍ପାଦିତ 'କେଶରୀ', ଶ୍ରୀଅରବିନ୍ଦଙ୍କ ସମ୍ପାଦିତ 'ବନ୍ଦେମାତରମ୍' ଓ 'ଯୁଗାନ୍ତର'; ମହାତ୍ମାଗାନ୍ଧୀଙ୍କ ସଂପାଦିତ 'ହରିଜନ', 'ୟଙ୍ଗ ଇଣ୍ଡିଆ' ଇତ୍ୟାଦି ପତ୍ରପତ୍ରିକା ପ୍ରକାଶନ ସହିତ ଗୋଟିଏ ପବିତ୍ର ସଂକଳ୍ପ କାର୍ଯ୍ୟ କରୁଥିଲା । ସେ ସବୁର ପ୍ରକାଶନ ବନ୍ଦ ହୋଇଥିଲେ ମଧ୍ୟ ବର୍ତ୍ତମାନ ସେ ସବୁର ତତ୍ତ୍ୱଗତ ପ୍ରାସଙ୍ଗିକତା ରହିଛି । କଲିକତାରୁ 'ମଡ଼ର୍ଣ୍ଣ ରିଭ୍ୟୁ' ପତ୍ରିକା ଗୋଟିଏ ଯୁଗ ନିର୍ଣ୍ଣୟକାରୀ ପତ୍ରିକାର ସମ୍ମାନ ଅର୍ଜନ କରିଛି । ତାହା ଏ ପର୍ଯ୍ୟନ୍ତ ବୋଧହୁଏ ପ୍ରକାଶ ପାଉଛି । ବଙ୍ଗଳା, ତେଲଗୁ, ମାଲୟାଲମ୍, ହିନ୍ଦୀ, ଗୁଜୁରାଟୀ ଇତ୍ୟାଦି ଭାଷାମାନଙ୍କରେ ପ୍ରକାଶିତ ପତ୍ରପତ୍ରିକା ତୁଳନାରେ ଓଡ଼ିଆ ପତ୍ରପତ୍ରିକା ପ୍ରକାଶନ ନିଶ୍ଚୟ ସଂଖ୍ୟା ଦୃଷ୍ଟିରୁ ଅପାଂକ୍ତେୟ ଜଣାପଡ଼େ । ତାହା ସତ୍ତ୍ୱେ ଗୁଣାତ୍ମକ ଦୃଷ୍ଟିରୁ ଓଡ଼ିଆ ପତ୍ରପତ୍ରିକାର ପରମ୍ପରା ଉନ୍ନତ ବୋଲି କୁହାଯାଇପାରେ ।

ତେଣୁ ପତ୍ରପତ୍ରିକାଗୁଡ଼ିକର ଯେ ତତ୍କାଳୀନ ଭୂମିକା ଥାଏ, ଏ କଥା କହିବା ଠିକ୍ ହେବନାହିଁ । ଯଦି କିଛି ଆଦର୍ଶ ପାଇଁ ସେସବୁ ପରିଚାଳିତ ହୋଇଥା'ନ୍ତି, ତେବେ ସେସବୁ ନିଶ୍ଚୟ କାଳଜୟୀ ହୋଇରହିପାରିବ । କେବଳ ନାମକୁ ମାତ୍ର ବଞ୍ଚି ରହିଲେ ପତ୍ରପତ୍ରିକାର ସେପରି କିଛି ପ୍ରଭାବ ରହିବ ନାହିଁ । ପଛକେ ବନ୍ଦ ହୋଇଯାଉ; କିନ୍ତୁ ଯେତିକି ସମୟ ପ୍ରକାଶ ପାଇବ, ସେତିକି ସମୟ ସେଗୁଡ଼ିକ ସମାଜକୁ ଅନୁପ୍ରାଣିତ କରିବା ଦରକାର । ତା' ନହେଲେ 'ବଞ୍ଚି ରହିବାର' ନ୍ୟାୟରେ ସ୍ଥାଣୁତାକୁ ଜାବୋଡ଼ି

ଧରିଲେ ସେ ସବୁର ଗତିଶୀଳତା ଲୋପ ପାଇଯିବ। ପ୍ରେରଣା ନ ଥିବ, କେବଳ ଥିବ ଧାରଣା। ତେଣୁ ଅବିଚ୍ଛିନ୍ନତା ବଡ଼ କଥା ନୁହେଁ, ବଡ଼ କଥା ତାହା କେତେଦୂର ବିସ୍ଫୁଟଗର୍ଭକ ହୋଇପାରିଛି।

ମୁଖ୍ୟତଃ ପତ୍ରପତ୍ରିକା ନିମ୍ନମତେ ବିଭାଗୀକରଣ କରାଯାଇପାରେ। ୧. ଦେଶାତ୍ମବୋଧକ ବା ଚିନ୍ତାମୂଳକ, ୨. ସୂଚନାତ୍ମକ ବା ବିବରଣୀମୂଳକ, ୩. ମନୋରଞ୍ଜନଧର୍ମୀ ଯଥା– ଚଳଚ୍ଚିତ୍ର ବା କଳାତ୍ମକ। ଏହି ବିଭାଗୀକରଣ ଭିତରେ ଅନ୍ୟ ସମସ୍ତ ଦିଗ ଆସିଯିବ। ଏଥିରୁ କେଉଁ ବିଭାଗଟି କେତେ ଯୁଗୋପଯୋଗୀ ଓ ବଳିଷ୍ଠ ଆଭିମୁଖ୍ୟସମ୍ପନ୍ନ, ତାହା ବିଚାରସାପେକ୍ଷ। ପତ୍ରପତ୍ରିକା ପ୍ରସାରଣ ସଂଖ୍ୟା କେବେହେଲେ ମାନ ନିର୍ଣ୍ଣାୟକ ନୁହେଁ ବୋଲି ଆମର ମତ। ବରଂ ସେଥିରେ କି କି ବିଷୟବସ୍ତୁ ରହିଛି ଏବଂ ତାହାର ସମାଜ ଉପରେ କି ପ୍ରଭାବ ରହିଛି, ତାହା ହିଁ ବିଚାର୍ଯ୍ୟ। ଉଚ୍ଚକୋଟୀର ସାହିତ୍ୟ ପତ୍ରିକା ଭାବେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା 'କୋଣାର୍କ' ଓଡ଼ିଆ ସାହିତ୍ୟରେ ସ୍ଥାନିତ ହୋଇପାରିଛି। ସେହିପରି 'ଶିଶୁଲେଖା' ଶିଶୁ ସାହିତ୍ୟ ପତ୍ରିକା ସରକାରୀ ପ୍ରୋତ୍ସାହନ ଦ୍ୱାରା ପ୍ରକାଶ ପାଇଥିଲା।

ଓଡ଼ିଶାରେ ଓଡ଼ିଆ ପତ୍ରପତ୍ରିକାର ବର୍ତ୍ତମାନ ସ୍ଥିତି ଯଦିଓ ପରିମାଣାତ୍ମକ ଦୃଷ୍ଟିରୁ ବେଶ୍ ଉତ୍ସାହପ୍ରଦ, ତା'ସତ୍ତ୍ୱେ ଗୁଣାତ୍ମକ ଦୃଷ୍ଟିରୁ ସେତେ ପ୍ରେରଣାଦାୟକ ନୁହେଁ। ଅବଶ୍ୟ ସ୍ୱୀକାର୍ଯ୍ୟ ଯେ ଓଡ଼ିଆ ଭାଷାରେ ଅନ୍ତତଃ କେତେକ ବିଷୟବସ୍ତୁ ଲୋକଲୋଚନକୁ ଆସିପାରୁଛି; କିନ୍ତୁ ସେସବୁର ସାହିତ୍ୟିକ ମୂଲ୍ୟ ନାହିଁ, ଅଛି କିଛି ତତ୍କାଳୀନ ଆବେଗ ଓ ପ୍ରବଣତା।

ଓଡ଼ିଆ ପତ୍ରପତ୍ରିକାରଧାରା ଯେପରି ଚାଲିଆସିଛି, ସେଥିରେ ସାହିତ୍ୟିକ, ସାମାଜିକ, ସାଂସ୍କୃତିକ, ରାଜନୈତିକ ଦିଗରୁ ଅନେକ ଅବଦାନ ରହିଛି, ଯାହାସବୁ ଅସ୍ୱୀକାର କରିହେବ ନାହିଁ। ଓଡ଼ିଆ ଭାଷାର ଭୂୟୋବିକାଶ ଦିଗରେ ପତ୍ରପତ୍ରିକାର ଅବଦାନ ରହିଛି। ଏହାଦ୍ୱାରା ପାଠକ ଏକ ସମୟରେ ବିଭିନ୍ନ ବିଷୟବସ୍ତୁକୁ ପଢ଼ିବା ସହିତ ତା'ର ମର୍ମବାଣୀକୁ ବୁଝିଥାଏ। ଲକ୍ଷ୍ୟକରାଯାଏ, ଓଡ଼ିଆ ପତ୍ରପତ୍ରିକାର ପରିପାଟୀ ଅନ୍ୟ ପ୍ରାନ୍ତୀୟ ଭାଷା ତୁଳନାରେ ସମକକ୍ଷତା ଦାବି କରିପାରିଛି। ଓଡ଼ିଆର ବହୁ ଲେଖକ ଆନ୍ତର୍ଜାତିକ ସ୍ୱୀକୃତି ଲାଭ କରିବା ମଧ୍ୟ ଆଶାର କଥା। ଏହା ସାମଗ୍ରିକ ଭାବରେ ଓଡ଼ିଆଭାଷା ଓ ସାହିତ୍ୟର ଗୌରବ ବୃଦ୍ଧି କରିବାରେ ସହାୟକ ହେବ।

*ସାଇ ପରିବାର, କୃଷ୍ଣକାନ୍ତ ଭବନ, ତଳ ତେଲେଙ୍ଗା ବଜାର, କଟକ*

❑❑

# ମୋ'ର ପିତା ଓ କବି :
# ଡଃ ମାୟାଧର ମାନସିଂହ

ଡଃ ଲଳିତ କୁମାର ମାନସିଂହ

ଓଡ଼ିଶାର ସମ୍ମାନ ଓ ସ୍ୱାଭିମାନ ବୃଦ୍ଧି ଦିଗରେ ଯେଉଁ କେତେଜଣ ବିଶେଷ ସହାୟକ, ସେମାନଙ୍କ ମଧ୍ୟରେ ଡକ୍ଟର ଲଳିତ ମାନସିଂହ ପ୍ରଥମ ସ୍ଥାନର ଅଧିକାରୀ କହିଲେ ଅତ୍ୟୁକ୍ତି ହେବନାହିଁ। ଉତ୍କଳଜନନୀର ସୁପୁତ୍ର ଦିବଂଗତ ସାରସ୍ୱତ ସ୍ରଷ୍ଟା ନିର୍ଭୀକ ଓ ସ୍ୱାଭିମାନୀ କବି ଡକ୍ଟର ମାୟାଧର ମାନସିଂହଙ୍କ ଯୋଗ୍ୟ ଦାୟାଦ ତଥା ଜଣେ ଉଚ୍ଚ ଦରର ପ୍ରଶାସକ, କୂଟନୀତିଜ୍ଞ ଭାବେ ସେ କେନ୍ଦ୍ର ସରକାରଙ୍କ ଅଧୀନରେ ଦୀର୍ଘ ସମୟ କାର୍ଯ୍ୟ କରି ଆମେରିକା ସମେତ ଅନ୍ୟ କେତେକ ରାଷ୍ଟ୍ରର ରାଷ୍ଟ୍ରଦୂତ ଦାୟିତ୍ୱ ଦକ୍ଷତାର ସହ ତୁଲାଇ ବର୍ତ୍ତମାନ ଦିଲ୍ଲୀରେ ଅବସ୍ଥାନ କରୁଛନ୍ତି। ଓଡ଼ିଶା ସରକାରଙ୍କ ଓଡ଼ିଶା ସାହିତ୍ୟ ଏକାଡେମୀ ପକ୍ଷରୁ ୨୦୦୫ ମସିହାରେ ଭୁବନେଶ୍ୱରରେ ଡଃମାୟାଧର ମାନସିଂହଙ୍କ ଜନ୍ମ ଶତବାର୍ଷିକୀ ପାଳନ ଅବସରରେ ପ୍ରକାଶିତ ସ୍ମରଣିକାରେ ସୁପୁତ୍ର ଲଳିତ ମାନସିଂହ ତାଙ୍କ ପିତାଙ୍କ ଜୀବନୀ ଉପରେ ଲେଖିଥିବା କ୍ଷୁଦ୍ର ଆଲେଖ୍ୟର ଓଡ଼ିଆ ରୂପାନ୍ତର ଏଠାରେ ଉପସ୍ଥାପନ କରୁଛୁ...

ଚିଲିକା ହ୍ରଦ ଓ ବଙ୍ଗୋପସାଗର ମଧ୍ୟବର୍ତ୍ତୀ ଏକ ଅଣଓସାରିଆ ଭୂଖଣ୍ଡରେ ଅବସ୍ଥିତ ଅଜଣା ଗାଁଟିଏ ନନ୍ଦଳା। ଏହାର ପାରିପାର୍ଶ୍ୱିକ ପରିବେଶ, ବିଶେଷ କରି ଗାଁ ପାଖ ବାଲି ସ୍ତୂପ ଉପରେ ଠିଆ ହେଲେ ଏହାର ନୈସର୍ଗିକ ସୌନ୍ଦର୍ଯ୍ୟ ଯେ କୌଣସି ଦର୍ଶକ ପାଇଁ ଅତ୍ୟନ୍ତ ମନୋମୁଗ୍ଧକର। ସ୍ୱର୍ଣ୍ଣ ରୂପ ଧାରଣ କରିଥିବା ସାମୁଦ୍ରିକ ବେଳାଭୂମି କ୍ରମେ ଝାଉଁରିନା ଜଙ୍ଗଲ ଓ ବାଡ଼ ଆକାରରେ ଥିବା ଜଙ୍ଗଲୀକାଜୁ ବୃକ୍ଷରାଜି ସହ ମିଶିଗଲାପରି ମନେହୁଏ। ଗାଁ ପାର୍ଶ୍ୱରେ ଶ୍ୟାମଳ ଧାନକ୍ଷେତ ଭରି ରହିଛି ଏବଂ ପୋଖରୀ ସବୁ ପଦ୍ମ ଓ କଇଁ ଫୁଲରେ ଭରପୁର। ପଶ୍ଚିମ ଦିଗରେ ଲମ୍ବି ଯାଇଥିବା ଚିଲିକା ନୀଳରତ୍ନର ଭ୍ରମ ସୃଷ୍ଟି କରୁଛି ଏବଂ ତା'ଉପରେ ସୁଦୂର ସାଇବେରିଆରୁ ଆସି ପହଞ୍ଚିଥିବା ଲକ୍ଷ ଲକ୍ଷ ବିଦେଶାଗତ ପକ୍ଷୀ ଉଡ଼ି ବୁଲୁଛନ୍ତି।

ଏହିଠାରେ ହିଁ ଡଃ ମାୟାଧର ମାନସିଂହ ଆଜିକୁ ଠିକ୍ ଶହେ ବର୍ଷ ତଳେ ୧୯୦୫ ନଭେମ୍ବର ୧୩ ତାରିଖରେ ଜନ୍ମ ହୋଇଥିଲେ। ସେ ଥିଲେ, ତାଙ୍କ ନିଜ ଭାଷାରେ 'ଏକ ପ୍ରକୃତି ପାଳିତ'। ଚିଲିକାର ଈଷତ୍ ସ୍ୱଚ୍ଛ ସୌନ୍ଦର୍ଯ୍ୟର ପ୍ରତିବିମ୍ବ ଏବଂ ତାଙ୍କ ଗାଁର ରଙ୍ଗ, ଶବ୍ଦ ଓ ବାସ୍ନା ତାଙ୍କ କବିତାରେ ମିଳେ। ମାୟାଧର ମାନସିଂହ ଅତି ତରୁଣ ବୟସରୁ ହିଁ ତାଙ୍କ ଗାଁ ଛାଡ଼ି ଦେଇଥିଲେ; କିନ୍ତୁ ଗାଁ ତାଙ୍କୁ କେବେବି

ଛାଡ଼ି ନ ଥିଲା । ଗାଁ ହିଁ ଥିଲା ତାଙ୍କର ଅଭୟାରଣ୍ୟ, ତାଙ୍କ ପ୍ରେରଣା, ତାଙ୍କ ସୌନ୍ଦର୍ଯ୍ୟାନୁରାଗର ଉତ୍ସ ଓ ମୂଲ୍ୟ । ନନ୍ଦଳା ଗ୍ରାମର ସେଇ ଛୋଟ ବାଳକଟି ଚାରି ବର୍ଷରୁ ଅନାଥ ହୋଇ ଏକାକୀ ଦୁନିଆକୁ ସାମନା କରିବା ପାଇଁକୁ ନିଜ ଗାଁର ସ୍ମୃତି ସତତ ମନ ଭିତରେ ଧରି ରଖିଥିଲେ ।

ପରବର୍ତ୍ତୀ ଜୀବନରେ ଗାଁର ବର୍ଣ୍ଣାଢ୍ୟ ଯାତ୍ରା ଓ କୀର୍ତ୍ତନ, ତାଙ୍କ ନେତୃତ୍ୱରେ ସେହି ଖଣ୍ଡାୟତ ପ୍ରସିଦ୍ଧ ଗାଁର ଦଶହରା ଦିନ ଖଣ୍ଡା ଶୋଭାଯାତ୍ରା– ସବୁ ତାଙ୍କ ମାନସ ପଟରେ ସଜୀବ ହୋଇ ରହିଥିଲା । ତାଙ୍କର ପୂର୍ବଜ ଥିଲେ ପାଇକ । କୃଷି ଓ ଯୁଦ୍ଧବିଦ୍ୟାରେ ଧୂରୀଣ ତାଙ୍କ ପୂର୍ବପୁରୁଷ ବ୍ରିଟିଶ୍ ସରକାର ବିରୋଧରେ ୧୮୧୮ ମସିହାରେ ବିଦ୍ରୋହ ଘୋଷଣା କରିଥିଲେ । ଡକ୍ଟର ମାନସିଂହଙ୍କର ଉଚ୍ଚ ସ୍ୱାଧୀନ ଚେତନା ଓ ମର୍ଯ୍ୟାଦାବୋଧ ତାଙ୍କର ଲେଖାଗୁଡ଼ିକରେ ଦେଖିବା ପାଇଁ ମିଳେ, ତାହା ହିଁ ତାଙ୍କର ପରମ୍ପରା ବୋଲି ସେ ବରାବର ସୂଚାଇଛନ୍ତି ।



ମୋ ପିତାଙ୍କ ସ୍ମୃତିଚାରଣ ବେଳେ ଲେଖା ପ୍ରତି ଥିବା ତାଙ୍କର ଚରମ ଦୁର୍ବଳତା ମୋ ମନକୁ ଚାଲିଆସେ । ଆମ ଘରେ ଜଣେ ଲେଖକ ହିସାବରେ ସେ ନିଜର ଅଧିକାର ଦାବି କରିବା ସହିତ ଦିନର ବହୁ ଭାଗ ତାଙ୍କର ପଢ଼ା ଓ ଶୋଇବା ଘରେ କଟାଉଥିଲେ– ତାଙ୍କ ଦ୍ୱାରା ସଂଗୃହୀତ ହୋଇଥିବା ଅନେକ ଦୁର୍ମୂଲ୍ୟ ବହି ମଝିରେ । କେତେବେଳେ ବି ସେ କଲମ ଓ କାଗଜ ଠାରୁ ଦୂରରେ ରହିନାହାନ୍ତି । ସେ ନିଜର ପସନ୍ଦମୁତାବକ ତିଆରି କରାଇଥିବା ବସିବା ଡେସ୍କ, ତଳୁଆ ଜାପାନୀ ଡେସ୍କ ଏବଂ ଠିଆ ହେବା ଡେସ୍କ ସାହାଯ୍ୟରେ ତାଙ୍କର ସମୟକୁ ବାଣ୍ଟି ଦେଇଥିଲେ ଓ ସବୁବେଳେ ରିମ୍ ରିମ୍ ଫୁଲ୍‌ସ୍କେପ୍ କାଗଜ ଉପରେ ଲେଖି ଚାଲିଥିଲେ । କେତେବେଳେ ମଧ୍ୟ ତାଙ୍କର କଲମ ନ ଶୁଖିବା ଭଳି ଲାଗୁଥିଲା ।

ନିଜ ମଧ୍ୟରେ ବହୁଦିନ ଧରି ଥିବା ବିଶ୍ୱାସକୁ ନେଇ ଶେଷରେ ସେ ବୌଦ୍ଧଧର୍ମ ଗ୍ରହଣ କରିଥିଲେ । ତାଙ୍କ ଜୀବନର ସର୍ବଶେଷ କର୍ମ ଆକାରରେ ସେ ଭୁବନେଶ୍ୱରରେ ଓଡ଼ିଶା ସରକାରଙ୍କ ଅଧିକାରରେ ଥିବା କିଛି ଜମିକୁ 'ମହାବୋଧି ସୋସାଇଟି' ନାମରେ ହସ୍ତାନ୍ତର କରାଇ ସେଠାରେ 'ବୁଦ୍ଧ ବିହାର' ପ୍ରତିଷ୍ଠା କରିଥିଲେ ।

ଡଃ ମାୟାଧର ମାନସିଂହ ତାଙ୍କର ସାରା ଜୀବନ ନିଜ ସିଦ୍ଧାନ୍ତ ଉପରେ ଅଟଳ ଥିଲେ। ଭଲ ପାଇବା ହେଉ କିମ୍ବା ସାହିତ୍ୟ ହେଉ, ଶିକ୍ଷା କିମ୍ବା ବିଶ୍ୱାସ ହେଉ, ଜୀବନର ଶେଷ ନିଶ୍ୱାସ ପର୍ଯ୍ୟନ୍ତ ତାହାକୁ ବଜାୟ ରଖିଥିଲେ। ୧୯୭୩ ମସିହା ଅକ୍ଟୋବର ୧୧ ତାରିଖ ଅଠଷଠି ବର୍ଷ ବୟସରେ ଏହି ସ୍ୱାଭିମାନୀଙ୍କର ଜୀବନାବସାନ ଘଟିଥିଲା।

ତାଙ୍କର ଦୟାର୍ଦ୍ର ଓ ସହାନୁଭୂତିଶୀଳ ସ୍ୱଭାବ ସ୍ପଷ୍ଟ ମନକୁ ଆସିଯାଉଛି। ସେ କୌଣସି ପ୍ରକାରର ଦୁଃଖ ଦେଖିଲେ ତାଙ୍କ ଆଖିରେ ଲୁହ ଚାଲି ଆସୁଥିଲା। ମୁଁ ମୋର ପିଲାଦିନର ସଉକ ବନ୍‌ଶୀ ପକାଇବା ଛାଡ଼ି ଦେବାକୁ ହେଲା, ଯେତେବେଳେ ସେ ମୋତେ ବୁଝାଇଦେଲେ ଯେ ମାଛମାନଙ୍କ ପ୍ରତି ଏହା କି ପ୍ରକାର ନୃଶଂସତା ବୋଲି। ସର୍ବଦା ଲାଗି ରହିଥିବା ଦାରିଦ୍ର୍ୟ ବି ତାଙ୍କର କରୁଣାରେ ପ୍ରତିବନ୍ଧକ ହୋଇନାହିଁ– ଏହି କଥା କଟକର ରିକ୍ସା ବାଲାମାନେ ମଧ୍ୟ ଜାଣିଥିଲେ। ତାଙ୍କୁ ରିକ୍ସାରେ ନେବାକୁ ରିକ୍ସାବାଲାମାନେ ଅତି ଖୁସି ହେଉଥିଲେ, କାରଣ ସେ ସେମାନଙ୍କୁ ଆଶାଠାରୁ ଅଧିକ ଭଡ଼ା ଦେଉଥିଲେ।



ମୋ ପିତା ଡକ୍ଟର ମାନସିଂହ ଆମ ପିଲାଙ୍କର ଉପଯୁକ୍ତ ତତ୍ତ୍ୱ ନେବାଭଳି ବାପା ନ ଥିଲେ। ସେ ଆମ୍ଭମାନଙ୍କର ଗୃହ ପାଇଁ ଦିଆ ଯାଉଥିବା ପାଠରେ ମନ ଦେଉ ନ ଥିଲେ। ନା ସେ ପିଲାଙ୍କର ଦୈନନ୍ଦିନ କାର୍ଯ୍ୟରେ ମୁଣ୍ଡ ପୂରାଉଥିଲେ, ନା ସେମାନଙ୍କର ଭବିଷ୍ୟତ କର୍ମଧାରାର ନକ୍ସା ତିଆରି କରୁଥିଲେ। ଏହି ସାଂସାରିକ କର୍ମ ସବୁ ମୋ ମା'ଙ୍କ ଦାୟିତ୍ୱରେ ଛାଡ଼ି ଦିଆ ଯାଇଥିଲା। କିନ୍ତୁ ସେ ଯାହା ବି ହେଉ, ଆମ୍ଭମାନଙ୍କ ଉପରେ ତାଙ୍କର ଅଖଣ୍ଡ ପ୍ରଭାବ ଥିଲା, କୌଣସି ବାଧ୍ୟବାଧକତା ବଶତଃ ନୁହେଁ କି ଭର୍ତ୍ସନା ଯୋଗୁଁ ନୁହେଁ। ଆମେ ସବୁ ଆମ ଉପରେ ତାଙ୍କର ଆଶାଭରସା ବିଷୟ ଜାଣି ସେଇ ଅନୁସାରେ ନିଜକୁ ଗଢୁଥିଲୁ।

ତାଙ୍କର ମୃତ୍ୟୁର ଅନେକ ବର୍ଷ ପରେ ଆମେ ତାଙ୍କର ପାଣ୍ଡୁଲିପିଗୁଡ଼ିକରୁ ଅନେକ ଲେଖା ପାଇଲୁ। ତାହା ହେଉଛି "ମୋ'ର ଶେଷ ଇଚ୍ଛା ଓ ସ୍ୱୀକାରୋକ୍ତି"। ତାଙ୍କର ଶେଷ ଇଚ୍ଛା ଥିଲା ଯେ ତାଙ୍କର ପିଲାମାନେ ଅତ୍ୟନ୍ତ ଦେଶଭକ୍ତ ହେବେ, "ଓଡ଼ିଶା ପ୍ରତି ଓ ସାରା ଭାରତବର୍ଷର ସ୍ୱାର୍ଥ ପ୍ରତି ଗଭୀର ଆନ୍ତରିକତା ରଖି ଏବଂ ନିଜର ଜୀବନରେ ନିରପେକ୍ଷ ବିଚାର, ନ୍ୟାୟ ଏବଂ ସତ୍ୟବାଦିତା ପ୍ରତି ସର୍ବଦା ଆନ୍ତରିକତା ରଖି

ଚଳିବେ। ସେ ଆଶା ରଖିଥିଲେ ଯେ ତାଙ୍କ ପିଲାମାନେ ସର୍ବଦା ନିଜ ଘରର ସଂସ୍କୃତି, ଶିକ୍ଷା, ମଣିଷର ମୌଳିକ ସଦ୍‌ଗୁଣ ରକ୍ଷା କରି ଚାଲିବେ। ଏହି ମୂଲ୍ୟଗୁଡ଼ିକ ରକ୍ଷା କରି ହିଁ ସେ ବଞ୍ଚିଥିଲେ ଓ ଭାବୁଥିଲେ ଯେ ତାଙ୍କ ପିଲାମାନେ ମଧ୍ୟ ଏହିଗୁଡ଼ିକୁ ଜଗି ରଖିବେ।

ଅତି ପିଲା ଦିନରୁ ଅନାଥ ହୋଇଯିବାରୁ ଦରିଦ୍ରତାର ଯାତନା ମଧ୍ୟରେ ସେ ବିଦ୍ୟାଳୟ ଓ ମହାବିଦ୍ୟାଳୟରେ ବୃତ୍ତି ଲାଭ କରି ଏବଂ ଟିଉସନ୍ ଅର୍ଥରେ ଶିକ୍ଷା ସମାପ୍ତ କରିଥିଲେ। ଅଳ୍ପ ବୟସରୁ ବିବାହ ଯୋଗୁଁ ତାଙ୍କୁ ସ୍ତ୍ରୀ ଓ ପାଞ୍ଚଟି ପିଲାଙ୍କ ଚଳାଇବାର ଦାୟିତ୍ୱ ନିର୍ବାହ କରିବାକୁ ପଡ଼ିଲା। ସେ ଇଂଲଣ୍ଡରୁ ଇଂରାଜୀ ସାହିତ୍ୟରେ ଡକ୍ଟରେଟ୍ କରି ଫେରିଲେ ଓ ଏହା ଥିଲା ଓଡ଼ିଶାରେ ପ୍ରଥମ ଡକ୍ଟରେଟ୍ ଡିଗ୍ରୀ । କିନ୍ତୁ ସର୍ବଦା ନିରପେକ୍ଷ ବିଚାର, ନ୍ୟାୟ ଓ ସତ୍ୟବାଦିତାକୁ ଆଧାର କରି ସ୍ପଷ୍ଟ ମତ ପ୍ରକାଶ କରିବା ଯୋଗୁଁ ସେ ତାଙ୍କର ଉପରିସ୍ଥମାନଙ୍କର କୋପର ଶିକାର ହେଲେ।

ମୋ ବାପାଙ୍କର ସମ୍ବଲପୁର ଗଙ୍ଗାଧର ମେହେର କଲେଜର ଅଧକ୍ଷ ହେବା ତାଙ୍କ ଜୀବନରେ ପ୍ରଥମ କରି ଏକ ସ୍ଥିରତା ଆଣିଦେଲା। ସମ୍ବଲପୁର ପରେ, ଯାହାହେଉ ଅବସର ନେବା ପର୍ଯ୍ୟନ୍ତ ତାଙ୍କୁ ଏକ ଆଲୋଡ଼ନ ମଧ୍ୟରେ ଗତି କରିବାକୁ ପଡ଼ିଥିଲା।

ମୁଁ ହୁଏତ ମୋ ବର୍ଣ୍ଣନାରେ ମୋ ବାପା ଡକ୍ଟର ମାନସିଂହ ଗ୍ରୀକ୍ ଟ୍ରାଜେଡ଼ିର ସେହି ଦୁର୍ଭାଗା ଓ ଉତ୍ପୀଡ଼ିତ ବ୍ୟକ୍ତି ଥିବାର ସୂଚନା ଦେଇ ସାରିଛି; କିନ୍ତୁ ସେ ପ୍ରକୃତରେ ଦୁର୍ଭାଗା ଓ ଉତ୍ପୀଡ଼ିତ ନ ଥିଲେ। ତାଙ୍କ ଦ୍ୱାରା ରଚିତ 'ତରୁଣ କବିର ଆଶା' କବିତାରେ ସେ ସ୍ପଷ୍ଟ ମତ ପ୍ରକାଶ କରିଛନ୍ତି। ଜଣେ କବି ହିସାବରେ ଯେ ସେ ଗୋଲାପ ଶେଯରେ ଶୋଇବେ, ଏ ପ୍ରକାର ମୋହ ବା ଭ୍ରାନ୍ତି ତାଙ୍କର ନ ଥିଲା।

ମୋ ବାପାଙ୍କର କବି ଜୀବନ ଦୁଇଟି ବାସ୍ତବତା ଉପରେ ଆଧାରିତ ଥିଲା। ପ୍ରଥମ ହେଉଛି– ସେ ଜଣେ କବି ଥିବାରୁ ଜୀବନର ପସନ୍ଦଯୋଗ୍ୟ ବ୍ୟକ୍ତି ବା ବିଷୟକୁ ଆଧାର କରି ମୁକ୍ତ ଭାବରେ କବିତା ରଚନା କରିବା ଏବଂ ଦ୍ୱିତୀୟଟି ହେଉଛି, ଅତି ନିର୍ଭୀକ ଓ ନିରପେକ୍ଷ ଭାବରେ ନିଜର ମତପ୍ରକାଶ କରିବା। ବିଶେଷକରି ନିଜର ରଚନା କ୍ଷେତ୍ରରେ ଉପରିସ୍ଥ କର୍ମକର୍ତ୍ତାଙ୍କ ଚାପ ତାଙ୍କ ମୌଳିକ ଅଧିକାରକୁ ପ୍ରଭାବିତ କରି ପାରି ନ ଥିଲା ।

ତତ୍କାଳୀନ ଜଣେ ଶିକ୍ଷାମନ୍ତ୍ରୀଙ୍କ ସହିତ ଡକ୍ଟର ମାନସିଂହଙ୍କର ମୁହାଁମୁହିଁ ହୋଇ ଥିଲା। ସେ ତାଙ୍କୁ ଦେଖାଇ ଦେବାକୁ ଚାହୁଁଥିଲେ ଯେ କିଏ ପ୍ରକୃତ ମାଲିକ। ଡକ୍ଟର ମାନସିଂହ କହିଲେ, "ଯଦିଓ ମୁଁ ଜଣେ ସରକାରୀ କର୍ମଚାରୀ, ଏହା ମୋର ଜନ୍ମଗତ ଅଧିକାର ଯେ ମୋର ମତାମତ ମୁଁ ସ୍ୱାଧୀନ ଭାବରେ ବ୍ୟକ୍ତ କରିବି। ଦୁନିଆରେ ଏପରି ବ୍ୟକ୍ତ ନାହାନ୍ତି, ଯେ ମୋର ଆନୁଗତ୍ୟକୁ କିଣିପାରିବେ। ଜଣେ କବିର ଜନ୍ମଗତ ଅଧିକାର ହେଉଛି– ଯେଉଁ କିନିଷ ପ୍ରଶଂସାର ପାତ୍ର, ସେ ତାହାକୁ ପ୍ରଶଂସା କରିବ ଏବଂ ଯାହା ସମାଲୋଚନାର ଯୋଗ୍ୟ, ତାକୁ ସମାଲୋଚନା କରିବ।" ଏହିପରି ଭାବରେ ସେ ତାଙ୍କ ଅତୀତ ଜୀବନରେ ବହୁବାର ଅଯଥା ଆନୁଗତ୍ୟର ବିରୋଧ କରି ଦଣ୍ଡ ପାଇଛନ୍ତି।



ମୋ ବାପା ନିଜକୁ କେବେବି ଅପରାଧୀ ବୋଲି ଭାବିନାହାନ୍ତି । ସେ ସର୍ବଦା ତାଙ୍କର କର୍ମର ଫଳ ଭୋଗ କରିବା ପାଇଁ ପ୍ରସ୍ତୁତ ଥିଲେ । କାରଣ ଦଣ୍ଡ ଭୋଗ ପାଇଁ ତାଙ୍କର ସାହସ ଥିଲା । ତାଙ୍କ ପୁସ୍ତକଗୁଡ଼ିକ ଉପରେ ଥିବା ଚିହ୍ନ (ଲୋଗୋ)ରେ ପରିଷ୍କାର ଭାବେ କଲମ ଓ ଖଣ୍ଡାର କ୍ରସ୍ ଚିହ୍ନ ସେ ରଖୁଥିଲେ । ଅର୍ଥାତ୍ ସେ ଜଣେ ଯୋଦ୍ଧା ଥିଲେ ଓ କଲମ ତାଙ୍କର ଅସ୍ତ୍ର ଥିଲା । ଉପରିସ୍ଥ ପାଖରେ ନଇଁ ପଡ଼ିବା ଓ ନିଜର ଅସ୍ତ୍ରକୁ ତାଙ୍କ ପାଖରେ ଅର୍ପଣ କରିବା ତାଙ୍କର ଜନ୍ମଗତ ସ୍ୱାଧୀନ ଆତ୍ମ ଚେତନାର ପରିପନ୍ଥୀ ଥିଲା ।

ମୋ ବାପା ଭାରତୀୟ ହୋଇ ଯେତିକି ଗର୍ବ କରୁଥିଲେ, ଜଣେ ଓଡ଼ିଆ ଭାବେ ନିଜକୁ ଅଧିକ ଗୌରବାନ୍ୱିତ ମନେ କରୁଥିଲେ । ଓଡ଼ିଶାର ଉନ୍ନତ ପରମ୍ପରା ତାଙ୍କର ପ୍ରତି ଶିରାପ୍ରଶିରାର ରକ୍ତବିନ୍ଦୁରେ ପ୍ରବାହିତ ହେଉଥିଲା । ଅତୀତର ଗୌରବମୟ ଆର୍ଯ୍ୟ ଓ ଆଦିବାସୀ ସଂସ୍କୃତିର ମିଶ୍ରଣରେ ପୁଷ୍ଟ ଏହି ପରମ୍ପରା । ଏହାର ଦୁଃସାହସିକ ସାମୁଦ୍ରିକ ଅଭିଯାନ, ଉନ୍ନତ କାରୁକାର୍ଯ୍ୟପୂର୍ଣ୍ଣ ସୁନ୍ଦର ମନ୍ଦିର ଓ ଏହାର ମନୋମୁଗ୍ଧକାରୀ କଳାଚାତୁର୍ଯ୍ୟ ତାଙ୍କର ସ୍ମୃତିପଟରେ ଜୀବନ୍ତ ହୋଇ ରହିଥିଲା । ସେ ଓଡ଼ିଶାର ପୂର୍ବର ସ୍ୱର୍ଣ୍ଣମୟ ଐତିହ୍ୟ ଓ ବର୍ତ୍ତମାନର ଅଧୋଗତିରେ ଅତ୍ୟନ୍ତ ମର୍ମାହତ ହୋଇଥିଲେ । ଓଡ଼ିଶାର ସମସ୍ତ ସ୍କୁଲ ଛାତ୍ରଛାତ୍ରୀଙ୍କର ଅତି ପ୍ରିୟ ତାଙ୍କର କବିତା 'ମହାନଦୀରେ ଜ୍ୟୋତ୍ସ୍ନା ବିହାର'ରେ ସେ ଆମର ଗୌରବମୟ ଅତୀତର ସ୍ମୃତିଚାରଣ କରିଛନ୍ତି :

"ପୂର୍ବର ଗରିମାମୟ ଇତିହାସ ଛାଡ଼ି
କି ଲାଭ ହତାଶାପୂର୍ଣ୍ଣ ବର୍ତ୍ତମାନରେ"

'ମୁମୂର୍ଷ କୋଣାର୍କରେ' ସେ କହିଛନ୍ତି :

"ହେ ସୌନ୍ଦର୍ଯ୍ୟର ସମ୍ରାଟ କୋଣାର୍କ,
ତୁମେ ଧୀରେ ଧୀରେ ମୃତ୍ୟୁକୁ ଆଲିଙ୍ଗନ କରୁଛ,
ଦିନ ପରେ ଦିନ ନିବିଡ଼ ନୀରବତା ମଧ୍ୟରେ ।"

ଏକ ଅନ୍ତରଙ୍ଗ ବନ୍ଧୁ ଚାର୍ଲସ୍ ଫାବ୍ରିଙ୍କ ସହ ମିଶି ମୋ ବାପା ଓଡ଼ିଶୀ ନାଚର ବିକାଶ ଓ ଓଡ଼ିଶା ବାହାରେ ତାକୁ ପ୍ରତିଷ୍ଠିତ କରିବା ପାଇଁ ଚେଷ୍ଟା କରିଥିଲେ । ଏହି ଚେଷ୍ଟା ସତ୍ତ୍ୱେ ମଧ୍ୟ ଓଡ଼ିଶା ସେହିପରି ଭାରତୀୟ ସାଂସ୍କୃତିକ ମାନଚିତ୍ରରେ ଅନାମଧେୟ ହୋଇ ରହିଗଲା । ଏଥିଯୋଗୁଁ ସେ ଏକ ନୂଆ ଯୋଜନା ଜନ୍ମ ଦେଲେ, ଯାହାକୁ ସେ ତାଙ୍କର ତିନୋଟି ସ୍ୱପ୍ନ ବୋଲି କହୁଥିଲେ : ତାହାହେଲା ତିନୋଟି ଇଂରାଜୀ ପୁସ୍ତକ– ଯାହାକି ଓଡ଼ିଶାର ବିକ୍ଷିପ୍ତ ଭିନ୍ନ ଭିନ୍ନ ସାଂସ୍କୃତିକ ଚରିତ୍ରଗୁଡ଼ିକୁ ପ୍ରକାଶ କରିଥିଲା ଏବଂ ଏହା ତାଙ୍କ ୧୯୬୩ ରେ ମୃତ୍ୟୁ ପୂର୍ବରୁ ସାକାର ହୋଇଥିଲା ।

ଏହି ତିନୋଟି ପୁସ୍ତକରୁ ପ୍ରଥମ ବହି ହେଉଛି 'ଓଡ଼ିଆ ସାହିତ୍ୟର ଇତିହାସ'। ଏହା ୧୯୬୨ ମସିହାରେ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପ୍ରକାଶିତ ହୋଇଥିଲା । ଦ୍ୱିତୀୟ ବହିଟି ହେଉଛି 'ଉତ୍କଳର କାରୁକାର୍ଯ୍ୟ (କଳା) ଇତିହାସ'– ଯାହାକୁ ଡକ୍ଟର ସାବ୍ରି ଲେଖିଛନ୍ତି । ତାହା ତାଙ୍କ ମୃତ୍ୟୁ ପରେ ୧୯୭୪ ରେ ପ୍ରକାଶିତ ହୋଇଥିଲା । ଡକ୍ଟର ମାନସିଂହଙ୍କ ତୃତୀୟ ସ୍ୱପ୍ନ "ସାଗା ଅଫ୍ ଦି ଲ୍ୟାଣ୍ଡ ଅଫ୍ ଶ୍ରୀ ଜଗନ୍ନାଥ" ସମ୍ଭବତଃ ତାଙ୍କର ଶେଷ ବହି ଥିଲା ।



କାଳିଦାସ ତାଙ୍କ ରଘୁବଂଶ କାବ୍ୟରେ ଭଗବାନଙ୍କୁ କବି ହିସାବରେ ବର୍ଣ୍ଣନା କରିଛନ୍ତି । ଏହା ଯଥାର୍ଥ । କାରଣ ସୃଷ୍ଟି ଓ ଅମରତ୍ୱ– ଏ ଦୁଇଟି ଭଗବାନ ଓ କବିଠାରେ ସମାନ ଭାବେ ଦେଖିବା ପାଇଁ ମିଳେ । କବିର ଉର୍ଦ୍ଧ୍ୱାତ୍ମା ଏହି ପୃଥିବୀବକ୍ଷରେ ସମୟ ଓ ଶୂନ୍ୟରେ ବନ୍ଧା ପଡ଼ିନାହିଁ । ଏଠାରେ ଡକ୍ଟର ମାୟାଧର ମାନସିଂହଙ୍କର 'ସିନ୍ଧୁ ଓ ବିନ୍ଦୁ'ରୁ ସଂଗୃହୀତ ନିମ୍ନୋକ୍ତ 'ମହାପଥର ଯାତ୍ରୀ' କବିତାର କେତୋଟି ଧାଡ଼ି ଆପଣମାନଙ୍କ ପାଇଁ ଉଦ୍ଧାର କରୁଛି–

ମୁଁ ଜଣେ ଯାତ୍ରୀ,
ଯିଏ ଗୋଟିଏ ଜୀବନରୁ ଅନ୍ୟ ଏକ ଜୀବନକୁ ଧାବମାନ,
ଗୋଟିଏ କର୍ମରୁ ଅନ୍ୟ ଏକ କର୍ମକୁ,
ଆତ୍ମାରୁ ଆତ୍ମାକୁ ଯାତ୍ରା,
ସ୍ୱପ୍ନରୁ ସ୍ୱପ୍ନକୁ ଯାତ୍ରା,
ମୁଁ ହିଁ ତ ସେ, ଯେ କି ଆଣେ,
ଅମର ଗୀତି ସବୁ,
ଚିର ସବୁଜ ହୃଦୟ ନିମିତ୍ତ ।।
ସେ ମୁକ୍ତ ଓ ଜାଗ୍ରତ ।

ସର୍ବଦା ଆଗକୁ ଗତିଶୀଳ,
ଯାହାର ଶେଷ ନାହିଁ,
ମୁଁ ସେହି ଅନନ୍ତ ପଥର ଯାତ୍ରୀ,
ସମଗ୍ର ବିଶ୍ୱବ୍ରହ୍ମାଣ୍ଡର,
ମୋ ଆତ୍ମା ସ୍ୱୟଂସମ୍ପୂର୍ଣ୍ଣ,
ଚମତ୍କାର ସୃଷ୍ଟି ସହିତ।

ଶେଷରେ ନିଜର ଗନ୍ତବ୍ୟ ପଥ ପାଇ,
ମୋ ଆତ୍ମା ଗାଇଉଠେ,
ସୁମଧୁର ସଙ୍ଗୀତ,
ଯେବେ ଏହା ଉଡ଼ି ଚାଲେ,
ଏହି ସୀମାହୀନ ମହାଶୂନ୍ୟରେ..."

ଦରଦୀ କବି ଡକ୍ଟର ମାୟାଧର ମାନସିଂହଙ୍କ ରଚିତ ଅସଂଖ୍ୟ ମନଲୋଭା କବିତା ଗୁଚ୍ଛରୁ ଏକ ଛୋଟ ନମୁନା ପାଠକମାନଙ୍କ ପାଇଁ ଉପସ୍ଥାପନ କରୁଛି। ୧୯୪୯ ଜୁନ୍ ୧୧ ତାରିଖରେ ଭଦ୍ରକଠାରେ ଅନୁଷ୍ଠିତ କବି ସମ୍ମିଳନୀରେ ସେ ପାଠ କରିଥିଲେ,

**ମୋ ସମାଧି ପରେ ...**
"ବସନ୍ତର ପୁଷ୍ପସ୍ରୋତେ, ଶାରଦ ଜ୍ୟୋସ୍ନାରେ
ସ୍ମର ଯେବେ ମୋ ଦେଶର ଯୁବକ ଯୁବତୀ,
ଆସି ମୋ ସମାଧି ପରେ,
ପୁଷ୍ପ ଢାଳି ପ୍ରୀତି ଭରେ
ଦେବେ ସେ କବିରେ ଯେବେ ଶ୍ରଦ୍ଧାର ଆରତି,
ସେହି ସେ ହୋଇବ ମୋର ଶ୍ରେଷ୍ଠ ପୁରସ୍କାର
ସେହି ମୋର ମାନଦଣ୍ଡ ଜୀବନଯାତ୍ରାର।"

ସେ ହେଉଛନ୍ତି କବି ମାୟାଧର ମାନସିଂହ, ମୋ ବାପା। ମୁଁ ସବୁଠାରୁ ବଡ଼ ଉପହାର ମୋ ଜୀବନରେ ପାଇଛି, ତାହା ହେଉଛି ମାୟାଧର ମାନସିଂହଙ୍କ ପୁତ୍ର ହେବାର ସୌଭାଗ୍ୟ।

(ଏହି ପ୍ରବନ୍ଧ ୨୦୦୫ ସେପ୍ଟେମ୍ବରରେ ଭୁବନେଶ୍ୱରରେ ଅନୁଷ୍ଠିତ ଡଃ ମାୟାଧର ମାନସିଂହଙ୍କ ଜନ୍ମ ଶତବାର୍ଷିକୀ ଅବସରରେ ସାହିତ୍ୟ ଏକାଡେମୀ ଆଲୋଚନା ଚକ୍ରରେ ପରିବେଶିତ ହୋଇଥିଲା)



# ଓଡ଼ିଶାର ନାମଫଳକ

ଡକ୍ଟର ପ୍ରତିଭା ରାୟ୍

*ଥରେ ଲେଖିଲା ପରେ ଏକାଧିକବାର୍ କାଟି ଯୋଡ଼ି ପାଞ୍ଚଥରରେ ସରସସୁନ୍ଦର କରିବା ଅପେକ୍ଷା ଥରେ ଲେଖିଦେଲେ ଯାହା ପାଠକକୁ ଆକର୍ଷଣ କରେ, ଭାବରାଜ୍ୟର ଅଭ୍ୟନ୍ତରକୁ ନେଇଯାଏ, ତାହାହିଁ ପ୍ରକୃତ ସାହିତ୍ୟ ଓ ସ୍ରଷ୍ଟା ହିଁ ପ୍ରକୃତ ସାରସ୍ୱତ ସାଧକ। ସେଇଥିପାଇଁ କୁହାଯାଏ "କଲମ ତାଙ୍କର ବୋଲ ମାନେ।" ସେହି ପ୍ରଥମ ଧାଡ଼ିର ସାହିତ୍ୟିକମାନଙ୍କ ମଧ୍ୟରେ ସାଧିକା ଡଃ ପ୍ରତିଭା ରାୟ୍ ଏକ ଉଜ୍ଜ୍ୱଳ ସାରସ୍ୱତ ସ୍ୱାକ୍ଷର। ୨୦୦୮ 'ମୋ ଓଡ଼ିଶା'ରେ ଆମ ଅନୁରୋଧ ରକ୍ଷାକରି ତାଙ୍କ ପ୍ରଦତ୍ତ ଲେଖା 'ତ୍ରିଗୁଣ ରଜ୍ଜୁରେ ବନ୍ଧା' ବହୁ ବୁଦ୍ଧିଜୀବୀ ପାଠକଙ୍କୁ ଆକୃଷ୍ଟ କରିଥିଲା। ୨୦୦୯ 'ମୋ ଓଡ଼ିଶା', ସାରସ୍ୱତ ସଂକଳନରେ ସେ ଉପସ୍ଥାପନ କରିଛନ୍ତି 'ଓଡ଼ିଶାର ନାମଫଳକ' ଆପଣମାନଙ୍କ ପାଇଁ....*

ଦିନେ ଅନାମ ପୃଥିବୀରେ ପାଦ ଦେଇଥିଲା ଏକ ଅନାମ ଜୀବ – ମଣିଷ। ପ୍ରଥମେ ପ୍ରବୃତ୍ତିର ତାଡ଼ନାରେ ସେ ମେଣ୍ଟାଇଲା ତା'ର ଉଦରର କ୍ଷୁଧା ଓ ଦେହର କ୍ଷୁଧା। ପ୍ରଥମେ ସେ ରକ୍ଷା କରିବା ପାଇଁ ପ୍ରୟାସୀ ହେଲା ନିଜର ଶରୀରକୁ ଏବଂ ଜୀବନକୁ। ମାତ୍ର ଅନୁସନ୍ଧିତ୍ସୁ ମଣିଷ ଏତିକିରେ ସନ୍ତୁଷ୍ଟ ରହିଲା ନାହିଁ। ସେ ଖୋଜିଲା ନିଜକୁ, ନିଜର ମାଟିକୁ, ବ୍ରହ୍ମାଣ୍ଡକୁ ଏବଂ ନିଜର ଅନ୍ତରାତ୍ମାରେ ପ୍ରତିଷ୍ଠିତ ପରମାତ୍ମାକୁ। ଏ ସମସ୍ତଙ୍କୁ ଅନ୍ତରଙ୍ଗ ଭାବରେ ଚିହ୍ନଟ କରିବା ପାଇଁ, ପ୍ରକଟ କରିବା ପାଇଁ, ପ୍ରତିଷ୍ଠା କରିବା ପାଇଁ ସେ ଅନାମକୁ ନାମ ଦେଲା । ନାମ ଦେଲା ନିଜର, ନିଜ ପାଦ ତଳ ମାଟିର, ନିଜ ବିଶ୍ୱାସର, ନିଜ ଚତୁଃପାର୍ଶ୍ୱ ପୃଥିବୀର। ନାମ ହେଲା ଯୁଗର, ସମୟର, ଋତୁଚକ୍ରର ଏବଂ ନାମ ହେଲା ଈଶ୍ୱରଙ୍କର। ଏହି ନାମକରଣର ପର୍ବପର୍ବାଣି ଚକ୍ରରେ ସୃଷ୍ଟି ହେଲା ଇତିହାସ, ଭୌଗୋଳିକ ସୀମାରେଖା, ଧର୍ମ, ସଂପ୍ରଦାୟଭିତ୍ତିକ ଏକ ସାଂସ୍କୃତିକ ପରିଚିତି ; କିନ୍ତୁ ଏହି ସମସ୍ତ ପରିଚିତିର ପରିଚୟ ହେଲା ଗୋଟିଏ ଜାତିର ଭାଷା। କାରଣ କୌଣସି ଦେଶ ବା ଜାତିର ଜାତୀୟତା, ତା'ର ସାଂସ୍କୃତିକ ଗୌରବ ତା'ର ନିଜସ୍ୱ ଭାଷା ମାଧ୍ୟମରେ ହିଁ ପରିପ୍ରକାଶ ହୋଇ ବିକାଶ ପଥରେ ଅଗ୍ରସର ହୋଇଥାଏ। ତେଣୁ ଜାତୀୟତା ବା ଜାତୀୟ ସ୍ୱାଭିମାନ ହେଉଛି ମଣିଷର ଏକ ସଂସ୍କୃତିଗତ, ପରମ୍ପରାଗତ ଆବେଗ।

ଏହି ଆବେଗରୁ ଜନ୍ମ ନିଏ ଭାବପ୍ରବଣତା, ଦେଶପ୍ରେମ, ଜାତିପ୍ରେମ ଓ ସଂସ୍କୃତିପ୍ରେମ; କିନ୍ତୁ ନିଜର ମାତୃଭାଷା ପ୍ରତି ବିଶ୍ୱସ୍ତ ପ୍ରେମ ନ ଥିଲେ ଏହି ଜାତୀୟ ଆବେଗର ଧାରା ନିଦାଘ ନଦୀ ପ୍ରାୟ

କ୍ରମଶଃ ଲୁପ୍ତ ହୋଇଯାଏ ବିଶ୍ୱ ପରିଧି ପରିକ୍ରମା ପଥରେ ଏବଂ ମୃତ ନଦୀ ପରି ମଣିଷ ତା'ର ସମସ୍ତ ବିଦ୍ୟାବୁଦ୍ଧି, ଅର୍ଥ ଏବଂ କ୍ଷମତା ସତ୍ତ୍ୱେ ପରିଚିତ ସଙ୍କଟର ବିକଟ ପରିସ୍ଥିତିର ସାମ୍ନା କରେ। ମନନଶୀଳ ମନୁଷ୍ୟ ନିଜକୁ ଇତର ପ୍ରାଣୀଠାରୁ ସ୍ୱତନ୍ତ୍ର ମନେକରି ମାନବ ଭାବରେ ପରିଚିତ ହେଲା। ନିଜର ଏକ ଭୌଗୋଳିକ ପରିଚୟରେ ସନ୍ତୁଷ୍ଟ ନ ରହି ଏକ ସାଂସ୍କୃତିକ ପରିଚୟ ସୃଷ୍ଟି କଲା ମଣିଷ ଏବଂ ସେ ପରିଚୟ ହେଲା ତା'ର ମାତୃଭାଷା। ଯେଉଁ ଜାତିର ମାତୃଭାଷା ଯେତେ ଉନ୍ନତ, ସେ ଜାତି ସେତେ ସଂସ୍କୃତିସମ୍ପନ୍ନ ବୋଲି ଧରାଗଲା। ଯେଉଁ ଭାଷା ଯେତେ ପ୍ରାଚୀନ, ତା'ର ସଂସ୍କୃତି ତା'ଠାରୁ ସେତେ ପ୍ରାଚୀନ ଏବଂ ସେ ଜାତିର ସାଂସ୍କୃତିକ ସ୍ୱାଭିମାନ ସେତେ ଅଧିକ ହେବା ଆଶା କରାଯାଏ। ଆପଣା ସଂସ୍କୃତିର ସ୍ୱାଭିମାନ ହିଁ ଏକ ଜାତିକୁ ବିଶ୍ୱ ସଂସ୍କୃତି ସହ ସାମିଲ କରେ ଏବଂ ପ୍ରତିଷ୍ଠିତ କରେ ଓଡ଼ିଆ ଭାଷାର ପ୍ରାଚୀନତମ ବହୁ ଐତିହାସିକ ଗବେଷଣାସମ୍ଭୂତ ତଥ୍ୟ। ଓଡ଼ିଆ ଭାଷା ତା'ର ସ୍ୱାତନ୍ତ୍ର୍ୟ ଏବଂ ପ୍ରାଚୀନତା ଦୃଷ୍ଟିରୁ ବଙ୍ଗଳା ଭାଷାର ବଡ଼ ଭଉଣୀ ବୋଲି ପ୍ରଖ୍ୟାତ। ଭାରତୀୟ ଭାଷାବିତ୍ ଡଃ ସୁନୀତି କୁମାର ଚାଟାର୍ଜୀ କହିଯାଇଛନ୍ତି ଯେ । ଅତୀତରେ ବହୁ ବର୍ଣ୍ଣୀୟ ଗବେଷକ ଓ କବି ଓଡ଼ିଆ ଭାଷାର ମୌଳିକତା, ପ୍ରାଚୀନତା ଏବଂ ପ୍ରାଚୁର୍ଯ୍ୟ ସଂପର୍କରେ ନିର୍ବିବାଦୀୟ ମତ ଦେଇଛନ୍ତି। ଓଡ଼ିଆ ଭାଷାର ଶକ୍ତି ଏପରି ଯେ ଏହା ମନୁଷ୍ୟର ସୂକ୍ଷ୍ମ ଉପଲବ୍ଧି ଏବଂ ଗଭୀରତମ ଅନୁଭବକୁ ପ୍ରକାଶ କରିବାପାଇଁ ସକ୍ଷମ।

ଯେତେବେଳେ "ଓଡ଼ିଆ ଭାଷା ଏକ ସ୍ୱତନ୍ତ୍ର ଭାଷା ନୁହେଁ" କହି ଏହି ଭାଷାର ବିଲୋପ ପାଇଁ ହୀନଚକ୍ରାନ୍ତ ଚାଲିଥିଲା, ସେତେବେଳେ ଏହି ଭାଷାର ସ୍ୱାତନ୍ତ୍ର୍ୟ ଓ ମହାନତା ସଂପର୍କରେ ସ୍ପଷ୍ଟ ମତ ଦେଇଥିଲେ ଓଡ଼ିଆପ୍ରେମୀ ବୀମ୍ସ ସାହେବ ଓ ରେଭେନ୍ସା ସାହେବ। ଏହି ଭାଷାରକ୍ଷା ସଂଗ୍ରାମରେ ଅବତୀର୍ଣ୍ଣ ହୋଇଥିଲେ ଓଡ଼ିଶାର ବରପୁତ୍ରଗଣ । ସେହି ରାଜେନ୍ଦ୍ରଲାଲ ମିତ୍ର ଓ କାନ୍ତିଚନ୍ଦ୍ରମାନଙ୍କୁ ପ୍ରଣାମ, ଯେଉଁମାନଙ୍କ ଓଡ଼ିଆ ଭାଷା ବିଲୋପର ଚକ୍ରାନ୍ତ ଚାରିଗୋଟି ପ୍ରାନ୍ତରେ ବିଭାଜିତ, ବିଖଣ୍ଡିତ, ଅବହେଳିତ ହୋଇ ରହିଥିବା ଓଡ଼ିଆ ଭାଷା ସ୍ୱାଭିମାନୀ ଓଡ଼ିଆମାନଙ୍କୁ ଏକ ଅବିଚ୍ଛେଦ୍ୟ ଜାତୀୟ ଆବେଗରେ ଏକତ୍ରିତ କରିଥିଲା ଏବଂ ସୃଷ୍ଟି ହୋଇଥିଲା ଓଡ଼ିଆ ଭାଷାରକ୍ଷା ଆନ୍ଦୋଳନ। ଏହି ଆନ୍ଦୋଳନର ପୁରୋଧା ଥିଲେ ଫକୀରମୋହନ, ଗୌରୀଶଙ୍କର ରାୟ, ମଧୁସୂଦନ, ଗୋପବନ୍ଧୁ, କୃଷ୍ଣଚନ୍ଦ୍ର ଗଜପତି ଆଦି ଓଡ଼ିଆ ବରପୁତ୍ରଗଣ। ଏହି ଭାଷାରକ୍ଷା ଆନ୍ଦୋଳନରୁ ହିଁ ସୃଷ୍ଟି ହୋଇଥିଲା ଭାରତର ସର୍ବପ୍ରଥମ ଭାଷାଭିତ୍ତିକ ପ୍ରଦେଶ, ଯାହାର ନାମ ଓଡ଼ିଶା। ଭୌଗୋଳିକ ବିଭାଜନକୁ ଅବଜ୍ଞା କରି ମାତୃଭାଷା ହିଁ ଏକତା ସୂତ୍ରରେ ବାନ୍ଧିଦେଇଥିଲା ପ୍ରାନ୍ତୀୟ ଅଞ୍ଚଳରେ ରହିଥିବା ଓଡ଼ିଆମାନଙ୍କୁ। ଊନବିଂଶ ଶତାବ୍ଦୀର ଷାଠିଏ ସତୁରୀ ଦଶକରେ ଓଡ଼ିଆମାନେ ସେମାନଙ୍କ ଭାଷା ସ୍ୱାଭିମାନ ଓ ଜାତୀୟ ସ୍ୱାଭିମାନର ଜ୍ୱଳନ୍ତ ଦୃଷ୍ଟାନ୍ତ ରଖିଥିଲେ ଦେଶ ତଥା ବିଶ୍ୱ ସମ୍ମୁଖରେ। ଶ୍ରେଷ୍ଠ ଓଡ଼ିଆପୁଅ ମଧୁସୂଦନ ଭାରତର ତତ୍କାଳୀନ ବଡ଼ଲାଟ୍ ଲର୍ଡ ଏଲ୍‌ଗିନଙ୍କୁ ଏକ ପ୍ରତିବାଦ ପତ୍ରରେ ଲେଖିଥିଲେ "ମାତୃଭାଷାକୁ ନିଷିଦ୍ଧ କରିବା ହେଉଛି ସବୁଠାରୁ ବଡ଼ ଏବଂ କୁତ୍ସିତ ଧରଣର ଶ୍ୱାସରୋଧକାରୀ ବ୍ୟବସ୍ଥା। ଏପରି ବ୍ୟବସ୍ଥା ସବୁଠାରୁ ଅତ୍ୟାଚାରୀ ଶାସନରେ ମଧ୍ୟ ଦୃଷ୍ଟିଗୋଚର ହୁଏନାହିଁ।

୨୦.୬.୧୮୯୫ ମସିହାରେ ଏହିଭଳି ଏକ ନିର୍ଭୀକତାପୂର୍ଣ୍ଣ ଜାତୀୟ ଆବେଗରେ ଉଦ୍‌ବେଳିତ ଦୀର୍ଘ ପ୍ରତିବାଦ ପତ୍ର ପଠାଯାଇଥିଲା ବଡ଼ଲାଟ୍ ଏଲଗିନ୍ ସାହେବଙ୍କୁ । ଏହି ପତ୍ର ସହ ସମ୍ବଲପୁର ଜିଲ୍ଲାରେ ପ୍ରଥମ ମାଟ୍ରିକୁଲେଶନ୍ ପାଶ୍ କରିଥିବା ଧରଣୀଧର ମିଶ୍ରଙ୍କର ପ୍ରେରଣାରେ ୨୩୬୪ ଜଣ ଓଡ଼ିଆଙ୍କର ସ୍ୱାକ୍ଷର ସମ୍ବଳିତ ସ୍ମାରକପତ୍ର ମଧ୍ୟ ବଡ଼ଲାଟଙ୍କ ନିକଟକୁ ପଠାଯାଇଥିଲା । ସେତେବେଳେ ସମ୍ବଲପୁରୀ, କଟକୀ ଇତ୍ୟାଦି ଆଞ୍ଚଳିକ ଭାବପ୍ରବଣତାରୁ ଊର୍ଦ୍ଧ୍ୱରେ ରହି ଓଡ଼ିଆ ମାନସ ଜାଗ୍ରତ ଏବଂ ଏକତାବଦ୍ଧ ହୋଇ ରକ୍ଷା କରିଥିଲା ଓଡ଼ିଆ ଭାଷାକୁ । କେବଳ ଓଡ଼ିଆ ଭାଷା ନୁହେଁ, ଓଡ଼ିଆ ଲିପିର ବିଲୁପ୍ତି ସାଧନ ନିମନ୍ତେ ମଧ୍ୟ ସେତେବେଳେ ଏକ ଚକ୍ରାନ୍ତ ହୋଇଥିଲା । ୧୮୬୮ରେ କଟକ ଡିବେଟିଂ କ୍ଲବ୍‌ରେ ଆୟୋଜିତ ଏକ ସଭାରେ ବଙ୍ଗୀୟ ରାଜେନ୍ଦ୍ରଲାଲ୍ ମିତ୍ର ଓଡ଼ିଆ ଭାଷାର ବିଲୋପ ସାଧନ ପାଇଁ ଏହି ପ୍ରାଚୀନ ଏବଂ ଐଶ୍ୱର୍ଯ୍ୟମୟ ଭାଷାର ଦୁର୍ବଳତା ଦର୍ଶାଇ ଯୁକ୍ତି ବାଢ଼ିଥିଲେ, "ଓଡ଼ିଆ ଭାଷା, ଜାତୀୟତାର ଅଭ୍ୟୁଦୟ ପାଇଁ ସହାୟକ ହେବା ସମ୍ଭବ ନୁହେଁ, ବରଂ ବଙ୍ଗଳା ଭାଷା ଏଥିପାଇଁ ଯଥାର୍ଥ" ସେହି ବର୍ଷ ବଙ୍ଗୀୟ ସରକାରୀ କର୍ମଚାରୀ ହାଇଦାର ଓଡ଼ିଆ ଲିପି ବିଲୁପ୍ତି ଉଦ୍ୟମ କରି ଯୁକ୍ତି ଦର୍ଶାଇଥିଲେ ଯେ ବଙ୍ଗଳା ଲିପି ମାଧ୍ୟମରେ ହିଁ ଓଡ଼ିଆ ଭାଷାକୁ ପ୍ରକାଶ କରାଯିବା ଉଚିତ । ବଙ୍ଗାଳୀ ଅଧ୍ୟାପକ ରାମକୃଷ୍ଣ ମୁଖୋପାଧ୍ୟାୟ ଯୁକ୍ତି ବାଢ଼ିଥିଲେ ଯେ ଓଡ଼ିଆ ଏକ ଦୁର୍ବଳ ତଥା ଉପଭାଷା । ତେଣୁ ଓଡ଼ିଆ ଭାଷା ପରିବର୍ତ୍ତେ ଓଡ଼ିଶାରେ ସମୃଦ୍ଧ ବଙ୍ଗଳା ଭାଷା ପ୍ରଚଳିତ ହେବା ଉଚିତ । ୧୮୩୬ରେ ଅଣ-ଓଡ଼ିଆମାନଙ୍କ ଦ୍ୱାରା ଓଡ଼ିଆ ଭାଷା ବିଲୁପ୍ତ ଆନ୍ଦୋଳନ ଆରମ୍ଭ ହେଲା । ୧୮୮୬ ମସିହାରେ ଏହି ଚକ୍ରାନ୍ତ ଭୟଙ୍କର ରୂପ ଧାରଣ କରି ବିଶ୍ୱର ସାଂସ୍କୃତିକ ଇତିହାସରୁ ଓଡ଼ିଆ ସଂସ୍କୃତିର ଉଜ୍ଜ୍ୱଳ ସ୍ୱାକ୍ଷରକୁ ନିଶ୍ଚିହ୍ନ କରିଦେବା ପାଇଁ ପଥ ପରିଷ୍କାର କରିଦେଇଥିଲା । ଓଡ଼ିଆ ଭାଷାରକ୍ଷା ଆନ୍ଦୋଳନ ଆରମ୍ଭ ହେଲା ୧୮୯୫ରେ ଏବଂ ୧୯୩୬ ମସିହା ଅପ୍ରେଲ୍ ୧ ତାରିଖରେ ଭାଷା ଭିତ୍ତିରେ ସୃଷ୍ଟି ହେଲା ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ । କୋରାପୁଟ, ସମ୍ବଲପୁର, ପୁରୀ, କଟକ, ବାଲେଶ୍ୱର, ଗଞ୍ଜାମ, ଏହିପରି ମାତ୍ର ଛଅଗୋଟି ଜିଲ୍ଲାକୁ ନେଇ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ଲାଗିଲା ୧୮୩୬ (ଓଡ଼ିଆ ଭାଷା ବିଲୁପ୍ତି ଆନ୍ଦୋଳନ)ରୁ ୧୯୩୬, ପୂରା ଶହେ ବର୍ଷ । ଶହେବର୍ଷର ସାଂସ୍କୃତିକ ରକ୍ତକ୍ଷରଣରୁ ଜନ୍ମ ନେଇଥିଲା ଦିନେ ଆଜିର ଏହି ସ୍ୱତନ୍ତ୍ର ଓଡ଼ିଶା ରାଜ୍ୟ । ମାତ୍ର ଆମ ଓଡ଼ିଶା ଶହେବର୍ଷର ଓଡ଼ିଶା ନୁହେଁ କି ୬୬ ବର୍ଷର ଓଡ଼ିଶା ନୁହେଁ; ଆମ ଓଡ଼ିଶା ହେଉଛି ପାଞ୍ଚହଜାର ବର୍ଷର ବୈଦିକ ଓଡ଼ିଶା । ବେଦପୁରାଣରେ କଳିଙ୍ଗର ନାମ ଉଲ୍ଲେଖ ଅଛି । ମହାଭାରତ ଯୁଦ୍ଧରେ କଳିଙ୍ଗ ମଧ୍ୟ ଯୋଗ ଦେଇଥିଲା ।

ପାଞ୍ଚହଜାର ବର୍ଷର ସାଂସ୍କୃତିକ ପରମ୍ପରା ଉପରେ ପ୍ରତିଷ୍ଠିତ ଓଡ଼ିଶାର ଆଜି ଓଡ଼ିଆ ସ୍ୱାଭିମାନ ଅଛି କି ? ମଧୁସୂଦନ, ଫକୀରମୋହନ, କୃଷ୍ଣଚନ୍ଦ୍ର, ନୀଳକଣ୍ଠ ଆଦି ଓଡ଼ିଆଙ୍କର ଆମେ ଉପଯୁକ୍ତ ଦାୟାଦ କି ? ଏହି ପ୍ରଶ୍ନ ଆଜି ସମସ୍ତେ ନିଜକୁ ନିଜେ ପଚାରିବାର ମୁହୂର୍ତ୍ତ ଉପସ୍ଥିତ ହୋଇଛି । ଦିନେ ଅଣଓଡ଼ିଆଙ୍କ ହାତରେ ଓଡ଼ିଆ ଭାଷା ଏବଂ ଲିପିର ହତ୍ୟା ଉଦ୍ୟମ ହୋଇଥିଲା । ଆଜି ଆମ ଓଡ଼ିଆମାନଙ୍କ ଦ୍ୱାରା ଓଡ଼ିଆ ଭାଷା ଏବଂ ବିଶେଷକରି ଓଡ଼ିଆ ଲିପି ବିଲୁପ୍ତିର ଅଭିଯାନ ଆରମ୍ଭ ହୋଇଯାଇଛି । ଓଡ଼ିଆ

ଭାଷାକୁ ସରକାରୀ ଭାଷାରୂପେ ୧୯୫୬ ମସିହାରେ ମୁଖ୍ୟମନ୍ତ୍ରୀ ସ୍ୱର୍ଗତ ନବକୃଷ୍ଣ ଚୌଧୁରୀ ଘୋଷଣା କରିଥିଲେ। ପରବର୍ତ୍ତୀ କାଳରେ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ଥିବା ସମୟରେ ସରକାରୀ କାର୍ଯ୍ୟ ଓଡ଼ିଆ ଭାଷାରେ ପ୍ରଚଳନ କରାଯିବ ବୋଲି ଘୋଷଣା କରିଥିଲେ। ମାତ୍ର ଦୁଃଖର କଥା ଆଜି ମଧ୍ୟ ଓଡ଼ିଆ ବାସ୍ତବ ଦୃଷ୍ଟିକୋଣରୁ ସରକାରୀ ଭାଷା ହୋଇପାରିନାହିଁ। ଓଡ଼ିଶାରେ ପ୍ରତିକ୍ଷେତ୍ରରେ ଓଡ଼ିଆମାନଙ୍କ ଦ୍ୱାରା ଓଡ଼ିଆ ଭାଷା ଏବଂ ଲିପି ବିଲୁପ୍ତ ଅଭିଯାନ ଆରମ୍ଭ ହୋଇଯାଇଛି ବୋଲି ଆଶଙ୍କା ନୁହେଁ, ହୃଦ୍‌ବୋଧ ହେଉଛି। ଶିକ୍ଷା, ଚାକିରି, ବାଣିଜ୍ୟ ବ୍ୟବସାୟ, ଦୋକାନ ବଜାର, ସରକାରୀ, ବେସରକାରୀ ଦପ୍ତରମାନଙ୍କରେ ନାମ-ଫଳକମାନ ଇଂରାଜୀ ଭାଷାରେ ଓ ଇଂରାଜୀ ଲିପିରେ ଲେଖାଯାଉଛି। କେଉଁଠି ଯଦି କାଁ ଭାଁ ଓଡ଼ିଆ ସ୍ୱାଭିମାନର ଝଲକଟିଏ ଆଖିରେ ପଡୁଛି, ସେଠାରେ ବେଳେବେଳେ ବର୍ଣ୍ଣଶୁଦ୍ଧି ଏବଂ ଅନ୍ୟାନ୍ୟ ପ୍ରମାଦ ଅଧିକ ଦୁଃଖଦାୟକ ହେଉଛି। ଓଡ଼ିଆ ଲୋକଙ୍କ ଘରମାନଙ୍କରେ ନାମଫଳକ ଇଂରାଜୀ ଅକ୍ଷରରେ ଶୋଭା ପାଉଛି। ରାସ୍ତାଘାଟ, ଟ୍ରାଫିକ୍ ନିର୍ଦ୍ଦେଶନା ଆଦି ମଧ୍ୟ ଓଡ଼ିଆ ଲିପି-ବିଲୁପ୍ତି ଅଭିଯାନରେ ସାମିଲ ହେବା ପରି ମନେହେଉଛି।

ସରକାରୀ ସ୍ତରରେ ହେଉଥିବା ଯୋଜନାମାନ କାର୍ଯ୍ୟକାରୀ ହୁଏ ବ୍ୟକ୍ତି ମାଧ୍ୟମରେ। ଏହି ଯୋଜନା କାର୍ଯ୍ୟକାରୀ କରିବା ସରକାରୀ ଦାୟିତ୍ୱ, ସରକାରଙ୍କର ହୋଇପାରେ; ମାତ୍ର ନୈତିକ ଏବଂ ଜାତୀୟ କର୍ତ୍ତବ୍ୟ ହେଉଛି ସବୁ ଓଡ଼ିଆଙ୍କର। ଏବେ ଇଂରାଜୀ ମାଧ୍ୟମ ସ୍କୁଲର ପ୍ରାବଲ୍ୟ ଯୋଗୁଁ ଇଂରାଜୀ ଭାଷାର ଆଧିପତ୍ୟ ଓଡ଼ିଆ ଭାଷାକୁ ଘରେ, ବାହାରେ, ରାସ୍ତାଘାଟରେ ଯେତେ ନିର୍ବାସନ ନ କରିଛି, ଓଡ଼ିଆ ଲିପିକୁ ପ୍ରାୟ ସମ୍ପୂର୍ଣ୍ଣ ନିର୍ବାସନ ଦଣ୍ଡ ଦେଇସାରିଲାଣି। ନିରକ୍ଷରଙ୍କ ସଂଖ୍ୟାଗରିଷ୍ଠତା ଯୋଗୁଁ ଓଡ଼ିଆ ଭାଷା ଜନନୀର ସ୍ୱର ଶୁଭୁଛି । କିନ୍ତୁ ଶିକ୍ଷିତ ଓଡ଼ିଆଙ୍କ ନାମଫଳକର ଦୌରାତ୍ମ୍ୟରେ ଓଡ଼ିଆ ଲିପି ଓଡ଼ିଶାରୁ ପୋଛି ହୋଇଯିବାକୁ ବସିଲାଣି। ଆମ ପିଲାମାନେ ହୁଏତ ଆଉ କିଛି ବର୍ଷ ଓଡ଼ିଆ ଭାଷା ଶୁଣିବେ ଓ ଚିହ୍ନିବେ, ମାତ୍ର ଓଡ଼ିଆ ଲିପି ଚିହ୍ନିପାରିବେ ନାହିଁ କିଛି ବର୍ଷ ପରେ। ଓଡ଼ିଶାରେ ବିଦେଶୀ ପର୍ଯ୍ୟଟକ ଜଣେ ପହଞ୍ଚିଗଲେ ଓଡ଼ିଶାର ନାମଫଳକ ଖୋଜିବ ଦୋକାନ, ବଜାର, ରାସ୍ତାଘାଟ, ଅଫିସ ଓ ଘରମାନଙ୍କ ଫାଟକରେ, ଯେଉଁଠି ବ୍ୟକ୍ତିଗତ ନାମଫଳକଟିଏ ଝୁଲୁଥିବ ଇଂରାଜୀ ଲିପିରେ। ମାତ୍ର ଜାତୀୟ ନାମଫଳକଟିଏ ସେଠାରେ ନ ଥିବ। ଜଣେ ବ୍ୟକ୍ତିର ଜାତୀୟ ପରିଚୟ ଦେବ ମାତୃଭାଷାର ଶିଖିରେ ଲିଖିତ ନାମଫଳକ। ତେଣୁ ଅଧିକ ଆଶା ନ କରି ଆଜି ନିଜକୁ ପଚାରିବା ଚାଲନ୍ତୁ ଆମର ଜାତୀୟ ପରିଚୟ କ'ଣ ? ଓଡ଼ିଆପୁଅ ଓଡ଼ିଆ ଭାଷା ଓ ଲିପିରେ ନିଜ ଘର ଫାଟକରେ ନାମଫଳକ ନ ଲେଖିବା କ'ଣ ଲଜ୍ଜାଜନକ ନୁହେଁ? ଓଡ଼ିଶାର ମାଟି ପାଣି ପବନରୁ ପ୍ରାଣଶକ୍ତି ଆହରଣ କରିବା ନୈତିକ ଅଧିକାର କ'ଣ ଆମର ଅଛି ? ଏକଥା ସତ୍ୟ ଏବଂ ଆନନ୍ଦର କଥା ଯେ ବହୁ ଯୋଗ୍ୟ ଓଡ଼ିଆ ପୁଅ ଆଉ ଓଡ଼ିଶା ଭିତରେ ସୀମାବଦ୍ଧ ହୋଇନାହାନ୍ତି। ବହୁ ଲୋକ ଆଜି ସର୍ବଭାରତୀୟ ଏବଂ କିଛି ଲୋକ ଆନ୍ତର୍ଜାତୀୟ ପରିଚିତି ଲାଭ କରିଛନ୍ତି। କେବଳ ଓଡ଼ିଆ ଲିପିରେ ନାମଫଳକଟିଏ ଲେଖିଲେ ତାଙ୍କୁ ଅଣଓଡ଼ିଆ ଜଣେ ଖୋଜି ପାଇବାରେ ବାଧା ସୃଷ୍ଟି ହେବ। ଏ କ୍ଷେତ୍ରରେ ଓଡ଼ିଆ ନାମଫଳକ ସହ ଇଂରାଜୀ ନାମଫଳକ ଝୁଲାଇବାରେ ବାଧା କ'ଣ ?

ସରକାରଙ୍କୁ ସବୁକଥାରେ ଦାୟୀ କରି ସରକାରୀ ଯୋଜନାମାନଙ୍କୁ ପଣ୍ଡ କରି ଚାଲିଥିବା ଆମର ଏକ ବିକାସରେ ପରିଣତ ହୋଇଛି। ସରକାର କ'ଣ ଆମ ଘରମାନଙ୍କର ଫାଟକରେ ଓଡ଼ିଆରେ ଲେଖା ନାମଫଳକଟିଏ ଝୁଲାଇଦେବା ଆମର ଅତିଶିକ୍ଷିତ ସୁଯୋଗ୍ୟ ଓଡ଼ିଆମାନେ ଆଶା କରୁଛନ୍ତି ? ଓଡ଼ିଶା ରାଜ୍ୟରେ ଓଡ଼ିଆଙ୍କ ଦ୍ୱାରା ଓଡ଼ିଆ ଭାଷା ଓ ଲିପିର ଯେଉଁ ଦୁରବସ୍ଥା ହୋଇଛି, ତାହା ବିଶ୍ୱର କୌଣସି ସ୍ଥାନରେ ଦୃଷ୍ଟିଗୋଚର ହୁଏନାହିଁ। ୟୁରୋପର ବିଭିନ୍ନ ଦେଶରେ ଇଂରାଜୀରେ ନାମଫଳକଟିଏ କେଉଁଠି ହେଲେ ଆଖିରେ ପଡ଼େନାହିଁ। ଆମେ କ'ଣ ସେମାନଙ୍କଠାରୁ ସମସ୍ତେ ଇଂରାଜୀରେ ବେଶୀ ପଣ୍ଡିତ ? ଆମ ପଡ଼ୋଶୀ ରାଜ୍ୟମାନଙ୍କୁ ମଧ୍ୟ ଦେଖନ୍ତୁ, ମାତୃଭାଷାର ହତାଦର ଆମଠାରୁ ଅଧିକ କିଏ କରେ ?

ଏହି ଲେଖିକା ଓଡ଼ିଶାକୁ ଖୋଜି ବୁଲୁଛି ଘରମାନଙ୍କ ନାମଫଳକରେ। ସହର କଥା ଛାଡ଼ନ୍ତୁ, ଗାଁଗହଳର ଦୋକାନ ବଜାର, ବିବାହ ମଣ୍ଡପ, ବିବାହ ନିମନ୍ତ୍ରଣପତ୍ର, ଧର୍ମସଭାର ଫାଟକରେ ମଧ୍ୟ ଓଡ଼ିଶାର ନାମଫଳକ ଖୋଜି ପାଉନାହିଁ।

ଓଡ଼ିଆ ପତ୍ରିକାରୁ ଏବଂ ଓଡ଼ିଆ ଭାଷା ସାହିତ୍ୟର ଆଲୋଚନାଚକ୍ର ନିମନ୍ତେ ନିମନ୍ତ୍ରଣରୁ ମଧ୍ୟ ଅଧିକାଂଶ ସମୟରେ ଓଡ଼ିଶାର ନାମଫଳକ ଖୋଜିଲେ ମିଳୁ ନାହିଁ। ଓଡ଼ିଆ ସଂସ୍କୃତି ରକ୍ଷା ଅନୁଷ୍ଠାନମାନଙ୍କରୁ ଓଡ଼ିଆ ଚିଠି ପ୍ୟାଡ୍‌ରେ ଇଂରାଜୀ ଭାଷାରେ ଲେଖା ଚିଠି ପାଇବା ସମୟରେ ଖୋଜୁଛି ଆମ ଓଡ଼ିଶା କେଉଁଠି ? ଉତ୍ତରଦାୟାଦଙ୍କୁ ଓଡ଼ିଶାର ରାସ୍ତା କିଏ ବତାଇଦେବ ? ଓଡ଼ିଆମାନଙ୍କ କବଳରୁ ଓଡ଼ିଆ ଭାଷା ଓ ଲିପିକୁ ବଞ୍ଚାଇବା ପାଇଁ ଆଜି ଆଉ ଏକ "ଓଡ଼ିଆ ଲିପି ବଞ୍ଚାଅ" ସଂଗ୍ରାମର ଏକାନ୍ତ ଆବଶ୍ୟକତା ଅନୁଭବ କରାଯାଉନାହିଁ କି ? 'ଓଡ଼ିଆ ଭାଷା ବଞ୍ଚାଅ' ସଂଗ୍ରାମ ତ ଅନେକ ସ୍ୱାଭିମାନୀ ଓଡ଼ିଆଙ୍କ ଭିତରେ ଆରମ୍ଭ ହୋଇସାରିଛି। ଏକ ଐକ୍ୟବଦ୍ଧ ସଂଗ୍ରାମ ନିମନ୍ତେ ଓଡ଼ିଆପ୍ରାଣ ଅଣଓଡ଼ିଆ ଗୌରୀଶଙ୍କର ରାୟ୍ ଏବଂ ଗୋରା ସାହେବ ବୀମସ୍, ରେଭେନ୍‌ସା ଆଦି ବିଦେଶୀମାନଙ୍କ ପ୍ରେରଣା ଏବଂ ନେତୃତ୍ୱକୁ କ'ଣ ଅପେକ୍ଷା ଏବେ ମଧ୍ୟ କରିଛନ୍ତି ଓଡ଼ିଆପ୍ରାଣ ଓଡ଼ିଆମାନେ ?

*ଆଖ୍ୟାୟିକା, ୨୭-ଗଜପତି ନଗର, ଭୁବନେଶ୍ୱର*



# ସ୍କନ୍ଧାରୋହଣ

ଡକ୍ଟର ଚନ୍ଦ୍ରଶେଖର ରଥ

*କୌଣସି ଚିନ୍ତନକୁ ସାହିତ୍ୟର ରୂପ ଦେବାକୁ କେତେକ ମସିଜୀବୀଙ୍କୁ ଅନେକ ସମୟରେ ବେଶ୍ ଶ୍ରମ ସ୍ୱୀକାର କରିବାକୁ ପଡ଼ିଥାଏ। ଅନୁକୂଳ ବାତାବରଣ ନ ଥିଲେ ପ୍ରୟାସୀ ଲେଖାଟି ମନୋମୁଗ୍ଧକର ମଧ୍ୟ ହୋଇପାରେନାହିଁ। ଆମ ସାହିତ୍ୟ ସାଧକମାନଙ୍କ ମଧ୍ୟରେ ଏପରି କେତେକ ଅଛନ୍ତି, ଯେଉଁମାନେ ତାଙ୍କ କଳ୍ପନାକୁ ଅନାୟାସରେ ଭାବଗମ୍ଭୀର କରିଦିଅନ୍ତି ସେମାନଙ୍କ ସାରସ୍ୱତ କଳାଚାତୁର୍ଯ୍ୟକୁ ନେଇ। ତାଙ୍କ ବ୍ୟବହୃତ ଶବ୍ଦଗୁଡ଼ିକର ଭାବାବେଗ ତାଙ୍କ ଚିନ୍ତାକୁ ଶାଣିତ, ମାର୍ଜିତ, ଶୋଭନୀୟ ଓ ଲୋଭନୀୟ କରିଦିଏ ପାଠକ ନିକଟରେ। ସେହି ସାହିତ୍ୟ ରୂପକାରମାନଙ୍କ ମଧ୍ୟରେ ଆମର ସମ୍ମାନନୀୟ ପ୍ରାଧ୍ୟାପକ ଡକ୍ଟର ଚନ୍ଦ୍ରଶେଖର ରଥ ହେଉଛନ୍ତି ଅନ୍ୟତମ, ଯାହାଙ୍କ ଲେଖନୀରୁ ଆମେ ଉପସ୍ଥାପନ କରୁଛୁ ଏକ ନୂତନ ଶୀର୍ଷକ 'ସ୍କନ୍ଧାରୋହଣ ଆପଣମାନଙ୍କ ପାଇଁ.....*

ନାତିଟୋକାକୁ କାନ୍ଧରେ ବସାଇ ଯାତ୍ରା ଦେଖାଇଲା ପରି ଉତ୍ତରପୁରୁଷର ସବୁ ପ୍ରକାର ଅସାମର୍ଥ୍ୟ, ଅପୂର୍ଣ୍ଣତା ଓ କ୍ଷୁଦ୍ରତାକୁ ପୂରଣ କରିବା ପାଇଁ ପୂର୍ବପୁରୁଷ ସର୍ବଦା ନିଜର ଜ୍ଞାନ, ଅଭିଜ୍ଞତା ଓ ସିଦ୍ଧିର କାନ୍ଧ ପତେଇ ଦେଇଥା'ନ୍ତି। ସେଥିପାଇଁ ପୁରାତନର ଭିତ୍ତି ଉପରେ ନୂତନର ନିର୍ମାଣ ହୋଇ ଚାଲିଛି। ଅତୀତର ପରମ୍ପରାକୁ କେତେବେଳେ ବର୍ଜନ କରାଯାଏନାହିଁ, କାରଣ ବର୍ଜନ କରାଯାଇପାରେନାହିଁ । ବୃନ୍ତକୁ ବର୍ଜନ କଲେ ଫୁଲ ଝଡ଼ି ପଡ଼ିଲା ପରି ଅତୀତର ଗର୍ଭରୁ ବିଚ୍ୟୁତ ହୋଇଗଲେ ବର୍ତ୍ତମାନର ସ୍ଥିତି ରହେନାହିଁ। ଏଣୁ ପରମ୍ପରାକୁ ସ୍ୱୀକାର କରାଯାଏ, ହୁଏତ ଅତିକ୍ରମ କରାଯାଏ, କିନ୍ତୁ ତ୍ୟାଗ କରାଯାଏ ନାହିଁ।

ପରମ୍ପରା ସଚେତନ ହେବାକୁ ଓ ପ୍ରାଚୀନର ଯୋଗ୍ୟ ହେବାକୁ ଗୁରୁଜନମାନେ ଆମକୁ ଆଶୀର୍ବାଦ ଦିଅନ୍ତି; "ଆୟୁଷ୍ମାନ୍ ଭବ ସୌମ୍ୟ; ପ୍ରାଚୀନ ଯୋଗ୍ୟୋ ଭବ।" ପ୍ରାଚୀନ ଗୌରବର ଉପଯୁକ୍ତ ଦାୟାଦ ହେବା ପାଇଁ, ରଘୁକୁଳ ରୀତିକୁ ରକ୍ଷା କରିବା ପାଇଁ ମର୍ଯ୍ୟାଦା ପୁରୁଷୋତ୍ତମଙ୍କୁ ବନବାସ ସ୍ୱୀକାର କରିବାକୁ ପଡ଼ିଥାଏ। କୁଳମର୍ଯ୍ୟାଦା ଯେପରି ମହୀୟାନ ଥିଲେ ବଳେ ସେଥିରେ ଉତ୍ତରପୁରୁଷ ଅନୁପ୍ରାଣିତ ହୋଇଯିବ। ପ୍ରଥିତଯଶା ରଘୁ ଦିଲୀପଙ୍କ କୁଳରେ କ୍ଷୁଦ୍ରଚେତା ଖର୍ବ ପୁରୁଷର ସ୍ଥାନ ନାହିଁ। ପ୍ରାଚୀନ ଗୌରବର ଯୋଗ୍ୟ ହେବା ଏକ ସୌଭାଗ୍ୟ ଓ ସେହି ପରିମାଣରେ ଏକ ବିଶାଳ ଦାୟିତ୍ୱ। ପରମ୍ପରାର ଆଦର୍ଶକୁ ଅକ୍ଷୁଣ୍ଣ ରଖିପାରିବା ସହଜସାଧ୍ୟ ନୁହେଁ।

ସ୍ପାର୍ଟାର ବୀରପୁରୁଷ ହେବା ଏକ ଆହ୍ୱାନ। ସେଥିପାଇଁ ସାମାନ୍ୟତମ ଶାରୀରିକ ତ୍ରୁଟି ମଧ୍ୟ ଅମାର୍ଜନୀୟ ଅପରାଧ। ସେ ଆଦର୍ଶ ସଚେତନ ସମାଜ ବ୍ୟବସ୍ଥାରେ ଏ ଅପରାଧ ପାଇଁ ମୃତ୍ୟୁ ହିଁ ଏକମାତ୍ର ଦଣ୍ଡ। ଆଦର୍ଶର ଏପରି ଲୌହ ଶୃଙ୍ଖଳକୁ ସ୍ୱୀକାର କରିବା ଏକ ଦୁଃସାହସ। ଏଇ ମାନଦଣ୍ଡରେ ପ୍ରାଚୀନ ଯୋଗ୍ୟ ହେବା ପାଇଁ ବ୍ୟକ୍ତିର ଉତ୍କର୍ଷ ଓ ତା' ସହିତ ସମାଜର ଉତ୍କର୍ଷକୁ ତୋଳି ରଖିବା ସବୁବେଳେ

ସମ୍ଭବ ନୁହେଁ । ସେ ଦୃଷ୍ଟିରୁ ଆର୍ଯ୍ୟଋଷିର ପରମ୍ପରା ଆମ ପାଇଁ ଶ୍ଳାଘ୍ୟ ନିଶ୍ଚୟ; କିନ୍ତୁ ସହଜରେ ପାଳନୀୟ ବା ଗ୍ରହଣୀୟ ନୁହେଁ । ଋଷି ଚେତନାରେ ପ୍ରବେଶ କରି ପ୍ରତିଷ୍ଠିତ ହେବା ସମ୍ଭବ ନୁହେଁ । ବ୍ୟକ୍ତିବୈଷମ୍ୟ ଅବଶ୍ୟ ସ୍ୱୀକାର୍ଯ୍ୟ । ଏଣୁ ସେଥିପାଇଁ ପ୍ରାଚୀନର ସ୍କନ୍ଧାରୋହଣ ଲୋଭନୀୟ ଓ କାମ୍ୟ ମନେ ହୋଇପାରେ । ରଘୁକୁଳର ମର୍ଯ୍ୟାଦା, ସେ ପରମ୍ପରାର ଗୌରବ ହିମଗିରି ପରି ଅତୁଳନୀୟ, ଅଦ୍ୱିତୀୟ ଓ ଅନନ୍ୟ । ସେଇଠି ବ୍ୟକ୍ତିପ୍ରାଧାନ୍ୟ କୁଳମର୍ଯ୍ୟାଦା ପାଖରେ ଗୌଣ । ନିଜକୁ ସୂର୍ଯ୍ୟବଂଶୀ କହିଦେଲେ ହିଁ ଯଥେଷ୍ଟ । ଅନ୍ୟସବୁ ବିଶଦ ବ୍ୟକ୍ତିଗତ ପରିଚୟର ପ୍ରୟୋଜନ ନାହିଁ ।

ଏହି କାରଣରୁ କେହି କେହି ପ୍ରାଚୀନର ଯୋଗ୍ୟ ହେବା ପାଇଁ ନିଜର ବ୍ୟକ୍ତିସ୍ୱାତନ୍ତ୍ର୍ୟ ହରାଇବାକୁ ଚାହାନ୍ତି ନାହିଁ । ସେମାନେ ବରଂ ଚାହାନ୍ତି, ନିଜ ବାହୁବଳରେ 'ଭୀମାର୍ଜୁନ ସମାଯୁଧିଃ' ଭାବରେ ସ୍ୱୀକୃତି ପାଇବା ପାଇଁ । ରଘୁକୁଳ ପରି କୁରୁକୁଳର ବଂଶମର୍ଯ୍ୟାଦା ବ୍ୟକ୍ତି ଉପରେ ମଢ଼େଇ ହୋଇ ପଡ଼େନାହିଁ । ସେ କ୍ଷେତ୍ରରେ ପ୍ରାଚୀନ ଯୋଗ୍ୟ ହେବାର ମଧ୍ୟ ପ୍ରୟୋଜନ ନାହିଁ । ସେଇଠି ବ୍ୟକ୍ତି ନିଜ ସାମର୍ଥ୍ୟ ଓ ବୀରତ୍ୱରେ ମହୀୟାନ । ସେ କେତେବେଳେ ଧନୁ ହଳରେ ପୃଥ୍ୱୀ ଟେକିଲାଣି ତ ଆଉ କେତେବେଳେ ଘୋର ପ୍ରତିଜ୍ଞା ବଳରେ ଇଚ୍ଛାମୃତ୍ୟୁ ଅର୍ଜନ କଲାଣି । ସମସ୍ତେ ଏକେ ଏକେ ମାନୀ ମାନଗୋବିନ୍ଦ । ପ୍ରଚଣ୍ଡ ଆତ୍ମବିଶ୍ୱାସ ଓ ଗର୍ବାଭିମାନ ବଳରେ ଜାଣିଶୁଣି ପୁରୁଷୋତ୍ତମଙ୍କ ବିପକ୍ଷରେ ଧନୁଧାରଣ କରିବାକୁ ସକ୍ଷମ । ଅସ୍ତୁ, କୃଷ୍ଣାବତାର ଧର୍ମଯୁଦ୍ଧରେ ନିର୍ଦ୍ଦିଷ୍ଟ ଅନୁଗତ ପକ୍ଷର ବିଜୟ ଦାୟିତ୍ୱ ବହନ କରିଛନ୍ତି ! ଅସ୍ତୁ, ଯେଉଁଠାରେ ଯୋଗେଶ୍ୱର କୃଷ୍ଣ ଓ ଯେଉଁଠାରେ ଧନୁର୍ଦ୍ଧର ପାର୍ଥ; ସେଠାରେ ବିଜୟ, ଶ୍ରୀ, ଭୂତି ନିଶ୍ଚିତ । ତଥାପି ନିଜର ଅସାମର୍ଥ୍ୟକୁ ପରିପୂରଣ କରିବା ପାଇଁ କଦାପି ମହାପୁରୁଷଙ୍କର ଆଶ୍ରିତ ହେବେନାହିଁ ଗର୍ବିତ ଭୀଷ୍ମ, ଦ୍ରୋଣ, କର୍ଣ୍ଣ ଓ ଦୁର୍ଯ୍ୟୋଧନ । ସେମାନେ ନିଜ ବିକ୍ରମରେ ବିଶ୍ୱାସୀ । ରାଜ ପକ୍ଷରେ ଠିଆ ହୋଇ ବୀର ଯୋଦ୍ଧାର ଅହଙ୍କାର ତାଙ୍କ ପାଇଁ ଶୋଭନୀୟ । ନ୍ୟାୟ ଅନ୍ୟାୟ ଆଦି ଦୋଷାରୋପକୁ ଭ୍ରୂକ୍ଷେପ ନାହିଁ, ଯୁଦ୍ଧର ପରିଣାମକୁ ମଧ୍ୟ ଭ୍ରୂକ୍ଷେପ ନାହିଁ । ବଚନ ରକ୍ଷା କରିବାକୁ ତା' ଭିତରୁ କିଏ ହୁଏତ ଚର୍ମାବରଣ ଚିରି ବର୍ମ ଦାନ କରି ଦେଇପାରେ, ଆଉ କିଏ ଛଳବାକ୍ୟରେ ଜାଣିଶୁଣି ଅମୋଘ ଅସ୍ତ୍ର ତ୍ୟାଗ କରି ଦେଇପାରେ । କୁରୁକୁଳର ଆଦର୍ଶ ଓ ମର୍ଯ୍ୟାଦା କୁଳଗୁରୁ ପାଖରେ କାକୁଲ୍ୟମାନ । ବ୍ୟକ୍ତିକୁ ନେଇ କୁଳ ଗୌରବିତ ।

ମହାଯୁଦ୍ଧରେ କୁରୁପକ୍ଷ ନିହତ, ଯେପରି ଧର୍ମ ପକ୍ଷ ମଧ୍ୟ ନିହତ; କିନ୍ତୁ କେହି ପରାସ୍ତ ନୁହନ୍ତି । ସ୍କନ୍ଧାରୋହୀମାନେ କିଛିକାଳ ନିରର୍ଥକ ଉଚ୍ଚତାରେ ବିଜୟଶ୍ରୀ ଭୋଗ କଲା ପରି ଦେଖାଯାଉଛନ୍ତି; କିନ୍ତୁ ସେମାନେ ମଧ୍ୟ ସେ ଜ୍ୱଳମାନ ଅଗ୍ନିରେ ପତଙ୍ଗ ପରି ଦଗ୍ଧପକ୍ଷ; ଜୀବନ୍ତ ନିଶ୍ଚୟ; କିନ୍ତୁ ହୀନବୀର୍ଯ୍ୟ ।

କୁଳମର୍ଯ୍ୟାଦା ଓ ପରମ୍ପରାର ଗୌରବରେ ମର୍ଯ୍ୟାଦାବନ୍ତ ହେବା ବ୍ୟକ୍ତି ପାଇଁ ଶ୍ଳାଘ୍ୟ ମନେହେଲେ ସୁଦ୍ଧା ତା'ର ବିଭୂତି ପ୍ରତିଷ୍ଠା ପାଇଁ ଏକମାତ୍ର ପନ୍ଥା ନୁହେଁ । ପ୍ରାଚୀନ ପଥକୁ ଲଙ୍ଘନ ନ କଲେ, ଅମଡ଼ା ନ ମାଡ଼ିଲେ ବ୍ୟକ୍ତି ସ୍ୱାଧୀନତା ଓ ମୌଳିକ ପ୍ରତିଭାର ପ୍ରତିଷ୍ଠା ହୋଇପାରିବ ନାହିଁ । ଗାଲିଲିଓ ଓ ନିଉଟନ୍‌ଙ୍କୁ ସ୍ୱୀକାର ନ କଲେ, ତାଙ୍କ କାନ୍ଧ ଉପରେ ଆରୋହଣ ନ କଲେ ଓ ସେହି ପରିମାଣରେ ତାଙ୍କୁ ଅତିକ୍ରମ ନ କଲେ ଆଇନ୍‌ଷ୍ଟାଇନ୍ ନୂତନ ତାରାମଣ୍ଡଳ ଉନ୍ମୋଚନ କରିପାରିବେ ନାହିଁ । ଅତୀତ ସହାୟକ । ତାହା ଏକ ଆରୋହଣର ପରମ୍ପରା । ନାବାଳକ ପାଇଁ ସ୍କନ୍ଧାରୋହଣ ଅନିବାର୍ଯ୍ୟ; କିନ୍ତୁ ସାବାଳକ ପାଇଁ ନୁହେଁ ।



# ଉତ୍କଳୀୟମାନଙ୍କ ଚାରିତ୍ରିକ ବୈଶିଷ୍ଟ୍ୟ

ଅଧ୍ୟାପକ ଧ୍ରୁବାନନ୍ଦ ରାୟ

*ସାମ୍ପ୍ରତିକ ଓଡ଼ିଶାର ଶିକ୍ଷା, ସଂସ୍କୃତି କ୍ଷେତ୍ରରେ ଆଲୋଡ଼ନ ସୃଷ୍ଟିକାରୀ ବାଗ୍ମୀମାନଙ୍କ ମଧ୍ୟରେ ଭଞ୍ଜ ସାହିତ୍ୟ ପ୍ରବକ୍ତା ଦାର୍ଶନିକ ଅଧ୍ୟାପକ ଧ୍ରୁବାନନ୍ଦ ରାୟ ଏକ ଅନତିକ୍ରମ ବ୍ୟକ୍ତିତ୍ୱ। ଏବେ ମଧ୍ୟ ଅଶୀ ଦଶକର ଶେଷ ପ୍ରାନ୍ତରେ ଥିବା ଏହି ପ୍ରଚଣ୍ଡ ପ୍ରଜ୍ଞାପୁରୁଷଙ୍କର ସର୍ବଦା କର୍ମବ୍ୟସ୍ତତା ଓ ବନ୍ଧୁବତ୍ସଳତା ଲକ୍ଷ୍ୟ କଲେ ଓଡ଼ିଆ ଜାତି ମଧ୍ୟରେ ଉଚ୍ଚ ସଂସ୍କୃତିବୋଧ ପୂର୍ବପରି ଅତୁଟ ରହିଛି ବୋଲି ଯେ କେହି ସଂସ୍କୃତି ସଚେତନ ବ୍ୟକ୍ତି ସ୍ପଷ୍ଟ ଅନୁଭବ କରେ। 'ମୋ ଓଡ଼ିଶା - ୨୦୦୮' ସାରସ୍ୱତ ସଂକଳନରେ ତାଙ୍କ ପ୍ରବନ୍ଧ ପ୍ରକାଶିତ "କୁଳବୃଦ୍ଧ ମଧୁସୂଦନଙ୍କ ଜୀବନର ଏକ ଚାରିତ୍ରିକ ବିଶ୍ଳେଷଣ' ପାଠକ ମହଲରେ ଆଲୋଡ଼ନ ସୃଷ୍ଟି କରିଥିଲା। ଏଥର ଆମ ଅନୁରୋଧରେ ସେ ଦେଇଛନ୍ତି "ଉତ୍କଳୀୟମାନଙ୍କର ଚାରିତ୍ରିକ ବୈଶିଷ୍ଟ୍ୟ' ଆପଣମାନଙ୍କ ପାଇଁ.....*

ଭାରତୀୟମାନଙ୍କର ଚାରିତ୍ରିକ ବୈଶିଷ୍ଟ୍ୟ ରହିଛି। ଉତ୍କଳୀୟମାନେ ସେହି ସର୍ବଭାରତୀୟ ଚାରିତ୍ରିକତାର ଅଂଶୀଦାର ହୋଇଥିଲେ ହେଁ ନିଜର ସ୍ୱାତନ୍ତ୍ର୍ୟଲକ୍ଷଣିକ ଚାରିତ୍ରିକ ବିଶିଷ୍ଟତାର ଅଧିକାରୀ ହୋଇଛନ୍ତି ବୋଲି ଐତିହାସିକମାନେ ଲକ୍ଷ୍ୟ କରିଛନ୍ତି। ଉତ୍ତର ଭାରତ ଓ ଦକ୍ଷିଣ ଭାରତର ସଂଯୋଜକ ସେତୁ ରୂପେ ଓଡ଼ିଶାର ଭୌଗୋଳିକ ଅବସ୍ଥିତି ଏହାକୁ ଭାରତୀୟ ଉଭୟ ସଂସ୍କୃତିର ପୂର୍ଣ୍ଣାଙ୍ଗ ସମନ୍ୱୟର ସୁଯୋଗ ଦେଇଛି। ତେଣୁ ଓଡ଼ିଶାକୁ ଏକ ସମନ୍ୱୟାତ୍ମକ କ୍ଷେତ୍ର ବୋଲି ଗ୍ରହଣ କରାଯାଇଥାଏ। ଭୋଜନରେ, ବେଶପୋଷାକରେ, ଚାଲିଚଳନ, ବ୍ରତ ଉପବାସାଦିରେ, ସାଂସ୍କୃତିକ ଅଭିବ୍ୟକ୍ତିରେ ଉତ୍ତର ଭାରତ ଓ ଦକ୍ଷିଣ ଭାରତର ସମନ୍ୱୟ ଘଟିଛି ଏହି ଓଡ଼ିଶାରେ। କଳା, ଶିଳ୍ପ, ନୃତ୍ୟ, ସଙ୍ଗୀତ, ସାହିତ୍ୟ ସର୍ବକ୍ଷେତ୍ରରେ ଏହି ସମନ୍ୱୟଧର୍ମୀ ଲକ୍ଷଣ ଓଡ଼ିଶାରେ ପରିସ୍ଫୁଟ ହୋଇଛି। 'ଓଡ଼ିଶା' ଶବ୍ଦର ଅର୍ଥ ହେଉଛି କୃଷିଭୂମି। ଓଡ଼ିଶାକୁ ସୁଜଳା, ସୁଫଳା ବୋଲି କବିମାନେ ଗାନ କରିଛନ୍ତି। ଓଡ଼ିଆମାନଙ୍କୁ ମୌଳିକ ଅର୍ଥରେ କୃଷକ ବୋଲି ଅଭିହିତ କରାଯାଇପାରେ। ତେଣୁ ଓଡ଼ିଶାର ସଂସ୍କୃତି ହେଉଛି ମୁଖ୍ୟତଃ କୃଷିଭିତ୍ତିକ ସଂସ୍କୃତି। କୃଷିକର୍ମ କରି ପ୍ରାଣୀମାନଙ୍କୁ ଅନ୍ନ ଯୋଗାଉଥିବା ଲୋକମାନେ ସର୍ବତ୍ର ଧୈର୍ଯ୍ୟଶୀଳ ଓ ସହନଶୀଳ ହୋଇଥିବା ଦେଖାଯାଏ। କୃଷିକର୍ମ ଲାଗି ଧୈର୍ଯ୍ୟ ଓ ସହନଶୀଳତାର ଆବଶ୍ୟକତା ରହିଛି। ଜୀବନ ନିର୍ବାହ ପାଇଁ ମନୁଷ୍ୟର ପ୍ରଥମ କର୍ମ ଥିଲା କୃଷି ଓ ଶିକାର। ଯାଯାବରମାନେ ଶିକାର କରୁଥିଲେ। ଏଣେତେଣେ ଯାଇ ଆହାର ସଂଗ୍ରହ କରୁଥିଲେ। ଶିକାର ଓ ଆତ୍ମରକ୍ଷା ଲାଗି ଅସ୍ତ୍ରଶସ୍ତ୍ର ବ୍ୟବହାର କରୁଥିଲେ। ପଶୁପକ୍ଷୀମାନଙ୍କ

ରକ୍ତପାତ ନ କରି ଏମାନେ ନିଜର ଭୋଜନ ଆୟୋଜନ କରିପାରୁ ନ ଥିଲେ। ଏକ ଅଞ୍ଚଳରୁ ଅନ୍ୟ ଅଞ୍ଚଳକୁ ଯିବା ପାଇଁ ଏମାନଙ୍କର ପ୍ରୟୋଜନ ହେଉଥିଲା। ଏ ହେଲା ଶିକାରୀମାନଙ୍କ ଜୀବନ; କିନ୍ତୁ କୃଷିଜୀବୀମାନେ ଏକ ସ୍ଥାନରେ ରହିବାକୁ ବାଧ୍ୟ ହେଉଥିଲେ। ଏମାନଙ୍କ ସଂସ୍କୃତିରେ ଏକ ସ୍ଥାନରେ ବସତି ସ୍ଥାପନ କରି ଆଞ୍ଚଳିକ ପ୍ରକୃତି ସହିତ ମିଶି ଚଳିବା ପ୍ରବୃତ୍ତି ବିକଶିତ ହୋଇଥିଲା। 'ମୋ ଗାଁ', 'ମୋ ଭୂଇଁ' ଭାବନା କୃଷି ସଭ୍ୟତାରେ ଯେତେ ବିକଶିତ ହୋଇଥାଏ, ଯାଯାବର ଶିକାରୀ ସଂସ୍କୃତିରେ ତାହା ଘଟେନାହିଁ। ଉଭୟ ସଂସ୍କୃତି ପ୍ରାଣପୋଷକ ବୃତ୍ତି ଓ ପ୍ରବୃତ୍ତିରୁ ଜନ୍ମିଥାଏ। କେଉଁ ମାନବଗୋଷ୍ଠୀ, କେଉଁ ପରିସ୍ଥିତିରେ ଏଥିରୁ ଗୋଟିକୁ ଆଦରି ଯାଇଛି, ତାହା ଭୌଗୋଳିକ ଓ ଐତିହାସିକ କାରଣ ଦ୍ୱାରା ନିର୍ଣ୍ଣୀତ ହୋଇଥାଏ। ଯେଉଁ ଭୂମି ସୁଜଳା, ସୁଫଳା ଓ ଶସ୍ୟଶ୍ୟାମଳା, ତାହାର ଅଧିବାସୀମାନେ ଶିକାରୀ ହେବା ପରିବର୍ତ୍ତେ କୃଷକ ହେବା ପାଇଁ ମନ ବଳାଇବା ସ୍ୱାଭାବିକ। କୃଷକମାନେ ଭୂମି ସଂଲଗ୍ନ ହୋଇ ରହନ୍ତି ଓ ଭୂମିପୁତ୍ର ଭାବରେ ନିଜକୁ ପରିଚୟ ଦେବାପାଇଁ ଗୌରବ ଅନୁଭବ କରନ୍ତି। ସୌଭାଗ୍ୟର କଥା ଯେ ଓଡ଼ିଶାର ପ୍ରାକୃତିକ ପରିସ୍ଥିତି କୃଷି ପାଇଁ ଅନୁକୂଳ ହୋଇଥିବାରୁ ଓଡ଼ିଆମାନେ ନିଜକୁ ଭୂମିସଂଲଗ୍ନ କରି ରଖି ଭୂମିପୁତ୍ର ବୋଲି ବିଚାର କରିଆସିଛନ୍ତି।

ପୂର୍ବଘାଟ ପର୍ବତମାଳାରୁ ପ୍ରବାହିତା ନଦୀମାନଙ୍କ ପଟୁ ପତନରେ ଓଡ଼ିଶା ଭୂଇଁ ନିର୍ମିତ ହୋଇଛି। କବି କଳ୍ପନାରେ କୁହାଯାଇଛି, ସମୁଦ୍ରଗାମିନୀ, ସମୁଦ୍ର ପ୍ରିୟା ନଦୀମାନଙ୍କ ବିହାର ଭୂମି ପାଇଁ ସମୁଦ୍ର ଯେଉଁ ବିଶାଳ ଭୂଖଣ୍ଡ ଛାଡ଼ିଛି, ତାହା ହେଉଛି ଓଡ଼ିଶା। ଋଷିକୂଲ୍ୟା, ମହାନଦୀ, ବୈତରଣୀ ଓ ସୁବର୍ଣ୍ଣରେଖା ନଦୀଙ୍କ ଉପନଦୀ ଓ ଶାଖାନଦୀସବୁ ଓଡ଼ିଶା ଭୂମିକୁ ଉର୍ବର ଓ ଶସ୍ୟଶାଳିନୀ କରିବାକୁ ସହଯୋଗ କରିଛନ୍ତି। କବି କଳ୍ପନାରେ ଏହି ନଦୀସବୁ ହେଉଛନ୍ତି ଭଉଣୀ ଓ ସମସ୍ତେ ସମୁଦ୍ରବଲ୍ଲଭା। ନିର୍ମଳ ଜଳଦାୟିନୀ, ଚିରସ୍ରୋତସ୍ୱିନୀ ଏହି ନଦୀମାନେ ଓଡ଼ିଶାକୁ ଏକ ନଦୀମାତୃକା ଦେଶ ଭାବରେ ପରିଚୟ ଦେବା ପାଇଁ ସୁଯୋଗ ସୃଷ୍ଟି କରିଛନ୍ତି। କେବଳ କୃଷି ନୁହେଁ, ବାଣିଜ୍ୟ ଓ ଗମନାଗମନ ପାଇଁ ପ୍ରାଚୀନ କାଳରେ ଏହି ନଦୀ ପଥମାନ ପ୍ରଶସ୍ତ ଥିଲା। ଓଡ଼ିଶାର ବିଭିନ୍ନ ଅଞ୍ଚଳର ସମନ୍ୱୟ ସାଧନ ପାଇଁ ଏହି ନଦୀପଥସବୁ ସହାୟକ ହୋଇଥିଲେ। ବୈବାହିକ ସମ୍ପର୍କ ସ୍ଥାପନ କରିବା ପାଇଁ ନଦୀପଥ ଅନୁକୂଳ ହୋଇଥିଲା। ପ୍ରତି ନଦୀ ମୁହାଣରେ ପୋତାଶ୍ରୟମାନ ନିର୍ମିତ ହୋଇ ଓଡ଼ିଶାର ବହିର୍ବାଣିଜ୍ୟ କର୍ମକୁ ସୁଗମ କରିଦେଇଥିଲା। ସେଥିପାଇଁ ଓଡ଼ିଶା ଭୂମିକୁ "ପୋତପୂତ ବେଳା" ବୋଲି କବି ସମ୍ବୋଧନ କରିଅଛନ୍ତି। ଏବେ ପରିସ୍ଥିତି ଅଭାବନୀୟ ଭାବରେ ବଦଳି ଚାଲିଛି। ଯାହା ଥିଲା, ତାହା ନ ଥିବା ଅବସ୍ଥା ସୃଷ୍ଟି ହୋଇଛି। ନଦୀମାନେ ବାଲିରେ ପୋତି ହୋଇପଡୁଛନ୍ତି ଓ ବନଗହନର ଉଚ୍ଛେଦ ହେବା ଫଳରେ ନଦୀମାନେ କ୍ଷୀଣସ୍ରୋତା ହୋଇଆସୁଛନ୍ତି। ବନ୍ୟାର ଦାଉ ବଢ଼ି ଚାଲିଛି ଓ ନଦୀ ମୁହାଣର ପୋତାଶ୍ରୟମାନେ ନିଜର ପ୍ରାଧାନ୍ୟ ହରାଇ ବସିଛନ୍ତି। ଆଧୁନିକ ଯାନବାହନ ଓ ଯାତାୟାତର ସୁବିଧା ସୁଯୋଗ ନଦୀ ପଥମାନଙ୍କୁ ଅପେକ୍ଷା ରଖୁନାହିଁ। ଏହିସବୁ ପରିବର୍ତ୍ତନ ଓଡ଼ିଆମାନଙ୍କ ସାଂସ୍କୃତିକ ପ୍ରବୃତ୍ତିରେ ଯେ ପରିବର୍ତ୍ତନ ଆଣିଛି, ଏହା ନିଃସନ୍ଦେହ। କିନ୍ତୁ ବହୁ ଯୁଗ ଧରି ଗଠିତ ଓଡ଼ିଆ ସଂସ୍କୃତି ଓଡ଼ିଆମାନଙ୍କ ଚରିତ୍ରଗତ ହୋଇଯାଇଛି।

ଓଡ଼ିଆମାନେ ସମୁଦ୍ରରେ ପୋତ ମେଲି ବହିର୍ବାଣିଜ୍ୟ କରି ନିଜ ଘରକୁ ଫେରିଆସୁଥିଲେ । ଓଡ଼ିଶା ମାଟି ଥିଲା ସେମାନଙ୍କ ପାଇଁ ସବୁମନ୍ତେ କାମ୍ୟ । ଉପନିବେଶ ସ୍ଥାପନ କରି ବିଦେଶରେ ରହିଯିବା ତାଙ୍କ ଚରିତ୍ରର ପ୍ରମୁଖ ଲକ୍ଷଣ ନ ଥିଲା । ଉପନିବେଶ ସ୍ଥାପନ କରି ଯେଉଁଠି ସେମାନେ ରହିଯାଉଥିଲେ, ସେହି ସେହି ସ୍ଥାନକୁ ଉତ୍କଳୀୟ ନାମରେ ନାମିତ କରିଦେଉଥିଲେ । ବିଦେଶରେ ରହିଯାଇଥିଲେ ହେଁ ସେମାନଙ୍କ ଦୃଷ୍ଟି ଥିଲା ତାଙ୍କ ପ୍ରିୟ ଜନ୍ମଭୂମି ଓଡ଼ିଶା ପ୍ରତି । ବିଦେଶ ଯାତ୍ରା କରି ଉପାର୍ଜ୍ଜନ କରିବା ମନ୍ଦ ନୁହେଁ, ଉତ୍ତମ ; କିନ୍ତୁ ସେଠାରେ ରହିଯିବା ପ୍ରବୃତ୍ତି ମଣିଷକୁ ଘରଛଡ଼ା କରିଦିଏ । ଆଧୁନିକ ଓଡ଼ିଆମାନଙ୍କ ମଧ୍ୟରେ ଏହି ଦୁଷ୍ପ୍ରବୃତ୍ତି ବଢ଼ିବାରେ ଲାଗିଛି । ପ୍ରତି ସାମାଜିକ କ୍ଷେତ୍ରରେ ତଥା ପାରିବାରିକ ଜୀବନରେ ଏହି ଦୁଷ୍ପ୍ରବୃତ୍ତିର କରାଳ ଓ କଳଙ୍କମୟ ଛାୟା ଅନୁଭୂତ ହେଲାଣି । ଏହି ମନୋବୃତ୍ତିରୁ ମାତୃଭୂମି ସହିତ ମାତୃଭାଷା ପ୍ରୀତି କ୍ରମଶଃ ହ୍ରାସ ପାଉଛି ବୋଲି ମୁକ୍ତକଣ୍ଠ ଅଭିଯୋଗ ଶୁଣାଯାଉଛି । କବି ଅନେକଦିନରୁ କହିଲେଣି, "ମାତୃଭୂମି ଓ ମାତୃଭାଷା ପ୍ରତି ଯାହାର ପ୍ରୀତି ଜାତ ହୋଇନାହିଁ, ସେ ମଣିଷ ହେବାକୁ ଆହୁରି ବିଳମ୍ବ ଅଛି ।" ଆଜି ସଂସ୍କୃତି ବଦଳି ବଦଳି ଯାଉଛି । କହିହେବ ନାହିଁ କେଉଁଆଡ଼କୁ ।

ଓଡ଼ିଆମାନଙ୍କ ସ୍ଥାୟୀ ସାଂସ୍କୃତିକ ପ୍ରବୃତ୍ତି ହେଉଛି କୃଷିପ୍ରଧାନ ସଂସ୍କୃତିର ପ୍ରବୃତ୍ତି । ସେମାନେ ଶାନ୍ତିପ୍ରିୟ; କିନ୍ତୁ ରଣପରାଙ୍ମୁଖ ନୁହନ୍ତି । ଐତିହାସିକ ମାନେ ନିର୍ଣ୍ଣୟ କରିଛନ୍ତି ଯେ ଓଡ଼ିଆମାନେ ଶାନ୍ତି ସମୟରେ କୃଷିକର୍ମରେ ମନୋଯୋଗ କରିଥିଲାବେଳେ ରଣ ସମୟରେ ରଣପ୍ରିୟ ଜାତି ଭାବରେ ନିଜର ପରିଚୟ ଦେଇଥା'ନ୍ତି । ଶାନ୍ତି ଓ ରଣ ଉଭୟ ସମୟରେ ସେମାନେ ନିଜକୁ ଦକ୍ଷ ବୋଲି ପ୍ରମାଣିତ କରିଛନ୍ତି । ସମରକୁଶଳୀ ହେଲେହେଁ ଓଡ଼ିଆମାନେ ଯୁଦ୍ଧଖୋର ଜାତି ନୁହନ୍ତି । ପରରାଜ୍ୟ ଆକ୍ରମଣ କରିବାର ପ୍ରବୃତ୍ତି ଏମାନଙ୍କର ନ ଥାଏ । ନିଜ ମାଟିର ପ୍ରାଚୁର୍ଯ୍ୟରେ ବୁଡ଼ି ରହିବାକୁ ସେମାନେ ଅଧିକ ପସନ୍ଦ କରିଥା'ନ୍ତି । ଖାରବେଳ, କପିଳେନ୍ଦ୍ର ଦେବ, ପୁରୁଷୋତ୍ତମ ଦେବଙ୍କ ସମୟରେ ଓଡ଼ିଆ ଜାତି ତାହାର ଯୁଦ୍ଧ ପାରଙ୍ଗମତାର ଦୃଷ୍ଟାନ୍ତ ଉପସ୍ଥାପନ କରିଛି । ଓଡ଼ିଆମାନେ ଗ୍ରୀକ୍ ବାହିନୀକୁ ମୁକାବିଲା କରିଛନ୍ତି । ତାହା ତାଙ୍କୁ ଆନ୍ତର୍ଜାତିକ କ୍ଷେତ୍ରରେ ଖ୍ୟାତି ପ୍ରଦାନ କରିଛି ।

ଓଡ଼ିଆମାନେ ସ୍ୱଭାବତଃ ଭଦ୍ର, ନମ୍ର ଓ ଧର୍ମପରାୟଣ । ଏମାନେ ଭଗବତ୍ ବିଶ୍ୱାସୀ ହୋଇଥିବାରୁ ଔଦ୍ଧତ୍ୟକୁ ଦୁର୍ଗୁଣ ବୋଲି ବିବେଚନା କରିଥା'ନ୍ତି । ଭଗବାନଙ୍କ ଲାଗି ଓଡ଼ିଆମାନେ ଯେତେ ମନ୍ଦିର ନିର୍ମାଣ କରିଛନ୍ତି, ତାହା ଓଡ଼ିଶାକୁ ମନ୍ଦିରମାଳିନୀ ଦେଶରେ ପରିଣତ କରିଦେଇଛି । ଏ ଭୂମିରେ ପାରସ୍ପରିକ ସହନଶୀଳତା ଏକ ସାଧାରଣ ଗୁଣ ଭାବରେ ରହିଥିବାରୁ ସର୍ବ ଦେବାଦେବୀଙ୍କର ଏକତ୍ର ଉପାସନା ଲାଗି ଏଠାରେ କ୍ଷେତ୍ର ପ୍ରସ୍ତୁତ ହୋଇଅଛି । ପଞ୍ଚଦେବତା ଉପାସନା ଓଡ଼ିଶାରେ ପ୍ରାଧାନ୍ୟ ବିସ୍ତାର କରି ରହିଛି । ଏକ ଆସନରେ ବିଷ୍ଣୁ, ଶିବ, ଦୁର୍ଗା, ଗଣପତି, ସୂର୍ଯ୍ୟଙ୍କ ଉପାସନା କରାଯାଉଛି । ଏକ ବିଗ୍ରହରେ ମଧ୍ୟ ଏହି ପୂଜା ପ୍ରଚଳିତ ହୋଇଛି । ଓଡ଼ିଶା ପାଇଁ ଏହା ବିଶେଷ ଗୌରବର ବିଷୟ । ବୌଦ୍ଧ, ଜୈନଧର୍ମର ପୀଠଗୁଡ଼ିକ ଓଡ଼ିଶାରେ ମର୍ଯ୍ୟାଦା ଲାଭ କରିଛନ୍ତି ।

ଅତିଥିପରାୟଣତା ହେଉଛି ଓଡ଼ିଆମାନଙ୍କର ଆଉ ଗୋଟିଏ ସଦ୍‌ଗୁଣ, ଯାହା ପର୍ଯ୍ୟଟକମାନଙ୍କ ଦ୍ୱାରା ସ୍ୱୀକୃତ ହୋଇଛି। କୌଣସି ନବାଗତଙ୍କ ପ୍ରତି କଠୋର ନ ହୋଇ ଆତିଥେୟତା ସୁଲଭ କୋମଳତା ପ୍ରକାଶ କରିବା ଏମାନଙ୍କର ପ୍ରକୃତିଗତ ଅଭ୍ୟାସ। 'ଅନ୍ୟ'କୁ 'ପର' ବୋଲି ବିଚାର ନ କରିବା ପ୍ରବୃତ୍ତି ଓଡ଼ିଆମାନଙ୍କ ନିଜସ୍ୱ ପ୍ରକୃତି। ଏଠାରେ ସର୍ବମୟ ପ୍ରଭୁଙ୍କୁ 'ବନ୍ଧୁ' ବୋଲି ସମ୍ବୋଧନ କରାଯାଏ। ଆମେ ତାଙ୍କର ଦାସ ନୋହୁ। ଆମେ ତାଙ୍କର ବନ୍ଧୁ। ସେ ଆମର ଅନିବନ୍ଧନବାନ୍ଧବ। ବିଶ୍ୱାତ୍ମାଙ୍କ ସହିତ ବନ୍ଧୁତା, ସର୍ବବିଶ୍ୱପ୍ରୀତି ସଂପ୍ରସାରିତ ହୋଇଯାଇଛି ଓଡ଼ିଆ ସଂସ୍କୃତିରେ। କେବଳ ଅତିଥିବତ୍ସଳତା ନୁହେଁ, ଆହରଣଶୀଳତା, ଅର୍ଥାତ୍ ନବାଗତ ସଦ୍‌ଗୁଣକୁ ଆହରଣ କରିବା ପ୍ରବଣତା ଓଡ଼ିଆ କୃଷ୍ଟିକୁ ଗତିଶୀଳ କରି ରଖିଛି। ଉତ୍ତର ଭାରତୀୟ ଓ ଦକ୍ଷିଣ ଭାରତୀୟ ସଂସ୍କୃତିର ସମନ୍ୱୟ ସାଧିତ ହୋଇଛି ସେହି ଆହରଣଶୀଳତା ଓ ସମନ୍ୱୟୀକରଣ ଦକ୍ଷତାରୁ। ହିନ୍ଦୁ, ବୌଦ୍ଧ, ଜୈନ ଧର୍ମାଚାରର ସମନ୍ୱୟ ଘଟିଛି ଓଡ଼ିଶାରେ। ହିନ୍ଦୁ, ଇସ୍‌ଲାମ୍, ଖ୍ରୀଷ୍ଟିଆନ୍ ଆଚାରର ଯେଉଁ ଅଦ୍ଭୁତ ସମନ୍ୱୟ, ତାହା ଓଡ଼ିଶାରେ ସମ୍ଭବ ହୋଇଛି। ଏହି ସମନ୍ୱୟାତ୍ମକ ସହାବସ୍ଥାନ ଓଡ଼ିଆ ସଂସ୍କୃତିକୁ ନିଜସ୍ୱ ଗୌରବ ଦେଇଛି। ସଂସ୍କୃତିବିତ୍ ଐତିହାସିକମାନଙ୍କ ସୂକ୍ଷ୍ମଦୃଷ୍ଟିକୁ ଏହା ଏଡ଼ାଇ ଯାଇନାହିଁ। ତାକିଆ ସହିତ ଯୋଗଦେବା, ଖ୍ରୀଷ୍ଟମାସ ପାଳନ କରିବା ପରି ଅନେକ ଦୃଷ୍ଟାନ୍ତ ଖୋଜିଲେ ମିଳିବ। ଆଲ୍ଲାଙ୍କୁ ସର୍ବବ୍ୟାପକ ପରମେଶ୍ୱର ଏବଂ ଯୀଶୁଙ୍କୁ ଭଗବାନଙ୍କର ଜ୍ୟେଷ୍ଠପୁତ୍ର ବୋଲି ଗ୍ରହଣ କରିବା ଓଡ଼ିଶା ସଂସ୍କୃତିରେ ସମ୍ଭବ ହୋଇଛି। ଏହି ଦିଗରେ ସର୍ବଭାରତୀୟ ସଂସ୍କୃତିର ଅନୁମୋଦନ ରହିଛି। ଓଡ଼ିଶାକୁ ଆସିଥିବା କୌଣସି ନୂତନ ଧର୍ମଧାରଣାକୁ ଓଡ଼ିଆମାନେ ଯେତେ ଶୀଘ୍ର ସମ୍ଭବ ନିଜର ବୋଲି ଆପଣେଇ ନେବା ଦୃଷ୍ଟାନ୍ତ ରହିଛି। ଦେବତା ହୁଅନ୍ତୁ, ଗୁରୁ ହୁଅନ୍ତୁ ଅବତାର ହୁଅନ୍ତୁ— ମିଳିଲା ମାତ୍ରକେ ନିଜର ବୋଲି ଓଡ଼ିଆ ସଂସ୍କୃତି ଆପଣେଇ ନିଏ। ଅନେକରେ ଏକ ଦର୍ଶନ ଓ ଏକରେ ଅନେକ ଦର୍ଶନ କରିବାର ଦିବ୍ୟଦୃଷ୍ଟି ହେଉଛି ଓଡ଼ିଆ ସଂସ୍କୃତିକୁ ଭଗବାନଙ୍କର ସ୍ୱତନ୍ତ୍ର ଦାନ। ଓଡ଼ିଶାରେ ସତ୍ୟ ନାରାୟଣ ପାଲାର ଘରେ ଘରେ ପ୍ରଚଳନ 'ପୀରେର କାଲାମ'କୁ ଯେଉଁ ସୁଖଦ ଭାବରେ କବି କର୍ଣ୍ଣପୂରଙ୍କ ଭାଷାରେ ଓଡ଼ିଆ ଜାତି ଗ୍ରହଣ କରିଛି, ତାହା ଯଥାର୍ଥରେ ଏକ ମହନୀୟତାର ସଙ୍କେତ ଦିଏ।

ଓଡ଼ିଶାର ସାଂସ୍କୃତିକ ଇତିହାସ ଲେଖାହେବା ଲାଗି ପ୍ରୟାସ ଜାରି ରହିଛି। ଓଡ଼ିଆମାନେ ଯେତେବେଳେ ସେହି ଇତିହାସକୁ ଅନୁଶୀଳନ କରି ନିଜର ନିଜତ୍ୱ ଓ ସ୍ଥାୟୀଭାବ ସହିତ ପରିଚିତ ହେବେ, ଜାତିରେ ପୁଣି ନବଶକ୍ତି ସଞ୍ଚାର ହେବ। ଅବକ୍ଷୟ ଅଭିମୁଖୀ ଅବିଚାରିତ ପ୍ରବେଗରୁ ରକ୍ଷା ମିଳିବ।



# ଓଡ଼ିଆ ଜାତିର ଶକ୍ତି ଏବଂ ଦୁର୍ବଳତା

ଶ୍ରୀ ସାତକଡ଼ି ହୋତା

*ଜଣେ ମୌଳିକ ସାହିତ୍ୟ-ସ୍ରଷ୍ଟା ଭାବେ ଶ୍ରୀ ସାତକଡ଼ି ହୋତା ସାହିତ୍ୟିକ ଗୋଷ୍ଠୀର ଆଗ ଧାଡ଼ି ଆସନର ଅଧିକାରୀ । ତାଙ୍କର ପ୍ରତ୍ୟେକ ସୃଷ୍ଟିରେ ସ୍ୱତନ୍ତ୍ର ଦିଗ୍‌ଦର୍ଶନ ରହିଛି । ନିରବଚ୍ଛିନ୍ନ ଲେଖନୀ ଚାଳନା କରି କତିପୟ ସାରସ୍ୱତ ସାଧକ ଓଡ଼ିଆ ସାହିତ୍ୟକୁ ଯେପରି ଋଦ୍ଧିମନ୍ତ କରିଛନ୍ତି, ସେଥିରେ ଶ୍ରୀ ହୋତାଙ୍କ ଅବଦାନକୁ ଅସ୍ୱୀକାର କରାଯାଇପାରିବ ନାହିଁ । 'ମୋ ଓଡ଼ିଶା - ୨୦୦୮' ସାରସ୍ୱତ ସଂକଳନ ପାଇଁ ତାଙ୍କ ପ୍ରଦତ୍ତ 'ଇତିହାସ ଆଗିରେ' ଲେଖାଟି ପାଠକମାନଙ୍କ ଦ୍ୱାରା ବେଶ୍ ଆଦୃତି ଲାଭ କରିଥିଲା । ଏଥର ଆମ ଅନୁରୋଧରେ ତାଙ୍କ ସୃଷ୍ଟି "ଓଡ଼ିଆ ଜାତିର ଶକ୍ତି ଏବଂ ଦୁର୍ବଳତା" ଆପଣମାନଙ୍କ ପାଇଁ ଆମେ ଏଠାରେ ଉପସ୍ଥାପନ କରୁଛୁ....*

ଆମ ମନରେ ଧାରଣା ରହିଆସିଛି ଯେ ଓଡ଼ିଆ ଗୋଟିଏ ବୀର ଜାତି । ପ୍ରାଚୀନ ଓଡ଼ିଶାର ନୌଶକ୍ତି ଦକ୍ଷିଣ-ପୂର୍ବ ଏସିଆ ଓ ପୂର୍ବ-ଏସିଆରେ ଦିନେ ଅଖଣ୍ଡ ପ୍ରଭାବ ପକାଇଥିଲା । ଓଡ଼ିଶାର ସାଧବ ପୁଅମାନଙ୍କ କୀର୍ତ୍ତି ସାହିତ୍ୟର ବିଷୟବସ୍ତୁ । ଗଙ୍ଗାରୁ ଗୋଦାବରୀ ପର୍ଯ୍ୟନ୍ତ ଏବଂ କେତେକ ସମୟରେ ଆହୁରି ଦକ୍ଷିଣ ଓ ଉତ୍ତରକୁ କଳିଙ୍ଗ ସାମ୍ରାଜ୍ୟର ସୀମା ଥିଲା । ମହାଭାରତ ଯୁଦ୍ଧରେ ଓଡ଼ିଶାର ବୀର ସୈନିକମାନେ ଅପୂର୍ବ ବୀରତ୍ୱ ପ୍ରଦର୍ଶନ କରିଥିଲେ । ଶୁକ୍ଳ ଯଜୁର୍ବେଦ ଏବଂ ଅର୍ଥବ ବେଦର ଗୋଟିଏ ଶାଖା ଓଡ଼ିଶା ମାଟିରେ ରଚନା କରାଯାଇଥିଲା । ପରମ କାରୁଣିକ ବୁଦ୍ଧଙ୍କ ପ୍ରଧାନ ଶିଷ୍ୟ ଭଲ୍ଲୁକ ଓ ତପସ୍ୱୀ ଓଡ଼ିଶା ମାଟିର ସନ୍ତାନ । ବଙ୍ଗଳା ଭାଷାର ପ୍ରଥମ ବ୍ୟାକରଣ ରଚନା କରିଥିଲେ ମେଦିନୀପୁରର ଜଣେ ଓଡ଼ିଆ ବିଦ୍ୱାନ୍ ମୃତ୍ୟୁଞ୍ଜୟ ବିଦ୍ୟାଳଙ୍କାର । ଗୋପାଳ ଦାସ ଏବଂ ଆଉ କେତେକ ବଙ୍ଗଳା ଯାତ୍ରାର ଆଦ୍ୟ ସ୍ରଷ୍ଟା ; କିନ୍ତୁ ଏସବୁ ସତ ହେଲେ ବି ଏସବୁର ପ୍ରମାଣ ଉପସ୍ଥାପନ କରିବା ପାଇଁ ଓଡ଼ିଆମାନେ କେବେ ଆଗ୍ରହ ପ୍ରକାଶ କରିନାହାନ୍ତି । ତଥାପି ଓଡ଼ିଶା ମାଟି ଯେ ବନ୍ଧ୍ୟା ନୁହେଁ, ଏହାର ପ୍ରମାଣ ରହିଛି । ସଂସ୍କୃତ ସାହିତ୍ୟକୁ ଓଡ଼ିଶାର ଅବଦାନ ଉଲ୍ଲେଖଯୋଗ୍ୟ । ଜୟଦେବ ତ ଓଡ଼ିଶା ମାଟିର ସନ୍ତାନ ଏବଂ ଶ୍ରୀଚୈତନ୍ୟଙ୍କ ପୂର୍ବପୁରୁଷ ଥିଲେ ଓଡ଼ିଶା ମାଟିର ସନ୍ତାନ । ଆହୁରି ଅନେକ ମଣିମାଣିକ୍ୟ ପୋତି ହୋଇରହିଛି ମାଟି ତଳେ ।

ଐର ମହା ମେଘବାହନ ଖାରବେଳଙ୍କ ପୂର୍ବରୁ କଳିଙ୍ଗମାନେ ସମ୍ରାଟ ଅଶୋକଙ୍କ ସହିତ ଯୁଦ୍ଧ କରିଥିଲେ ଅସୀମ ପରାକ୍ରମ ଓ ବୀରତ୍ୱର ସହିତ । ସେଇ ଯୁଦ୍ଧରେ କଳିଙ୍ଗମାନେ ପରାଜିତ ହୋଇଥିଲେ ;କିନ୍ତୁ ଅଶୋକଙ୍କ ରାଜତ୍ୱର ଦେଢ଼ଶହ ବର୍ଷ ପରେ ଖାରବେଳ ମଗଧ ବିଜୟ କରି ଜୀନଙ୍କୁ ମହାସମାରୋହ ସହିତ ଓଡ଼ିଶାକୁ ଆଣିଥିଲେ । ଖାରବେଳଙ୍କ ପରେ ପ୍ରାୟ ସାଢ଼େ ପନ୍ଦରଶହ ବର୍ଷ ପରେ କପିଳେନ୍ଦ୍ର ଦେବ

ବୀରତ୍ୱ ଦେଖାଇ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ଭୂଭାଗ ନିଜ ଶାସନାଧୀନ କରିଥିଲେ । ଏଇ ଦୁଇ ଜଣ ପ୍ରଥିତଯଶା ସମ୍ରାଟଙ୍କ ମଧ୍ୟବର୍ତ୍ତୀ ସମୟର କୀର୍ତ୍ତି ଓ ଖ୍ୟାତି କେବଳ ଓଡ଼ିଶା ବାସୀଙ୍କର ନୁହେଁ— ଏଥିରେ ଭାଗ ରହିଛି ଗୁପ୍ତ, ଭୌମକର, ସୋମବଂଶୀ ଓ ଗଙ୍ଗବଂଶୀ ଓ ଅନ୍ୟ ରାଜାମାନଙ୍କର । ଏମାନେ ସମସ୍ତେ ଓଡ଼ିଶା ବାହାରୁ ଆସିଥିଲେ; କିନ୍ତୁ ସେମାନଙ୍କ ମଧ୍ୟରୁ ସୋମବଂଶୀ, ଓ ଗଙ୍ଗବଂଶୀ ରାଜାମାନେ କଳିଙ୍ଗ/ ଉତ୍କଳକୁ ନିଜ କର୍ମଭୂମିରେ ପରିଣତ କରିଥିଲେ । ସେମାନଙ୍କର ଅବଦାନ ସ୍ୱୀକାର ନ କରିବାର ଉପାୟ ନାହିଁ ।

କିନ୍ତୁ ମୂଳ ପ୍ରସଙ୍ଗ ହେଉଛି ଯେ ଅତୀତର ଓଡ଼ିଆମାନେ ଇତିହାସର ପୃଷ୍ଠା ମଣ୍ଡନ କରିଥିଲେ ମଧ୍ୟ ପ୍ରତାପରୁଦ୍ରଙ୍କ ପରେ ଓଡ଼ିଶାର ସାମଗ୍ରିକ ବିଲୟ ସତ୍ତ୍ୱେ ଏହି ମାଟିର ମହାକବି ଶାରଳା ଦାସ, ପଞ୍ଚସଖା, ଉପେନ୍ଦ୍ରଭଞ୍ଜ, ଅଭିମନ୍ୟୁ, ଦୀନକୃଷ୍ଣଙ୍କଠାରୁ ଭୀମଭୋଇ ଆଦି ସାରସ୍ୱତ ସାଧକମାନେ ଏବଂ ଆଧୁନିକ ସାହିତ୍ୟ ପର୍ଯ୍ୟନ୍ତ ଭାଷା ସାହିତ୍ୟର ଦୃଶ୍ୟମାନ - କୋଣାର୍କ ଗଢ଼ିଦେଇ ଯାଇଛନ୍ତି । ସ୍ୱାଭିମାନ ଶୂନ୍ୟରୁ ଖସେ ନାହିଁ । ଅତୀତର ଅସ୍ମିତାକୁ ପୁଞ୍ଜିକରି ବର୍ତ୍ତମାନର ସ୍ୱାଭିମାନ ଏବଂ ଗୌରବବୋଧକୁ ସଂଜୀବିତ କରାଯାଇପାରେ । ଉତ୍କୃଷ୍ଟ କଳାର ଦେଶ ଉତ୍କଳ ତ ଏବେ ବି ମୁଖର । ଦୁଇହଜାର ବର୍ଷର ଗାନ୍ଧର୍ବ କଳା ଏବେ ବି ଆମର ଶ୍ରେଷ୍ଠ ସମ୍ପଦ ।

ଏସବୁ ଗର୍ବ, ଗୌରବ ଓ ସ୍ୱାଭିମାନର ଉପାଦାନ ଆମର ଅଛି; କିନ୍ତୁ ଯାହା ନାହିଁ, ତାହା ହେଉଛି ସୁଦୂର ଅତୀତର ଲଢ଼ୁଆ ଶକ୍ତି ଏବଂ ପରବର୍ତ୍ତୀକାଳର ପରାଙ୍ମୁଖତା ଓ ପ୍ରତିକୂଳତାକୁ ଡେଇଁ ଆଗକୁ ଯିବାର ଇଚ୍ଛାଶକ୍ତି, ଉଦ୍ୟୋଗ ଏବଂ ଉଦ୍ୟମଶୀଳତା । ଏଇ କାରଣରୁ ଓଡ଼ିଶା ପଛରେ ପଡ଼ିଛି । ରାଜ୍ୟ ବାହାରେ ଦାଦନ ଖଟୁଛି ଏବଂ ବଞ୍ଚିବାର ସର୍ବନିମ୍ନ ଆବଶ୍ୟକତା ପୂର୍ଣ୍ଣ ହେଉ ନ ଥିବାରୁ ଅଭାବକୁ ନେଇ କାଳ କାଟୁଛି । ଆମର ଅତୀତକୁ ନ ଜାଣିଲେ ବର୍ତ୍ତମାନର ତ୍ରୁଟିସବୁକୁ ସଂଶୋଧନ କରି ହେବନାହିଁ, ଏଥିପାଇଁ ଓଡ଼ିଆ ଜାତିର ଇତିହାସ ଜାଣିବା ଏକାନ୍ତ ଆବଶ୍ୟକ ।

**ଓଡ଼ିଆ ଜାତି, ଓଡ଼ିଆ ଭାଷା ଓ ସଂସ୍କୃତି :**

ଗୋଟିଏ ଜାତିର ପରିଚୟ ସେଇ ଭାଷା ଓ ଲିପିରୁ ମିଳିଥାଏ । ଓଡ଼ିଆ ସାହିତ୍ୟର ଉଦ୍‌ଭବ ଯଦି ଚର୍ଯ୍ୟାପଦଠାରୁ ହୋଇଛି ବୋଲି ଧରି ନିଆଯାଏ, ତେବେ ଏହାର ଅନେକ ପୂର୍ବରୁ ଓଡ଼ିଆ ଭାଷାର ଓ ଲିପିର ଉନ୍ମେଷ ହୋଇଥିବ । ଖାରବେଳଙ୍କୁ ପୂର୍ବତନ ଓଡ଼ିଶାର କୀର୍ତ୍ତିମାନ ସମ୍ରାଟ କୁହାଯାଏ । ସେତେବେଳର ଓଡ଼ିଶା ଭୂଖଣ୍ଡରେ ଖାରବେଳ ରାଜତ୍ୱ କରୁଥିବା, ବେଳେ ଖଣ୍ଡଗିରି ଉଦୟଗିରି (ଭୁବନେଶ୍ୱର) ର ରାଣୀଗୁମ୍ଫା ନିର୍ମାଣ କରାଯାଇଥିଲା । ଉଦୟଗିରିରେ ଥିବା ଜୈନ ମନ୍ଦିରର ଐତିହାସିକତା ମଧ୍ୟ ବିଚାର୍ଯ୍ୟ । ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀରେ ସ୍ୱାଧୀନ କଳିଙ୍ଗରେ ଚେଦି ରାଜବଂଶ ରାଜତ୍ୱ କରୁଥିଲେ । ଶ୍ରୀ ଶ୍ରୀ ଚଣ୍ଡୀରେ ପ୍ରଥମରେ ସୁରଥ ଚେଦୀବଂଶର ରାଜା ଥିବା ଉଲ୍ଲେଖ ରହିଛି । ପଶ୍ଚିମ ଓଡ଼ିଶା, ଛତିଶଗଡ଼ ଏକ ବିସ୍ତୃତ ଅଞ୍ଚଳରେ ଚେଦି ରାଜବଂଶ ରାଜତ୍ୱ କରୁଥିଲେ । ଶୁକ୍ତିମତୀ ନଦୀ କୂଳରେ ରାଜଧାନୀ ସ୍ଥାପନ କରାଯାଇଥିଲା । ଏଇ

ଶୁକ୍ତିମତୀ ନଦୀ ବର୍ତ୍ତମାନ 'ଶୁକତେଲ' ନଦୀ ନାମରେ ପରିଚିତ ବୋଲି ଐତିହାସିକମାନଙ୍କ ମତ । ଖାରବେଳ ହେଉଛନ୍ତି ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀର । ଜୈନ ସାହିତ୍ୟର ରାଜର୍ଷି ବସୁ ହାତୀଗୁମ୍ଫା ବର୍ଣ୍ଣିତ ବସୁ ଏକ ଓ ଅଭିନ୍ନ ବୋଲି ଐତିହାସିକମାନେ କହନ୍ତି । ରାଜର୍ଷି ବସୁଙ୍କ ଉତ୍ତରାଧିକାରୀ ଥିଲେ ମହାମେଘବାହନ । ସେ ସାତବାହନ ରାଜ୍ୟ ସିମୁକଙ୍କ ସମସାମୟିକ ଥିଲେ । ଏହା ପୂର୍ବରୁ ଅଶୋକ କଳିଙ୍ଗ ବିଜୟ କରିଥିଲେ । ସେ ଖ୍ରୀଷ୍ଟପୂର୍ବ ୨୩୨ରେ ଇହଲୀଳା ତ୍ୟାଗକଲେ । ସେ କଳିଙ୍ଗ ବିଜୟ କରି ଜୈନମାନଙ୍କ ଇଷ୍ଟଦେବତା ଜୀନ୍‌ଙ୍କୁ ମଗଧ ନେଇଯାଇଥିଲେ ।

ମହାମେଘବାହନଙ୍କ ପୌତ୍ର (ନାତି) ଥିଲେ ମହାମେଘବାହନ ଐର ଖାରବେଳ । ସେତେବେଳେ ଆନ୍ଧ୍ରରେ ସାତବାହନ ରାଜବଂଶ ରାଜତ୍ୱ କରୁଥିଲେ । ଖାରବେଳଙ୍କ ସମୟରେ କଳିଙ୍ଗ ଗଙ୍ଗା ଠାରୁ ଗୋଦାବରୀ ଏବଂ ସମୁଦ୍ର ତଟରୁ ବିନ୍ଧ୍ୟାଚଳ ପର୍ଯ୍ୟନ୍ତ ବ୍ୟାପିଥିଲା । ବର୍ତ୍ତମାନର ଛତିଶଗଡ଼ ରାଜ୍ୟ ଓ ମଧ୍ୟପ୍ରଦେଶର କିଛି ଅଂଶ ସେତେବେଳେ ଖାରବେଳଙ୍କ ସାମ୍ରାଜ୍ୟର ଅଂଶ ଥିଲା । ମଗଧରାଜ ବୃହସ୍ପତି ମିତ୍ରଙ୍କୁ ଖାରବେଳ ପରାସ୍ତ କରିଥିଲେ ଏବଂ ଜୀନ ପ୍ରତିମାଙ୍କୁ କଳିଙ୍ଗ ନେଇଆସିଥିଲେ । ହାତୀଗୁମ୍ଫାରେ ଥିବା ଅଭିଲେଖ ଖାରବେଳଙ୍କ ରାଜତ୍ୱ କାଳରେ ବ୍ରାହ୍ମୀ ଓ ପାଲୀ ଭାଷାରେ ଲେଖାଯାଇଥିଲା । ଏହା କାବ୍ୟଶୈଳୀରେ ରଚିତ ହୋଇଥିଲା । ସେଥିରେ ଜୈନଧର୍ମର ଚିହ୍ନ ସ୍ୱସ୍ତିକ, ନନ୍ଦୀ ପଦ ଓ ବଦ୍ଧମଷ୍ଟିକ ଚିତ୍ର ରହିଛି । କେତେକ ଗବେଷକଙ୍କ ମତରେ ଖାରବେଳଙ୍କ ସମୟରୁ ଓଡ଼ିଆ ଭାଷାର ଆଦ୍ୟଲିପି ଆରମ୍ଭ ହୋଇଥିବ । ତାଙ୍କ ସମୟରେ ସଙ୍ଗୀତ, ନୃତ୍ୟ (ଗାନ୍ଧର୍ବ) କଳା, ଚିତ୍ରାଙ୍କନ, କ୍ରୀଡ଼ା, ବାଦ୍ୟ ଇତ୍ୟାଦିର ପ୍ରଭୂତ ଉନ୍ନତି ହୋଇଥିଲା । ସେଇ ପରମ୍ପରା ଅଦ୍ୟାବଧି ଓଡ଼ିଆ ଜୀବନର ଅଂଶ ହୋଇ ରହିଛି । ଓଡ଼ିଶାର ସଂସ୍କୃତି, କଳା ଓ ସାହିତ୍ୟ, ଧର୍ମଧାରା ଓ ଚଳଣିରେ ସେହି ସମୟରେ ଯେଉଁ ଧାରା ଉଦ୍ଭବ ହୋଇଥିଲା । ତାହା ଏବେ ଲୋକଜୀବନରେ ପ୍ରାଧାନ୍ୟ ପାଇଆସୁଛି । ଶିଶୁପାଳଗଡ଼ ଶିଳାଲେଖରୁ ଜଣାଯାଏ ଯେ ସେତେବେଳର କଳିଙ୍ଗ ସାମ୍ରାଜ୍ୟରେ ନୌବାଣିଜ୍ୟ ପ୍ରସାରିତ ହୋଇଥିଲା । ଖାରବେଳ ନିଜକୁ ସର୍ବଧର୍ମ ସମର୍ଥକ ଓ ସର୍ବଧର୍ମ ପୂଜକ ଭାବେ ଘୋଷଣା କରିଥିଲେ । ସେଇ କାଳରୁ ଆଜିପର୍ଯ୍ୟନ୍ତ ଓଡ଼ିଶାର ଜୀବନଧାରାରେ ସର୍ବଧର୍ମ ସମନ୍ୱୟର ଧାରା ଓ ପରମ୍ପରା ଚଳିଆସୁଛି । ଶ୍ରୀମନ୍ଦିର ରୀତିନୀତିରୁ ଏଇ ପରମ୍ପରା ବାରି ହୋଇପଡ଼େ । ସେ ନିଜକୁ ଧର୍ମନିରପେକ୍ଷ କହିବା ସହିତ ନିଜକୁ ଧର୍ମରାଜ ବୋଲି ଘୋଷଣା କରିଥିଲେ । ଯଦି କୌଣସି ରାଜ୍ୟର ଜନଜୀବନରେ ଧର୍ମୀୟ ସମନ୍ୱୟ ଏବଂ ସର୍ବଧର୍ମ ସମାନର ଚିହ୍ନ ଥାଏ, ତେବେ ଓଡ଼ିଶାରେ ତାହା ବେଶ୍ ଉତ୍‌କୀର୍ଣ୍ଣ ।

ଚେଦି ରାଜବଂଶ ପରେ ଗୁପ୍ତ ରାଜବଂଶ ଖ୍ରୀଷ୍ଟାବ୍ଦ ୩୧୯-୨୦ ରେ ଓଡ଼ିଶାରେ ଶାସନ ଆରମ୍ଭ କରିଥିଲେ । ସମୁଦ୍ରଗୁପ୍ତଙ୍କର ଅଭିଯାନ ପରେ ପ୍ରାଚୀନ ଓଡ଼ିଶାରେ ଜନଜାତି ଅଧ୍ୟୁଷିତ ଅରଣ୍ୟ ପ୍ରଦେଶରେ ଆର୍ଯ୍ୟ ସଂସ୍କୃତିର ପ୍ରସାର ହୋଇଥିଲା । ଏହି ପ୍ରବାହର ଅବଦାନ ହେଉଛି ସଂସ୍କୃତ ଭାଷା, ଗୁପ୍ତ ବେଳର ଶାସନ ପ୍ରଣାଳୀ, ବ୍ରାହ୍ମଣ ଶାସନ ସ୍ଥାପନ, ସାହିତ୍ୟ ଓ ଦର୍ଶନ ଚର୍ଚ୍ଚା, ରାଜଦରବାରରେ ପୁରୋହିତମାନଙ୍କ ଆବଶ୍ୟକତା ଇତ୍ୟାଦି । ଅଶୋକଙ୍କ କଳିଙ୍ଗ ବିଜୟ ପରେ କଳିଙ୍ଗ ମଗଧ ସାମ୍ରାଜ୍ୟର ନୂତନ ପ୍ରଦେଶ

ଭାବେ ଶାସିତ ହୋଇଥିଲା । ସେହି ସମୟରେ ଭାରତ ଓ ଭାରତ ବାହାରେ ବୌଦ୍ଧଧର୍ମର ପ୍ରସାର ଘଟିଥିଲା ; କିନ୍ତୁ ପରେ ହିନ୍ଦୁଧର୍ମର ବିକାଶ ଘଟିଲା । ଫଳରେ ଗୁପ୍ତ ସାମ୍ରାଜ୍ୟ ଆରମ୍ଭ ବେଳକୁ ସଂସ୍କୃତିର ବିକାଶ ଓ ପ୍ରସାର ବେଗଗାମୀ ହୋଇଥିଲା । ଏହାପରେ ପ୍ରାଚ୍ୟ ଗଙ୍ଗ ରାଜତ୍ୱ ଖ୍ରୀ.୪୯୮ ବେଳକୁ ଆରମ୍ଭ ହେଲା ଏବଂ ଦୀର୍ଘକାଳ ଚାଲିଥିଲା । ଗୁପ୍ତବଂଶ ପରେ ଓଡ଼ିଶାରେ ଅନେକ କ୍ଷୁଦ୍ର ରାଜ୍ୟର ଉଦ୍ଭବ ହେଲା । ଏଇ ରାଜ୍ୟମାନଙ୍କରେ ସ୍ୱତନ୍ତ୍ର ଶାସନ ପଦ୍ଧତି ଥିଲା । ପ୍ରାଚୀନ ଓଡ଼ିଶାର ଉପକୂଳ ଅଞ୍ଚଳରେ କଳିଙ୍ଗ ପରେ ତୋଷାଳୀର ଉଦ୍‌ଭବ ଘଟିଥିଲା । ସପ୍ତମ ଅଷ୍ଟମ ଶତାବ୍ଦୀରେ ତୋଷଳ ରାଜ୍ୟ ପ୍ରଥମେ ମୁଦ୍‌ଗଲ ବଂଶ ଓ ପରେ ଭୌମକର ବଂଶ ଅଧୀନରେ ଗଢ଼ି ଉଠିଥିଲା । ଚୀନ ପରିବ୍ରାଜକ ହୁଏନ୍‌ସାଂ ଖ୍ରୀ:ଅ ୬୩୮-୩୯ ରେ ଓଡ଼ିଶା ଭ୍ରମଣରେ ଆସିଥିଲେ । ଭୌମକରମାନେ ଖ୍ରୀ:ଅ:୬୩୬ ରାଜତ୍ୱ ଆରମ୍ଭ କରିଥିଲେ । ସେମାନଙ୍କ ସମୟରେ ମହାନଦୀର ଉତ୍ତର ଓ ଦକ୍ଷିଣ ପାର୍ଶ୍ୱ ଉତ୍ତର ତୋଷାଳୀ ଓ ଦକ୍ଷିଣ ତୋଷାଳୀ ଦୁଇଭାଗରେ ବିଭକ୍ତ ଥିଲା । ଦଶମ ଶତାବ୍ଦୀରେ ଉତ୍କଳ ରାଜାମାନେ ଉତ୍କଳ ରାଷ୍ଟ୍ରର ଶାସକ ଥିଲେ । ଏକାଦଶ ଶତାବ୍ଦୀରେ ରାଜେନ୍ଦ୍ର ଚୋଳଙ୍କ ସେନାବାହିନୀ ଉତ୍କଳ ମଧ୍ୟ ଦେଇ ଗଙ୍ଗାନଦୀ ପର୍ଯ୍ୟନ୍ତ ଯାଇଥିଲେ । ଗଙ୍ଗ ରାଜତ୍ୱର (୧୧୧୦ରୁ ୧୪୩୪) ଶେଷବେଳକୁ ଉତ୍କଳ ରାଜ୍ୟ ଓଡ଼ିଶା ନାମରେ ନାମିତ ହୋଇଥିଲା । ଦଶମ ଶତାବ୍ଦୀରେ ଉତ୍କଳ ରାଜାମାନେ ଉତ୍କଳ ଦେଶର ଶାସକ ହେଲେ । ମହାନଦୀ ଅଞ୍ଚଳରେ ଥିବା ଉତ୍କଳ ରାଜ୍ୟକୁ କଳିଙ୍ଗ ଶାସକ ଅନନ୍ତ ବର୍ମଣ ଚୋଳଗଙ୍ଗ ଜୟ କରିଥିଲେ । ଏହାପରେ ଆନ୍ଧ୍ରର ମୁଖଲିଙ୍ଗମ୍ ରୁ ତାଙ୍କ ରାଜଧାନୀ ସ୍ଥାନାନ୍ତରିତ କରି କଳିଙ୍ଗ ଓ ଉତ୍କଳକୁ ମିଶାଇ ନାମ ଦେଲେ 'ସକଳୋତ୍କଳ' । ସେହିଦିନୁ କଳିଙ୍ଗର ସତ୍ତା ଲୋପ ହେଲା ।

ବାହାରୁ ଆସିଥିବା ସଂସ୍କୃତର ପ୍ରଭାବ ଆରମ୍ଭ ହେବା ପୂର୍ବରୁ ଜନଜାତିମାନେ ନିଜ ନିଜ ଧର୍ମଧାରଣା ନେଇ ବାସ କରୁଥିଲେ । ସଂସ୍କୃତର ପ୍ରସାର ଓ ହିନ୍ଦୁଧର୍ମ ସହିତ ରୀତିନୀତିର ପ୍ରସାର ହେତୁ ସେମାନେ ହିନ୍ଦୁଧର୍ମର ସ୍ୱୀକୃତି ପାଇଲେ । ସୋମବଂଶୀ ରାଜତ୍ୱରେ ଧର୍ମ, ସଂସ୍କୃତ ଭାଷା ଓ ହିନ୍ଦୁ ଶାସ୍ତ୍ରପୁରାଣର ପ୍ରସାର ଓ ପ୍ରଭାବ ବୃଦ୍ଧି ପାଇଥିଲା । ବ୍ରାହ୍ମଣମାନଙ୍କର ପ୍ରଭାବ ମଧ୍ୟ ବଢ଼ିଥିଲା ; କିନ୍ତୁ ଗଙ୍ଗବଂଶର ଶାସନ କାଳରେ ସେମାନେ ଓଡ଼ିଶା ରାଜ୍ୟ ସହିତ ଜଗନ୍ନାଥଙ୍କୁ ଏକ ଓ ଅଭିନ୍ନ ପ୍ରତିପାଦନ କରିଥିଲେ ଏବଂ ଏହାପରେ ଗଙ୍ଗରାଜାମାନେ ଜଗନ୍ନାଥଙ୍କ ପରମଭକ୍ତରେ ରୂପାନ୍ତରିତ ହେଲେ ।

ଗୁପ୍ତକାଳ ପରେ ସୋମବଂଶୀଙ୍କ ପର୍ଯ୍ୟନ୍ତ ଅନେକ କ୍ଷୁଦ୍ର ଓ ଆଞ୍ଚଳିକ ରାଜ୍ୟ ଗଠିତ ହୋଇଥିଲା । ଶୈଳୋଦ୍ଭବମାନଙ୍କ ସମୟରେ ଆର୍ଯ୍ୟ ସଂସ୍କୃତିର ପ୍ରସାର ଘଟିଥିଲା । ମୁଖ୍ୟ ଭାଷା ଥିଲା ସଂସ୍କୃତ । ସମୁଦ୍ରଗୁପ୍ତ ବିଜୟ ପରେ ବହୁସଂଖ୍ୟକ ବ୍ରାହ୍ମଣ ଆସିଥିଲେ ଓଡ଼ିଶାକୁ । ଭୌମକର ଶାସନ କାଳରେ ମଧ୍ୟ ସଂସ୍କୃତର ପ୍ରସଙ୍ଗ, ହିନ୍ଦୁଧର୍ମ ଓ ରୀତିନୀତିର ପ୍ରସାର ଘଟିଥିଲା । ଅନେକ ଗବେଷକଙ୍କ ମତରେ ସୋମବଂଶୀ ଶାସନ ଆସିବା ପରେ କେବଳ ଯେ ସଂସ୍କୃତର ବିକାଶ ଓ ପ୍ରସାର ହେଲା ତାହା ନୁହେଁ, ଧୀରେ ଧୀରେ ଓଡ଼ିଆ ଭାଷାର ଆଦ୍ୟରୂପ ମଧ୍ୟ ଉଦ୍ଭାସିତ ହେଲା । ସେତେବେଳକୁ କେତେକ ଓଡ଼ିଆ ଶବ୍ଦର ରୂପ ସହିତ ବର୍ତ୍ତମାନ ଲିପିର କିଛି ସାମଞ୍ଜସ୍ୟ ଦେଖାଯାଏ ।

ଉତ୍କଳରେ ସୋମବଂଶୀ ରାଜତ୍ୱ କାଳରେ ସଂସ୍କୃତ ଓ ସଂସ୍କୃତିର ବିକାଶ ଘଟିଥିଲା । ସେତେବେଳେ ସେମାନଙ୍କ ରାଜ୍ୟ ଦକ୍ଷିଣ କୋଶଳ ନାମରେ ପରିଚିତ ଥିଲା । ଆଧୁନିକ ଛତିଶଗଡ଼ ରାଜ୍ୟର ରାୟପୁର, ବିଳାସପୁର ଓ ରାୟଗଡ଼ ଜିଲ୍ଲାମାନଙ୍କୁ ନେଇ ଦକ୍ଷିଣ କୋଶଳ ଗଠିତ ହୋଇଥିଲା ;କିନ୍ତୁ କାଳକ୍ରମେ କଳାହାଣ୍ଡି, ବଲାଙ୍ଗିର, ସମ୍ବଲପୁର, ସୁବର୍ଣ୍ଣପୁର ଅଞ୍ଚଳକୁ ସଂପ୍ରସାରିତ ହୋଇଥିଲା । ଉପକୂଳ ଓଡ଼ିଶାର ଭୌମକର ବଂଶୀୟ ରାଜାମାନଙ୍କ ସହିତ ସୋମବଂଶୀୟମାନଙ୍କର ବିବାହାଦି ସଂପର୍କ ହେବା ପରେ ସୋମବଂଶୀଙ୍କ ପ୍ରତିପତ୍ତି ବଢ଼ିଥିଲା । ଦକ୍ଷିଣ କୋଶଳ ଓ ଉତ୍କଳ ରାଜ୍ୟର ଯୋଗସୂତ୍ର ଥିଲା ମହାନଦୀ । ଖ୍ରୀଷ୍ଟାବ୍ଦ ୯୫୦ ବେଳକୁ ଭୌମକର ଶାସନର ଅନ୍ତ ହେଲା ଏବଂ ସୋମବଂଶୀ ରାଜା ଯଯାତି ଉତ୍କଳ ଅଧିକାର କଲେ । ଦକ୍ଷିଣ କୋଶଳ ଅପେକ୍ଷା ସେମାନେ ଉତ୍କଳରେ କେନ୍ଦ୍ରୀଭୂତ ହେବା ଫଳରେ ଦକ୍ଷିଣ କୋଶଳ ପ୍ରତି ଯଥାର୍ଥ ଦୃଷ୍ଟି ଦେଇପାରି ନ ଥିଲେ । ଉତ୍କଳର ରାଜନୀତିକ ଓ ସାଂସ୍କୃତିକ ସମ୍ଭୃଦ୍ଧିରେ ସୋମବଂଶୀ ରାଜତ୍ୱର ପ୍ରଭୂତ ଅବଦାନ ଥିଲା । ସେମାନଙ୍କ ରାଜତ୍ୱ କାଳରେ ଭୁବନେଶ୍ୱର ଓ ଯାଜପୁର ଅଞ୍ଚଳରେ ସଂସ୍କୃତି ଓ ଧର୍ମ କେନ୍ଦ୍ରମାନ ଗଢ଼ି ଉଠିଥିଲା । ଭୁବନେଶ୍ୱରର ରାଜାରାଣୀ ବ୍ରହ୍ମେଶ୍ୱର ଓ ଲିଙ୍ଗରାଜ ମନ୍ଦିର ନୂତନ ପରମ୍ପରା ସୃଷ୍ଟି ହେଲା ଏବଂ କଳିଙ୍ଗ ମନ୍ଦିର ନିର୍ମାଣ ଶୈଳୀର ପୂର୍ଣ୍ଣ ବିକାଶ ଘଟିଥିଲା । ପ୍ରସ୍ତର ଖୋଦିତ ଚିତ୍ରକଳାର ପ୍ରଭୂତ ବିକାଶ ଘଟିଥିଲା । ପୁରୀରେ ପ୍ରଥମ ବିଷ୍ଣୁ ମନ୍ଦିର ନିର୍ମାଣ ସୋମବଂଶୀ ରାଜା ଯଯାତି କରିଥିବା କୁହାଯାଏ । ଗୋଟିଏ ଦିଗରେ ପଶ୍ଚିମ ଓଡ଼ିଶାର ଦକ୍ଷିଣ କୋଶଳୀୟ ସଂସ୍କୃତି ଓ ପୂର୍ବ ଉପକୂଳରେ ଉତ୍କଳୀୟ ସଂସ୍କୃତି ଓ ଧର୍ମ ପରମ୍ପରା ମଧ୍ୟରେ ସମନ୍ୱୟର ଫଳରେ ସମ୍ମିଶ୍ରଣ ଘଟିଥିଲା । ଫଳରେ ବୈଷ୍ଣବ ଧର୍ମ ଓ ଶୈବଧର୍ମ ଉଭୟର ଉନ୍ନତି ସମ୍ଭବ ହୋଇଥିଲା । ସୋମବଂଶୀ ଶାସନର ପରିସମାପ୍ତି ଘଟିଥିଲା ୧୧୧୦/୧୧ ଖ୍ରୀଷ୍ଟାବ୍ଦରେ । ସେତେବେଳେ ଲୋକମାନଙ୍କର କଥିତ ଭାଷା ପ୍ରାକୃତ ଓ ଅପଭ୍ରଂଶ ଥିବା ଅନୁମାନ କରାଯାଏ । ସଂସ୍କୃତର ପ୍ରଭାବ ଦେଶଜ ଭାଷାର ବ୍ୟବହାର ଘଟି ହୋଇ ଦକ୍ଷିଣ କୋଶଳ ଓ ଉତ୍କଳ ଖଣ୍ଡରେ ଓଡ଼ିଆ ଭାଷାର ଆଦ୍ୟ ରୂପ ବିକଶିତ ହୋଇଥିବ ବୋଲି ଗବେଷକମାନେ ମନେ କରନ୍ତି ।

ସାମ୍ରାଜ୍ୟବାଦୀ ଗଙ୍ଗମାନେ ଦକ୍ଷିଣରୁ ଆସି ଉତ୍କଳ ଅଧିକାର କରିବା ପୂର୍ବରୁ କେବଳ କଳିଙ୍ଗରେ ରାଜତ୍ୱ କରୁଥିଲେ । ଅନନ୍ତ ବର୍ମନ ଚୋଳଗଙ୍ଗଦେବ ୧୦୭୭ରୁ ୧୧୪୭ ପର୍ଯ୍ୟନ୍ତ ବଞ୍ଚିଥିଲେ ଏବଂ ତାଙ୍କର ଦୀର୍ଘ ଶାସନକାଳରେ ଉତ୍କଳଖଣ୍ଡରେ ସାଂସ୍କୃତିକ ବିକାଶର ନିଦର୍ଶନ ସର୍ବତ୍ର ବିଦ୍ୟମାନ । ସେତେବେଳକୁ ମନ୍ଦିର ନିର୍ମାଣ କୌଶଳ, ଚିତ୍ରାଙ୍କନ, ସଂସ୍କୃତଭାଷାର ବ୍ୟବହାର, ଧର୍ମକ୍ଷେତ୍ରରେ ବୈଷ୍ଣବ, ଶୈବ ଓ ଶାକ୍ତମାନଙ୍କ ମଧ୍ୟରେ ସମନ୍ୱୟ ଓ ସୁସଂପର୍କ ସ୍ଥାପିତ ହୋଇଥିଲା । ସଂସ୍କୃତ ଭାଷାର ପ୍ରସାର ଯୋଗୁ ଦେଶଜ ଭାଷାର ମଧ୍ୟ ଉଦ୍ଭବ ସହଜ ହୋଇଥିଲା । ତୃତୀୟ ଅନଙ୍ଗଭୀମଦେବ ଜଣେ ପରାକ୍ରମୀ ରାଜା ଥିଲେ । ସେ ୧୨୧୧ରୁ ୧୨୩୮ ପର୍ଯ୍ୟନ୍ତ ରାଜ୍ୟ ଶାସନ କରିଥିଲେ । ସେତେବେଳକୁ ଦିଲ୍ଲୀରେ ଦାସବଂଶର ସୁଲତାନମାନଙ୍କ ଶାସନ ଚାଲିଥିଲା । ତାଙ୍କରି ସମୟରେ ଧର୍ମ ଓ ରାଷ୍ଟ୍ର ନୀତିର ମିଶ୍ରଣ ଘଟି ଜଗନ୍ନାଥ ଧର୍ମ ପରମ୍ପରା ସୃଷ୍ଟି ହୋଇଥିଲା । ଓଡ଼ିଆ ଜାତୀୟତା ଏଇ ଜଗନ୍ନାଥ ଚେତନାକୁ ଆଶ୍ରୟ କରି ଗଢ଼ି

ଉଠିଥିଲା ଏବଂ ଜଗନ୍ନାଥ ଯେ ଓଡ଼ିଆମାନଙ୍କର ଇଷ୍ଟଦେବତା, ଏଇ ଧାରଣାର ଉନ୍ମେଷ ଘଟିଥିଲା । ଗଙ୍ଗ ସାମ୍ରାଜ୍ୟ ଓଡ଼ିଶା ରାଜ୍ୟ ବୋଲି ସେହିଠାରୁ ଅଭିହିତ ହେଲା । ଏହା ସହିତ ଓଡ଼ିଆ ଜାତୀୟତା ମନୋଭାବ ସୃଷ୍ଟି ହେଲା । ଅନଙ୍ଗଭୀମଦେବଙ୍କ ଅନୁଶାସନରେ ଓଡ଼ିଶା ରାଜ୍ୟର ପ୍ରତୀକ ହେଲେ ସ୍ୱୟଂ ଜଗନ୍ନାଥ । ଚୋଳଗଙ୍ଗ ପୁରୁଷୋତ୍ତମ ଓ ଲକ୍ଷ୍ମୀଙ୍କୁ ପୁରୀ ମନ୍ଦିରରେ ଅଧିଷ୍ଠିତ କରିଥିଲେ । ତାଙ୍କୁ ଜଗନ୍ନାଥ ଆଖ୍ୟା ଦିଆଗଲା ଏବଂ ସେ ଓଡ଼ିଶା ରାଜ୍ୟର ପ୍ରକୃତ ଶାସକ ବୋଲି ଘୋଷିତ ହେଲେ । ଅନଙ୍ଗ ଭୀମଦେବ ନିଜକୁ ଜଗନ୍ନାଥଙ୍କ ରାଉତ ବୋଲି ଅଭିହିତ କଲେ । ରାଉତର ପ୍ରକୃତ ଅର୍ଥ ହେଉଛି ଉପଶାସକ । ସେ ଜଗନ୍ନାଥଙ୍କ ପ୍ରତିନିଧି ଭାବେ ରାଜ୍ୟ ଶାସନ କଲେ ଏବଂ ସମ୍ରାଟ ନିଜକୁ 'ପୁରୁଷୋତ୍ତମ ପୁତ୍ର' ବୋଲି ଘୋଷଣା କଲେ । ବ୍ରାହ୍ମଣ୍ୟ ଧର୍ମର ପ୍ରକାଶ ପାଇଁ ତାଙ୍କର ପ୍ରଭୂତ ଅବଦାନ ଥିଲା । ତାଙ୍କରି ସମୟରୁ ବ୍ରାହ୍ମଣମାନେ ଅତ୍ୟନ୍ତ ପ୍ରଭାବଶାଳୀ ହେଲେ । ସମସ୍ତ ଧର୍ମୀୟ ଓ ସାମାଜିକ କାର୍ଯ୍ୟରେ ଜଗନ୍ନାଥଙ୍କୁ ସଂଶ୍ଳିଷ୍ଟ କରାଗଲା । ଏଇ ପ୍ରଥା ଓ ପରମ୍ପରା ଏବେ ବି ବିବାହ ଓ ବ୍ରତ ପ୍ରଭୃତି ସାମାଜିକ ଉତ୍ସବରେ ପାଳିତ ହେଉଛି । କୌଣସି ଧର୍ମକାର୍ଯ୍ୟ ଜଗନ୍ନାଥଙ୍କୁ ଛାଡ଼ି ସଂପନ୍ନ କରାଯାଏ ନାହିଁ । ଫଳରେ ଜଗନ୍ନାଥ ଓଡ଼ିଆ ଜାତିର ମହାନାୟକ ଓ ଇଷ୍ଟ କେବଳ ହେଲେନାହିଁ, ତାଙ୍କୁ ଆଧାର କରି ରାଷ୍ଟ୍ରୀୟ ଚେତନା ଓ ଉତ୍କଳୀୟ ଜାତୀୟତା ଗଢ଼ି ଉଠିଲା । ପରବର୍ତ୍ତୀକାଳରେ କାଞ୍ଚିକାବେରୀ ଯୁଦ୍ଧରେ ଜଗନ୍ନାଥ ଓ ବଳଭଦ୍ର କିପରି କଳାଧଳା ଘୋଡ଼ାରେ ବସି ଓଡ଼ିଶା ରାଜ୍ୟ ସୈନ୍ୟସାମନ୍ତଙ୍କ ଆଗେ ଆଗେ ଯାଉଥିଲେ ଏବଂ କାଞ୍ଚି ବିଜୟ କରି ଉତ୍କଳ ନରପତି ଫେରିଆସିଥିଲେ – ଏଇ କିମ୍ବଦନ୍ତୀ ସୃଷ୍ଟିକରି ଓଡ଼ିଆ ଜାତୀୟତା ଓ ଜଗନ୍ନାଥ କିପରି ଅଭିନ୍ନ, ତାହାର ପ୍ରମାଣ ରହିଛି ।

ତୃତୀୟ ଅନଙ୍ଗ ଭୀମଦେବଙ୍କ ଘଟଣାବହୁଳ ରାଜତ୍ୱର ଅବସାନ ପରେ ନରସିଂହ ଦେବ ୧୨୩୮ରୁ ୧୨୬୪ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଓଡ଼ିଶାର ରାଜା ଥିଲେ । କୋଣାର୍କ ମନ୍ଦିର ଗାତ୍ରରେ ତାଙ୍କର ପ୍ରତିମା ରହିଛି । ସେତେବେଳକୁ ମୁସଲମାନ ରାଜତ୍ୱ ଉତ୍ତର-ପୂର୍ବରୁ ସବୁଦିଗକୁ ପ୍ରସାରିତ ହୋଇଥିଲା । କିନ୍ତୁ ଅଯୋଧ୍ୟାର ନବାବଙ୍କ ପ୍ରତିନିଧି ତୁଘାନ ଖାଁଙ୍କୁ ଗଙ୍ଗବାହିନୀ ପରାସ୍ତ କରି ବଙ୍ଗଦେଶରୁ ଫେରିସାରିବା ପରେ ଓଡ଼ିଶାର ଶକ୍ତିସାମର୍ଥ୍ୟ ଦେଶରେ ପ୍ରସାରିତ ହୋଇଥିଲା । ନରସିଂହଦେବ ଥିଲେ ଗଙ୍ଗବଂଶର ପ୍ରତିଭାଶାଳୀ ପରାକ୍ରମୀ ସମ୍ରାଟ । ସେ ମଧ୍ୟ ଅଭିଲେଖମାନଙ୍କରେ ନିଜକୁ 'ପୁରୁଷୋତ୍ତମ ପୁତ୍ର' ଶିବ ଉପାସକ ଓ ଦୁର୍ଗାପୁତ୍ର ବୋଲି ଅଭିହିତ କରିଥିଲେ । କୋଣାର୍କର ବିଶ୍ୱବିଖ୍ୟାତ ମନ୍ଦିର ସେ ନିର୍ମାଣ କରିଥିଲେ । ହିନ୍ଦୁ ଦେବତାମାନଙ୍କ ମଧ୍ୟରେ ବିଷ୍ଣୁ, ଶିବ, ଦୁର୍ଗା ଓ ସୂର୍ଯ୍ୟ ଶ୍ରେଷ୍ଠ ଥିଲେ । ବର୍ତ୍ତମାନ ବଙ୍ଗ ଦେଶର ହାଓଡ଼ା, ବର୍ଦ୍ଧମାନ, ମେଦିନୀପୁର ଜିଲ୍ଲା ତାଙ୍କ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ଥିଲା ଏବଂ ଓଡ଼ିଶା ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବ୍ୟାପିଥିଲା । ତାଙ୍କ ପରେ ଗଙ୍ଗବଂଶ ଆହୁରି ଶତାଧିକ ବର୍ଷ ଶାସନ କରିବା ପରେ ୧୪୩୫ରେ ଗଙ୍ଗବଂଶ ଶାସନର ଅନ୍ତ ହେଲା । ଏଇ ଶାସନ କାଳରେ ପୁରୀ ମନ୍ଦିର, କୋଣାର୍କ ମନ୍ଦିର ନିର୍ମାଣ କରାଯାଇଥିଲା ; କିନ୍ତୁ ଗୋଟିଏ ଦିଗରେ କଳା, ସାହିତ୍ୟ, ମନ୍ଦିରନିର୍ମାଣ, ଧର୍ମୀୟ ସମନ୍ୱୟ, ଓଡ଼ିଆ ଜାତୀୟତାର ଉନ୍ମେଷ ଏବଂ ବିକାଶ ସହିତ ଓଡ଼ିଆ ଭାଷାର ଆଦ୍ୟ ବିକାଶ ମଧ୍ୟ ଗଙ୍ଗବଂଶ ରାଜତ୍ୱ କାଳରେ ହୋଇଥିଲା । ଗଙ୍ଗଯୁଗରେ

ସମାଜ ଓ ସାହିତ୍ୟର ନବଯୁଗର ଆରମ୍ଭ ହୋଇଥିଲା । ଓଡ଼ିଶାର କଥିତଭାଷାର ପୂର୍ଣ୍ଣରୂପର ଏକ ପ୍ରତିଛବି ଗଙ୍ଗବଂଶର ଶେଷବେଳକୁ ହୋଇସାରିଥିଲା ଏବଂ ଓଡ଼ିଆ ଭାଷାରେ ସାହିତ୍ୟ ମଧ୍ୟ ରଚନା କରାଯାଇଥିଲା । ସଂସ୍କୃତର ପ୍ରାଧାନ୍ୟ ସତ୍ତ୍ୱେ ଓଡ଼ିଆ ଓ ସାହିତ୍ୟର ବିକାଶ ଘଟିବା ପଛରେ ରହିଛି ପରବର୍ତ୍ତୀ ଯୁଗର ମହାକବି ଶାରଳାଦାସଙ୍କ କୃତି ଏବଂ ପଞ୍ଚସଖାଙ୍କ ସାହିତ୍ୟ ବିଭବ ।

ଖ୍ରୀଷ୍ଟାବ୍ଦ ୧୪୩୫ ଜୁନ୍ ମାସ ୨୯ ତାରିଖରେ କପିଳେନ୍ଦ୍ର ଦେବଙ୍କ ଅଭିଷେକ ଉତ୍ସବ ସଂପନ୍ନ ହୋଇଥିଲା । ଏହିଠାରୁ ସୂର୍ଯ୍ୟବଂଶୀ ଗଜପତି ଶାସନର ଅଭ୍ୟୁଦୟମାରମ୍ଭ । କପିଳେନ୍ଦ୍ର ଦେବ ଓଡ଼ିଶା ମାଟିର ସନ୍ତାନ । କପିଳେନ୍ଦ୍ର ଦେବଙ୍କ ଶାସନ ବହୁଦିଗରୁ ଅବିସ୍ମରଣୀୟ । ତାଙ୍କରି ଠାରୁ ଓଡ଼ିଆ ଜାତୀୟତାର ପୁଷ୍କଳ ବିକାଶ । ଆଦିକବି ସାରଳା ଦାସ ତାଙ୍କ ଶାସନ କାଳରେ ଓଡ଼ିଆ ଭାଷାରେ ପ୍ରଥମ ମହାକାବ୍ୟ ମହାଭାରତ ରଚନା କରି ସଂସ୍କୃତ ଓ ବ୍ରାହ୍ମଣ୍ୟବାଦ୍ୟ ପ୍ରଭାବରୁ ଓଡ଼ିଆ ସଂସ୍କୃତି, ଭାଷା ଓ ଜାତୀୟତାର ବିକାଶ କରିଥିଲେ । ଏକ ଦିଗରେ କପିଳେନ୍ଦ୍ର ଦେବଙ୍କୁ ସମ୍ରାଟ ଏବଂ ଅନ୍ୟ ଦିଗରେ ସାରଳା ଦାସ ଓଡ଼ିଆ ଭାଷା ସାହିତ୍ୟ ଓ ଜାତୀୟତାର ପ୍ରବର୍ତ୍ତକ ବୋଲି କୁହାଯାଇପାରେ; କିନ୍ତୁ ପରବର୍ତ୍ତୀ ସମୟରେ କପିଳେନ୍ଦ୍ର ଦେବଙ୍କୁ ମୌର୍ଯ୍ୟବୀର ଅବସାନ ଘଟିବାରୁ ସୂର୍ଯ୍ୟବଂଶୀ ରାଜତ୍ୱ ପ୍ରାୟ ଏକ ଶହ ବର୍ଷ ପରେ ଶେଷ ହୋଇଥିଲା ।

ଗଜପତି ମହାରାଜା ପ୍ରତାପରୁଦ୍ର ଦେବ ୧୪୯୭-୧୫୩୩ ପର୍ଯ୍ୟନ୍ତ ରାଜ୍ୟଶାସନ କରିଥିଲେ । ତାଙ୍କ ସମୟରେ ଶ୍ରୀଚୈତନ୍ୟ ଓଡ଼ିଶା ଆସି ପୁରୀଠାରେ ବୈଷ୍ଣବ ଧର୍ମର ପ୍ରଚାର ଓ ପ୍ରସାର କରିଥିଲେ । ଶ୍ରୀଚୈତନ୍ୟଙ୍କ ସମାଜ ସଂସ୍କାରଧର୍ମୀ ବିଧିବ୍ୟବସ୍ଥା ଓଡ଼ିଆ ଜାତୀୟ ଜୀବନକୁ ପ୍ରଭାବିତ କରିଥିଲା । ବ୍ରାହ୍ମଣ୍ୟବାଦରୁ ମୁକ୍ତି ପାଇ ସାଧୁସନ୍ଥ ଓ ପଞ୍ଚସଖାଙ୍କ ପରି କବିମାନଙ୍କ ସଂସ୍କାରଧର୍ମୀ ରଚନା ଓଡ଼ିଆ ଜୀବନାଦର୍ଶକୁ ଗଭୀର ଭାବେ ଆଲୋଡ଼ିତ କରିଥିଲା; କିନ୍ତୁ ବଳରାମ ଦାସ, ଜଗନ୍ନାଥ ଦାସ ପ୍ରଭୃତି ପଞ୍ଚସଖାଙ୍କ ଓଡ଼ିଆ ଧର୍ମସାହିତ୍ୟର ପ୍ରଭାବରୁ ଯେ ଓଡ଼ିଆ ସଂସ୍କୃତି ଓ ଜାତୀୟତା ଏ ପର୍ଯ୍ୟନ୍ତ ବଞ୍ଚି ରହିଛି, ତାହା ନିଃସନ୍ଦେହରେ କୁହାଯାଇପାରେ । ସାରଳା ଦାସ ଆବିର୍ଭାବ ହେବାର ଅନେକ ପୂର୍ବରୁ ଓଡ଼ିଆ ଭାଷାର ଜନ୍ମ ହୋଇସାରିଥିଲା । ସୋମବଂଶୀ ଓ ଗଙ୍ଗବଂଶୀରେ ରାଜାମାନେ ବାହାରୁ ଆସିଥିଲେ ମଧ୍ୟ ଓଡ଼ିଆ ସଂସ୍କୃତି, ଧର୍ମଧାରା ଓ ଚଳଣି ବିରୋଧରେ କାର୍ଯ୍ୟ ନ କରି ବରଂ ଏହାକୁ ସଂପୁଟିତ କରିଥିଲେ । ସଂସ୍କୃତ ଭାଷାର ପ୍ରଭାବରୁ ଓଡ଼ିଆ ଭାଷାର ଜନ୍ମ ଓ ଶୈଶବ ଅଧିକ ଶକ୍ତିଶାଳୀ ହୋଇପାରିଥିଲା । କିନ୍ତୁ ସଂସ୍କୃତ ଓ ସଂଭ୍ରାନ୍ତମାନଙ୍କ ପ୍ରଭାବ କପିଳେନ୍ଦ୍ରଦେବଙ୍କ ପରେ ଧୀରେ ଧୀରେ ହ୍ରାସ ପାଇଲା । ଓଡ଼ିଆ ସଂସ୍କୃତିର ନୂଆ ରୂପରେ ଆରାଧ୍ୟ ଓ ଇଷ୍ଟ ଭାବେ ନୂଆ ରୂପରେ ଜଗନ୍ନାଥ କେବଳ ପ୍ରତିଷ୍ଠିତ ହେଲେନାହିଁ; ତାଙ୍କୁ ଇଷ୍ଟଦେବତା ଭାବେ ମାନିନେଇ ଓଡ଼ିଆ ସଂସ୍କୃତିରୁ ଜନ୍ମ ନେଲା ନବ୍ୟ ସମାଜ ଧାରା, ଉଦାରତା, ସମନ୍ୱିତ ଭାବନା ଓ ପୂଜାପ୍ରାର୍ଥନା ।

ପ୍ରତାପରୁଦ୍ର ଦେବଙ୍କ ରାଜତ୍ୱ କାଳରେ ନଦିଆରୁ ଆସି ଶ୍ରୀଚୈତନ୍ୟ ପୁରୁଷୋତ୍ତମ କ୍ଷେତ୍ରରେ ପହଞ୍ଚିଲେ । ସେତେବେଳକୁ ପଞ୍ଚସଖାଙ୍କ ସାହିତ୍ୟରେ ସଂସ୍କାରଧର୍ମୀ ସାମାଜିକ ଆନ୍ଦୋଳନର ସୂତ୍ରପାତ

ହେଲା । ସଂସ୍କୃତ ଓ ବ୍ରାହ୍ମଣ୍ୟବାଦୀ ପ୍ରଭାବ ବିରୋଧରେ ସଂସ୍କାରଧର୍ମୀ ଓଡ଼ିଆ ଧର୍ମସାହିତ୍ୟର ପ୍ରସାର ଦ୍ୱାରା ଭକ୍ତ ଓ ଭଗବାନଙ୍କ ମଧ୍ୟରେ ଥିବା ପାଚେରୀ ଭାଙ୍ଗିଲା । ପୁରୋହିତ ଓ ବ୍ରାହ୍ମଣପଣ୍ଡିତମାନଙ୍କ ସହାୟତା ବିନା ଧର୍ମଶାସ୍ତ୍ର ପଢ଼ିବା ଓ ଆଲୋଚନା କରିବାର ନୂଆ ବାଟ ଫିଟିଲା । ଶୂଦ୍ରମାନେ ଶାସ୍ତ୍ରପୁରାଣ ଓ ମହାପୁରାଣ ପାଠ କରିବା ବାଧା ଦୂର ହେଲା । ସାହିତ୍ୟ ଓ ଶ୍ରୀଚୈତନ୍ୟଙ୍କ ସଂକୀର୍ତ୍ତନ ମାଧ୍ୟମରେ ସାଧାରଣ ଲୋକଙ୍କ ମଧ୍ୟରେ ସାମାଜିକ ଚେତନାର ଉନ୍ମେଷ ଘଟିଲା ଏବଂ ସାମାଜିକ ପରିବର୍ତ୍ତନ ସଂଗଠିତ ହେଲା । ଗଜପତି ପୁରୁଷୋତ୍ତମଦେବପ୍ରତାପରୁଦ୍ର ଦେବ ଓ ତାଙ୍କ ପୁତ୍ର ପ୍ରତାପରୁଦ୍ର ଦେବ ଉଭୟ ସାହିତ୍ୟ ସାଧକ ଥିଲେ । ଜାତି ପ୍ରଥା କୋହଳ ହେଲା ଏବଂ ସବୁ ଜାତିଭେଦ ଓ ସଂପ୍ରଦାୟର ଲୋକ ସଂକୀର୍ତ୍ତନରେ ଯୋଗଦବାର ପରମ୍ପରା ଗଢ଼ି ଉଠିଲା । ଏପରିକି ଶ୍ରୀଚୈତନ୍ୟଙ୍କୁ ଗୁରୁଭାବେ ଗ୍ରହଣ କରିବା ପରେ ପ୍ରତାପରୁଦ୍ର ଦେବ ମଧ୍ୟ ରାଜଦାଣ୍ଡକୁ ଆସି ସଂକୀର୍ତ୍ତନରେ ଯୋଗଦେଲେ । ବୈଷ୍ଣବ ଧର୍ମର ପ୍ରଭାବରୁ ରାଜାପ୍ରଜା ସମସ୍ତେ ଖୋଳ କରତାଳ ଧରି ସଂକୀର୍ତ୍ତନ କରିବା ଦ୍ୱାରା ପ୍ରଜା ଓ ରାଜା ମଧ୍ୟରେ ଥିବା ପାର୍ଥକ୍ୟ ଦୂର ହେଲା । ଦୀର୍ଘକାଳର ଶୃଙ୍ଖଳା ଭଙ୍ଗ ଗୋଟିଏ ବୀର ଜାତିହେବାରୁ ଲୋକଙ୍କର ହଜାର ହଜାର ବର୍ଷର ଜୀବନଚର୍ଯ୍ୟା ଓ ଚଳଣିରେ ସହଜିଆ ଭାବନା ପ୍ରବେଶ କଲା । ବୀର ଓଡ଼ିଆମାନେ ଯୁଦ୍ଧ କରିବା ବଦଳରେ ହାତରେ ଖୋଳ କରତାଳ ଧରି ସଂକୀର୍ତ୍ତନ କରିବା ଫଳରେ ସାମାଜିକ ଚଳଣିରେ। ଏଇ ଧାରା ପାଞ୍ଚ ଶହ ବର୍ଷ ଧରି ଚାଲିଛି । ଗ୍ରାମେ ଗ୍ରାମେ ସଂକୀର୍ତ୍ତନମଣ୍ଡଳୀ ଗଢ଼ି ଉଠିଛି ; କିନ୍ତୁ ଅନ୍ୟପକ୍ଷରେ ଯୁଦ୍ଧଜୟ କରିବାର ନିଶା ଓ ବୀରତ୍ୱର ଅବସାନ ଘଟିଛି ।

ଶ୍ରୀଜଗନ୍ନାଥ ଦାସ ତାଙ୍କ ମା'ଙ୍କ ଆଦେଶ ମାନି ପ୍ରଥମେ ସଂସ୍କୃତ ଭାଗବତକୁ ଶୁଦ୍ଧ ସରଳ ଓଡ଼ିଆରେ ଲେଖିବା ପରେ ଭାଗବତର ନବାକ୍ଷରୀ ପଦାବଳୀର ପ୍ରସାର ସହଜ ହୋଇଥିଲା । ସେତେବେଳକୁ ଭାଷାର ପୂର୍ଣ୍ଣ ବିକାଶ ଘଟିଥିଲା ଏବଂ ସରଳ ଶବ୍ଦ ବ୍ୟବହାର କରି ଜଗନ୍ନାଥ ଦାସ, ରାମାୟଣର କବି ବଳରାମ ଦାସ ପ୍ରଭୃତି ପଞ୍ଚସଖାଙ୍କ ଓଡ଼ିଆ ଭାଷାରେ ରଚିତ ଉଚ୍ଚକୋଟୀର ଧର୍ମଶାସ୍ତ୍ରଗୁଡ଼ିକ ପ୍ରସାରିତ ହେଲା । ଏହାଦ୍ୱାରା ଭାଷା ଓ ସାହିତ୍ୟ ଏକତ୍ରୀକରଣର ଉତ୍ସ ପାଲଟି ଥିଲା । ଓଡ଼ିଆ ଜାତୀୟତା ନିର୍ମାଣରେ ଭାଷା ଓ ସାହିତ୍ୟ ଏବଂ ଧର୍ମର ପ୍ରଭାବ ଏତେ ବେଶି ଥିଲା ଯେ ଗାଁ ଗାଁରେ ଭାଗବତ ଟୁଙ୍ଗି ଏବଂ ସଂକୀର୍ତ୍ତନମଣ୍ଡଳୀ ଗଢ଼ି ଉଠିଥିଲା ଏବଂ ସାମାଜିକ ଓ ଧର୍ମୀୟ ଜୀବନକୁ ସଂଗଠିତ କରିବାର କେନ୍ଦ୍ର ରୂପେ ପରିବର୍ତ୍ତିତ ହୋଇଥିଲା ।

୧୫୧୯ ରେ ବିଜୟନଗର ରାଜା କୃଷ୍ଣଚନ୍ଦ୍ର ରାଏ ଗଜପତି ରାଜା ପ୍ରତାପରୁଦ୍ରଙ୍କୁ ପରାସ୍ତ କରିବା ପରେ ଓଡ଼ିଶାର ଦୀର୍ଘକାଳର ଗୌରବ ରକ୍ଷା କରିବା ଆଉ ସମ୍ଭବ ହେଲାନାହିଁ । ୧୫୩୩ ମସିହାରେ ପ୍ରତାପରୁଦ୍ରଙ୍କ ନିଧନ ହେଲା । ସେତେବେଳକୁ ତାଙ୍କ ଦୁଇପୁତ୍ର ନାବାଳକ ଥିଲେ । ଏହି କାରଣରୁ ସିଂହାସନ ସହିତ ଦୀର୍ଘକାଳ ଧରି ଜଡ଼ିତ ଥିବା କ୍ଷମତାର ମଧ୍ୟ ଅବସାନ ଘଟିଲା । କ୍ଷମତାର ଉତ୍ସ ଥିଲେ । ତାଙ୍କ ଅବର୍ତ୍ତମାନରେ ପ୍ରତାପରୁଦ୍ର ଦେବଙ୍କ ମନ୍ତ୍ରୀ ଗୋବିନ୍ଦ ବିଦ୍ୟାଧର କୂଟକୌଶଳ କଲେ ନିଜେ ସିଂହାସନ ଦଖଲ କରିବା ଏବଂ ରାଜଦ୍ରୋହ, ବିଶ୍ୱାସଘାତକତା ଓ ସଂକୀର୍ଣ୍ଣ ସ୍ୱାର୍ଥପରତା ବଳରେ ଗୋବିନ୍ଦ ବିଦ୍ୟାଧର

ସିଂହାସନ ଦଖଲ କରି ରାଜା ହେଲେ । ତାଙ୍କ ରାଜତ୍ୱ ପରେ ତାଙ୍କ ପୁତ୍ର ଚକ୍ରପ୍ରତାପ, ତା'ପରେ ନରସିଂହ ଜେନା ଏବଂ ଶେଷରେ ମୁକୁନ୍ଦଦେବଙ୍କ ରାଜତ୍ୱକାଳ ପ୍ରାୟ ଚଉତିରିଶ ବର୍ଷ ହତ୍ୟା, ଷଡ଼ଯନ୍ତ୍ର, ବିଶ୍ୱାସଘାତକତା'ର ସମୟ ଥିଲା । ମୁକୁନ୍ଦଦେବଙ୍କ ସମୟରେ କଳାପାହାଡ଼ ଓଡ଼ିଶା ଓ ପୁରୀ ଆକ୍ରମଣ କରି ଅନେକ ଧର୍ମସ୍ଥାନ, ଦେବଦେବୀଙ୍କ ମୂର୍ତ୍ତି ନଷ୍ଟ କରିଥିଲା । ତାହା ଦ୍ୱାରା ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ମୂର୍ତ୍ତି ଅପହରଣ କରିବା ଆଶଙ୍କା ଥିବାରୁ ଓଡ଼ିଶାବାସୀ ତଥା ହିନ୍ଦୁ ଜଗତର ଆରାଧ୍ୟ ଶ୍ରୀଜଗନ୍ନାଥଙ୍କ ସହିତ ତିନି ଠାକୁରଙ୍କୁ ସେବକମାନେ ନେଇ ଚିଲିକାରେ ଲୁଚାଇ ରଖିଥିଲେ ।

ଇତିହାସ ବଡ଼ ନିଷ୍ଠୁର ସମୀକ୍ଷକ । କେବଳ ଉପଲବ୍ଧ ପ୍ରାମାଣିକ ତଥ୍ୟାବଳୀ, ଓ ଅଭିଲେଖ ଓ ମୁଦ୍ରା ଇତ୍ୟାଦିରୁ ଗୋଟିଏ ଜାତିର ଅତୀତର କୀର୍ତ୍ତି ଉଦ୍ଭାସିତ ହୁଏ । ଓଡ଼ିଶା ଇତିହାସର ସବୁଠାରୁ ବଡ଼ ବୀର ପୁରୁଷ ହେଲେ ଖାରବେଳ ; କିନ୍ତୁ ଖ୍ରୀଷ୍ଟପୂର୍ବ ପ୍ରଥମ ଶତକରେ ବର୍ଣ୍ଣନା କରାଯାଇଥିବା କଳିଙ୍ଗର ବୀରତ୍ୱ ଅବଶ୍ୟ ଉଲ୍ଲେଖନୀୟ । ଖାରବେଳଙ୍କ କୀର୍ତ୍ତିସବୁକୁ ପ୍ରାଚୀନ କଳିଙ୍ଗର କୀର୍ତ୍ତି ବୋଲି ଗ୍ରହଣ କରାଯାଏ । କିନ୍ତୁ ଖାରବେଳ ପ୍ରାଚୀନ ଓଡ଼ିଶାର ବୀର ବା ବାହାରୁ ଆସିଥିଲେ, ସେଇ ବିଷୟ ନେଇ ମତାନୈକ୍ୟ ନାହିଁ । କଳିଙ୍ଗର ଉଦ୍ୟମଶୀଳତା, ସାହସ, ବୀରତ୍ୱ ଏବଂ ଦେଶାଭିମାନ ଧୀରେ ଧୀରେ ଲୋପ ପାଇଯାଇଛି ଏବଂ ବର୍ତ୍ତମାନର ଲୋକଚରିତ୍ରରେ ଏହାର କିଛି ପ୍ରାମାଣିକ ଉପାଦାନ ନାହିଁ । ଦକ୍ଷିଣର ତେଲୁଗୁମାନଙ୍କ ଉଦ୍ୟମଶୀଳତା ଓ ସାହସ ଓଡ଼ିଶାବାସୀଙ୍କର ନାହିଁ । ଇତିହାସରୁ ଆମେ ଜାଣୁ ଯେ ଗୁପ୍ତବଂଶ, ଶୈଳୋଦ୍ଭବ ବଂଶ, ଭୌମକର, ସୋମବଂଶୀ, ଗଙ୍ଗବଂଶୀ ରାଜା ଓ ଶାସକମାନେ ଓଡ଼ିଶା ବାହାରୁ ଆସିଥିଲେ ଏବଂ ଓଡ଼ିଶା ମଣ୍ଡଳରେ ବସବାସ କରିଥିଲେ । ସୋମବଂଶୀ ରାଜତ୍ୱ ଦୁଇ ଶହ ଓ ଗଙ୍ଗବଂଶୀ ରାଜତ୍ୱ ଚାରିଶହ ବର୍ଷର । ସେତେବେଳେ ଉତ୍କଳଖଣ୍ଡର ପ୍ରଭୂତ ଉନ୍ନତି ହୋଇଥିଲା । ଏମାନଙ୍କ ପରେ କପିଳେଶ୍ୱର ରାଉତରାୟ କିପରି କପିଳେନ୍ଦ୍ର ଦେବରେ ପରିଣତ ହେଲେ ଏବଂ ତାଙ୍କର ଶୌର୍ଯ୍ୟବୀର୍ଯ୍ୟ, ପରାକ୍ରମ ଓ ସ୍ୱଦେଶପ୍ରୀତି ଯୋଗୁ ଓଡ଼ିଶାର ମର୍ଯ୍ୟାଦା ବଢ଼ାଇଥିଲେ, ତାହା କାହାଣୀ ନୁହେଁ, ସତ୍ୟ । ପ୍ରାଚୀନ କାଳର ରାଜଧର୍ମ ଥିଲା ରାଜ୍ୟ ଜୟ ଓ ରାଜ୍ୟ ସଂପ୍ରସାରଣ । କେଉଁ ନିର୍ଦ୍ଦିଷ୍ଟ ଅଞ୍ଚଳକୁ ମୂଳ କରି ରାଜାମାନେ ଶାସନ ନ କରି ଦେଶଜୟ କରିବା ପାଇଁ ଯୁଦ୍ଧ ଅଭିଯାନ କରୁଥିଲେ । ସୁତରାଂ କୌଣସି ରାଜ୍ୟର ଭୌଗୋଳିକ ସୀମା ସଦାବେଳେ ଅକ୍ଷୁଣ୍ଣ ନ ରହି ବାରମ୍ବାର ବଦଳୁଥିଲା । ବାହାରୁ ଆସିଥିବା ରାଜବଂଶମାନଙ୍କ ଯୋଗୁ ଓଡ଼ିଶାରେ ଧର୍ମ, କଳା, ବାଣିଜ୍ୟ, ସଂସ୍କୃତି ଇତ୍ୟାଦିର ବହୁଳ ପ୍ରସାର ହୋଇଥିଲା ।

ପ୍ରତାପରୁଦ୍ରଦେବଙ୍କ ଦୁଇପୁତ୍ରଙ୍କୁ ହତ୍ୟା କରି ତାଙ୍କର ଅନ୍ୟତମ ଧୂର୍ତ୍ତ, ଚକ୍ରାନ୍ତକାରୀ ଓ ପ୍ରଭାବଶାଳୀ ମନ୍ତ୍ରୀ ଗୋବିନ୍ଦ ବିଦ୍ୟାଧର ୧୫୩୪ରୁ ୧୫୪୯ ଏବଂ ତାଙ୍କ ପୁତ୍ର ଚକ୍ରପ୍ରତାପ ୧୫୪୯ରୁ ୧୫୫୭ ପର୍ଯ୍ୟନ୍ତ ଶାସନ କରିଥିଲେ । ଚକ୍ରପ୍ରତାପଙ୍କୁ ତାଙ୍କ ପୁତ୍ର ନରସିଂହ ଜେନା ବିଷ ପ୍ରୟୋଗ କରି ହତ୍ୟା କରିଥିଲେ । ମାତ୍ର ବର୍ଷକ ପରେ ମୁକୁନ୍ଦ ଦେବ ହରିଚନ୍ଦନଙ୍କ ଦ୍ୱାରା ନରସିଂହ ଜେନା ନିହତ ହେଲେ । ନରସିଂହଙ୍କ ପୁତ୍ରକୁ ନାମକୁ ମାତ୍ର ରାଜା କରି ମୁକୁନ୍ଦ ହରିଚନ୍ଦନ ରାଜ୍ୟଶାସନର ସମସ୍ତ କ୍ଷମତା ତାଙ୍କ ହାତରେ ରଖିଥିଲେ । ଏହି ସମୟରେ ଗୋବିନ୍ଦ ବିଦ୍ୟାଧରଙ୍କ ଭଣଜା ରଘୁନାଥ ଭଞ୍ଜ ଛୋଟରାୟ ବଙ୍ଗ

ଦେଶରୁ କଟକ ଫେରିଆସିଲେ । ସେ ରାଜଗାଦୀ ଦାବି କରିବା ପରେ ମୁକୁନ୍ଦ ହରିଚନ୍ଦନ କୌଶଳ କରି ତାଙ୍କୁ ବନ୍ଦୀ ଓ ହତ୍ୟା କଲେ । ମୁକୁନ୍ଦ ହରିଚନ୍ଦନ ବା ମୁକୁନ୍ଦଦେବ ୧୫୫୯ରୁ ୧୫୬୮ ରାଜା ହୋଇଥିଲେ । ମୁକୁନ୍ଦ ହରିଚନ୍ଦନଙ୍କ ପୂର୍ବପୁରୁଷ ଦକ୍ଷିଣ ଭାରତର ଚାଲୁକ୍ୟ ବଂଶଜ ଥିଲେ । ସେଥିପାଇଁ ତାଙ୍କୁ ତେଲେଙ୍ଗା ମୁକୁନ୍ଦଦେବ କୁହାଯାଏ । ସେ ବଙ୍ଗ ସୁଲତାନଙ୍କୁ ଗଙ୍ଗାନଦୀ ପର୍ଯ୍ୟନ୍ତ ଘଉଡ଼ାଇ ଦେଇଥିଲେ । ଆକବରଙ୍କ ଶାସନ କାଳରେ ଓଡ଼ିଶା ମୋଗଲ- ଆଫଗାନ ସଂଘର୍ଷ ଭିତରକୁ ଟାଣି ହୋଇଗଲା ।ବଙ୍ଗଳାର ସୁଲତାନ ସୁଲେମାନ କରନାନୀ ଜଣେ ଆଫ୍‌ଗାନ ଥିଲେ । ୧୫୫୬ ଦ୍ୱିତୀୟ ପାନିପଥ ଯୁଦ୍ଧରେ ପରାସ୍ତ ହୋଇ ଇବ୍ରାହିମ୍ ଖାଁ ସୁର୍ ବଙ୍ଗଳାକୁ ଆଶ୍ରୟ ପାଇଁ ଆସିଥିଲେ ସୁଲେମାନ କରନାନୀଙ୍କ ଆଶାରେ । କିନ୍ତୁ ସୁଲେମାନ ତାଙ୍କୁ ସାହାଯ୍ୟ କଲେ ନାହିଁ । ସାହାଯ୍ୟ ନ ପାଇ ଇବ୍ରାହିମ୍ ଖାଁ ସୁର୍ ଓଡ଼ିଶା ଅଭିମୁଖେ ଆସିଲେ । ସୁଲେମାନ କରନାନୀ ଏହା ପସନ୍ଦ କରି ନ ଥିଲେ । କାରଣ ମୋଗଲ-ଆଫଗାନ ସଂଘର୍ଷରେ ଜଡ଼ିତ ହେବାକୁ ସେ ଚାହୁଁ ନ ଥିଲେ । ମୋଗଲ ସମ୍ରାଟ ଆକବର୍ ଚାହୁଁଥିଲେ ବଙ୍ଗଳା ଦଖଲ କରିବା ପାଇଁ । ସେ ବଙ୍ଗଳା ଅଧିକାର କରିବା ଯୋଜନାରେ ମୁକୁନ୍ଦଦେବଙ୍କ ସହିତ ମିତ୍ରତା କରିବା ପାଇଁ ଓଡ଼ିଆ ସଙ୍ଗୀତଜ୍ଞ ଭଙ୍ଗ ମହାପାତ୍ରଙ୍କୁ ପଠାଇଲେ । ତାଙ୍କ ଜରିଆରେ ମୁକୁନ୍ଦଦେବ ସମ୍ରାଟଙ୍କ ପାଇଁ ଅନେକ ଉପହାର ପଠାଇଲେ ଏବଂ ତା' ସହିତ ଆକବରଙ୍କ ଜଣେ ସାମନ୍ତ ରାଜା ହୋଇ ରହିବା ପାଇଁ ଇଚ୍ଛା ପ୍ରକାଶ କରିଥିଲେ । ମୁକୁନ୍ଦଦେବଙ୍କ ସ୍ୱତନ୍ତ୍ର ପ୍ରତିନିଧି ପରମାନନ୍ଦ ରାୟଙ୍କୁ ଆକବର୍ ମଧ୍ୟ ଉତ୍ତମ ଚର୍ଚ୍ଚା କରିଥିଲେ । ଆକବର ଓ ମୁକୁନ୍ଦଦେବଙ୍କ ମଧ୍ୟରେ ମିତ୍ରତା ହେବା ପୂର୍ବରୁ ସୁଲେମାନ୍ କରନାନୀ ଓଡ଼ିଶା ଆକ୍ରମଣ ପାଇଁ ଯୋଜନା ପ୍ରସ୍ତୁତ କଲେ । ସୁଲତାନ ସୁଲେମାନ୍ କରନାନୀ ଓ ତାଙ୍କ ପୁତ୍ରଙ୍କ ଆକ୍ରମଣର ମୁକାବିଲା କରିପାରିଲେ ନାହିଁ ମୁକୁନ୍ଦଦେବ ଏବଂ କୋଟସୀମା ଦୁର୍ଗରେ ଆଶ୍ରୟ ନେଲେ । କରନାନୀଙ୍କ ପୁତ୍ର ଓ ସୁଲେମାନଙ୍କ ପୁତ୍ର ବାୟାଜିଦ୍ କଟକ ନଗର ଅଧିକାର କରିବା ସହିତ ଲୁଣ୍ଠନ କରିବା ସହିତ ବାଟରେ ହିନ୍ଦୁ ମନ୍ଦିରମାନ ଧ୍ୱଂସ କରିଥିଲେ । ମୁକୁନ୍ଦଦେବଙ୍କ ଅବର୍ତ୍ତମାନରେ ସାରଙ୍ଗଗଡ଼ ରାଜା ରାମଚନ୍ଦ୍ର ଦେବ ନିଜକୁ ଓଡ଼ିଶାର ରାଜା ବୋଲି ଘୋଷଣା କଲେ ଏବଂ ସୁଲତାନ୍ ସୁଲେମାନ କରନାନୀଙ୍କ ସହିତ ଶାନ୍ତିଯୁଦ୍ଧ କରିବାପାଇଁ ପ୍ରସ୍ତାବ ଦେଲେ ।

ଏହି ସମୟରେ ମୁକୁନ୍ଦଦେବ କଟକକୁ ଫେରିଆସି ଦୁର୍ଗ ରକ୍ଷା କରିବା ପାଇଁ ପହଞ୍ଚିଲେ ଏବଂ ପ୍ରବଞ୍ଚକ ରାମଚନ୍ଦ୍ର ଦେବଙ୍କ ସହିତ ଯୁଦ୍ଧ ହେଲା । ସେଇ ଯୁଦ୍ଧରେ ମୁକୁନ୍ଦଦେବ ନିହତ ହେଲେ । ନିଜ ମଧ୍ୟରେ କଳହ ଯୋଗୁ ବଙ୍ଗ ସୁଲତାନଙ୍କ ଓଡ଼ିଶା ବିଜୟ ସହଜ ହୋଇଗଲା । ମୁକୁନ୍ଦଦେବଙ୍କ ପରେ ଓଡ଼ିଶାର ସ୍ୱାଧୀନ ରାଜା କେହି ନ ଥିଲେ ଏବଂ ବଙ୍ଗର ସୁଲତାନଙ୍କ ଓଡ଼ିଶା ଉପରେ ଶାସନ ଅଧିକାର ରହିଥିଲା । ଏହି ସମୟରେ ସୁଲତାନଙ୍କ ସେନାପତି କଳାପାହାଡ଼ ଓଡ଼ିଶାର ଅନେକ ମନ୍ଦିର ଧ୍ୱଂସ କରିଥିଲେ । ବାରବାଟୀ ଦୁର୍ଗ ମୁକୁନ୍ଦଦେବ ନିର୍ମାଣ କରାଇଥିଲେ ।

ଇତିହାସ ବଡ଼ ନିର୍ଦ୍ଦୟ । ଓଡ଼ିଆମାନଙ୍କ ଦେଶାଭିମାନ ଓ ବୀରତ୍ୱ କେତେ ଅଗଭୀର ଏବଂ କୀର୍ତ୍ତି କେତେ ସ୍ୱଳ୍ପ, ତାହାର ଚିତ୍ର ମିଳେ ଇତିହାସରୁ । ପ୍ରାଚୀନ ଓଡ଼ିଶାର ସ୍ଥାନୀୟ ରାଜାମାନେ ଶକ୍ତିଶାଳୀ ନ

ଥିଲେ । ଏହି କାରଣରୁ ବାହାର ରାଜଶକ୍ତିର ମୁକାବିଲା କରିବାପାଇଁ ସାମର୍ଥ୍ୟ ନ ଥିଲା ସେମାନଙ୍କର । ସୋମବଂଶୀ, ଗଙ୍ଗବଂଶୀ ଓ ଭୌମକର ପ୍ରଭୃତିଙ୍କ ଓଡ଼ିଶା ଆଗମନ ବିଶେଷ ପ୍ରତିରୋଧର ସମ୍ମୁଖୀନ ହୋଇ ନ ଥିଲା । ସେଥିପାଇଁ ସେମାନେ ସହଜରେ ଓଡ଼ିଶା ଅଧିକାର କରିପାରିଥିଲେ । ପ୍ରାଚୀନ କାଳରୁ ମଧ୍ୟଯୁଗର ଶେଷ ପର୍ଯ୍ୟନ୍ତ ଏବଂ ତାପରେ ଓଡ଼ିଶା ଇଂରେଜମାନଙ୍କ ହାତକୁ ଯିବା ପର୍ଯ୍ୟନ୍ତ ଏଇ ଧାରା ଲାଗି ରହିଥିଲା । କେବଳ ସୋମବଂଶୀ ଓ ଗଙ୍ଗବଂଶୀ ରାଜତ୍ୱରେ ଓଡ଼ିଶାର ଜନଜୀବନ ସଂଗଠିତ ହୋଇଥିଲା ଏବଂ ସେହି କାରଣରୁ ଧର୍ମ, କଳା, ସାହିତ୍ୟ, ଭାସ୍କର୍ଯ୍ୟ, ସାମରିକ ଶକ୍ତି ଏବଂ ବ୍ୟବସାୟ ବାଣିଜ୍ୟ କ୍ଷେତ୍ରରେ ଓଡ଼ିଶାର ପୂର୍ବଜ କଳିଙ୍ଗୀ ଓ ଉତ୍କଳୀୟମାନଙ୍କ ଖ୍ୟାତି ଦେଶବିଦେଶରେ ବ୍ୟାପିଥିଲା । ସୋମବଂଶୀମାନଙ୍କ ଯୋଗୁ ଉତ୍ତର ଭାରତରୁ କେବଳ ସଂସ୍କୃତ ଭାଷା ଓ ଶାସ୍ତ୍ରଚର୍ଚ୍ଚାର ଧାରା ଆସିଥିଲା । ଅନେକ ବ୍ରାହ୍ମଣ ଆସି ବ୍ରାହ୍ମଣ୍ୟ ଧର୍ମ ମାଧ୍ୟମରେ ଜନଜୀବନକୁ ସମୃଦ୍ଧ କରିଥିଲେ । କପିଳେନ୍ଦ୍ରଦେବଙ୍କ ଠାରୁ ପ୍ରତାପରୁଦ୍ର ଦେବଙ୍କ ସମୟ ପର୍ଯ୍ୟନ୍ତ ଓଡ଼ିଶା ବାହ୍ୟଶକ୍ତିମାନଙ୍କ ମୁକାବିଲା କରିଥିଲା; କିନ୍ତୁ ପ୍ରତାପରୁଦ୍ର ପୁତ୍ରଶୋକ ଓ ରାଜ୍ୟକ୍ଷୟ ଯୋଗୁ ବିଷାଦ ଅବସ୍ଥାରୁ ମୁକ୍ତି ପାଇବା ଆଶାରେ ବୈଷ୍ଣବ ଧର୍ମ ଗ୍ରହଣ କରିବାରୁ ଶ୍ରୀଚୈତନ୍ୟଙ୍କ ଧର୍ମ ପ୍ରସାର ସହଜ ହୋଇଥିଲା । ଜାତି ଗୋଷ୍ଠୀ ଭେଦ ବୈଷ୍ଣବ ଧର୍ମରେ ନ ଥିଲା । ତେଣୁ ଶ୍ରୀଚୈତନ୍ୟଙ୍କ ସଂକୀର୍ତ୍ତନରେ ସବୁ ସଂପ୍ରଦାୟର ଲୋକ ଯୋଗ ଦେଉଥିଲେ । ଏହାଦ୍ୱାରା ସମାଜସଂସ୍କାର ସହଜ ହେଲା ସତ; କିନ୍ତୁ ପ୍ରତାପରୁଦ୍ର ରାଜଧର୍ମ ତ୍ୟାଗ କରି ଯେତେବେଳେ ନାମଜପ କରି ରାଜଦାଣ୍ଡରେ ସଂକୀର୍ତ୍ତନରେ ତାଙ୍କ ଗୁରୁ ଶ୍ରୀଚୈତନ୍ୟଙ୍କ ସହିତ ଯୋଗଦେଲେ, ସେତେବେଳେ ଅବଶିଷ୍ଟ ପ୍ରତିପତ୍ତି ଟିକକ ମଧ୍ୟ ଲୋପ ପାଇଲା । ତାଙ୍କ ପରେ ସିଂହାସନକୁ ନେଇ ଦ୍ରୋହ, ଶଠତା, ଷଡ଼ଯନ୍ତ୍ର, ହତ୍ୟା ଓ ଚକ୍ରାନ୍ତ ହିଁ ପ୍ରଧାନ ଅସ୍ତ୍ର ଥିଲା । ଭ୍ରାତୃହତ୍ୟା ଓ ବନ୍ଧୁହତ୍ୟା କରିବା ମାମୁଲି ବିଷୟ ଥିଲା । ଗୋବିନ୍ଦ ବିଦ୍ୟାଧରଙ୍କଠାରୁ ମୁକୁନ୍ଦ ଦେବଙ୍କ ପର୍ଯ୍ୟନ୍ତ ଓଡ଼ିଶା ଭାତୃମିତ୍ର ବିବାଦରେ ଲିପ୍ତ ଥିଲା । ତେଣୁ ଆଫଗାନ ଓ ମୋଗଲମାନଙ୍କ ଆକ୍ରମଣ ପ୍ରତିହତ କରିବା ସମ୍ଭବ ନ ଥିଲା ଏବଂ ସମସ୍ତ ପ୍ରତିକୂଳତାକୁ ନେଇ ଓଡ଼ିଶାବାସୀ ବଞ୍ଚିଲେ । ଆଫଗାନ ଏବଂ ମୋଗଲଙ୍କ ପରେ ମରାଠାମାନଙ୍କ ଶାସନରେ ଲୁଣ୍ଠନ, ନରହତ୍ୟା, ପାଶବିକତା ଲାଗି ରହିଥିଲା ଏବଂ ଅରାଜକତା ପ୍ରାୟ ପରିସ୍ଥିତି ରହିଥିଲା । ଏହା ସତ୍ତ୍ୱେ ପନ୍ଦରଶହ ଶତାବ୍ଦୀରୁ ଊନବିଂଶ ଶତାବ୍ଦୀ ପ୍ରଥମ ଭାଗ ପର୍ଯ୍ୟନ୍ତ ପ୍ରଥମ ଭାଗ ଶାରଳା ଦାସ, ଜଗନ୍ନାଥ ଦାସ, ବଳରାମ ଦାସ, ଯଶୋବନ୍ତ, ଅନନ୍ତ ପ୍ରଭୃତି ପଞ୍ଚସଖା ଏବଂ ପରବର୍ତ୍ତୀକାଳର ଉପେନ୍ଦ୍ର, ଅଭିମନ୍ୟୁ, ଦୀନକୃଷ୍ଣ ଓଡ଼ିଆ ଭାଷା ସାହିତ୍ୟର ବିକାଶ ପାଇଁ ପ୍ରସିଦ୍ଧ ଥିଲେ। ଚତୁର୍ଦ୍ଦିଗରେ ଅରାଜକତା, ଲୁଣ୍ଠନ, ଅନ୍ୟାୟ ଓ ଅତ୍ୟାଚାର ଏବଂ ଆଞ୍ଚଳିକ ରାଜତ୍ୱ ମଧ୍ୟରେ ଲାଗି ରହିଥିବା ସ୍ଥାନୀୟ ଯୁଦ୍ଧ ଏବଂ ଏହାର ପରିଣାମରୁ ଜନଜୀବନ ଛିନ୍ନଭିନ୍ନ ହୋଇଥିବା ବେଳେ ଓଡ଼ିଆ ଭାଷାସାହିତ୍ୟ ଓ କଳାର ଅଭ୍ୟୁଦୟ ଘଟିବା ଏକ ବିଲକ୍ଷଣ ବିଷୟ । ଏହା ହିଁ ବୋଧହୁଏ ଓଡ଼ିଆ ପ୍ରାଣଶକ୍ତିର ମୌଳିକତା ।

ଇଂରେଜମାନେ ଖୋର୍ଦ୍ଧା ଅଧିକାର କଲେ ୧୮୦୩ରେ । ପଶ୍ଚିମାଞ୍ଚଳରେ ବୀର ସୁରେନ୍ଦ୍ର ସାଏ, ଉପକୂଳ ଅଞ୍ଚଳରେ ଓ ଅନ୍ୟାନ୍ୟ ସ୍ଥାନରେ ଘଟିଥିବା ସ୍ଥାନୀୟ ପ୍ରତିରୋଧ ଯୋଗୁ ଇଂରେଜମାନେ ଅନେକ

ପ୍ରତିବନ୍ଧକର ସମ୍ମୁଖୀନ ହୋଇଥିଲେ । କନିକା ଓ କୁଜଙ୍ଗ ଅଞ୍ଚଳରେ ପ୍ରଜାମେଳି, ଖୋରଧା ବିଦ୍ରୋହର ଦ୍ୱିତୀୟ ପର୍ଯ୍ୟାୟ ଓ ପାଇକ ବିଦ୍ରୋହ (୧୮୧୭), ଘୁମୁସର ବିଦ୍ରୋହ ଏବଂ ଅନୁଗୁଳ ରାଜାଙ୍କ କ୍ରୋଧ ଦମନ କରିବା ପରେ ଇଂରେଜମାନଙ୍କୁ ସାମନା କରିବାକୁ ପଡ଼ିଲା ସମ୍ବଲପୁରରେ ବୀର ସୁରେନ୍ଦ୍ର ସାଏଙ୍କ ବିଦ୍ରୋହ । ତାଙ୍କ ପରେ ମୟୂରଭଞ୍ଜର ଆଦିବାସୀ ବିଦ୍ରୋହ, ୧୮୫୭ ସିପାହୀ ବିଦ୍ରୋହର ଓଡ଼ିଶା ଉପରେ ପ୍ରଭାବ, ବାମନଘାଟୀ ବିଦ୍ରୋହ-୧୮୬୬, କେନ୍ଦୁଝର ରତନାମେଳି, ଦ୍ୱିତୀୟ ଜନଜାତି ବିଦ୍ରୋହ (ଧରଣୀ ମେଳି) ୧୮୯୧-୯୩, ରଣପୁର ବିଦ୍ରୋହ, ବାମଣ୍ଡା, ପାଟନା ଓ କଳାହାଣ୍ଡି ରାଜ୍ୟର ପ୍ରଜାମେଳି ଇଂରେଜମାନଙ୍କୁ ଶାନ୍ତିରେ ବସିବାକୁ ଦେଇ ନଥିଲା । ଏସବୁ ସ୍ଥାନୀୟ ବିଦ୍ରୋହରୁ ଏଇ ସଂକେତ ମିଳୁଛି ଯେ ଓଡ଼ିଆ ପ୍ରାଣରେ ଦୀର୍ଘକାଳ ଧରି ଅସନ୍ତୋଷ ଓ ଅନ୍ତର୍ଦାହର ବହ୍ନି ଜଳୁଥିଲା ଏବଂ ଇଂରେଜ ଶାସନ ସମୟରେ ସେସବୁ ପ୍ରତିରୋଧର ରୂପ ନେଲା । ସେତେବେଳେ ଓଡ଼ିଶାକୁ ଶାସନ କରୁଥିବା କୌଣସି ରାଜଶକ୍ତି ନ ଥିବାରୁ ଏବଂ ଇଂରେଜମାନଙ୍କ ଓଡ଼ିଶା ଅଧିକାର ପରେ ଏସବୁ ସ୍ଥାନୀୟ ବିଦ୍ରୋହର ସାମନା କରିବାପାଇଁ ପଡ଼ିଥିବାରୁ ଓଡ଼ିଶାର ଜନଜୀବନ ଅନିଶ୍ଚିତତା, ଯନ୍ତ୍ରଣା, ଶାସନର ଅସହଯୋଗରେ ନିପୀଡ଼ିତ ହୋଇଥିଲା । ଓଡ଼ିଆମାନଙ୍କର ପ୍ରତିରୋଧ ଯୋଗୁ ଇଂରେଜଶାସନ ବିଳମ୍ବରେ ଶକ୍ତିଶାଳୀ ହେଲା ଏବଂ ଏହି କାରଣରୁ ଇଂରେଜୀ ଶିକ୍ଷାର ପ୍ରସାର ମଧ୍ୟ ବିଳମ୍ବିତ ହୋଇଥିଲା ।

ଠିକ୍ ଏଇ ସମୟରେ ନ'ଅଙ୍କ ଦୁର୍ଭିକ୍ଷ ୧୮୬୬ ଓଡ଼ିଶାର ଭାଗ୍ୟ ବଦଳାଇ ଦେଲା । ଏପରି ପ୍ରଳୟଙ୍କରୀ ବିଭୀଷିକା ଅତୀତରେ ଦେଖା ନ ଥିଲା । କ୍ଷୁଧାତୃଷାର ଦାଉ ସମ୍ଭାଳି ନ ପାରି ଦଶ ଲକ୍ଷ ଲୋକ ପ୍ରାଣ ହରାଇଥିଲେ । ଅନେକଙ୍କର ସବୁଦିନ ପାଇଁ ସାହାଭରସା ଉଜୁଡ଼ିଗଲା । ଏଇ ଦୁର୍ଭିକ୍ଷ ଅନାବୃଷ୍ଟି ଯୋଗୁ ହେଲା; କିନ୍ତୁ ଦୁର୍ଭିକ୍ଷର ମୁକାବିଲା କରିବା ପାଇଁ ଅସଂଗଠିତ ଇଂରେଜଶାସନ ସମର୍ଥ ନ ଥିଲା ; କିନ୍ତୁ ଏଇ ଧ୍ୱଂସାବଶେଷ ମଧ୍ୟରୁ ଜନ୍ମ ନେଲା ନୂତନ ଆଧୁନିକ ଓଡ଼ିଶାର ଆତ୍ମାପୁରୁଷ । ଇଂରେଜ ସରକାର ନିଜର ଅକ୍ଷମତା ବୁଝି ପାରି ନଅଙ୍କ ଦୁର୍ଭିକ୍ଷ ପରବର୍ତ୍ତୀ ସମୟରେ ନିର୍ମାଣ କଲେ ରେଳପଥ, କେନାଲ୍, ଆନିକଟ । ଶିକ୍ଷାର ପ୍ରସାର ପାଇଁ ବିଦ୍ୟାଳୟ ସ୍ଥାପିତ ହେଲା । ଇଂରାଜୀ ଶିକ୍ଷାର ପ୍ରସାର ପାଇଁ ବ୍ୟବସ୍ଥା ହେଲା ଏବଂ ବାଳିକା ବିଦ୍ୟାଳୟ ଖୋଲାଗଲା ମହିଳା ଶିକ୍ଷାର ପ୍ରସାର ପାଇଁ । ଏଇ ମାର୍ଗରେ ଆସି ପହଞ୍ଚିଲେ ଖ୍ରୀଷ୍ଟିଆନ୍ ଧର୍ମପ୍ରଚାର ଓ ପ୍ରସାର ପାଇଁ ପାଦ୍ରିମାନେ । ୧୮୬୮ରେ ରେଭେନ୍‌ସା କଲେଜ ସ୍ଥାପିତ ହେଲା ଏବଂ ସମ୍ବାଦପତ୍ର ପ୍ରକାଶନ ଆରମ୍ଭ ହେଲା ଏବଂ ବୌଦ୍ଧିକ ଚିନ୍ତାଧାରାରେ ନବୀନ ଓଡ଼ିଶା ଗଠନ ପାଇଁ ଆଶାର ସଞ୍ଚାର ହେଲା ।

**ଉପସଂହାର :** ୧୮୦୩ରେ ବ୍ରିଟିଶ ସରକାର ଓଡ଼ିଶା ଦଖଲ କଲେ । ଇଂରେଜ ଶାସନରେ ଅନେକ ଓଡ଼ିଆଭାଷୀ ଅଞ୍ଚଳକୁ ବଙ୍ଗଳା, ମାନ୍ଦ୍ରାଜ ଓ ମଧ୍ୟପ୍ରଦେଶ ପ୍ରେସିଡେନ୍‌ସିରେ ମିଶାଇ ଦିଆଗଲା । ଉପକୂଳ ଓ ସମ୍ବଲପୁର ଅଞ୍ଚଳକୁ ନେଇ ଗଠିତ ହେଲା ଓଡ଼ିଶା । ଓଡ଼ିଆ ଭାଷା ସ୍ୱତନ୍ତ୍ର ଭାଷା ନୁହେଁ ବୋଲି କେତେକ ବଙ୍ଗୀୟ ବୁଦ୍ଧିଜୀବୀ ଆନ୍ଦୋଳନ ଆରମ୍ଭ କଲେ । କଲେକ୍ଟର ବୀମ୍‌ସ ସାହେବ ଓଡ଼ିଆ ଭାଷାର ସ୍ୱତନ୍ତ୍ରତା ପ୍ରମାଣ କଲେ ଏବଂ ଓଡ଼ିଶାରେ ଓଡ଼ିଆ ଭାଷା ଚଳିବ ବୋଲି ନିଷ୍ପତ୍ତି ହେଲା । ସୂର୍ଯ୍ୟାସ୍ତ ଆଇନ

ବଳରେ ଉପକୂଳ ଓଡ଼ିଶାର ଜମିଦାରୀସବୁ ବିକ୍ରି ହୋଇଗଲା ଶାଗମାଛ ମୂଲ୍ୟରେ । ପ୍ରତିବାଦ ଓ ପ୍ରତିରୋଧ କରିବାକୁ କେହି ନଥିଲେ ; କିନ୍ତୁ ଏହି ସଙ୍କଟରୁ ଭାଷା ଓ ସାହିତ୍ୟ ଏବଂ ଓଡ଼ିଆ ସମାଜକୁ ରକ୍ଷାକଲେ ଗଙ୍ଗାଧର, ରାଧାନାଥ ରାୟ, ଫକୀରମୋହନ, ମଧୁସୂଦନ ଦାସ, ପ୍ୟାରୀମୋହନ ଆଚାର୍ଯ୍ୟ ପ୍ରମୁଖ ବୁଦ୍ଧିଜୀବୀ ଏବଂ ବୀମ୍ସ ସାହେବଙ୍କ ପରି ଓଡ଼ିଆ ହିତୈଷୀମାନେ । ଏହାପରେ ଶହେବର୍ଷ ଲାଗିଲା ଓଡ଼ିଆମାନଙ୍କୁ ସଂଗଠିତ ହେବାପାଇଁ । ଉତ୍କଳ ସମ୍ମିଳନୀ ଗଠିତ ହେଲା ଏବଂ ୧୯୦୩ରେ ରମ୍ଭା ଅଧିବେଶନରେ ଦାବି କରାଗଲା, ସମସ୍ତ ଓଡ଼ିଆ ଭାଷୀ ଅଞ୍ଚଳକୁ ନେଇ ପୂର୍ଣ୍ଣାଙ୍ଗ ଓଡ଼ିଶା ପ୍ରଦେଶ ଗଠନ କରିବା ପାଇଁ । ଦେଶ ମିଶ୍ରଣ ଆନ୍ଦୋଳନରେ ନେତୃତ୍ୱ ନେଇଥିଲେ ଉତ୍କଳ ଗୌରବ ମଧୁସୂଦନ ଦାସ, ଉତ୍କଳମଣି ଗୋପବନ୍ଧୁ ଦାସ, ମୟୁରଭଞ୍ଜର ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେବ, ପାରଳାଖେମୁଣ୍ଡିର ରାଜା କୃଷ୍ଣଚନ୍ଦ୍ର ଗଜପତି ଓ ଅନ୍ୟାନ୍ୟ ଅନେକ । ସେତେବେଳେ ଓଡ଼ିଆ ଭାଷାସାହିତ୍ୟ ଜଗତର ଉଜ୍ଜ୍ୱଳ ତାରକା ଗଙ୍ଗାଧର ମେହେର, ଫକୀରମୋହନ ସେନାପତି, ରାଧାନାଥ ରାୟ ଏବଂ ଅନ୍ୟାନ୍ୟ ମହାନ୍ ଦେଶସେବକ ଭାଷାପ୍ରେମୀମାନଙ୍କ ଆବିର୍ଭାବରୁ ଦେଶ ମିଶ୍ରଣ ପାଇଁ ସାହିତ୍ୟକୁ ମାଧ୍ୟମ କରାଯାଇଥିଲା ।

ଇଂରେଜ ଶାସନର ଅନ୍ତ ହେଲା ୧୯୪୭ ଅଗଷ୍ଟ ପନ୍ଦରରେ । ତା' ପୂର୍ବରୁ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ହୋଇଥିଲା ୧୯୩୬ ଏପ୍ରିଲ୍ ପହିଲାରେ । ଅନେକ ଓଡ଼ିଆଭାଷୀ ଅଞ୍ଚଳ ସବୁଦିନ ପାଇଁ ରହିଗଲେ ବଙ୍ଗଳା, ବିହାର, ମଧ୍ୟପ୍ରଦେଶ ଓ ଆନ୍ଧ୍ରରେ । ଓଡ଼ିଶା ହେଲା ଭାଷାଭିତ୍ତିରେ ଗଠନ କରିଥିବା ପ୍ରଥମ ରାଜ୍ୟ । ୧୯୫୪ରେ ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ଥିବା ବେଳେ ଓଡ଼ିଆ ଭାଷା ସରକାରୀ ଭାଷା ଭାବେ ସ୍ୱୀକୃତି ପାଇଲା ଏବଂ ଶାସନ କାର୍ଯ୍ୟରେ ଏହି ଭାଷା ବ୍ୟବହାର କରିବା ପାଇଁ ବ୍ୟବସ୍ଥା ହେଲା ; କିନ୍ତୁ ଇଂରାଜୀ ଭାଷା ଗାଦି ମାଡ଼ି ବସିଥିଲା ସେତେବେଳକୁ । ଇଂରାଜୀ ମୋହ ନ ତୁଟିବାରୁ ଏ ପର୍ଯ୍ୟନ୍ତ ଇଂରାଜୀ ଭାଷାରେ ହିଁ ରାଜକାର୍ଯ୍ୟ ଚାଲୁଛି ।

୧୯୮୫ ଓ ୧୯୯୫ରେ ସରକାର ଶାସନ କାର୍ଯ୍ୟରେ ଓଡ଼ିଆ ଭାଷାର ପ୍ରଚଳନ ପାଇଁ ଉଦ୍ୟମ କରିଥିଲେ ; କିନ୍ତୁ ତାହା ଫଳବତୀ ହେଲାନାହିଁ । କପିଳେନ୍ଦ୍ରଦେବ ୧୪୫୦ ବେଳକୁ ଓଡ଼ିଆ ଭାଷାକୁ ରାଜଭାଷା ଘୋଷଣା କରିଥିଲେ ଏବଂ ରାଜକାର୍ଯ୍ୟରେ ଓଡ଼ିଆ ଭାଷା ବ୍ୟବହାର କରିବା ପାଇଁ ଆଦେଶ ଦେଇଥିଲେ; କିନ୍ତୁ ସାଢ଼େ ପାଞ୍ଚ ଶହ ବର୍ଷ ପରେ ବି ଓଡ଼ିଆ ରାଜଭାଷା ହେଲା ନାହିଁ । ଏହାଏ ଜାତିର ବଡ଼ ପରାଜୟ । ଓଡ଼ିଆ ଭାଷା ସାହିତ୍ୟ, ସଂସ୍କୃତି, କଳା, ଭାସ୍କର୍ଯ୍ୟର ମହିମା ପାଇଁ ବର୍ତ୍ତମାନର ଓଡ଼ିଶାବାସୀ ଗର୍ବ ଓ ଗୌରବ ଅନୁଭବ କରନ୍ତି ନାହିଁ । ତେଣୁ ଅସ୍ମିତା ନାହିଁ, ଦାସତ୍ୱ ଅସ୍ଥିମଜ୍ଜାଗତ ହୋଇଯାଇଛି । ଏକବିଂଶ ଶତାବ୍ଦୀରେ ମୃତପ୍ରାୟ ଭାଷାମାନଙ୍କର ପୁନରୁଦ୍ଧାର କରି କେତେକ ଜନଜାତିର ଆତ୍ମପରିଚୟ ଆବିଷ୍କାର କରିବା ପାଇଁ ଜାତିସଂଘ ପକ୍ଷରୁ ଉଦ୍ୟମ ହେଉଥିବା ବେଳେ ଓଡ଼ିଆ ପରି ଏକ ପ୍ରାଚୀନ ଓ ସମୃଦ୍ଧ ଭାଷାର କ୍ରମିକ ବିଲୟ ପାଇଁ ଓଡ଼ିଆମାନେ ଉଦ୍ୟମ ନ କରିବା ଜାତିପ୍ରତି ଚରମ ବିଶ୍ୱାସଘାତକତା ନୁହେଁ କି ?



# ରାଜନୀତି ଓ ସଂସ୍କୃତି

ଶ୍ରୀ ହରପ୍ରସାଦ ଦାସ

*ଉପଯୁକ୍ତ ଭିତ୍ତିଭୂମି ବ୍ୟତିରେକେ କୌଣସି ବୀଜ ଅଙ୍କୁରିତ, ବର୍ଦ୍ଧିତ ଓ ପଲ୍ଲବିତ ହେବା ସହିତ ତା'ର ମନଲୋଭା ସବୁକିମା ତଥା ସୁଫଳ ଦାନ କରିବା ସମ୍ଭବ ନୁହେଁ। ସାହିତ୍ୟ ସମୁଦ୍ରରେ ଅବଗାହନ କରି ଜଣେ ସଫଳ ସ୍ରଷ୍ଟା ଯେଉଁ ଭିତ୍ତିଭୂମିର ଅଧିକାରୀ ହୋଇଥା'ନ୍ତି ଏବଂ ସ୍ରଷ୍ଟାର ମାନସିକତା ନେଇ ସୃଷ୍ଟି କରି ଚାଲିଲେ ତାହା ଯେପରି ଗ୍ରହଣୀୟ, ଶିକ୍ଷଣୀୟ, ଅନୁକରଣୀୟ ଓ ଉଦାହରଣୀୟ ହୋଇଯାଏ; ଉତ୍କଳ ଜନନୀଙ୍କର ଜଣେ ସୁପୁତ୍ର ଓଡ଼ିଶାର ଅନ୍ୟତମ ସାରସ୍ୱତ ସ୍ରଷ୍ଟା ଶ୍ରୀଯୁକ୍ତ ହରପ୍ରସାଦ ଦାସଙ୍କ ସୃଷ୍ଟ ସାହିତ୍ୟରାଜି ସାହିତିÿକ, ସାହିତ୍ୟସେବୀ, ସାହିତ୍ୟାନୁରାଗୀ ଓ ସାହିତ୍ୟପ୍ରେମୀମାନଙ୍କୁ ସେହିପରି ବିସ୍ମୟ ପ୍ରଦାନ୍ କରିଥାଏ। ଶ୍ରୀ ଦାସ ୨୦୦୮ 'ମୋ ଓଡ଼ିଶା' ସାରସ୍ୱତ ସଂକଳନରେ ଲେଖିଥିବା 'ସଭ୍ୟତାର ସଂକ୍ରମଣ ଶୀର୍ଷକ ପ୍ରବନ୍ଧଟି ଆମକୁ ଯଥେଷ୍ଟ ଗୌରବାନ୍ୱିତ କରିଛି। ୨୦୦୯ ସଂକଳନ ପାଇଁ ତାଙ୍କ ପ୍ରଦତ୍ତ "ରାଜନୀତି ଓ ସଂସ୍କୃତି" ପ୍ରବନ୍ଧଟି ଆମେ ଉପସ୍ଥାପନ କରୁଛୁ ଆପଣମାନଙ୍କ ପାଇଁ....*

କଳାବାଦୀ ଓ ଯଥାର୍ଥବାଦୀଙ୍କ ଭିତରେ ବିଂଶ ଶତାବ୍ଦୀର ତୃତୀୟ ଦଶକରୁ ଆରମ୍ଭ ହୋଇଥିଲା ସଂଘର୍ଷ ଯେ ଏ ଯାଏଁ ସରିନାହିଁ। ଏ ସଂଘର୍ଷର ନୂଆ ନୂଆ ପକ୍ଷ ଉନ୍ମୋଚିତ ହୋଇଚାଲିଛି, ଏଥିରେ ସନ୍ଦେହ ନାହିଁ। ପକ୍ଷଭୁକ୍ତିର ଆହ୍ୱାନ ଏବେ ବି ଶୁଭୁଚି, ଶିବିରଦ୍ୱାର ଏବେ ବି ଖୋଲା ଅଛି। ବିପକ୍ଷର ବହୁ ସୈନ୍ୟ ମୃତାହତ, ମୁହଁ ଅନ୍ଧାରରେ ତଥାପି ଯୁଦ୍ଧ ଚାଲିଚି। ୟୁରୋପ ଓ ଆମେରିକାରେ ଏ ଯୁଦ୍ଧ ସରିଯାଇଚି, କାରଣ ସେ ଦେଶମାନଙ୍କର ବ୍ୟକ୍ତିବାଦୀ ରାଜନୈତିକ ଆଦର୍ଶ ଓ ଅର୍ଥନୈତିକ ଖସଡ଼ାରେ ସମସ୍ତେ ଅପାଂକ୍ତେୟ ଅଥବା କେହି ନୁହନ୍ତି। ଏଇଟା ପୁଞ୍ଜିବାଦୀ ରଣକୌଶଳ ଯୁଦ୍ଧ ସମାପ୍ତି ପାଇଁ। ଓବାମା ରାଷ୍ଟ୍ରପତି ହେବା ପରେ ଆମେରିକାନ୍ ସମାଜର ଏକଦା ବର୍ଜିତ ଓ ସୀମାନ୍ତରିତ କୃଷ୍ଣକାୟ ଆଫ୍ରିକାନ୍-ଆମେରିକାନ୍ ଏବେ ସତ୍ତାର କେନ୍ଦ୍ରାଧୀପ, ଅନ୍ତତଃ ପ୍ରତୀକାତ୍ମକ ଭାବରେ। ୟୁରୋପରେ ସେଭଳି କୌଣସି ରାଜନୈତିକ ପ୍ରତୀକ ସ୍ଥାପିତ ହୋଇପାରିନାହିଁ। କାହିଁକି ? ଫ୍ରାନ୍ସର ରାଷ୍ଟ୍ରମୁଖ୍ୟ ସାର୍କୋଜିଙ୍କ ବ୍ୟକ୍ତିଗତ ଜୀବନକୁ ନେଇ ପ୍ରାୟ ପ୍ରତିଦିନ ଖବର ଗରମ, ତାକୁ ଲୋକେ ବଡ଼ ଆଗ୍ରହର ସହିତ ଚର୍ଚ୍ଚା ବି କରୁଚନ୍ତି; କିନ୍ତୁ ରାଷ୍ଟ୍ରମୁଖ୍ୟଙ୍କ ଅଭିରୁଚି ଯେ ରାଜନୈତିକ ସତ୍ତା ବିଚାରକୁ ପ୍ରଭାବିତ କରିପାରେ, ଏ ସନ୍ଦେହ ସେଠାକାର ଲୋକଙ୍କ ମନରେ ନାହିଁ। ମୋଟ୍ ଉପରେ କଥା ହେଲା ଯେ ଆମେରିକାନ୍ ପୁଞ୍ଜିବାଦ ଓ ୟୁରୋପୀୟ ପୁଞ୍ଜିବାଦୀ ଏ ଭିତରେ ଅନ୍ତତଃ ଓବାମା-ବିଜୟ ପରେ ଦୁଇଟି ଅଲଗା ଧାରାରେ

ଚାଲିବା ଆରମ୍ଭ କରିଛନ୍ତି । ଆମେରିକାରେ ତାଙ୍କର ପ୍ରାଚୀନ ସ୍ୱପ୍ନ ବଞ୍ଚିରହିଛି ବିବିଧ ଟେକ୍‌ନିକିମ୍ ବା ଲୋକଦେଖାଣିଆ ପ୍ରକାରରେ । ୟୁରୋପରେ ତାଙ୍କର ପ୍ରାଚୀନ ସ୍ୱପ୍ନ ବଞ୍ଚିରହିଛି ଅବସରଭୋଗୀ (ଲିକର୍ କ୍ଲାସ୍) ଗୋଷ୍ଠୀର ସତ୍ତା ଧାରଣରେ । ସେଠି ରାଜନେତାର ବ୍ୟକ୍ତିଗତ ଜୀବନ ଅଲକ୍ଷ୍ୟରେ ଗୋଟିଏ ରାଜନୈତିକ ଆଦର୍ଶର ପ୍ରତିଭୂ ହୋଇ ଠିଆ । ଆମେରିକାରେ ପୁଞ୍ଜିବାଦୀ ନୈତିକ ସଂକଟର ସମାଧାନ କରାଯାଇଛି ସମସ୍ତଙ୍କୁ ଏକ ପକ୍ଷଭୁକ୍ତ କରି, ୟୁରୋପରେ ତା'ର ସମାଧାନ କରାଯାଇଛି ବ୍ୟକ୍ତିର ବିଳାସକ୍ଷେତ୍ରକୁ ସମସ୍ତଙ୍କୁ ପ୍ରଲୁବ୍ଧ କରି । ଆଉ ପ୍ରକାରେ କହିଲେ ଆମେରିକାନ୍‌ଙ୍କର ଯଥାର୍ଥବାଦୀ ପୁଞ୍ଜିବାଦ ଓ ୟୁରୋପୀୟଙ୍କର କଳାବାଦୀ ପୁଞ୍ଜିବାଦ ମଧ୍ୟ ଦେଇ ସେଠାକାର ନାଗରିକ ନିଜ ନିଜର ଅଭୀଷ୍ଟ ପାଇଁ ସନ୍ତୁଷ୍ଟ । ସମସ୍ୟା ଆମର । ରାଜନୀତି ଏ ଯାଏଁ ଆମର ସ୍ୱାଭାବିକ ଚିନ୍ତନର ଅଂଶ ହୋଇନାହିଁ । ସ୍ୱାଧୀନତାର ମାତ୍ର ଷାଠିଏ ବର୍ଷରେ ଏ ଗୁଣ, ପ୍ରତିଷ୍ଠିତ ସାମାଜିକ ସଂସ୍କାରରେ ସୁରକ୍ଷା ବଳୟ ଭେଦକରି ବ୍ୟକ୍ତିଚେତନାର ଅଂଶ ହେବା ଅସମ୍ଭବ । ଏଥିପାଇଁ ଦୀର୍ଘକାଳର ସାମୂହିକ ଜାତୀୟ ଅନୁଭବ ଦରକାର । ଆମେରିକାନ୍ ଓ ମୁଖ୍ୟ ୟୁରୋପୀୟ ରାଷ୍ଟ୍ରମାନଙ୍କର ଚିନ୍ତନ ଓ ରାଜନୀତି ସେଇ ଗୋଟିଏ ସମାଜ ଦର୍ଶନର ଅଂଶ । ସେଇଥିଯୋଗୁ ସେମାନେ ଏତେ ବର୍ଷ ପରେ ଏବେ ମାନବିକ ଅସ୍ତିତ୍ୱ-ଚିନ୍ତନକୁ ରାଜନୀତିର ପରିଭାଷାରେ ବୁଝିବାର ଓ ବୁଝାଇବାର ପ୍ରୟାସ କରୁଚନ୍ତି, ତାଙ୍କ ଲୋକେ ତାଙ୍କୁ ସହଜରେ ବୁଝୁଚନ୍ତି । 'ସଂସ୍କୃତିର ରାଜନୀତି', 'ସମାଜର ରାଜନୀତି', 'ସଙ୍କଟର ରାଜନୀତି', 'ସମ୍ଭାବନାର ରାଜନୀତି' ଠାରୁ ଆରମ୍ଭ କରି 'ମୂଲ୍ୟର ରାଜନୀତି', 'ଆଦର୍ଶର ରାଜନୀତି', 'ନୀତିର ରାଜନୀତି' ଯାଏଁ କଥାଗଲାଣି । ଏହି ମର୍ମରେ ଜଣେ ପାଶ୍ଚାତ୍ୟ ଚିନ୍ତକ ତ ୟା'ବି କହିଦେଲେ ଯେ 'ସମସ୍ତ ସାହିତ୍ୟ ରାଜନୈତିକ ।'

ଆମେ ସେ ସ୍ଥିତିରେ ଅଛେଁ କି ? ପ୍ରକୃତରେ ଭାରତରେ ଆମେ ଗୋଟିଏ ତୁଳନାହୀନ ସ୍ଥିତିରେ ଅଛେ । ଆମର ହଜାର ହଜାର ବର୍ଷର ଚିନ୍ତନ ପରମ୍ପରା ଆଉ କାହା ସହିତ ତୁଳନୀୟ ନୁହେଁ । ଗ୍ରୀକ୍-ରୋମାନ୍ ପରମ୍ପରା ମୁଖ୍ୟତଃ ସଭ୍ୟତାର ବ୍ୟବସ୍ଥା ନିର୍ମାଣ ସଂପର୍କିତ ବୌଦ୍ଧିକ ଚିନ୍ତନ ଓ କଳ୍ପନାର ଧରାବତରଣ ପାଇଁ ନିୟୋଜିତ ଥିଲା । ପାଶ୍ଚାତ୍ୟ ଗଣତନ୍ତ୍ରର ଆଦ୍ୟ ସ୍ଫୁରଣ ସେହିଠାରେ । ଚୀନ୍‌ର ବୌଦ୍ଧିକ ପରମ୍ପରା ଅମୂର୍ତ୍ତ ବୌଦ୍ଧିକ ଚିନ୍ତନର । ଭାରତୀୟ ପରମ୍ପରା ରହସ୍ୟର । ବସ୍ତୁ, ଯୁକ୍ତି ଓ ରହସ୍ୟ କେବଳ ଗୋଟିଏ ବିଶାଳ ପ୍ରଶ୍ନାକୁଳ ମୁହୂର୍ତ୍ତରେ ହିଁ ଏକାଠି ହୁଅନ୍ତି, ନଚେତ୍ ନାହିଁ । ବସ୍ତୁ ନିର୍ମାଣରୁ ପୁଞ୍ଜି ଓ ପୁଞ୍ଜିର ବିନିଯୋଗରୁ ଗଣତନ୍ତ୍ର, ପୁଣି ଗଣତନ୍ତ୍ରରୁ ରାଜନୈତିକ ଚିନ୍ତନର ଲୋକଧାରା! ଚୀନ ଓ ଭାରତ ଏ କ୍ରମବିକାଶ ଭୋଗିନାହାନ୍ତି । ଆମର ଗଣତନ୍ତ୍ର ଗୋଟିଏ ଉତ୍ତର-ଔପନିବେଶକ, ରାଜନୈତିକ ଭାବ-ପ୍ରତିମା । ଧନତନ୍ତ୍ରରେ ଗଣତନ୍ତ୍ର ଯାହା, ଅଭାବ ତନ୍ତ୍ରରେ ଗଣତନ୍ତ୍ର ତାହା ନୁହେଁ । ଅଭାବତନ୍ତ୍ର କହୁଚି ଏଇଥିପାଇଁ ଯେ ପାଶ୍ଚାତ୍ୟ ମାନଦଣ୍ଡରେ ସଭ୍ୟ ହେବାପାଇଁ ସବୁବେଳେ ଆମର ଉପାଦାନର ଅଭାବ ରହୁଚି, ସେଇ ଅଭାବ ହିଁ ରାଜନୈତିକ ବିଚାରଧାରା ଓ କର୍ମକାଣ୍ଡ ପରିଚାଳନା କରୁଚି । ଗୋଟିଏ କ୍ଷେତ୍ରରେ ଅଭାବ ମେଣ୍ଟିଲା ବେଳକୁ ଆଉ ଠାଏ ଅଭାବ ଫୁଟି ଦିଶିବା ଦୈନ୍ୟଗ୍ରସ୍ତ ଜନଜୀବନରେ ଯାହା, ରାଷ୍ଟ୍ରୀୟ ରାଜନୈତିକ ଜୀବନରେ ମଧ୍ୟ ତାହା । ଅନ୍ୟ ଭାବରେ କହିଲେ, ଭାରତକୁ ଏକ ପୁଞ୍ଜିବାଦୀ ଗଣତନ୍ତ୍ର

ଭାବେ ଗଢ଼ି ତୋଳିବାର ଯୋଜନା ଅଭାବ-ପୀଡ଼ିତ ହୋଇ କ୍ଷତିଗ୍ରସ୍ତ ହୋଇପାରେ । ତେବେ କ'ଣ ସମାଜବାଦୀ ଗଣତନ୍ତ୍ର ଅଧିକ ଗ୍ରାହ୍ୟ ? ସମାଜବାଦୀ ଗଣତନ୍ତ୍ରର ଯେଉଁ ପ୍ରତିକୃତି ଚାରିଆଡ଼େ ଭାରତୀୟ ରାଜନୈତିକ ଚିନ୍ତନର ବିକାଶ ଘଟିଚି, ତା'ର ମୂଳପାଠଟି ମଧ୍ୟ ୟୁରୋପୀୟ । ସଂଘର୍ଷ ବା ଦ୍ୱନ୍ଦ୍ୱର ଯେଉଁ ରୂପକଟି ଆସି ଗୋଷ୍ଠୀଜୀବନ ବା କମ୍ୟୁନ୍‌ର ଅଧିକାରଶୂନ୍ୟ ପ୍ରଭୁତ୍ୱର କଥା କହି ବସିଲା , ସେଥିପାଇଁ ଭାରତୀୟ ଚିନ୍ତନଭୂମି ପ୍ରସ୍ତୁତ ଥିଲା କି ? ନଥିଲା, କାରଣ ସେଭଳି ପରିକଳ୍ପନା ଆମର ବୌଦ୍ଧିକ ବିଚାରଧାରା ଭିତରକୁ 'ଅଧିକାର-ଚିନ୍ତନ'ର ମାର୍ଗରେ ଆସି ନ ଥିଲା । ଆମର 'ଏକବିଶ୍ୱ', 'ଯୌଥଜୀବନ' ବା 'ଅଧିକାର- ଶୂନ୍ୟତା' ପରମାର୍ଥିକ, ଆର୍ଥିକ ନୁହେଁ । ସମାଜବାଦୀ ଗଣତନ୍ତ୍ର ବି ଗୋଟିଏ ଆଧୁନିକ ଉତ୍ତର-ଔପନିବେଶିକ ଭାବପ୍ରତିମା । କହିରଖେଁ ଯେ ଋଷୀୟ ବୁଦ୍ଧିଜୀବୀଙ୍କ କ୍ରାନ୍ତି-ଦର୍ଶନ, ଋଷୀୟ ବିପ୍ଳବ ପରେ ଯେଭଳି ଭାବରେ ଅସ୍ତି ଓ ନେତିର ଦ୍ୱୈତକୁ ନେଇ ଗୋଟିଏ 'ଆଦର୍ଶ'ରେ ପରିଣତ କରାଗଲା, ତହିଁରେ ସ୍ଥାନୀୟ ଲୋକ-ଉପାଦାନ ପ୍ରାୟ ନ ଥିଲା । ଅନ୍ୟଭାବରେ କହିଲେ, ପୁଞ୍ଜିବାଦ ନ ଥିଲେ ସମାଜବାଦର ମୂଳଯୁକ୍ତି ଅଚଳ । ଦ୍ୱନ୍ଦ୍ୱ-ରହିତ ସମାଜବାଦର କଳ୍ପନା ମୁଁ କରି ପାରୁନାହିଁ ।

ତେବେ କ'ଣ ଦି'ଆଡୁ ଆମର ଅଭାବ ? ଏ ଅଭାବ ଆମେ କିଭଳି ପୂରା କରିବା ? ନା ବିକଳ୍ପ ସନ୍ଧାନରେ ବାହାରିବା ? ବିକଳ୍ପ କ'ଣ ?

ହଁ, ଦି'ଆଡୁ ଆମର ଅଭାବ, କାରଣ ଆମର କାଳଚକ୍ର ଓ ସଭ୍ୟତାର ସମ୍ବିଧାନ ଅଲଗା ; କିନ୍ତୁ ସ୍ୱୀକାର କରିବାକୁ ହେବ ଯେ ଭାରତୀୟ ଭୂଖଣ୍ଡର ରାଜନୈତିକ ଏକୀକରଣ ପ୍ରକ୍ରିୟାରେ ଯେଉଁ ବ୍ୟବସ୍ଥା ଆମେ ଗ୍ରହଣ କରିଛେ— ସେଥିରେ ଏମିତି କିଛି ବୈର-ତତ୍ତ୍ୱ ନାହିଁ, ଯାହା ଆମ ସଭ୍ୟତାର ସମ୍ବିଧାନର ବିରୋଧ କରେ । ବରଂ କୁହାଯାଇପାରେ, ଆମର ପ୍ରକୃତ ଅଭାବ ପୂରା ହେବ ସେତିକିବେଳେ, ଯେତେବେଳେ ଆମର ଆଧୁନିକୀକରଣ ଆମର ସଭ୍ୟତାର ମୌଳିକ ଅଧିକାର ଅନୁଯାୟୀ ନିୟନ୍ତ୍ରିତ ହେବ ବା ପରିକଳ୍ପିତ ହେବ । ଆମ ସଭ୍ୟତାର ଅଲିଖିତ ସମ୍ବିଧାନରେ ମୌଳିକ ଅଧିକାରଗୁଡ଼ିକ କ'ଣ ? ସେ ତିନୋଟି ଅଧିକାର- ମନ, ବୁଦ୍ଧି ଓ ପ୍ରକୃତି ।

ଏ ତିନୋଟି ଶବ୍ଦ ସମକାଳୀନ ସଭ୍ୟତାର ଭୂମିରେ ରାଜନୈତିକ ପରିଭାଷା ଗ୍ରହଣ କରି ହୋଇଯିବେ ଯଥାକ୍ରମେ —ହୋଇଯିବେ ବିବେକ, ବିଚାର ଓ କ୍ରିୟା । ଆମର ସମକାଳୀନ ରାଜନୀତି ଏ ତିନି ମୂଳ ଅଧିକାରର ଦାବି ସ୍ୱୀକାର କରେନାହିଁ, କାରଣ ସମକାଳୀନ ରାଜନୀତିର ମୂଳ ପାଶ୍ଚାତ୍ୟ ସଭ୍ୟତାର ଅଲିଖିତ ସମ୍ବିଧାନର ଅନ୍ୟ ତିନୋଟି ମୌଳିକ ଅଧିକାରକୁ ନେଇ ସଂଗଠିତ । ସେ ତିନୋଟି ଅଧିକାର ହେଲେ —ଶକ୍ତି,ସୁଯୋଗ ଓ ସଂପନ୍ନତା ।

ବିବେକ-ବିଚାର-କ୍ରିୟାବିବର୍ଜିତ ଶକ୍ତି-ସୁଯୋଗ-ସଂପନ୍ନତାର ସନ୍ଧାନ ରାଜନୀତିକୁ କେବେହେଲେ ଭାରତୀୟଙ୍କ ସ୍ୱାଭାବିକ ଚିନ୍ତନର ଅଂଶ କରିପାରିବ ନାହିଁ । ଏଣେ ଦୀର୍ଘଦିନର ଅପେକ୍ଷା ପାଇଁ ଆମର ଧୈର୍ଯ୍ୟ ନାହିଁ । ଅଭାବୀ-ଗଣତନ୍ତ୍ରକୁ ସ୍ୱଭାବୀ-ଗଣତନ୍ତ୍ରରେ ପରିଣତ କରିବାର ଏକମାତ୍ର ଦ୍ରୁତଗାମୀ ଓ

ଦୂରଗାମୀ ଉପାୟ ହେଉଛି ସାଂସ୍କୃତିକ ମଧ୍ୟସ୍ଥତାର ବିକାଶ । ଶିଳ୍ପ ପାଇଁ ଏବର ଭିତ୍ତିଭୂମି ବିକାଶ ଭଳି ଗଣତନ୍ତ୍ରର ଭିତ୍ତିଭୂମି ବିକାଶ ପାଇଁ ଏ ସାଂସ୍କୃତିକ ମଧ୍ୟସ୍ଥତା ଜରୁରୀ ।

ସାଂସ୍କୃତିକ ମଧ୍ୟସ୍ଥତା ଭାରତୀୟ ଚିନ୍ତନରେ ବିବେକ (ମନ), ବିଚାର (ବୁଦ୍ଧି) ଓ କ୍ରିୟାର ପ୍ରକୃତିକୁ ଲୋକଚଳଣିରେ ପରିଣତ କରିଥିଲା । ସେତେବେଳେ ଏ ସାଂସ୍କୃତିକ ମଧ୍ୟସ୍ଥତା କରିଥିଲେ ସମାଜରେ ସନ୍ଥ, ପଣ୍ଡିତ, ପ୍ରବୀଣମାନେ । ତାଙ୍କ ଭିତରେ ଥିଲେ କବି, କଥାବାଚକ, ବ୍ୟାଖ୍ୟାକାର, ପୁରାଣପଣ୍ଡା, ଅବଧାନ, ପୂଜାପଣ୍ଡା, ଜ୍ୟୋତିଷ, କୁଳପୁରୁଷ । ଯାହାକୁ ଆମ ଏବର ସୁଧୀ ସମାଜ ବା 'ସିଭିଲ୍ ସୋସାଇଟି' କହୁଚୁ । ସେଥିରେ ବି ଏ ଜାତୀୟ ବ୍ୟକ୍ତିମାନେ ଅଛନ୍ତି; କିନ୍ତୁ ସେମାନଙ୍କ ମଧ୍ୟସ୍ଥତା ବିଫଳ ହୋଇଛି, କାରଣ ସେମାନେ ଅଣ-ରାଜନୈତିକ ବୋଲି କହିହେବା ସତ୍ତ୍ୱେ ତାଙ୍କର ପ୍ରକୃତ କାର୍ଯ୍ୟ ମୁଷ୍ଟିମେୟ କେତେକ ମହତ୍ତ୍ୱାକାଂକ୍ଷାପ୍ରବଣ ନେତାଙ୍କ ହାତରେ ରହୁଚି । ସେମାନେ ପ୍ରାଚୀରପତ୍ର ଲେଖୁଚନ୍ତି, ଅନ୍ୟମାନେ ତହିଁରେ ଦସ୍ତଖତ ମାତ୍ର କରୁଚନ୍ତି । ସାଂସ୍କୃତିକ ମଧ୍ୟସ୍ଥ ଓ ବୁଦ୍ଧିଜୀବୀ (ଇଂଟେଲିଜେନ୍‌ସିଆ) ଭିତରେ ପ୍ରଭେଦ ହେଉଚି ଯେ ସାଂସ୍କୃତିକ ମଧ୍ୟସ୍ଥମାନେ ପକ୍ଷଭୁକ୍ତ ହୁଅନ୍ତି ନାହିଁ ବା ହସ୍ତକ୍ଷେପ କରନ୍ତି ନାହିଁ । ବୁଦ୍ଧିଜୀବୀମାନେ ପକ୍ଷଭୁକ୍ତ ହୁଅନ୍ତି, ହସ୍ତକ୍ଷେପ କରନ୍ତି ଓ ବେଳ ଆସିଲେ ସତ୍ତାର ରାଜନୀତିରେ ପ୍ରବେଶ କରନ୍ତି । ଆମର ବୁଦ୍ଧିଜୀବୀ ନାହାନ୍ତି । ଯଦି କାହାକୁ ବୁଦ୍ଧିଜୀବୀ ବୋଲି କହିବାକୁ ପଡ଼େ, ତେବେ ଶିକ୍ଷିତ ରାଜନୈତିକ କର୍ମୀ ଓ ନେତାମାନେ ସେହି ଶ୍ରେଣୀରେ ଆସିବେ; କିନ୍ତୁ ତାଙ୍କର ବି ଦଳୀୟ ରାଜନୀତିର ପୂର୍ବ ନିଯୋଜିତ ପୃଷ୍ଠପଟରେ କେତେଗୁଡ଼ିଏ ଅସହାୟତା ଅଛି । ସେମାନେ ସାଂସ୍କୃତିକ ମଧ୍ୟସ୍ଥତା କରିପାରିବେ ନାହିଁ । ସାଂସ୍କୃତିକ ମଧ୍ୟସ୍ଥତା କରିବେ ତୃଣମୂଳ ସ୍ତରରେ ଏଯାଏଁ କରପଟିଆ ହୋଇ ରହିଯାଇଥିବା ସାହିତ୍ୟିକ, ଚିନ୍ତନ, କଳାକାର ଓ ସାଂସ୍କୃତିକ ଅନୁଷ୍ଠାନମାନଙ୍କ ସହିତ ସଂପୃକ୍ତ କର୍ମୀମାନେ । ସାଂସ୍କୃତିକ ଅନୁଷ୍ଠାନମାନଙ୍କରେ ରାଜନୀତିର ଅନୁପ୍ରବେଶ ଏ ଅନୁଷ୍ଠାନମାନଙ୍କୁ ଲୋକକ୍ଷେତ୍ରରେ ସନ୍ଦେହାସ୍ପଦ କରିଚି ଓ ଫଳରେ ତାଙ୍କର ସାଂସ୍କୃତିକ ମଧ୍ୟସ୍ଥତା ବିପଦଗ୍ରସ୍ତ ହୋଇଯାଇଚି । ମୁଁ ଯେଉଁ ସାଂସ୍କୃତିକ ଅନୁଷ୍ଠାନମାନଙ୍କ କଥା କହୁଚି, ସେମାନେ ଏବେ ବି ପ୍ରଭାବ-ମୁକ୍ତ, କ୍ଷୁଦ୍ର, ସ୍ଥାନୀୟ ଓ ଜୀର୍ଣ୍ଣ ଅବସ୍ଥାରେ ଅଛନ୍ତି । ସେମାନଙ୍କୁ ସ୍ଥାନୀୟ ସମାଜ ଚାହିଁଲାମାତ୍ରେ ପୁଣି ଗଢ଼ି ଦେଇପାରେ ।

ମଧ୍ୟସ୍ଥତା କାହା କାହା ଭିତରେ ? ମଧ୍ୟସ୍ଥତା ରାଜନୀତି ଓ ଲୋକସଂସ୍କାର ଭିତରେ । କାହିଁକି କେଜାଣି ରାଜନୀତିଜ୍ଞମାନେ ବୁଝନ୍ତି ନାହିଁ ଯେ ଭାରତୀୟଙ୍କ ମନ, ବୁଦ୍ଧି ଓ ପ୍ରକୃତି ଗୋଟିଏ ବୃହତ୍ତର ସଂସ୍କାରର ଅଂଶ, ରାଜନୀତି ତା' ଭିତରେ ବିନା ମଧ୍ୟସ୍ଥତାରେ ପ୍ରବେଶ କରିପାରିବ ନାହିଁ । ସଂସ୍କୃତି ରାଜନୀତିଠାରୁ ବହୁଗୁଣରେ ଶକ୍ତିଶାଳୀ ଓ ଗୋଟିଏ ଦିଗରୁ ଭାବିଲେ ସଂସ୍କୃତି ହିଁ ସତ୍ତାରାଜନୀତିର ଏକମାତ୍ର ପ୍ରତିରୋଧ । ଏବେ ଆମେ ଆମର ଗଣତନ୍ତ୍ରର ବିକଳ୍ପ ନ ଖୋଜି, ସେହି ଗଣତନ୍ତ୍ରକୁ ଭାରତୀୟ ଲୋକସଂସ୍କାରର ଆଲୋକରେ ପୁନର୍ଭାସିତ କରିବାର ବେଳ ଆସିଚି । ଗୋଟିଏ ବହୁଜାତୀୟ, ବହୁଧର୍ମୀୟ, ବହୁସଂସ୍କାରୀ ଲୋକସଂପ୍ରଦାୟ ଭାରତୀୟଙ୍କ ଦୁର୍ଲଭ ପ୍ରାପ୍ତି । ଏ ଇତିହାସର ଦାନ । ଆଧୁନିକ ଭାରତର ସମ୍ବିଧାନରେ ଅଭୀଷ୍ଟ, କର୍ତ୍ତବ୍ୟ ଓ ଅଧିକାରକୁ ନେଇ ଯେଉଁ ନାଗରିକ ଜୀବନର କଳ୍ପନା କରାଯାଇଚି,

ତା'ର ମର୍ମ ଓ ଆବେଦନ ସାଂସ୍କୃତିକ ମଧ୍ୟସ୍ଥତା କରିଆରେ ହିଁ ଲୋକଚିନ୍ତନର କ୍ଷେତ୍ରରେ ପ୍ରବେଶ କରିପାରେ ।

ଗଣତନ୍ତ୍ରର ପରିଚାଳନା ପାଇଁ ରାଜନୀତି ଆବଶ୍ୟକ; କିନ୍ତୁ ଗଣତନ୍ତ୍ର ତ ରାଜନୀତି ନୁହେଁ ! ଗଣତନ୍ତ୍ର ପ୍ରକୃତରେ ଗୋଟିଏ ସଂସ୍କାର ବା ସଂସ୍କୃତି । ଏ ଦେଶର ଅସଂଖ୍ୟ ଲୋକ ଭୋଟ୍ ଦିଅନ୍ତି ନାହିଁ କାହିଁକି ? ଅଶିକ୍ଷା, ଦାରିଦ୍ର୍ୟ ଯା'ର କାରଣ ନୁହଁନ୍ତି । ମୂଳ କାରଣ, ସେମାନେ ଭାବନ୍ତି ଯେ ଭୋଟ୍ ଦେଇ କି ଲାଭ! ନିର୍ବାଚନରେ ଜୟଯୁକ୍ତ ହୋଇ ଯେ କୌଣସି ସରକାର ସତ୍ତା ବିନିଯୋଗ କରିବାର କ୍ରମରେ ଅନେକ ଭଲ କାମ ବି କରେ; କିନ୍ତୁ ସେ ଭଲକାମରେ ସ୍ଥାନୀୟ ପରିଣତି ନ ଦେଖିପାରି ଲୋକେ ଭାବନ୍ତି କିଛି ହେଉନାହିଁ । ଏ ଚିନ୍ତା ବ୍ୟାପକ । ଯାହା କିଛି ଭଲ ହେଉଚି, ତା'ର ଦୂରଗାମୀ ପ୍ରଭାବ ବିଷୟରେ ଲୋକଙ୍କୁ କିଏ କହିବ ? ଯେହେତୁ ଭଲ ବା ଖରାପ କାହାରି ପ୍ରଭାବ ବିଷୟରେ କେହି କାହାକୁ କହୁନାହାନ୍ତି, କଥା କେବଳ ନୂଆ ନୂଆ ପ୍ରତିଶ୍ରୁତି ରଚନାରେ ରହିଯାଉଚି । ଲୋକେ ସେ କଥା ବି ଜାଣୁଚନ୍ତି, ତାଙ୍କର ବୀତସ୍ପୃହତା ବା ସିନିସିଜମ୍ ଆହୁରି ବଢ଼ୁଛି । ଏ ବୀତସ୍ପୃହତା ସମାଜର ରାଜନୈତିକ ଜୀବନ ପାଇଁ ଘାତକ । ଯା'କୁ ବଦଳାଇବାକୁ ହେବ । ସେ କର୍ମ କରିବେ ସାଂସ୍କୃତିକ ମଧ୍ୟସ୍ଥମାନେ । କିପରି କରିବେ, ଚିନ୍ତା କରିବା ଲୋଡ଼ା ନାହିଁ । ଥରେ ସେମାନେ ନିଜର ଭୂମିକା ବିଷୟରେ ଅବଗତ ହେଲା ପରେ, ତାଙ୍କୁ ଉପାୟ ବତାଇବା ଲୋଡ଼ା ହେବନାହିଁ । କୌଣସି ସାଂସ୍କୃତିକ ନିର୍ମାଣରେ ଉପାୟ ଅଲଗା କରି ବତାଇ ଦିଆଯାଏନାହିଁ । ଭୂମିକା ହିଁ କାର୍ଯ୍ୟାନ୍ୱୟନର ଉପାୟ ।

ଗଣତନ୍ତ୍ରର କଳା ଓ ଯଥାର୍ଥ ଭିତରେ ଆମ ପାଇଁ କୌଣସି ବିଭେଦ ନାହିଁ । ୟୁରୋପର କଳାବାଦୀ ଗଣତନ୍ତ୍ର ଓ ଆମେରିକାର ଯଥାର୍ଥବାଦୀ ଗଣତନ୍ତ୍ର ଦୁଇଟିଯାକର ନିଷ୍କର୍ଷ ଭାରତୀୟ ଗଣତନ୍ତ୍ର ପାଇଁ ବର୍ଜ୍ୟ, କାରଣ ଧନତାନ୍ତ୍ରିକ ଗଣତନ୍ତ୍ରରେ କଳା ଓ ଯଥାର୍ଥ ଭିତରେ ଥିବା ପାର୍ଥକ୍ୟ ଗୋଟିଏ ସୁଚିନ୍ତିତ ନାଟକୀୟତା । ଭାରତୀୟ ଗଣତନ୍ତ୍ର ଗୋଟିଏ ସାଂସ୍କୃତିକ ଗଣତନ୍ତ୍ର । ସାଂସ୍କୃତିକ ମଧ୍ୟସ୍ଥତା ହିଁ ଯା'କୁ ପୂର୍ଣ୍ଣରୂପ ଦେବ । ସଂସ୍କୃତି ହିଁ ହଜାର ହଜାର ବର୍ଷ ଧରି ଭାରତୀୟଙ୍କୁ 'ବସ୍ତୁର ଅଭାବ' ସହିବାର ଶକ୍ତି ଦେଇଚି । ଜାତି, ଧର୍ମ ନିର୍ବିଶେଷରେ ବହୁଳତାବାଦୀ ଗଣତନ୍ତ୍ରରେ ବହୁମୁଖୀ ସାଂସ୍କୃତିକ ମଧ୍ୟସ୍ଥତା ସ୍ଥାନୀୟ ଆବଶ୍ୟକତାରୁ ଉପୁଜିବ, ଏଥିପାଇଁ କାହାର କିଛି କରିବାର ନାହିଁ । ଯେଉଁମାନେ ଭବିଷ୍ୟତର ସାଂସ୍କୃତିକ ମଧ୍ୟସ୍ଥ, ସେମାନେ ଏତିକି ଅନୁଭବ କଲେ ଯଥେଷ୍ଟ ହେବ ଯେ ଗଣତନ୍ତ୍ରର ସଫଳତା ପାଇଁ ସେମାନଙ୍କ ମଧ୍ୟସ୍ଥତା ଜରୁରୀ ।



# ସଫଳତା ପଥେ ପଶ୍ଚିମ ଓଡ଼ିଶା ବିକାଶ ପରିଷଦ

❖ ପଶ୍ଚିମ ଓଡ଼ିଶା ଜିଲ୍ଲାଗୁଡ଼ିକର ବିକାଶ ଦିଗରେ ଆଞ୍ଚଳିକ ବୈଷମ୍ୟ ଦୂର କରିବା ପାଇଁ ରାଜ୍ୟ ସରକାର ଚିରାଚରିତ ଅନୁଦାନ ରାଶି ୫୦ କୋଟି ଟଙ୍କା ସାଙ୍ଗକୁ ସ୍ୱତନ୍ତ୍ର ଅନୁଦାନ ରାଶି ଭାବେ ଅତିରିକ୍ତ ୫୦ କୋଟି ଟଙ୍କାର ଆର୍ଥିକ ଅନୁଦାନ ୨୦୦୮-୦୯ ଆର୍ଥିକ ବର୍ଷରୁ ଯୋଗାଉଛନ୍ତି । ❖ ପରିଷଦ ଗଠନ ହେଲା ଦିନଠୁ ଆଜିଯାଏ ସର୍ବମୋଟ ୨୦୮୪ ଗୋଟି ନଳକୂପ ଖନନ ତଥା ପାନୀୟ ଜଳ ଯୋଗାଣ ବାବଦକୁ ୧୫.୪୦ କୋଟି ଟଙ୍କାର ଆର୍ଥିକ ସାହାଯ୍ୟ ଯୋଗାଇ ଦିଆଯାଇଛି । ❖ ରାସ୍ତାଘାଟ ନିର୍ମାଣ ଓ ଉନ୍ନତି ସକାଶେ ୧୫୪୨ ଗୋଟି ପ୍ରକଳ୍ପ ପାଇଁ ବିଭିନ୍ନ ସରକାରୀ ସଂସ୍ଥାକୁ ୧୫୫.୨୯ କୋଟି ଟଙ୍କା ଯୋଗାଇ ଦିଆଯାଇଛି । ❖ ନୂତନଗୃହ ନିର୍ମାଣ ଓ ପୁରୁଣାଗୃହର ମରାମତି କାର୍ଯ୍ୟ ପାଇଁ ମୋଟ ୧୬୯୯ ଗୋଟି ଶିକ୍ଷାନୁଷ୍ଠାନକୁ ୨୯.୩୧ କୋଟି ଟଙ୍କା ଦିଆଯାଇଛି । ❖ ପ୍ରାକୃତିକ ଦୁର୍ବିପାକ ସମୟରେ ଶ୍ରମଭିତ୍ତିକ କାର୍ଯ୍ୟକ୍ରମ ପାଇଁ ୨.୨୦ କୋଟି ଟଙ୍କା ବିନିଯୋଗ କରାଯାଇଅଛି । ❖ ଅବହେଳିତ ୪୧୨ ଗୋଟି କ୍ଷୁଦ୍ର ଜଳସେଚନ ପ୍ରକଳ୍ପଗୁଡ଼ିକର ରକ୍ଷଣାବେକ୍ଷଣ ତଥା ଉନ୍ନତି ପାଇଁ ୫୬.୦୩ କୋଟି ଟଙ୍କା ମଂଜୁର କରାଯାଇଅଛି । ❖ ପାଞ୍ଚଶହ ପଞ୍ଚାବନ ଗୋଟି ଗ୍ରାମ/ପଡ଼ାଗ୍ରାମକୁ ୧୯.୭୦ କୋଟି ଟଙ୍କା ଖର୍ଚ୍ଚ କରାଯାଇ ବିଦ୍ୟୁତ ଶକ୍ତି ଯୋଗାଇ ଦିଆଯାଇଛି । ❖ ଚ୍ୟାକଡ୍ୟାମ ନିର୍ମାଣ ତଥା ପଞ୍ଚାୟତ ଅଧିନସ୍ଥ କ୍ଷୁଦ୍ର ଜଳସେଚନ ପ୍ରକଳ୍ପଗୁଡ଼ିକର ଉନ୍ନତିକରଣ ସକାଶେ ୫୫୯ ଗୋଟି ପ୍ରକଳ୍ପ ପାଇଁ ୫୦.୬୧ କୋଟି ଟଙ୍କା ମଂଜୁର କରାଯାଇଛି । ମରୁଡ଼ି ପ୍ରପୀଡ଼ିତ ଅଞ୍ଚଳରେ ୫୧୪ଟି ଉଠା ଜଳ ସେଚନ ପ୍ରକଳ୍ପର ନିର୍ମାଣ ତଥା ପୁନରୁଦ୍ଧାର କାର୍ଯ୍ୟ ପାଇଁ ୪୨.୯୯ କୋଟି ଟଙ୍କା ଯୋଗାଇ ଦିଆଯାଇଛି । ❖ ଭବାନୀପାଟଣା ନିକଟସ୍ଥ ଜାରିଙ୍ଗଠାରେ ମେଡିକାଲ କଲେଜ ନିର୍ମାଣର କାର୍ଯ୍ୟ ଦ୍ରୁତଗତିରେ ଆଗେଇ ଚାଲିଛି । ରାଉରକେଲା ସକାଶେ ଇତି ମଧ୍ୟରେ ବୁଝାମଣା ପତ୍ର ସ୍ୱାକ୍ଷରିତ ହୋଇଛି । ❖ ଯୁକ୍ତ ଦୁଇ ବିଜ୍ଞାନର ତଫସିଲଭୁକ୍ତ ଜାତି/ଜନଜାତି ଓ ଆର୍ଥିକ ଦୁର୍ବଳ ଶ୍ରେଣୀର ଛାତ୍ରଛାତ୍ରୀମାନଙ୍କ ନିମିତ୍ତ ପଶ୍ଚିମାଞ୍ଚଳର ୧୯ ଗୋଟି ଅଗ୍ରଣୀ ମହାବିଦ୍ୟାଳୟରେ ସ୍ୱତନ୍ତ୍ର କୋଚିଂର ବନ୍ଦୋବସ୍ତ କରାହୋଇଛି । ❖ ଅମ୍ଳମୃତ୍ତିକା ଶୋଧନପାଇଁ ଏକ ଅଭିନବ ଉପାୟ ପ୍ରୟୋଗ କରି ୧୩ ହଜାର ୩୨୫ ଏକର ଚାଷଜମିର ଉନ୍ନତି କରାଯାଇଛି । ❖ ପଶ୍ଚିମ ଓଡ଼ିଶାର ଛିପିଲିମାଠାରେ ୬.୪୫ କୋଟି ଟଙ୍କା ବ୍ୟୟରେ ଏକ ଉଦ୍ୟାନ କୃଷି ଡିଗ୍ରି ମହାବିଦ୍ୟାଳୟ ୨୦୦୮-୦୯ ଶିକ୍ଷାବର୍ଷ ଠାରୁ ସ୍ଥାପିତ କରାଯାଇଛି । ❖ ଦେବଗଡ଼ ବଉଦଠାରେ ଏଗ୍ରୋପୋଲିଟେକ୍‌ନିକ୍ ଅନୁଷ୍ଠାନ ପ୍ରତିଷ୍ଠାପାଇଁ ୨.୦୪ କୋଟି ଟଙ୍କାର ବ୍ୟୟ ବରାଦ କରାଯାଇଛି । ❖ ପୂର୍ଣ୍ଣାଙ୍ଗ ଗ୍ରାମ ଭିତ୍ତିରେ ବର୍ଷା ଜଳର ନିୟନ୍ତ୍ରଣ ଓ ପରିଚାଳନା ପାଇଁ ୪ ଗୋଟି ପଥ ପ୍ରଦର୍ଶକ ପ୍ରକଳ୍ପ ହାତକୁ ନିଆଯାଇଛି ।

# ଓଡ଼ିଶାର ଜାତୀୟ ଜାଗରଣ ଏବଂ ଦେଶପ୍ରାଣ ମଧୁସୂଦନ

ଡକ୍ଟର ବିଭୂତି ପଟ୍ଟନାୟକ

*ଜଣେ ସାରସ୍ୱତ ସାଧକ ଭାବେ ଉତ୍କଳ ଜନନୀଙ୍କର ଏହି ସୁପୁତ୍ର ଡକ୍ଟର ବିଭୂତି ପଟ୍ଟନାୟକ ଓଡ଼ିଶାର ସର୍ବତ୍ର ଓ ଭାରତର ଅଧିକାଂଶ ରାଜ୍ୟ ଓଡ଼ିଆ ଅଧ୍ୟୁଷିତ ଅଞ୍ଚଳର ସାହିତ୍ୟିକ, ସାହିତ୍ୟସେବୀ ଓ ସାହିତ୍ୟାନୁରାଗୀମାନଙ୍କ ଦ୍ୱାରା ଉଚ୍ଚ ପ୍ରଶଂସିତ ଓ ସମ୍ମାନିତ। ପ୍ରଥମେ ସମ୍ବାଦ ସାହିତ୍ୟରେ ପ୍ରବେଶ କରି ଅତ୍ୟଳ୍ପ ଦିନରେ ଜଣେ କଥାଶିଳ୍ପୀ ଭାବେ ସେ ଓଡ଼ିଆ ପାଠକମହଲରେ ଯେପରି ଅଲୌକିକ ଆଦୃତି ଲାଭ କରିଥିଲେ, ତାହା ଉଣାଅଧିକେ ଆପଣମାନେ ଜାଣିଥିବେ। ପରବର୍ତ୍ତୀ ସମୟରେ ସାହିତ୍ୟର ସମସ୍ତ ବିଭାବ, ବିଶେଷକରି ପ୍ରବନ୍ଧ ଓ ସମୀକ୍ଷା ଉପରେ ଦୀର୍ଘଦିନ କଲମ ଚଳାଇ ସେ ଅସାମାନ୍ୟ ଦକ୍ଷତାର ଅଧିକାରୀ। 'ମୋ ଓଡ଼ିଶା-୨୦୦୮' ସାରସ୍ୱତ ସଂକଳନରେ ତାଙ୍କ ଦ୍ୱାରା ଲିଖିତ "ଓଡ଼ିଆ ଜାତୀୟ ଜାଗରଣରେ ନାରୀମାନଙ୍କ ଭୂମିକା" ଆମ୍ଭମାନଙ୍କୁ ବେଶ୍ ସମ୍ମାନ ଦେଇଥିଲା। ଏଥର ଆମ ଅନୁରୋଧରେ ସେ ଦେଇଥିବା ଲେଖା "ଓଡ଼ିଶାର ଜାତୀୟ ଜାଗରଣ ଓ ଦେଶପ୍ରାଣ ମଧୁସୂଦନ" ଆମେ ଏଠାରେ ଆପଣମାନଙ୍କ ପାଇଁ ଉପସ୍ଥାପନ କରୁଛୁ.....*

୧୫୬୮ ମସିହାରେ ଓଡ଼ିଶାର ଶେଷ ସ୍ୱାଧୀନ ରାଜା ମୁକୁନ୍ଦଦେବଙ୍କ ମୃତ୍ୟୁଠାରୁ ୧୮୬୬ ନଅଙ୍କ ଦୁର୍ଭିକ୍ଷ ପର୍ଯ୍ୟନ୍ତ— ଏହି ତିନିଶହ ବର୍ଷ ହେଉଛି ଓଡ଼ିଶାର ଭାଗ୍ୟ ବିଡ଼ମ୍ବନାର କାଳ। ଗୋହିରାଟିକିରି ଯୁଦ୍ଧରେ ମୁକୁନ୍ଦଦେବଙ୍କ ପରାଜୟ ପର ଓଡ଼ିଶାର ସ୍ୱାଧୀନତାର ସୂର୍ଯ୍ୟ ଅସ୍ତମିତ ହୋଇ ଯାଇଥିଲେ। ନଅଙ୍କ ଦୁର୍ଭିକ୍ଷରେ ଦଶଲକ୍ଷ ଓଡ଼ିଆଙ୍କ ଅକାଳ ବିୟୋଗ ଓଡ଼ିଆ ଜାତିର ମେରୁଦଣ୍ଡ ଭାଙ୍ଗି ଦେଇଥିଲା; କିନ୍ତୁ ନଅଙ୍କର ମହାଶ୍ମଶାନରୁ ପୁଣି ସେହି ଅର୍ଦ୍ଧମୃତ ଜାତିର ପୁନର୍ଜନ୍ମ ଘଟିଥିଲା। ପ୍ରତିକୂଳ ପରିବେଶ ମଧ୍ୟରେ ଅଣ୍ଟା ସିଧା କରି ଠିଆ ହେବାପାଇଁ ବଙ୍ଗ, ମାନ୍ଦ୍ରାଜ ଏବଂ ମଧ୍ୟପ୍ରଦେଶ (Central Province) ରେ ଛିନ୍ନଛତ୍ର ହୋଇ ରହିଥିବା ଓଡ଼ିଆମାନଙ୍କ ପ୍ରାଣରେ ଜାତିପ୍ରେମ ବହ୍ନି ପ୍ରଜ୍ୱଳିତ କରିଥିଲା ଓଡ଼ିଆ ଜାତୀୟତାର ନବଜାଗରଣ। ଏହି ନବଜାଗରଣର ଋତ୍ୱିକ ଥିଲେ ଦୁଇ ଯୁଗପୁରୁଷ– ଉତ୍କଳ ଗୌରବ ମଧୁସୂଦନ ଦାସ ଏବଂ ଉତ୍କଳମଣି ଗୋପବନ୍ଧୁ ଦାସ। ଉଭୟେ ଥିଲେ କବି ଓ କର୍ମୀ। ଉଭୟଙ୍କର ପେଶା ଥିଲା ଓକିଲାତି; କିନ୍ତୁ ନିଶା ଥିଲା ଦେଶସେବା। ଉଭୟେ ନିଜ ନିଜ ବାଟରେ ଓଡ଼ିଆ ଭାଷାଭାଷୀ ବିଚ୍ଛିନ୍ନାଞ୍ଚଳକୁ ଏକାଠି କରି ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ କରିବା ସହିତ ଓଡ଼ିଶାକୁ ଜାତୀୟ ସ୍ରୋତରେ ମିଶାଇ ଦେବାପାଇଁ ସଂକଳ୍ପବଦ୍ଧ ଥିଲେ।

ମଧୁସୂଦନ ଉଚ୍ଚଶିକ୍ଷା ପାଇଁ କଲିକତା ଯାଇ ସେଠାରେ 'ୟଙ୍ଗ୍ ବେଙ୍ଗଲ୍' ଗୋଷ୍ଠୀର ଭାବାଦର୍ଶ ଦ୍ୱାରା ଉଦ୍‌ବୁଦ୍ଧ ହୋଇଥିଲେ। ଇଂରେଜୀ ଶିକ୍ଷା ଓ ପାଶ୍ଚାତ୍ୟ ସଭ୍ୟତାର ସାନ୍ନିଧ୍ୟରେ ଆସି ସେତେବେଳେ ରାମମୋହନ ରାୟ, ଈଶ୍ୱର ଚନ୍ଦ୍ର ବିଦ୍ୟାସାଗର ପ୍ରମୁଖ ବଙ୍ଗୀୟ ମନୀଷୀ ସମାଜ ସଂସ୍କାର ସହିତ ନାରୀଶିକ୍ଷା, ବିଶେଷକରି ଇଂରେଜୀ ଶିକ୍ଷା ମାଧ୍ୟମରେ ଜ୍ଞାନବିଜ୍ଞାନ ଶିକ୍ଷା ଉପରେ ଅଧିକ ଗୁରୁତ୍ୱ ଆରୋପ କରିଥିଲେ। କୁସଂସ୍କାରାଚ୍ଛନ୍ନ ହିନ୍ଦୁ ଧର୍ମ ସକଳ ପ୍ରକାର ଆଧୁନିକ, ପ୍ରଗତିଶୀଳ ଭାବନାର ବିରୋଧୀ ବୋଲି 'ୟଙ୍ଗ୍ ବେଙ୍ଗଲ୍' ଗୋଷ୍ଠୀର ଦୃଢ଼ ଧାରଣା ଥିଲା। ରକ୍ଷଣଶୀଳ ହିନ୍ଦୁମାନେ ପତିର ଚିତାରେ ପତ୍ନୀକୁ ଦଗ୍ଧ କରି ସତୀ ହେବାପାଇଁ ବାଧ୍ୟ କରୁଥିଲେ। ବାଲ୍ୟବିବାହ ସପକ୍ଷରେ ଏବଂ ବିଧବା ବିବାହ ବିପକ୍ଷରେ ବ୍ରାହ୍ମଣ୍ୟବାଦୀ ହିନ୍ଦୁ ପଣ୍ଡିତମାନେ ଫତଓ୍ୱା ଜାରି କରୁଥିଲେ। ସେଥିପାଇଁ ଇଂରେଜ ସରକାର ସତୀଦାହ ପ୍ରଥା, ବାଲ୍ୟବିବାହ ବ୍ୟବସ୍ଥା ବିରୋଧରେ ଆଇନ ପାସ୍ କରିଥିଲେ ମଧ୍ୟ ଓଡ଼ିଶା ଓ ବଙ୍ଗଳାରେ ସତୀଦାହ, ବାଲ୍ୟବିବାହ ଚାଲୁ ରହିଥିଲା। ମଧୁସୂଦନଙ୍କ ମାତାମହୀ ନିଜେ ସ୍ୱାମୀଙ୍କ ଚିତାରେ ପ୍ରବେଶ କରି ସତୀ ହୋଇଥିଲେ। ବିଧବା-ବିବାହ ହିନ୍ଦୁଧର୍ମ ବିରୋଧୀ ବୋଲି କୁହାଯାଉଥିଲା। ରାମମୋହନ ରାୟ ଥିଲେ ସତୀଦାହ ପ୍ରଥାର ଘୋର ବିରୋଧୀ। ପଣ୍ଡିତ ଈଶ୍ୱର ଚନ୍ଦ୍ର ବିଦ୍ୟାସାଗରଙ୍କ ପରି ସ୍ମାର୍ତ୍ତ, ନୈଷ୍ଠିକ ହିନ୍ଦୁ ମଧ୍ୟ ସାଂଖ୍ୟା ବେଦାନ୍ତର ପ୍ରାମାଣିକତା ବିରୋଧରେ ସ୍ୱର ଉତ୍ତୋଳନ କରିଥିଲେ। ସେ ଥିଲେ ବିଧବା ବିବାହର ପ୍ରଧାନ ପୃଷ୍ଠପୋଷକ। ୟଙ୍ଗ୍ ବେଙ୍ଗଲର ଯୁବଗୋଷ୍ଠୀ ରାମମୋହନ ଏବଂ ଈଶ୍ୱରଚନ୍ଦ୍ର ଏହି ଆଦର୍ଶ ଦ୍ୱାରା ଅନୁପ୍ରାଣିତ ହୋଇଥିଲେ। ମଧୁସୂଦନ ଥିଲେ ଏହି ତରୁଣ ବଙ୍ଗୀୟ ଗୋଷ୍ଠୀର ପରମ ଭକ୍ତ। ଧର୍ମୀୟ ଅନ୍ଧବିଶ୍ୱାସ, କୁସଂସ୍କାରକୁ ଦୂର ନ କଲେ ଓଡ଼ିଆ ସମାଜର ଉନ୍ନତି ଅସମ୍ଭବ ଏବଂ ସାମାଜିକ ପ୍ରଗତି ବ୍ୟତୀତ ଓଡ଼ିଆମାନେ ରାଜନୈତିକ କ୍ଷେତ୍ରରେ ଅନ୍ୟ ପ୍ରଦେଶ ସହିତ ସମକକ୍ଷ ହୋଇପାରିବେ ନାହିଁ ବୋଲି ତାଙ୍କର ଦୃଢ଼ ବିଶ୍ୱାସ ହୋଇଥିଲା। ସେ କଲିକତାରେ ଅବସ୍ଥାନ କରୁଥିବାବେଳେ ହିଁ ଖ୍ରୀଷ୍ଟଧର୍ମ ଗ୍ରହଣ କରିଥିଲେ। ୧୮୮୧ ମସିହାରେ ସବୁଦିନ ପାଇଁ କଲିକତା ଛାଡ଼ିଦେଇ ଓଡ଼ିଶାରେ ନବଜାଗରଣର ବାର୍ତ୍ତା ପ୍ରଚାର କରିବା ଲାଗି ମଧୁସୂଦନ କଟକ ଫେରି ଆସିଥିଲେ।

୧୮୬୬ ମସିହାର ନଅଙ୍କ ଦୁର୍ଭିକ୍ଷ ଥିଲା ଓଡ଼ିଶାର ସାମାଜିକ, ରାଜନୈତିକ ଇତିହାସରେ ଏକ ଜଳ ବିଭାଜନ ରେଖା। ଓଡ଼ିଶାର ଶିକ୍ଷା, ସାମାଜିକ, ଅର୍ଥନୈତିକ ଏବଂ ପ୍ରଶାସନରେ ସେତେବେଳେ ୧୮୦୩ ମସିହା ପରେ ବଙ୍ଗରୁ ଆସିଥିବା ବଙ୍ଗୀୟ ପଣ୍ଡିତ, ଐତିହାସିକ, ପ୍ରତ୍ନତତ୍ତ୍ୱବିତ୍ ଏବଂ ପ୍ରଶାସକମାନେ କହିଲେ, "ଓଡ଼ିଆ ଏକ ସ୍ୱତନ୍ତ୍ର ଭାଷା ନୁହେଁ, ଏହା ବଙ୍ଗଳା ଭାଷାର ଏକ ଉପଭାଷା।" ତେଣୁ ଓଡ଼ିଶାର ବିଦ୍ୟାଳୟରେ ଓଡ଼ିଆ ବଦଳରେ ବଙ୍ଗଳା ଭାଷା ମାଧ୍ୟମରେ ଶିକ୍ଷାଦାନ ବ୍ୟବସ୍ଥା ପ୍ରଚଳନ ପାଇଁ ଦାବିକରି ନିଦ୍ରିତ ଓଡ଼ିଆମାନଙ୍କ ଚେତନାରେ ଚିଆଁ ଲଗାଇ ଦେଇଥିଲେ। ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ, ଓଡ଼ିଆ ପୁସ୍ତକ ମୁଦ୍ରଣ, ଓଡ଼ିଆ ଭାଷାରେ ପାଠ୍ୟପୁସ୍ତକ ଲିଖନ ଏବଂ ଇଂରେଜୀ ଭାଷା ମାଧ୍ୟମରେ ଉଚ୍ଚଶିକ୍ଷା ଗ୍ରହଣକୁ ନବଜାଗରଣର ନେତୃବୃନ୍ଦ ଅଗ୍ରାଧିକାର ଦେଇଥିଲେ। ଓଡ଼ିଶାରେ ଏହି ନବଜାଗରଣର ପୁରୋଧା ଥିଲେ ମଧୁସୂଦନ, ଗୌରୀଶଙ୍କର ଏବଂ ଗୋପବନ୍ଧୁ।

୧୮୮୯ ମସିହାରେ କଟକଠାରେ ଉତ୍କଳ ସମ୍ମିଳନୀ ସଭା ନାମରେ ଏକ ଅନୁଷ୍ଠାନ ସ୍ଥାପିତ ହୋଇଥିଲା । ସେତେବେଳେ ଓଡ଼ିଶା ଡିଭିଜନ୍‌ରେ ଶିକ୍ଷା, ସମ୍ପଦ ଓ ମର୍ଯ୍ୟାଦାରେ ଅନ୍ୟମାନଙ୍କଠାରୁ ଆଗରେ ଥିବା କରଣ ଜାତିର କେତେକଣ ସମ୍ଭ୍ରାନ୍ତ ବ୍ୟକ୍ତିଙ୍କ ଦ୍ୱାରା ୧୮୮୯ ମସିହା ଇଂରେଜୀ ନବବର୍ଷର ଏହି ଉତ୍କଳ ସମ୍ମିଳନୀ ସଭାର ଆୟୋଜନ କରାଯାଇଥିଲା । ଏହି ସଭା ସଂର୍ପକରେ 'ଉତ୍କଳ ଦୀପିକା'ରେ ସେତେବେଳେ ଏକ ଦୀର୍ଘ ଅଗ୍ରଲେଖ ପ୍ରକାଶ ପାଇଥିଲା । ଏଥିରେ ଉଲ୍ଲେଖ ଥିଲା– "ଗତ ପହିଲା ଦିନ କଟକ ନଗରସ୍ଥ କରଣମାନେ ଶ୍ରୀଯୁକ୍ତ ବାବୁ ନନ୍ଦକିଶୋର ଦାସଙ୍କ ଘରଠାରେ ଉପଗତ ହୋଇ ଉକ୍ତ ସଭା ସ୍ଥାପନ କରିଛନ୍ତି । ସେଦିନର ସଭାରେ ବାବୁ ଗଣେଶ୍ୱର ଦାସ ସଭାପତିଙ୍କ ଆସନ ଗ୍ରହଣ କରିଥିଲେ । ସଭାର ଉଦ୍ଦେଶ୍ୟ ଏହି– ପ୍ରଥମତଃ ମଫସଲରୁ ଯେଉଁ ଛାତ୍ରମାନେ କଟକ ନଗରସ୍ଥ ଉଚ୍ଚ ବିଦ୍ୟାଳୟମାନଙ୍କରେ ପଢ଼ିବାପାଇଁ ଯିବେ ଏବଂ ଯାହାଙ୍କର କେହି ଅଭିଭାବକ କଟକରେ ନ ଥିବେ, ସେହିଭଳି ଛାତ୍ରଙ୍କର ତତ୍ତ୍ୱାବଧାରଣ କରିବା । ଦ୍ୱିତୀୟତଃ, ଅର୍ଥାଭାବବଶତଃ ଯେଉଁ ଛାତ୍ରମାନେ ପଢ଼ିବାକୁ ଅକ୍ଷମ, ସେମାନଙ୍କୁ ସାହାଯ୍ୟ କରିବା । ତୃତୀୟତଃ, ବିବାହାଦି କ୍ରିୟାଘଟିତ ଅପରିମିତ ବ୍ୟୟର ନିବାରଣ । କି ରୂପେ ଯେ ଉକ୍ତ ତିନି ବିଷୟର ପ୍ରତିକାର କରାଯାଇପାରିବ, ତାହା ଅବଧାରଣ କରିବା ନିମନ୍ତେ ପୃଥକ ପୃଥକ୍ ସବ୍‌କମିଟି ଗଠିତ ହୋଇଅଛି । ଉତ୍କଳ ସମ୍ମିଳନୀ ସଭାର ସ୍ଥାୟୀ ସଭାପତି ପଦରେ ନନ୍ଦକିଶୋର ବାବୁ, ସହକାରୀ ସଭାପତି ବାବୁ ହରେକୃଷ୍ଣ ଦାସ ଏବଂ ସଂପାଦକ ପଦରେ ବାବୁ ରାସବିହାରୀ ନାୟକ ନିଯୁକ୍ତ ହୋଇଛନ୍ତି ।"

ଉତ୍କଳ ସମ୍ମିଳନୀ ସଭା ସହିତ ସ୍ୱୟଂ ମଧୁସୂଦନ ଦାସ ସଂପୃକ୍ତ ନ ଥିଲେ ସୁଦ୍ଧା ତାଙ୍କର ଅନୁଜ ଗୋପାଳ ବଲ୍ଲଭ ଦାସ କରଣମାନଙ୍କର ଏହି ସଭାର ସଭ୍ୟ ଥିଲେ । ମଫସଲର ଦରିଦ୍ର ଛାତ୍ରମାନଙ୍କୁ କଟକ ସହରରେ ଉଚ୍ଚ ଶିକ୍ଷାପାଇଁ ସୁବିଧାସୁଯୋଗ ଯୋଗାଇ ଦେବା ଏହି ଅନୁଷ୍ଠାନର ମୁଖ୍ୟ ଉଦ୍ଦେଶ୍ୟ ହେଲେ ମଧ୍ୟ ବିବାହ ଉତ୍ସବରେ କରଣମାନେ ଆୟବ୍ୟୟ ବହିର୍ଭୂତ ଖର୍ଚ୍ଚ କରି ସର୍ବସ୍ୱାନ୍ତ ହେଉଥିବା ଯୋଗୁଁ ଉତ୍କଳ ସମ୍ମିଳନୀ ସଭା ବିବାହ ଉତ୍ସବରେ ବ୍ୟୟ ସଙ୍କୋଚନ ଉପରେ ଗୁରୁତ୍ୱ ଦେଉଥିଲେ ।

ଊନବିଂଶ ଶତାବ୍ଦୀର ଶେଷଭାଗରେ ସୁଦ୍ଧା ଖ୍ରୀଷ୍ଟିଆନ୍ ମିଶନ୍‌ରେ କିମ୍ବା ଇଂରେଜ ସରକାରଙ୍କ ଦ୍ୱାରା ସ୍କୁଲ, କଲେଜରେ ପାଠ ପଢ଼ିଲେ ଧର୍ମ ନଷ୍ଟ ହେବ ବୋଲି ହିନ୍ଦୁ ପଣ୍ଡା-ପୁରୋହିତମାନେ ହିନ୍ଦୁମାନଙ୍କୁ ସ୍କୁଲକଲେଜରେ ନାମ ଲେଖାଇବାକୁ ବାରଣ କରୁଥିଲେ । କଟକ ମେଡିକାଲ୍ ସ୍କୁଲରେ ଜଣେ ବ୍ରାହ୍ମଣ ଛାତ୍ର ଡାକ୍ତରୀ ପଢୁଥିଲା ବୋଲି ତାକୁ ସମାଜରୁ ବହିଷ୍କାର କରାଯାଇଥିଲା । କଟକରେ ସ୍ଥାପିତ ସରକାରୀ ବାଳିକା ବିଦ୍ୟାଳୟରେ କୌଣସି ହିନ୍ଦୁ ପରିବାରର ଝିଅ ନାମ ଲେଖାଇବାକୁ ସୁଦ୍ଧା ଆସୁ ନ ଥିଲେ । ଶିକ୍ଷା ଅଭାବରୁ ଓଡ଼ିଆମାନେ ଜୀବିକା ଅର୍ଜନ ପାଇଁ କଲିକତା ଯାଇ ସେଠାରେ ମାଳୀ, ପାଲିଙ୍କି ବାହକ ଏବଂ କଳକାରଖାନାରେ ଶ୍ରମିକ ଭାବରେ କାମ କରୁଥିବାବେଳେ କଲିକତା ଶିକ୍ଷିତ ବଙ୍ଗାଳିମାନେ ଓଡ଼ିଶା ଆସି ଶିକ୍ଷକ, ଓକିଲ, ପ୍ରଶାସକ ଭାବରେ ନିଜର ଆଧିପତ୍ୟ ବିସ୍ତାର କରୁଥିଲେ । ରକ୍ଷଣଶୀଳ ହିନ୍ଦୁ ଧର୍ମଗୁରୁମାନଙ୍କ ଆଜ୍ଞାକୁ ଅବଜ୍ଞା କରି କଟକର ଶିକ୍ଷିତ କରଣମାନେ ମଫସଲର ଦରିଦ୍ର ଛାତ୍ରମାନଙ୍କୁ କଟକରେ ଇଂରେଜୀ

ସ୍କୁଲ, କଲେଜରେ ପଢ଼ିବା ଲାଗି ଆର୍ଥିକ ସମ୍ବଳ ଯୋଗାଇଦେବା ଲାଗି ଉତ୍କଳ ସମ୍ମିଳନୀ ସଭା ସ୍ଥାପନ କରିଥିବା ଯୋଗୁଁ ମଧୁସୂଦନ ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ । ସମ୍ଭ୍ରାନ୍ତ କରଣ ବଂଶରେ ଜନ୍ମ ହୋଇଥିଲେ ସୁଦ୍ଧା ଜାତି ଅପେକ୍ଷା ଜାତୀୟତାର ମନ୍ତ୍ରରେ ସେ ଅଭିମନ୍ତ୍ରିତ ହୋଇଥିଲେ । ସେଥିପାଇଁ ୧୮୮୨ ମସିହାରେ ସେ ସ୍ଥାପନ କରିଥିଲେ 'ଉତ୍କଳସଭା' ।

'ଉତ୍କଳସଭା' ଦୀର୍ଘକାଳ ଧରି ଥିଲା କଟକର ପ୍ରମୁଖ ରାଜନୈତିକ ମଞ୍ଚ । ୧୮୮୮ ମସିହାରେ 'ଉତ୍କଳସଭା' ପକ୍ଷରୁ ବଙ୍ଗଳାର ଛୋଟଲାଟ୍ ସାର୍ ଷ୍ଟୁଆର୍ଟ କଲିଭନ୍‌ଙ୍କୁ ଯେଉଁ ଅଭିନନ୍ଦନ ପତ୍ର ଦିଆଯାଇଥିଲା, ମଧୁସୂଦନ ସେଥିରେ ବିଚ୍ଛିନ୍ନ ଓଡ଼ିଆ ଅଞ୍ଚଳର ଏକୀକରଣ ପ୍ରସଙ୍ଗ ଉତ୍‌ଥାପନ କରିଥିଲେ; କିନ୍ତୁ ବଙ୍ଗ, ମାନ୍ଦ୍ରାଜ ଏବଂ ସେଣ୍ଟ୍ରାଲ୍ ପ୍ରଭିନ୍‌ସର ଲାଙ୍ଗୁଡ଼ ଭାବରେ ଯୋଡ଼ା ହୋଇଥିବା ଓଡ଼ିଆ ଅଞ୍ଚଳକୁ ଏକାଠି କରି ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ କରିବା ଦାୟିତ୍ୱ କଟକର ବୁଦ୍ଧିଜୀବୀମାନଙ୍କର ରାଜନୈତିକ ମଞ୍ଚ 'ଉତ୍କଳସଭା' ଦ୍ୱାରା ସମ୍ଭବ ହେବନାହିଁ ବୋଲି ମଧୁସୂଦନ ଭଲକରି ଜାଣିଥିଲେ । ସେଥିପାଇଁ ମୋଗଲବନ୍ଦୀ, ଗଡ଼ଜାତର ରାଜା, ପ୍ରଜା, ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିଆନ୍ ସମସ୍ତଙ୍କୁ ନେଇ ସେ ଏକ ବୃହତ୍ତର ମଞ୍ଚ ୧୯୦୩ ମସିହାରେ ସ୍ଥାପନ କରିଥିଲେ । ଏହି ଜାତୀୟ ମଞ୍ଚର ନାମ ରଖାଯାଇଥିଲା "ଉତ୍କଳ ସମ୍ମିଳନୀ" । ଏହି ଉତ୍କଳ ସମ୍ମିଳନୀକୁ ଲକ୍ଷ୍ୟ କରି ତାଙ୍କ କଣ୍ଠରୁ ଝଙ୍କୃତ ହୋଇଥିଲା—

"ଏହି ସମ୍ମିଳନୀ ଜାତି ପ୍ରାଣ ସିନ୍ଧୁ
କୋଟି ପ୍ରାଣବିନ୍ଦୁ ଧରେ
ତୋର ପ୍ରାଣବିନ୍ଦୁ ମିଶାଇ ଦେ ଭାଇ
ଡେଇଁପଡ଼ି ସିନ୍ଧୁ ନୀରେ ।"

ଏହା ଥିଲା ମଧୁସୂଦନଙ୍କ ହୃଦୟର ସଙ୍ଗୀତ । ସେ ଥିଲେ ଓଡ଼ିଆ ଜାତୀୟ ଜାଗରଣର ମହାନାୟକ ।



# ଊନବିଂଶ ଶତାବ୍ଦୀରେ
# ଓଡ଼ିଶାର ସଭାସମିତି –ଏକ ଦୃଷ୍ଟିପାତ

ପ୍ରଫେସର ବୈଷ୍ଣବ ଚରଣ ସାମଲ

*ଶୈଶବରୁ ନାନା ଘାତପ୍ରତିଘାତର ଶିକାର ହୋଇ ପ୍ରଫେସର ସାମଲ ଜୀବନପଥର ପ୍ରତିଟି ପାବଚ୍ଛ ଅତିକ୍ରମ କଲାବେଳେ ଯେଉଁ ସୁଖଦ ଓ ଦୁଃଖଦ ଅନୁଭୂତି ଲାଭ କରିଥିଲେ, ସେଗୁଡ଼ିକ ତାଙ୍କୁ ସମାଜରେ ପ୍ରତିଷ୍ଠା ଆଣିବାରେ ଯଥେଷ୍ଟ ଖୋରାକ ଯୋଗାଇଥିଲା । ପରବର୍ତ୍ତୀ କାଳରେ ତାଙ୍କ ସାରସ୍ୱତ ସାଧନା ତାଙ୍କୁ ପ୍ରଜ୍ଞା ଓ ସମ୍ମାନରେ ଭୂଷିତ କରି ଓଡ଼ିଶାର ସାରସ୍ୱତ କ୍ଷେତ୍ରରେ ଜଣେ ପ୍ରତିଭାଧର ସାଧକ ରୂପେ ଆଗ ଧାଡ଼ିରେ ବସାଇଥିଲା । ଅଧ୍ୟୟନ ଓ ଅଧ୍ୟାପନାକୁ ବୃତ୍ତି କରି ଜଣେ ଅଜେୟ ସାହିତ୍ୟରଥୀ ଭାବେ ସେ ଉତ୍କଳର ଅସଂଖ୍ୟ ସାହିତ୍ୟିକ, ସାହିତ୍ୟାନୁରାଗୀ, ସାହିତ୍ୟପ୍ରେମୀ ଓ ସାହିତ୍ୟସେବୀଙ୍କର ଦିଗ୍‌ଦର୍ଶକ ଭାବେ ସର୍ବତ୍ର ଆଦୃତି ଲାଭ କରି ଚାଲିଛନ୍ତି । ଏହି ମାନବବାଦୀ ସ୍ରଷ୍ଟା 'ମୋ ଓଡ଼ିଶା'ର ଅନୁରୋଧରେ ୨୦୦୯ ସାରସ୍ୱତ ସଂକଳନ ପାଇଁ ଲେଖିଥିବା "ଊନବିଂଶ ଶତାବ୍ଦୀରେ ଓଡ଼ିଶାର ସଭାସମିତି – ଏକ ଦୃଷ୍ଟିପାତ" ଆମେ ଉପସ୍ଥାପନ କରୁଛୁ ଆପଣମାନଙ୍କ ପାଇଁ ....*

ସଭାସମିତି ଆଧୁନିକ ସଭ୍ୟତାର ଏକ ଅବିଚ୍ଛେଦ୍ୟ ଅଂଗ । ପ୍ରାଚୀନ କାଳରେ ସଭାସମିତିର ଏତେଟା ପ୍ରଚଳନ ନ ଥିଲା, ଯଦିଓ ବୌଦ୍ଧ ବିହାରମାନଙ୍କରେ ଶ୍ରମଣମାନଙ୍କର ସଭା, କୌଣସି ବୌଦ୍ଧଧର୍ମ ଅନୁଗତ ରାଜାଙ୍କ ପୃଷ୍ଠପୋଷକତାରେ ବୌଦ୍ଧ ମହାସଭା, ଉପନିଷଦ ଯୁଗରେ କୌଣସି ଋଷି ବା ଧର୍ମପ୍ରାଣ ରାଜାଙ୍କ ଅଧ୍ୟକ୍ଷତାରେ ଋଷିମାନଙ୍କର ଆତ୍ମା-ପରମାତ୍ମା-ବ୍ରହ୍ମ-ଜୀବନ-ମୃତ୍ୟୁ ସଂପର୍କିତ ତର୍କସଭା, ରାଜାମାନଙ୍କର ମନ୍ତ୍ରୀ ପରିଷଦ ଓ ପଣ୍ଡିତମାନଙ୍କର ସଭା ଇତ୍ୟାଦି ପ୍ରଚଳିତ ଥିଲା; ତେବେ ସେସବୁ ସଭା ଆଧୁନିକ ଯୁଗର ସଭା ପରି ନୁହେଁ । ଆଧୁନିକ ଯୁଗ ନାନା ସମସ୍ୟା ଓ ସଂକଟର ଯୁଗ । ସେହି ସମସ୍ୟା ଓ ସଂକଟର ସମାଧାନ ପାଇଁ ସଭାସମିତିର ଆବଶ୍ୟକତା ହୋଇଥାଏ । ସଭାସମିତିରେ ସମଚିନ୍ତକମାନେ ଏକତ୍ର ହୋଇ କୌଣସି ନିର୍ଦ୍ଦିଷ୍ଟ ସମସ୍ୟା ସଂପର୍କରେ ଆଲୋଚନା କରନ୍ତି ଓ ଆଲୋଚନାର ସିଦ୍ଧାନ୍ତ ଅନୁସାରେ କାର୍ଯ୍ୟ କରନ୍ତି । ପଞ୍ଚଦଶ ଶତାବ୍ଦୀରେ ଇଟାଲୀରେ ଯେଉଁ କ୍ରାନ୍ତି ଦେଖାଦେଲା, ତାହାରି ଫଳରେ ସେଠାରେ ସଭାସମିତି ଗଢ଼ି ଉଠିଲା । ରାଜନୀତି, ପ୍ରଶାସନ, ଭାଷା ଓ ସାହିତ୍ୟ, ଧର୍ମ, ଶିକ୍ଷା, ବିଜ୍ଞାନ ଇତ୍ୟାଦି ନାନା ପ୍ରସଙ୍ଗକୁ ନେଇ ସଭାସମିତିର ହେଲା ନୂତନ ଉଦ୍‌ଭବ । ପରେ ପରେ ଇଂଲଣ୍ଡ, ଫ୍ରାନ୍‌ସ, ଜର୍ମାନୀ ପ୍ରଭୃତି ଦେଶରେ କ୍ରାନ୍ତି ସୃଷ୍ଟି ହେଲା ଓ ସର୍ବତ୍ର ହେଲା ସଭାସମିତିର ଉନ୍ମେଷ । ଏପରି ସଭାସମିତି ଭାରତବର୍ଷରେ ବା ଓଡ଼ିଶାରେ ନ ଥିଲା । ଇଂରେଜମାନେ ଭାରତକୁ ଅଧିକାର କଲା ପରେ ଶିକ୍ଷା ବିସ୍ତାର ପାଇଁ ଉଦ୍ୟମ କଲେ । ଊନବିଂଶ ଶତାବ୍ଦୀ ବେଳକୁ ଯେଉଁ ନୂତନ ଇଂରାଜୀ ଶିକ୍ଷିତ ଗୋଷ୍ଠୀର ଆବିର୍ଭାବ ଘଟିଲା, ସେହିମାନେ ହିଁ ହେଲେ ନବଜାଗରଣର ସୂତ୍ରଧର । ନାନା ବିଷୟକୁ ନେଇ ସଭାସମିତି ଗଢ଼ିଉଠିଲା ।

ଓଡ଼ିଶାରେ ଅବସ୍ଥା କିନ୍ତୁ ଥିଲା ନିଆରା । ୧୮୦୩ ମସିହାରେ ଇଂରେଜମାନେ ଓଡ଼ିଶାକୁ ଅଧିକାର କଲେ ଓ କ୍ରମେ ଇଂରେଜୀଶିକ୍ଷା ପ୍ରଚଳନ ପାଇଁ ଉଦ୍ୟମ କଲେ । ମିଶନାରୀମାନେ ଖ୍ରୀଷ୍ଟଧର୍ମ ପ୍ରଚାର କଲେ ଓ ଓଡ଼ିଶାରେ ପ୍ରଚଳିତ ନାନା ସାମାଜିକ ବିଶ୍ୱାସ ଉପରେ ଆଘାତ ଦେଲେ । ଜଗନ୍ନାଥ ଓ ଜଗନ୍ନାଥ ଧର୍ମର ବିଲୋପ ପାଇଁ କୌଶଳ କଲେ । ମିଶନାରୀମାନେ ଯେଉଁ ଶିକ୍ଷା ବ୍ୟବସ୍ଥା ପ୍ରଚଳନ କଲେ, ସେଠାରେ ଓଡ଼ିଆମାନେ ସେମାନଙ୍କ ପିଲାଙ୍କୁ ପଢ଼ାଇଲେ ନାହିଁ । ଫଳରେ ଏହି ଶତାବ୍ଦୀର ପ୍ରଥମାର୍ଦ୍ଧ ପର୍ଯ୍ୟନ୍ତ ଓଡ଼ିଆ ଜାତି ଥିଲା ଆତ୍ମ ବିଲୁପ୍ତ । ଦ୍ୱିତୀୟାର୍ଦ୍ଧ ବେଳକୁ ଓଡ଼ିଶାର ବିଭିନ୍ନ ସ୍ଥାନରେ ସ୍କୁଲ ପ୍ରତିଷ୍ଠା ଲାଭ କଲା ଓ ୧୮୬୮ ମସିହାରେ ହେଲା କଟକ କଲେଜ । ୧୮୭୦ ମସିହା ବେଳକୁ ସୃଷ୍ଟି ହେଲା ଭାଷା, ସଂସ୍କୃତି ଓ ଜାତିପ୍ରେମୀ ଏକ ନୂତନ ଶିକ୍ଷିତ ଗୋଷ୍ଠୀ । ନଅଙ୍କ ଦୁର୍ଭିକ୍ଷ (୧୮୬୬) ଓ ଭାଷା ସୁରକ୍ଷା ଆନ୍ଦୋଳନ (୧୮୬୯/୭୦) ଶିକ୍ଷିତ ଗୋଷ୍ଠୀଙ୍କ ଭିତରେ ତୀବ୍ର ପ୍ରତିକ୍ରିୟା ସୃଷ୍ଟି କଲା । ତେଣୁ ପ୍ରକାଶ ପାଇଲା ନାନା ସମ୍ବାଦପତ୍ର ଓ ସାହିତ୍ୟ ତଥା ଅନ୍ୟାନ୍ୟ ପତ୍ରପତ୍ରିକା । ୧୮୬୫ ମସିହାରୁ ୧୯୦୦ ମସିହା ମଧ୍ୟରେ ଗଢ଼ି ଉଠିଲା ଶତାଧିକ ସଭାସିମିତି । ମାତୃଭାଷା ଧର୍ମ ଓ ଜାତି ସଚେତନ ବହୁ ଶିକ୍ଷିତ ବ୍ୟକ୍ତି ସଭାସମିତି ତଥା ପତ୍ରପତ୍ରିକା ମାଧ୍ୟମରେ ରେନେସାଁ ବା ନବଜାଗରଣ ସୃଷ୍ଟି କଲେ । ଧର୍ମ ଓ ସମାଜରେ ପ୍ରଚଳିତ ଥିବା ନାନା ଅନ୍ଧ ବିଶ୍ୱାସ ଓ କୁସଂସ୍କାର ସଂପର୍କରେ ସଭାସମିତି ଓ ପତ୍ରପତ୍ରିକା ଅଙ୍ଗୁଳି ନିର୍ଦ୍ଦେଶ କଲେ । ଓଡ଼ିଆ ଭାଷାକୁ ବିଲୋପ କରିବା ପାଇଁ ଯେଉଁ ହୀନ ଚକ୍ରାନ୍ତ ହୋଇଥିଲା, ତାହାକୁ ପଣ୍ଡ କରିଦେଲା ସଭାସମିତି ଓ ପତ୍ରପତ୍ରିକା । ମାତୃଭାଷା ଓ ପ୍ରାଚୀନ ଓଡ଼ିଆ ସାହିତ୍ୟ ତଥା ଆଧୁନିକ ଓଡ଼ିଆ ସାହିତ୍ୟ ସଂପର୍କରେ ସଚେତନତା ସୃଷ୍ଟି ହେଲା । ଓଡ଼ିଶାର ସ୍ୱାତନ୍ତ୍ୟ ରକ୍ଷା ଓ ଦେଶ ଗଠନ ଉପରେ ମଧ୍ୟ ଗୁରୁତ୍ୱ ଆରୋପ କରାଗଲା । ତତ୍କାଳୀନ ସରକାରଙ୍କ ଦୃଷ୍ଟି ଆକର୍ଷଣ ପାଇଁ ମଧ୍ୟ ଥିଲା ସଭାସମିତିର ଗୁରୁତ୍ୱପୂର୍ଣ୍ଣ ଭୂମିକା । ଏହି ଦୃଷ୍ଟିରୁ ଊନବିଂଶ ଶତାବ୍ଦୀର ଶେଷ ତିରିଶି ବର୍ଷ ଭିତରେ ଯେଉଁସବୁ ସଭାସମିତିର ଉନ୍ମେଷ ଘଟିଥିଲା ଓ ଯେଉଁ ସଭା ସଂସ୍କୃତି ଜାତିଗଠନରେ ନେତୃତ୍ୱ ନେଇଥିଲା, ସେ ବିଷୟରେ ଆଲୋଚନା କରିବା ଏକାନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ।

**ସଭାର ଆଦ୍ୟ ଉନ୍ମେଷ :**

ନଅଙ୍କ ଦୁର୍ଭିକ୍ଷର ସଂକଟ କାଳରେ ସଭାର ହେଲା ଆଦ୍ୟ ଉନ୍ମେଷ । ଏ ସଭା କିନ୍ତୁ ସାଧାରଣ ସଭା ନ ଥିଲା , ଥିଲା କେତେଜଣ ଜାତି ଓ ସଂସ୍କୃତି ସଚେତନ ବିଦ୍ୱାନ ବ୍ୟକ୍ତିଙ୍କର ମିଳନ ଓ କିଛି ଜାତି ପାଇଁ କରିବାର ସଂକଳ୍ପ । କଟକର ଦରଘାବଜାର ଠାରେ ସେମାନେ ମିଳିତ ହୋଇ ସ୍ଥାପନ କଲେ କଟକ ପ୍ରିଣ୍ଟିଂ କଂପାନୀ ଲିମିଟେଡ୍ ନାମକ ଏକ ଅନୁଷ୍ଠାନ (୧୮୬୪) । ଏହି ଅନୁଷ୍ଠାନରେ ସଦସ୍ୟ ହେଲେ ଲକ୍ଷ୍ମୀନାରାୟଣ ରାୟଚୌଧୁରୀ, ମଧୁସୂଦନ ଦାସ, ଖୋସଲା ଚାନ୍ଦ ମାଡ଼ୱାଡ଼ି, ମାୟାଧର ଦାସ, ବିହାରୀଲାଲ ପଣ୍ଡିତ, ଗୌରୀଶଙ୍କର ରାୟ, ଗୋପୀମୋହନ ସେନ୍, ନନ୍ଦଲାଲ ମିଶ୍ର, ପଦ୍ମନାଭ ଦାଶ ଓ ଅକ୍ଷୟ କୁମାର ଘୋଷ । ଡାଇରେକ୍ଟର ହେଲେ ହରେକୃଷ୍ଣ ଦାସ, ଜଗମୋହନ ରାଏ, ବିଚିତ୍ରାନନ୍ଦ ଦାସ, ଦୀନନାଥ ସରକାର, ସୁଦର୍ଶନ ଦାସ, ଚୌଧୁରୀ ରଘୁନାଥ ଦାସ, ଲକ୍ଷ୍ମୀନାରାୟଣ ରାୟ ଚୌଧୁରୀ,

ରାଧାଶ୍ୟାମ ନରେନ୍ଦ୍ର, ଗୌରୀଶ୍ୟାମ ଜେନା, ଗୋଲୋକ ଚନ୍ଦ୍ର ବୋଷ, ବନମାଳୀ ସିଂହ ଓ ଗୌରୀଶଙ୍କର ରାୟ୍ । ସଭ୍ୟମାନଙ୍କର ବୈଠକୀ ସଭା ବାରମ୍ବାର ଅନୁଷ୍ଠିତ ହେଲା ଓ ସିଦ୍ଧାନ୍ତ ଗ୍ରହଣ କରାଗଲା- ଓଡ଼ିଶାର ପ୍ରାଚୀନ ତାଳପତ୍ର ସାହିତ୍ୟର ଉଦ୍ଧାର ଓ ମୁଦ୍ରଣ, ସମ୍ବାଦପତ୍ର ପ୍ରକାଶନ ଓ ଜାତୀୟ ସ୍ୱାର୍ଥ ସୁରକ୍ଷା ସଂପର୍କରେ । ସେହି ବୈଠକୀ ସଭାର ସିଦ୍ଧାନ୍ତର ପ୍ରଥମ ଯୁଗାନ୍ତକାରୀ ପଦକ୍ଷେପ ପ୍ରିଣ୍ଟିଂ ପ୍ରେସ ସ୍ଥାପନ ଓ 'ଉତ୍କଳ ଦୀପିକା' ସମ୍ବାଦପତ୍ର ପ୍ରକାଶନ । ଏହି ସମ୍ବାଦପତ୍ର ହେଲା ଉତ୍କଳର ନବଯୁଗର ବାର୍ତ୍ତାବହ, ରେନେସାଁର ଆଦ୍ୟ ପାଞ୍ଚଜନ୍ୟ ଉତ୍କଳୀୟ ଜାତୀୟତାର ନୂତନ ଗାୟତ୍ରୀ । ପରେ ପରେ ପ୍ରିଣ୍ଟିଂ କଂପାନୀ ଗୃହ କେବଳ ଦୀପିକା ଓ ପୁସ୍ତକ ପ୍ରକାଶନ ବିଷୟରେ ସୀମାବଦ୍ଧ ହେଲା ନାହିଁ, ଦୁର୍ଭିକ୍ଷଜନିତ ସରକାରୀ ଅବହେଳା, ଦୁର୍ଭିକ୍ଷ ନିରାକରଣ, ଓଡ଼ିଆ ଭାଷା ସୁରକ୍ଷା ଇତ୍ୟାଦି ନାନା ବିଷୟରେ ଆଲୋଚନା ପାଇଁ ହେଲା ସଭାଗୃହ । ଅତଏବ କଟକ ପ୍ରିଣ୍ଟିଂ କଂପାନୀ ଓ ଗୌରୀଶଙ୍କର ହିଁ ହେଲେ ଓଡ଼ିଶାରେ ସଭା- ସଂସ୍କୃତିର ପ୍ରଥମ ଆଲୋକ ବର୍ତ୍ତିକା ।

**ଦୁର୍ଭିକ୍ଷ ସଂପର୍କିତ କମିଟି ଓ ବିଭିନ୍ନ ସମିତି**

ନଅଙ୍କ ଦୁର୍ଭିକ୍ଷର ଲୋମହର୍ଷଣକାରୀ ସଂବାଦ 'ଦୀପିକା'ରେ ବାରମ୍ବାର ପ୍ରକାଶ ପାଇବାରୁ ସରକାର ବାଧ୍ୟ ହୋଇ 'ଦୁର୍ଭିକ୍ଷ ସାହାଯ୍ୟ କମିଟି' ୧୮୬୬ ମସିହା ଫେବୃଆରୀ ମାସ ୧୩ ତାରିଖରେ ବସାଇଲେ ଓ ଏଥିରେ ସଭ୍ୟ ରହିଲେ ଢେଙ୍କାନାଳର ରାଜା ଭଗୀରଥ ମହେନ୍ଦ୍ର ବାହାଦୁର, ବାବୁ ରଙ୍ଗଲାଲ ବନ୍ଦୋପାଧ୍ୟାୟ, ଦୀନନାଥ ସରକାର, ଈଶାନ ଚନ୍ଦ୍ର ବନ୍ଦୋପାଧ୍ୟାୟ, ଲକ୍ଷ୍ମୀ ନାରାୟଣ ରାୟଚୌଧୁରୀ। 'ଦୀପିକା' କିନ୍ତୁ ମତ ଦେଇଥିଲେ ଏହି କମିଟିରେ ରାଧାଶ୍ୟାମ ନରେନ୍ଦ୍ର ଓ ଚୌଧୁରୀ ରଘୁନାଥ ଦାସଙ୍କୁ ନେବା ଉଚିତ ଥିଲା । ୮।୧୨।୧୮୬୬ ତାରିଖରେ ଭାରତ ସରକାର ଦୁର୍ଭିକ୍ଷ ବିଷୟରେ ଅନୁସନ୍ଧାନ କରିବା ପାଇଁ ଯେଉଁ କମିଟି କରିଥିଲେ, ସେଥିରେ କର୍ଣ୍ଣେଲ ମଟନ ସାହେବ, ଡେମ୍ପିୟର ସାହେବ, କକ୍‌ରେଲ ସାହେବ ଓ ଜଣେ ଡାକ୍ତର ସଭ୍ୟ ଥିଲେ । ଦୁର୍ଭିକ୍ଷ ସଂପର୍କରେ ବିଭିନ୍ନ କମିଟି ଗଠନ କରାଯାଇ ସେହିସବୁ କମିଟିର ଅନୁସନ୍ଧାନ ରିପୋର୍ଟ ସରକାରଙ୍କୁ ପ୍ରଦାନ କରାଯାଇଥିଲା ।

ସଦାବର୍ତ୍ତ ମଠର ଅବସ୍ଥା ଅନୁସଂଧାନ ପାଇଁ ମଧ୍ୟ ୧୮୬୮ ମସିହାରେ ଗୋଟିଏ କମିଟି ହୋଇଥିଲା। ଶିକ୍ଷାର ବିକାଶ ପାଇଁ ମଧ୍ୟ ଗଠିତ ହୋଇଥିଲା ଶିକ୍ଷା ସମିତି'(୨୬।୧।୧୮୬୭) । କାଳୀପଦ ବନ୍ଦୋପାଧ୍ୟାୟଙ୍କ ବୈଠକ ଘରେ ଏହି ସମିତି ପ୍ରତିଷ୍ଠା ଲାଭ କରି ବିଦ୍ୟାଳୟମାନଙ୍କରେ କେଉଁପ୍ରକାର ପାଠ୍ୟପୁସ୍ତକ ପଢ଼ାଯିବ, ସେ ବିଷୟରେ ଆଲୋଚନା କରାଯାଉଥିଲା । ଏହି ସମିତିରେ କାଳୀପଦ ବନ୍ଦୋପାଧ୍ୟାୟ, ଜଗମୋହନ ରାୟ୍, ଦୁର୍ଯ୍ୟୋଧନ ଦାସ, ପ୍ରସନ୍ନ କୁମାର ଗାଙ୍ଗୁଲି, ଗୋଲୋକଚନ୍ଦ୍ର ବୋଷ, ଶିବ ପ୍ରସାଦ ସିଂହ ଓ ଈଶାନ ଚନ୍ଦ୍ର ଚଟ୍ଟୋପାଧ୍ୟାୟ ପ୍ରମୁଖ ସଭ୍ୟ ଥିଲେ । ଏହି ସଂବାଦ ସେତେବେଳେ ଦୀପିକା (୨।୪) ରେ ପ୍ରକାଶ ପାଇଥିଲା । କଟକରେ ମଧ୍ୟ ସାଧାରଣ ଶିକ୍ଷା କାର୍ଯ୍ୟକ୍ରମ କମିଟି ୩।୪।୧୮୬୯ ତାରିଖରେ ଗଠନ କରାଯାଇଥିଲା । କଟକ ସୋସାଇଟି ଗୌରୀଶଙ୍କର ରାୟଙ୍କ ଦ୍ୱାରା ପ୍ରତିଷ୍ଠା ଲାଭ କରିଥିଲା (୧୮୬୯) । ଏହାର ଲକ୍ଷ୍ୟ ଥିଲା ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତି ।

୧୮୭୦ ମସିହା ଜୁଲାଇ ମାସ ୨୨ ତାରିଖରେ ଏକ ବିଶେଷ ଅଧିବେଶନରେ ରେଭେନ୍‌ସା ସାହେବ ଯୋଗ ଦେଇ କଟକରେ ଥିବା ଭିନ୍ନ ଭିନ୍ନ ସମାଜକୁ ଏକତ୍ର କରିବାକୁ ପ୍ରସ୍ତାବ ଦେଇଥିଲେ । ସେ ମଧ୍ୟ କଟକ ପ୍ରିଣ୍ଟିଂ କଂପାନୀ ମାର୍ଫତରେ କଟକ ସୋସାଇଟିକୁ ରଖିବାକୁ କହିଥିଲେ । ମାତ୍ର 'ଡିବେଟିଂ କ୍ଲବ' ଗୌରୀଶଙ୍କରଙ୍କର ବିରୋଧ କରୁଥିବାରୁ ଏହି ପ୍ରସ୍ତାବ କାର୍ଯ୍ୟକାରୀ ହେଲାନାହିଁ । ଦୀପିକା ୯।୭।୧୮୭୦ ତାରିଖ ୪ର୍ଥ ଭାଗ ୨୮ ସଂଖ୍ୟାରେ ଲେଖିଥିଲେ, 'ଆଜିକାଲି କଟକରେ ସଭା ଦେଖି ଦେଖି ଆମ୍ଭେମାନେ ଅତ୍ୟନ୍ତ ଶ୍ରାନ୍ତ ହେଲୁଣି ଓ ସଭାକଥାମାନ ଲେଖୁଲେଖୁ କାଗଜ ପୂର୍ଣ୍ଣ ହେଲାଣି । ଏକ ସପ୍ତାହରେ ତିନିଟା ସଭାର ବିବରଣୀ ଲେଖିବାକୁ ପଡୁଥିବାରୁ ଆଉ କିଛି ଲେଖିବାକୁ ସ୍ଥାନ ନାହିଁ; ତଥାପି ସଂକ୍ଷେପରେ ଏକ ଏକ ସଭାର କଥା ଲେଖିଅଛୁ । ସେହି ତିନୋଟି ସଭା ଥିଲା (କ) ପୁରୁଷୋତ୍ତମରେ ସଭା (ଖ) ଡିବେଟିଂ କ୍ଲବର ସଭା, (ଗ) ଉଲ୍ଲାସିନୀ ସଭା । ଡିବେଟିଂ ଓ ଉଲ୍ଲାସିନୀ ସଭା କଟକ ସୋସାଇଟିର ବିରୋଧୀ ହୋଇଥିବାରୁ ପରସ୍ପର ସହିତ ମିଶିବାକୁ ବିରୋଧ କଲେ । 'କଟକ ସୋସାଇଟି' କିନ୍ତୁ ବାରମ୍ବାର ସଭା କରିଛି ଓ ଉତ୍କଳର ହିତ ଦୃଷ୍ଟିରୁ କାର୍ଯ୍ୟ କରିଛି । ପ୍ରିଣ୍ଟିଂ କଂପାନୀ ଯନ୍ତ୍ରାଳୟରେ ଏହି ସଭା ଅନୁଷ୍ଠିତ ହେଉଥିଲା । ଉତ୍କଳ ଦୀପିକାର ବିଭିନ୍ନ ସଂଖ୍ୟାରେ ଏହି ସଭାର ବିବରଣୀ ପ୍ରକାଶ ପାଇଅଛି । ଏସବୁ ସମିତି ବ୍ୟତୀତ 'ବାଣପୁର ଭଗବତୀ ସମିତି' (୨୫।୧୨।୯୮), ବାଲେଶ୍ୱର ନ୍ୟାସନାଲ ସୋସାଇଟି (୩୦.୬.୭୮) କଟକ କଲେଜ ଷ୍ଟୁଡେଣ୍ଟସ ଆସୋସିଏସନ୍‌ସ (୧୯।୮।୧୮୮୨), ପୁରୀ ଷ୍ଟୁଡେଣ୍ଟସ ଆସୋସିଏସନ (୧୯୮୨), ପୁରୀର ଉନ୍ନତି ସାଧନ କମିଟି(୨୬.୬.୧୮୮୩), ଓଡ଼ିଶା ଆସୋସିଏସନ୍ (୧୮।୮।୧୮୮୨), କଟକ ସ୍କୁଲ ବୁକ୍ କଂପାନୀ (୨୬.୧.୧୮୬୬) କଟକ ସୋସାଇଟି (୧୬।୧।୧୮୬୯), କଟକ ୟଙ୍ଗ ମେନ୍‌ସ ଆସୋସିଏସନ (୧୯.୬. ୧୮୬୯), କଟକ ବିଦ୍ୟାଧ୍ୟାସନୀୟ କମିଟି (୧୮.୯.୧୮୬୯), ପୁରୀ ସୋସାଇଟି (୨୬.୮.୭୦), କଟକ ଭଗବତ୍ ସମାଜ (୧୬.୮.୧୮୭୩), ଗଂଜାମ ନିଶା ନିଷେଧ ସମାଜ (୧୬.୧୦.୧୮୭୫), ଓଡ଼ିଆ ଇସ୍‌ଲାମ୍ ଆସୋସିଏସନ୍ (୧୮୭୫), ଓଡ଼ିଆ ତାଳପତ୍ର ସାହିତ୍ୟ ଉଦ୍ଧାରଣ କଂପାନୀ (୧.୫.୧୮୭୭), ବଙ୍ଗଭାଷା ଶିକ୍ଷା ଦେବା ବିଷୟ କମିଟି (୯.୦୫.୧୮୭୮), କଟକ ସୁହୃଦ ସମାଜ (୩୧।୮।୧୮୭୮), ବାଲେଶ୍ୱର ନ୍ୟାସନାଲ ବ୍ରାହ୍ମ ବ୍ରାହ୍ମ ସମାଜ (୨୮।୮।୧୮୭୯) ଇତ୍ୟାଦି ମଧ୍ୟ ଅନୁଷ୍ଠିତ ହୋଇଥିଲା ।

ଊନବିଂଶ ଶତାବ୍ଦୀର ଶେଷ ତିରିଶ/ପଇଁତିରିଶି ବର୍ଷ ଭିତରେ ଅନେକ କମିଟି, ସମିତି, ଏସୋସିଏସନ ପ୍ରତିଷ୍ଠା ଲାଭ କରି ଓଡ଼ିଶାର ଉନ୍ନତି ପାଇଁ ଉଦ୍ୟମ କରିଥିବା ଜଣାଯାଏ ।

**ଓଡ଼ିଆ ଭାଷା ସୁରକ୍ଷା ଓ ସାହିତ୍ୟ ସଂପର୍କିତ ସଭା**

୧୮୭୦ ମସିହା ପରେ ଓଡ଼ିଆ ଜାତିର ହେଲା ଆତ୍ମଜାଗୃତି । ଏହି ଆତ୍ମଜାଗୃତି ପର୍ବରେ ମାତୃଭାଷା ପ୍ରୀତି ଓ ଭାଷା ସୁରକ୍ଷା, ତାଳପତ୍ର ପୋଥିରୁ ପ୍ରାଚୀନ ସାହିତ୍ୟର ଉଦ୍ଧାର ଓ ପ୍ରକାଶନ, ଆଧୁନିକ ସାହିତ୍ୟ ସୃଷ୍ଟି ଓ ଆଲୋଚନା ଆଦି ବିବିଧ ପ୍ରସଙ୍ଗକୁ ନେଇ ସଭାର ପ୍ରୟୋଜନ ଅନୁଭୂତ ହୋଇଥିଲା ଓ ଗଢ଼ି ଉଠିଥିଲା ନାନା ସଭା । ୧୮୭୦ ମସିହା ପୂର୍ବରୁ ଓଡ଼ିଶାରେ ପ୍ରଶାସନିକ ଦାୟିତ୍ୱରେ ଥିବା କେତେକ

ଇଂରାଜୀ ସାହେବ ଓଡ଼ିଆ ଭାଷାକୁ ଉଠାଇ ଦେଇ ତା' ସ୍ଥାନରେ ବଂଗଳା ଭାଷା ଚଳାଇବାକୁ ମତ ଦେଇଥିଲା ବେଳେ ଅନ୍ୟ କେତେ ଜଣ ଓଡ଼ିଆ ଭାଷା ସପକ୍ଷରେ ମତ ଦେଇଥିଲେ । ତତ୍‌କାଳୀନ ବଂଗୀୟ ପଦସ୍ଥ କର୍ମଚାରୀ ଓ ଓଡ଼ିଶାରେ ଥିବା କେତେକ ବଙ୍ଗୀୟ ଜମିଦାର ଓଡ଼ିଆ ଭାଷା ଉଠାଇ ବଂଗଳା ଭାଷା ଚଳାଇବାକୁ ଉଦ୍ୟମ କରିଥିଲେ । ଏହିପରି ଏକ ପରିସ୍ଥିତି ସୃଷ୍ଟି ହୋଇଥିଲା ବେଳେ ୧୮୬୯/୭୦ ମସିହା ବେଳକୁ ଭାଷା-ସଂଗ୍ରାମର ଅନ୍ତିମ ପର୍ଯ୍ୟାୟ ଦେଖାଦେଲା ଓ ଏହି ସମୟକୁ ସଭାସମିତିରେ ବାଦାନୁବାଦ ପ୍ରକାଶ ପାଇଲା । ସଭା ମାଧ୍ୟମରେ ହିଁ ଓଡ଼ିଆ ଭାଷା ସପକ୍ଷରେ ବଳିଷ୍ଠ ଯୁକ୍ତି ଉପସ୍ଥାପିତ ହେଲା ଓ ସଭାର ମର୍ମ କ୍ରମେ ଶିକ୍ଷିତ ତଥା ସାଧାରଣ ଜନଗଣଙ୍କୁ ପ୍ରଭାବିତ କଲା । ଓଡ଼ିଆ ଭାଷା ମରଣ-ସଂକଟରୁ ରକ୍ଷା ପାଇଲା, ପ୍ରକାଶ ପାଇଲା କେତେ ସାହିତ୍ୟ ପତ୍ରିକା, ତାଳପତ୍ର ପୋଥି ସଂପାଦିତ ହୋଇ ପୁସ୍ତକମାନ ପ୍ରକାଶ ପାଇବାକୁ ଲାଗିଲା, ଆଧୁନିକ ସାହିତ୍ୟର ହେଲା ନବଉନ୍ମେଷ । ପୁନଶ୍ଚ ପ୍ରାଚୀନ ଓ ଆଧୁନିକ ସାହିତ୍ୟର ଦୋଷଦୁର୍ବଳତା ସଂପର୍କରେ ମଧ୍ୟ ସଭାମାନଙ୍କରେ ଆଲୋଚନା କରାଗଲା । ବିଜ୍ଞ ବ୍ୟକ୍ତିମାନେ ପ୍ରବନ୍ଧ ପାଠ କଲେ, ଅଭିଭାଷଣ ଦେଲେ । ସଭାସମିତିରେ ନୂତନ କରି ବକ୍ତୃତା, ଭାଷଣ ଓ ଅଭିଭାଷଣ ବେଶ୍ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଗ୍ରହଣ କଲା ।

୧୮୬୮ ମସିହା ଫେବୃୟାରୀ ମାସରେ 'କଟକସଭା' ଆରମ୍ଭ ହୋଇଥିଲା । ଏ ସଂପର୍କରେ 'ଦୀପିକା' କହନ୍ତି--"ପ୍ରାୟ ଦୁଇମାସ ହେଲା କଟକରେ କେତେ ବିଦ୍ୱାନ ଓ ସଂଭ୍ରାନ୍ତ ଲୋକ ଆପଣାର ଉନ୍ନତି ଉଦ୍ଦେଶ୍ୟରେ ଗୋଟିଏ ସମାଜ ସ୍ଥାପନ କରିଅଛନ୍ତି । କଟକ ହାଇସ୍କୁଲ ଗୃହରେ ସଭ୍ୟମାନେ ଉପସ୍ଥିତ ହୋଇ ନାନା ଇଂରାଜୀ ଓ ଦେଶୀୟ ସଂବାଦପତ୍ର ଓ ପୁସ୍ତକାଦି ପାଠ କରନ୍ତି ଓ ମାସରେ ଦୁଇଥର ସମସ୍ତ ସଭ୍ୟ ଏକତ୍ର ହୋଇ ସାମାଜିକ ଓ ବିଜ୍ଞାନ, ଶାସ୍ତ୍ରାନ୍ତର୍ଗତ ଏକ ଏକ ବିଷୟରେ ତର୍କବିତର୍କ କରନ୍ତି (ଉ.ଦୀ.୩ ଭା/ସଂ୧୨, ତା୨୫।୪।୧୮୬୮)। 'କଟକ ସଭା' ପରିଦର୍ଶନରେ ରେଭେନ୍‌ସା ସାହେବ ଆସିଥିବା କଥା ମଧ୍ୟ ଦୀପିକାରେ ପ୍ରକାଶ ପାଇଥିଲା । ଏଥିରୁ ଜଣାପଡ଼େ ଯେ ୧୮୭୦ ମସିହା ପୂର୍ବରୁ 'କଟକ ସଭା'ର ଗୁରୁତ୍ୱ ଥିଲା ଅଧିକ । ଯେତେବେଳେ ଓଡ଼ିଆ ଭାଷା ପ୍ରତି ସଂକଟ ଦେଖାଦେଲା, ସେତେବେଳେ 'ଉତ୍କଳ ଦୀପିକା' ଓ 'କଟକ ସଭା' ଅଣ୍ଟାଭିଡ଼ି ଠିଆ ହେଲେ ଓ ପରେ ପରେ 'ବାଲେଶ୍ୱର ସମ୍ବାଦ ବାହିକା' ଓ ଅନ୍ୟାନ୍ୟ ସଭାସମିତି ମଧ୍ୟ ମୁଣ୍ଡଟେକି ଉଠିଲେ ।

କଟକରେ ସଂଭ୍ରାନ୍ତ ବ୍ୟକ୍ତିମାନଙ୍କର ଏକ ସଭା ୧୪।୧୧।୧୮୬୮ ତାରିଖରେ ଅନୁଷ୍ଠିତ ହୋଇଥିଲା । ମାତ୍ର ବେଶୀଲୋକ ସେହି ସଭାରେ ଯୋଗ ଦେଲେ ନାହିଁ । ଉତ୍କଳର ଉନ୍ନତିକଳ୍ପେ ଗୋଟିଏ ସଭା ଅନୁଷ୍ଠିତ ହେଲା ୨୪।୭।୧୮୬୯ତାରିଖରେ ଓ ତାହାର ନାମ ରଖାଗଲା 'କଟକ ଡିବେଟିଂ କ୍ଲବ' । ଏହି ସଭାରେ ଶ୍ରୀବାବୁ ରାଜକୃଷ୍ଣ ବନ୍ଦୋପାଧ୍ୟାୟ (ଏମ.ଏ.) ଗୋଟିଏ ବକ୍ତୃତା ଦେଇଥିଲେ । ଏହି ସଭାକୁ ସମାଲୋଚନା କରି ଶ୍ରୀ ରଙ୍ଗନି ପଞ୍ଚାନନ (ଛଦ୍ମନାମ) ଦୀପିକାରେ ଲେଖିଥିଲେ "ବଂଗାଳୀ ଓ ଓଡ଼ିଆଙ୍କ ମଧ୍ୟରେ ପରସ୍ପର ପ୍ରତି ଯେଉଁ ବିଦ୍ୱେଷ ସୃଷ୍ଟି ହୋଇଥିଲା, ତାହାର ମୁଖ୍ୟକେନ୍ଦ୍ର ହୋଇଗଲା 'କଟକ ଡିବେଟିଂ କ୍ଲବ ।" ଏହି ବିଦ୍ୱେଷାରେ ବଙ୍ଗାଳୀମାନଙ୍କ ଶ୍ରେଷ୍ଠତ୍ୱ ପ୍ରକାଶ ପାଇଥିଲା । ୧୬।୪।୧୮୭୦

ଲିଖରେ ହିତୈଷିଣୀ ଏହି ବିଦ୍ୱେଷ ଉପରେ ସୂଚେଇଥିଲେ । ଯାଜପୁର ଠାରେ ୭ । ୧ । ୧୮୭୦ ତାରିଖରେ 'ଉତ୍କଳ ହିତୈଷିଣୀ' ତରଫରୁ ଗୋଟିଏ ସଭା ଗଣେଶ ଚନ୍ଦ୍ର ମହାପାତ୍ରଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହୋଇଥିଲା । ଏହି ସଭା ମଧ୍ୟ ଓଡ଼ିଆ ଭାଷା ପ୍ରତି ନାସିକା କୁଞ୍ଚନ କରିଥିଲେ । ଏହି ସଭାରେ ପ୍ରବନ୍ଧ ପାଠ କରାଯାଇଥିଲା । ପୁନଶ୍ଚ ୧୪ ।୫ । ୧୮୭୦ ତାରିଖରେ ଯାଜପୁରରେ ଅନୁଷ୍ଠିତ ସଭାରେ ବାବୁ ତ୍ରୈଲୋକ୍ୟନାଥ ମୁଖାର୍ଜୀ ଓଡ଼ିଆ ଭାଷାକୁ ଉଠାଇ ବଂଗଳା ଭାଷା ଚଳାଇବାକୁ ବକ୍ତୃତା ଦେଇଥିଲେ । ଉତ୍କଳ ହିତୈଷିଣୀର ୫ମ ଭାଗ ୨୦ ସଂଖ୍ୟାରେ ଏହା ପ୍ରକାଶ ପାଇଥିଲା ।

ଉମାଚରଣ ହାଲଦାର ବଂଗଳା ଅକ୍ଷରରେ ଉତ୍କଳ ଭାଷାକୁ ଲେଖିବାକୁ ମତ ଦେବାରୁ ଦୀପିକା ତାହାର ପ୍ରତିବାଦ କରିଥିଲେ (୧୮୬୮) । ଇଣ୍ଡିଆନ ମିସନ୍ ମଧ୍ୟ ୧୮୬୮ ଡିସେମ୍ବର ମାସରେ ବଂଗଳା ଭାଷା ସପକ୍ଷରେ ଓ ଓଡ଼ିଆ ଭାଷା ବିରୋଧରେ ଲେଖିଥିଲେ । ଗଭର୍ଣ୍ଣମେଣ୍ଟ ତରଫରୁ ୨୧ । ୧ । ୧୮୬୯ ତାରିଖରେ ଅନୁଷ୍ଠିତ ହୋଇଥିଲା 'ଉତ୍କଳ ଭାଷା ଗ୍ରନ୍ଥ ପରୀକ୍ଷା ସଭା' । ବାଲେଶ୍ୱର ସ୍କୁଲର ଶିକ୍ଷକ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ ଗୋଟିଏ ପୁସ୍ତକ ରଚନା କଲେ 'ଉଡ଼ିୟା ସ୍ୱତନ୍ତ୍ର ଭାଷା ନୟ' । ଏହାକୁ 'ଉତ୍କଳ ହିତୈଷିଣୀ' ସମର୍ଥନ କରିଥିଲା ବେଳେ 'ଏଡୁକେଶନ୍ ଗେଜେଟ' ଓ 'କଲିକତା ରିଭ୍ୟୁ' ବିରୋଧ କରିଥିଲେ । ଉତ୍କଳ ଦୀପିକା ଏହାକୁ ତା.୬ । ୨ । ୧୮୭୦ରିଖ ୫ମ ଭାଗ ନବମ ସଂଖ୍ୟାରେ ତୀବ୍ର ସମାଲୋଚନା କରିଥିଲେ ।

'କଟକ ଡିବେଟିଂ କ୍ଲବ'ରେ ଡିସେମ୍ବର ୧୮୬୮ରେ ଗୋଟିଏ ସଭାରେ ବାବୁ ରାଜେନ୍ଦ୍ରଲାଲ ମିତ୍ର ଭାଷଣ ଦେଇ କହିଥିଲେ, 'ଉତ୍କଳର ଯଥାର୍ଥ ହିତାକାଂକ୍ଷୀ ଯେ ହେବେ ଯେ ସର୍ବାଗ୍ରେ ଉତ୍କଳ ଭାଷା ଉଠାଇ ଦେଇ ବଂଗ ଭାଷା ପ୍ରଚଳନ କରିବାର ଚେଷ୍ଟା କରିବେ । କାରଣ ତାହାଙ୍କ ମତରେ ଯେତେ କାଳ ଉତ୍କଳ ଭାଷା ଉଠି ଯାଇନାହିଁ, ତେତେକାଳ ଏ ଦେଶର ଉନ୍ନତି ହେବା ଅସମ୍ଭବ ।'' (ଦୀପିକା ଭା ୪ ।ସଂ ୧୧- ୧୩.୩.୧୮୬୯) ଏହି ପ୍ରସଙ୍ଗରେ ଦୀପିକା ଲେଖିଥିଲେ – ବଂଗଳା, ମାନ୍ଦ୍ରାଜ ଓ ମଧ୍ୟପ୍ରଦେଶ ଅନ୍ତର୍ଗତ ହୋଇ 'ଉତ୍କଳଭାଷା ବର୍ତ୍ତମାନ ତିନିଥେଣ୍ଟିଆ କାକୁଡ଼ି ବାଡ଼ି' ହୋଇଅଛି ।

ବାଲେଶ୍ୱରର ଡେପୁଟୀ ଇନ୍ସପେକ୍ଟର ଶିବଦାସ ଭଟ୍ଟାଚାର୍ଯ୍ୟ ଓ ବଂଗଳାର ଡି.ପି.ଆଇ ଅଟକିନ୍ ସାହେବ ୧୮୭୦ ମସିହା ବେଳକୁ ଓଡ଼ିଆ ଭାଷା ବିରୋଧୀ କାର୍ଯ୍ୟ କରିବାରୁ ବାଲେଶ୍ୱରରେ ସଭା କରାଯାଇ ଅଟକିନ ସାହେବଙ୍କୁ 'ଭାଷା ସଂହାରୀ କଳାପାହାଡ଼', କୁହାଯାଇଥିଲା । ବାଲେଶ୍ୱରରେ 'ଉତ୍କଳ ଭାଷା ଉନ୍ନତି ବିଧାୟିନୀ ସଭା' ୧୮୬୬ ମସିହା ବେଳକୁ ସ୍ଥାପିତ ହୋଇଥିଲା । ଦୀପିକା ୩ । ୧୧ । ୧୮୬୬ ତାରିଖ ସଂଖ୍ୟାରେ ଲେଖିଥିଲେ । 'ଉତ୍କଳ ଉଲ୍ଲାସିନୀ ସଭା' (୧୮୬୯), ଉତ୍କଳ ଭାଷା ଗ୍ରନ୍ଥ ପରୀକ୍ଷା ସଭା, ଦୀ.୧୦.୭.୧୮୬୯), ଉତ୍କଳ ଭାଷୋଦୀପନୀ ସଭା, (ତା ୧.୭.୧୮୭୩) ଇତ୍ୟାଦି ସୃଷ୍ଟି ହୋଇ ଓଡ଼ିଆ ଭାଷାର ସୁରକ୍ଷା ପାଇଁ ଉଦ୍ୟମ କରିଥିଲେ । 'ସଭା' ସୃଷ୍ଟି ହେବା ଫଳରେ, ଯଦିଓ କେତେକ ସଭା ବଂଗ ଭାଷା ପ୍ରଚଳନ ପାଇଁ ଯୁକ୍ତି ଉପସ୍ଥାପନ କରୁଥିଲେ, ଓଡ଼ିଆ ଭାଷା ପ୍ରତି ଆଦର ବୃଦ୍ଧି ହେବାକୁ ଲାଗିଲା ଓ ମାତୃଭାଷାକୁ କେନ୍ଦ୍ର କରି ଉତ୍କଳୀୟ ଜାତୀୟତାବୋଧର ହେଲା ଉନ୍ମେଷ । ୧୮୬୮ ମସିହାରୁ ଉତ୍କଳ ଭାଷାରେ ପାଠ୍ୟପୁସ୍ତକ ରଚନା କରିବା ପାଇଁ ଉତ୍ସାହ ସୃଷ୍ଟି ହେଲା । ସମ୍ବଲପୁର ଅଂଚଳରେ

ଓଡ଼ିଆ ଭାଷା ଲୋପ ପାଇଯିବାର ଆଶଙ୍କା ଦେଖାଦେବାରୁ ସେଠାରେ ଉତ୍କଳ ଭାଷା ଶିକ୍ଷା ଦେବା ପାଇଁ ବିଚ୍ଛନ୍ଦ ପଟ୍ଟନାୟକ ସଭାରେ ଦାବି ଉପସ୍ଥାପନ କରି ଥିଲେ (୧୮୬୮) । 'ଉତ୍କଳ ଭାଷୋଦ୍ଦୀପନୀ ସଭା'ର ବାର୍ଷିକ ଅଧିବେଶନ କଟକ ପ୍ରିଣ୍ଟିଂ ପ୍ରେସ (୧୮୬୪)ରେ ଅନୁଷ୍ଠିତ ହୋଇଥିଲା ଓ ସଭାପତି ବଂଗଳାରେ କହିବାରୁ ସଭାରେ ଘୋର ପ୍ରତିକ୍ରିୟା ସୃଷ୍ଟି ହୋଇଥିଲା (ଦୀ.୧୩.୬.୧୮୬୪) । ଏହି ଅନୁଷ୍ଠାନର ବିଭିନ୍ନ ସମୟରେ ବାର୍ଷିକ ଅଧିବେଶନ ଅନୁଷ୍ଠିତ ହେଉଥିଲା । 'ହିତକରସଭା' (୬।୮।୧୮୭୦)ରେ ଉତ୍କଳର ହିତ ପାଇଁ ଆଲୋଚନା କରାଯାଉଥିଲା । ମାତ୍ର ଏହା ଅନେକ ସମୟରେ ଉତ୍କଳ ବିରୋଧୀ ଭାବ ସୃଷ୍ଟି କରୁଥିଲା । କାଳୀପଦ ବନ୍ଦୋପାଧ୍ୟାୟଙ୍କ ଉଦ୍ୟମରେ ଦୁଇଟି ସଭା ସ୍ଥାପିତ ହୋଇଥିଲା । ସେ ଦୁଇଟି ହେଲା (୧)ପୁରୁଷୋତ୍ତମ ନଗରରେ ସଭା । ଏହାର ସଭାପତି ଥିଲେ ପୁରୀ କଲେକ୍ଟର ଡାଲଟନ୍ ସାହେବ ଓ ସଂପାଦକ ଥିଲେ ବାବୁ ଅମ୍ବିକା ଚରଣ ଚୌଧୁରୀ । ସଭ୍ୟମାନଙ୍କୁ ମାସିକ ଚାରିଅଣା ଚାନ୍ଦା କରାଯାଇଥିଲା । 'ଓଡ଼ିଶା ପେଟ୍ରିଅଟ୍' ପ୍ରକାଶ କରିବା ପାଇଁ ଉଦ୍ୟମ ହୋଇଥିଲା । (୨) ଅନ୍ୟ ସଭାଟି ଖୋରଧାରେ ସ୍ଥାପିତ ସଭା । ଏହାର ସଭାପତି ଥିଲେ ବାବୁ ଭାଗବତ ମହାନ୍ତି ଓ ସଂପାଦକ ଥିଲେ ବାବୁ କହ୍ନେୟାଲାଲ ରାୟ । ଏହି ବିବରଣୀ ଦୀପିକାର ୫ମ ଭା/୩୨ ସଂଖ୍ୟାରେ ପ୍ରକାଶ ପାଇଥିଲା । 'ଉତ୍କଳ ଭାଷୋଦ୍ଦୀପନୀ ସଭା'ର ଏକ ବିଶେଷ ଅଧିବେଶନ ଉତ୍କଳ ପ୍ରିଣ୍ଟିଂ ଯନ୍ତ୍ରାଳୟରେ ହରେକୃଷ୍ଣ ଦାସଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହୋଇଥିଲା । ଏଥିରେ ଦେଶୀୟ ଓ ବିଦେଶୀୟ ପ୍ରାୟ ୬୦ ଜଣ ସଭ୍ୟ ଯୋଗଦେଇଥିଲେ (ଦୀପିକା ୧୧.୬.୧୮୬୪, ୯ଭା/୨୮ସଂ)ବାଲେଶ୍ୱରରେ ମଧ୍ୟ ଏହି ସମୟରେ ବାବୁ ଜଗଜୀତ ରାୟଙ୍କ ଅଧ୍ୟକ୍ଷତାରେ ବାବୁ ମଦନ ମୋହନ ଦାସଙ୍କ ବଗିଚା ଘରେ ସଭା ଅନୁଷ୍ଠିତ ହୋଇ ଓଡ଼ିଆ ଭାଷାର ସୁରକ୍ଷା ଓ ପ୍ରସାର ସଂପର୍କରେ ଆଲୋଚନା କରାଯାଇଥିଲା । ଏହି ସଭାର ସଂପାଦକ ଥିଲେ ବାବୁ ବୈକୁଣ୍ଠ ନାଥ ଦେ । ବାବୁ ରାମଶଙ୍କର ରାୟଙ୍କ ଉଦ୍ୟମକ୍ରମେ ୧୮୬୮ ମସିହାରେ ପ୍ରତିଷ୍ଠା ଲାଭ କଲା 'ଉତ୍କଳ ସଭା' । ପ୍ରିଣ୍ଟିଂ କଂପାନୀଠାରେ ଏହାର ବାର୍ଷିକ ଅଧିବେଶନ ଅନୁଷ୍ଠିତ ହୋଇ ଉତ୍କଳର ଆଶା/ନିରାଶା, ଓଡ଼ିଆ ଭାଷାର ଦୁର୍ଦ୍ଦଶା ଓ ଓଡ଼ିଶାର ଉନ୍ନତି ପାଇଁ ଆଲୋଚନା କରାଯାଇଥିଲା । ଏହି ବାର୍ଷିକ ସଭାରେ ରାମଶଙ୍କର ରାୟ 'ଏକତା ଓଡ଼ିଶା' ଶୀର୍ଷକ ପ୍ରବନ୍ଧ ପାଠ କରିଥିଲେ । (ଦୀ.୧୧।୧୧।୧୮୬୯, ୧୪ଭା/୪୧ ସଂ) ।

୧୯୮୧ ମସିହାରେ ମଧୁସୂଦନ ଦାସ କଲିକତାରୁ କଟକ ଆସି ଓକିଲାତି ଆରମ୍ଭ କରିବାରୁ ତାଙ୍କୁ ଭବ୍ୟ ସମ୍ବର୍ଦ୍ଧନା ଦେବା ପାଇଁ ଉତ୍କଳ ସଭା ଉଦ୍ୟମ କରିଥିଲେ । ଏ ସଂପର୍କରେ ଉତ୍କଳ ଦୀପିକାରେ ୨୪।୯।୧୮୮୧ତାରିଖରେ ଗୋଟିଏ ନୋଟିସ୍ ବାହାରିଥିଲା । 'It is hereby given that Babu Madhusudan Das M.A.B.L, will deliver a lecture in English on Monday, the 26th instant, at 7 P.M at the premises of the Cuttack Printing Company's hall, on unification of Indian alphabets.Gentlemen interested in the matter are respectfully requested to be punctual in their attendance to accure proper seats.' Cuttack 24.9.1881 Rama Sankar Ray.

କଟକ ଡିବେଟିଂ କ୍ଲବ, ଉଲ୍ଲାସିନୀ ସଭା, କଟକ ସୋସାଇଟି, ହିତକର ସଭା ଓ ଉତ୍କଳ ସଭା ଆଦି ପୂର୍ବରୁ ପ୍ରିଣ୍ଟିଂ କମ୍ପାନୀ ସଭା ଓ ଉତ୍କଳ ଭାଷୋଦ୍ଦୀପିନୀ ସଭା ବିଶେଷ ଗୁରୁତ୍ୱ ଅର୍ଜନ କରିଥିଲେ । ଉତ୍କଳ ଦୀପିକାର ଦ୍ୱିତୀୟଭାଗ/ ୨୧ ସଂଖ୍ୟାରେ ଉତ୍କଳ ଭାଷୋଦ୍ଦୀପିନୀ ସଭା ବିଷୟରେ ଏକ ବିବରଣୀ ପ୍ରକାଶ ପାଇଥିଲା । ଏହି ସଭାରେ ରଙ୍ଗଲାଲ ବନ୍ଦୋପାଧ୍ୟାୟ ସଭାପତିତ୍ୱ କରିଥିଲେ । ତାଙ୍କ ବ୍ୟତୀତ ବାବୁ ଜଗମୋହନ ରାୟ, ବାବୁ ଚନ୍ଦ୍ରଶେଖର ବାନୁର୍ଜୀ, ବେବର୍ତ୍ତା ଚନ୍ଦ୍ରଶେଖର ମହାପାତ୍ର, ବାବୁ ଜଗମୋହନ ସେନ୍, ବାବୁ ହରେକୃଷ୍ଣ ଦାସ, ବାବୁ ଗୋବିନ୍ଦଚନ୍ଦ୍ର ମହାପାତ୍ର, ପଣ୍ଡିତ କପିଳେଶ୍ୱର ବିଦ୍ୟାଭୂଷଣ, ବାବୁ ବଳରାମ ବୋଷ, ବାବୁ ଜଗମୋହନ ଲାଲ, ବାବୁ ରାମକୃଷ୍ଣ ବାନୁର୍ଜୀ, ବାବୁ କୈଳାସଚନ୍ଦ୍ର ପାଲିତ, ବାବୁ ହାରାଧନ ବୋଷ, ବାବୁ ଗୌରୀଶଙ୍କର ରାୟ ପ୍ରମୁଖ ଉପସ୍ଥିତ ଥିଲେ । ଉତ୍କଳ ଦୀପିକା ଲେଖିଥିଲେ, "ଗତ ରବିବାର ଉତ୍କଳ ଦେଶ ପକ୍ଷରେ ଏକ ଉତ୍କୃଷ୍ଟ ଦିନ ଥିଲା । ଏହି ଦିବସ ଅତ୍ରସ୍ଥ ସମ୍ଭ୍ରାନ୍ତ ବ୍ୟକ୍ତିମାନେ ଏକତ୍ର ହୋଇ ଏକ ମହତ କର୍ମର ଅନୁଷ୍ଠାନ କରିଅଛନ୍ତି । କି ରୂପେ ଉତ୍କଳ ଭାଷା ଉନ୍ନତ ହେବ ଓ ସରକାରୀ ମହକୁମାମାନଙ୍କରେ ବର୍ତ୍ତମାନ ଚଳିତ ଥିବା ମିଶ୍ରିତ ଭାଷା ପରିବର୍ତ୍ତେ ବିଶୁଦ୍ଧ ଉତ୍କଳ ଭାଷା ଚଳନ ହେବ ଓ କେବଳ ଉପଯୁକ୍ତ ବ୍ୟକ୍ତିମାନେ ଅମଲାଗିରି କର୍ମ କରିପାରିବେ; ଏ ସମସ୍ତ ଏ ସଭାର ଉଦ୍ଦେଶ୍ୟ ।" (ଦୀ.୨୬।୫।୧୮୬୬) ସଭାଟି ସେହି ମାସ ୧୯ ତାରିଖ ରବିବାର ଦିନ କଟକରେ ହୋଇଥିଲା । ଏ ସଭାର ଗୁରୁତ୍ୱ ହେଲା – ଉତ୍କଳ ଭାଷାର ସୁରକ୍ଷା ଓ ସରକାରୀ କାର୍ଯ୍ୟାଳୟରେ ଉପଯୁକ୍ତ ଶିକ୍ଷିତ ବ୍ୟକ୍ତିମାନଙ୍କର ନିଯୁକ୍ତି । ଏହି ସଭାର ଅନ୍ୟ ଏକ ଅଧିବେଶନ କଟକ ନର୍ମାଲ୍ ସ୍କୁଲରେ ୯।୮।୧୮୭୩ ତାରିଖରେ ଅନୁଷ୍ଠିତ ହୋଇଥିଲା । ଏହି ସଭାରେ ସଭାପତିତ୍ୱ କରିଥିଲେ ପଣ୍ଡିତ ପ୍ରଭାକର ବିଦ୍ୟାଳଙ୍କାର । ଉତ୍କଳ ଭାଷାର ଉନ୍ନତି ଓ ଉତ୍କଳ ପାଠ୍ୟପୁସ୍ତକର ତର୍ଜମା ଏହି ସଭାର ଉଦ୍ଦେଶ୍ୟ ଥିଲେ ହେଁ ଆଧୁନିକ ଶିକ୍ଷିତ ବ୍ୟକ୍ତିମାନଙ୍କର ବକ୍ତୃତା ଦେବା ଓ ରଚନା ଶକ୍ତିର ବୃଦ୍ଧି କରିବା, ତର୍କବିତର୍କ କରିବା ମଧ୍ୟ ଥିଲା ଲକ୍ଷ୍ୟ । ଏଥିରେ ମୁଖ୍ୟତଃ ନର୍ମାଲ୍ ସ୍କୁଲର ଶିକ୍ଷକ ଓ ଛାତ୍ରମାନେ ଅଂଶଗ୍ରହଣ କରିଥିଲେ ।

ସେତେବେଳେ ଯେଉଁ ସବୁ ସଭା ଅନୁଷ୍ଠିତ ହେଉଥିଲା, ସେ ସଂପର୍କରେ ଦୀପିକା ଭା.୫/୨୨ ସଂଖ୍ୟାରେ ଲେଖିଥିଲେ, "ଆମ୍ଭେମାନେ ଗତ ସପ୍ତାହରେ ପତ୍ରିକାରେ ଏହି ନଗରରେ ଯେଉଁ ସଭାମାନ ହେବାର ସମ୍ବାଦ ଦେଇଥିଲୁ, ସେହି ବିଷୟରେ ଆପଣା ମନ୍ତବ୍ୟ ପ୍ରକାଶ କରିବାରେ ଇଚ୍ଛାପ୍ରକାଶ କରିଥିଲୁ । ସେ ସଭାମାନ ଦୁଇପ୍ରକାରରେ ହୋଇପାରେ, ଅର୍ଥାତ ସାଧାରଣ ସଭା ଓ ପଣ୍ଡିତଙ୍କ ସଭା । ଅଦ୍ୟ ସାଧାରଣ ସଭା ବିଷୟରେ ଆପଣା ଅଭିପ୍ରାୟ ବ୍ୟକ୍ତ କରିଅଛୁ ।"

ସାଧାରଣ ସଭା ମଧ୍ୟରେ ଉଲ୍ଲାସିନୀ ସଭାକୁ ପ୍ରଧାନ ବୋଲିବାକୁ ହେବ । ସଭାରେ ରାଜା, ଜମିଦାର, ପଣ୍ଡିତ, ସରକାରୀ ଉଚ୍ଚକର୍ମଚାରୀ ଏବଂ ଆଉ ଶ୍ରେଣୀର ବ୍ୟକ୍ତିମାନେ ଏକତ୍ର ହୋଇଥିଲେ । କମିଶନର ସାହେବ ଆପଣା ବକ୍ତୃତାରେ କହିଲେ ଯେ, ସେ ସଭାକୁ ଆସିଛନ୍ତି ବୋଲି କେହି ଯେମନ୍ତ ତାହାଙ୍କୁ ଉଚ୍ଚ ହାକିମ ବିଚାରକରି ମନୋଗତ ଭାବ ପ୍ରକାଶ କରିବାକୁ ଲଜ୍ଜିତ ବା କୁଣ୍ଠିତ ନ ହୁଅନ୍ତୁ । ବାସ୍ତବରେ ସେ ହାକିମ ସ୍ୱରୂପ ସଭାକୁ ଆସି ନାହାନ୍ତି । ଅନ୍ୟ ସଭ୍ୟ ପ୍ରାୟ ତାହାଙ୍କୁ ଉତ୍କଳବାସୀ

ବନ୍ଧୁବୋଲି ସଭ୍ୟମାନେ ଗ୍ରହଣ କଲେ ଅତିଶୟ ଆନନ୍ଦିତ ହେବେ ।" ସେ ପୁଣି ପ୍ରସଙ୍ଗକ୍ରମେ କହିଥିଲେ– ଧନବାନ୍‌ର ଧନ, ପଣ୍ଡିତର ବୁଦ୍ଧି ଓ ପରାକ୍ରମୀର ବଳ ଏକତ୍ର ହେଲେ କେଉଁ କାର୍ଯ୍ୟ ସାଧନ ହୋଇ ନ ପାରଇ; ମାତ୍ର ଏମାନେ ଆପଣା ଟେକ ରଖିବା ପାଇଁ କେହି କାହାରି ସହିତ ବାକ୍ୟାଳାପ ନ କଲେ ତାହା କି ରୂପେ ହେବାର ସମ୍ଭାବନା । XXX ସଂପ୍ରତି ଅତ୍ରତ୍ୟ ରାଜାମାନେ ଏକ ଅନ୍ୟଠାରେ ସଂପୂର୍ଣ୍ଣରୂପେ ପୃଥକ୍ ଥିବାରୁ କୌଣସି ହିତାନୁଷ୍ଠାନରେ ସେମାନଙ୍କରେ ଐକ୍ୟ ହୋଇପାରୁନାହିଁ । ସମାଜ ନିୟମର ଅନୁସରଣ କରି କଥାର ଉଦୟ ହୁଅନ୍ତା ଓ ଜଣକର ପ୍ରସ୍ତାବରେ ଅନ୍ୟମାନେ ଯୋଗ ଦେଇ ନାନା ହିତ ସଂପନ୍ନ କରିପାରନ୍ତି ।" (ଉ.ଦୀ. ତା ୨୮।୫।୧୮୭୦) ଏହି ସଭାରେ କମିଶନର ରେଭେନ୍‌ସା ସାହେବଙ୍କ ବକ୍ତବ୍ୟରୁ ସ୍ପଷ୍ଟ ହୋଇଛି ଯେ ରାଜ୍ୟ ଭିତରେ ଏକତା ନ ରହିଲେ ଦେଶର ଉନ୍ନତି ସମ୍ଭବ ନୁହେଁ । ଧନୀ, ପଣ୍ଡିତ ଓ ଶକ୍ତିଧରମାନଙ୍କ ମଧ୍ୟରେ ସମନ୍ୱୟ ଦରକାର । ରାଜାମାନେ ନିଜେ ନିଜକୁ ନିବୁଜ କୋଠରୀରେ ନ ରଖି ଲୋକମାନଙ୍କ ସହିତ ମିଶିବା ଉଚିତ । ୧୮୭୦ ମସିହା ପୂର୍ବରୁ ଉତ୍କଳରେ ଏହି ଅବସ୍ଥା ଥିଲା ଓ ବାରମ୍ବାର ସଭାସମିତିରେ ଏକଥା କୁହାଯିବା ଫଳରେ ରାଜା, ଜମିଦାରମାନେ କ୍ରମେ ସଭାକୁ ଆସିଛନ୍ତି, ସଭାର ଆୟୋଜନ କରିଛନ୍ତି । ସେମାନଙ୍କ ମଧ୍ୟରେ ବାଲେଶ୍ୱରର ରାଜା ବୈକୁଣ୍ଠ ନାଥ ଦେ, ବାମଣ୍ଡାର ରାଜା ସୁଚଳ ଦେବ ଓ ମୟୁରଭଂଜର ରାଜା ରାମଚନ୍ଦ୍ର ଭଂଜ ପ୍ରମୁଖ ଦୃଷ୍ଟି ଆକର୍ଷଣ କରନ୍ତି ।

ଭାଷା, ଜାତୀୟ ଐକ୍ୟ, ଦେଶର ଉନ୍ନତି ସହିତ ଓଡ଼ିଆ ସାହିତ୍ୟର ଉନ୍ନତି ପାଇଁ ମଧ୍ୟ ନାନା ସଭା ସୃଷ୍ଟି ହୋଇଥିଲା । ଓଡ଼ିଆ ଭାଷା ଓ ସାହିତ୍ୟକୁ ନେଇ ଯେଉଁ ସଂଘର୍ଷ ଉତ୍କଳ ଦୀପିକା ଓ ଉତ୍କଳ ହିତୈଷିଣୀ ମଧ୍ୟରେ ଲାଗି ରହିଥିଲା, ତାହାର ୧୮୭୩ ମସିହା ପରବର୍ତ୍ତୀ ସମୟରେ ଅବସାନ ଘଟିଲା । ୧୮୭୨ ମସିହାରେ ରେଭେନ୍‌ସା ସାହେବ ଯଥାର୍ଥରେ ଉପଲବ୍ଧି କରିଥିଲେ ଯେ, "x x x ବିଭିନ୍ନ ସୋସାଇଟି ମଧ୍ୟରେ ଅତ୍ୟନ୍ତ ଶ୍ରେଣୀ ବିଦ୍ୱେଷ ଓ କୃତ୍ରିମ ବିରୋଧ ଲାଗି ରହିଥିଲା; ଫଳରେ ସାମୂହିକ ଉଦ୍ୟମ ବାଧାପ୍ରାପ୍ତ ହୋଇଥିଲା ।" (ସୁଧାକର ପଟ୍ଟନାୟକ, ସମ୍ବାଦ ପତ୍ରରେ ଓଡ଼ିଶା ପୃ. ୧୯୩) ଏହା ପରେ ପରେ କଟକ ସୋସାଇଟି ଓ ଉଲ୍ଲାସିନୀ ସଭାର ମିଳନ ଘଟିଲା । ଭାଷା-ସଂଘର୍ଷ ଶେଷ ହୋଇଯିବାରୁ ମାତୃଭାଷାରେ ସାହିତ୍ୟ ସୃଷ୍ଟି ପାଇଁ ଗୋଟାଏ ପ୍ରବଣତା ପ୍ରକାଶ ପାଇଲା । ପ୍ରାଚୀନ ସାହିତ୍ୟର ଉଦ୍ଧାର ପାଇଁ ମଧ୍ୟ ଉଦ୍ୟମ ଆରମ୍ଭ ହେଲା । "ଉତ୍କଳ ସାହିତ୍ୟ ସମ୍ମିଳନୀ (୨୮।୮।୮୬ ଓ ଉତ୍କଳ ସମ୍ମିଳନୀ ସଭା (ସ୍ଥାପିତ ତା ୧।୧।୮୯), ବାମଣ୍ଡାର ଆଲୋଚନା ସଭା (୧୮୯୦), କଟକର ଆଲୋଚନା ସଭା (୧୬।୧୨।୧୮୯୩), ତାଳଚେର କିଶୋର ଚନ୍ଦ୍ର ସାହିତ୍ୟ ସମାବେଶ ସଭା (୧୮୯୫), ସାହିତ୍ୟ ରଂଜନୀ ସଭା (୧୬।୮।୧୮୮୪ ), ଓଡ଼ିଆ ତାଳପତ୍ର ସାହିତ୍ୟ ଉଦ୍ଧାରଣ କମ୍ପାନୀ (ବାଲେଶ୍ୱର : ୨୬।୫।୧୮୮୬ ବା.ବା.) ଆଦି ନାନା ସଭା ଅନୁଷ୍ଠିତ ହୋଇ ଓଡ଼ିଆ ସାହିତ୍ୟର ବିକାଶ ପାଇଁ ଉଦ୍ୟମ ହୋଇଥିଲା । ଏତାଦୃଶ ସଭାରେ ମୁଖ୍ୟତଃ ସେ ସମୟର କବି ଓ ଲେଖକମାନେ ଯୋଗ ଦେଉଥିଲେ । ଓଡ଼ିଆ ତାଳପତ୍ର ସାହିତ୍ୟ ଉଦ୍ଧାରଣ କଂପାନୀ ସଭା ବାଲେଶ୍ୱରରେ ହୋଇଥିଲା । ସେଥିରେ ସଭାପତିତ୍ୱ କରିଥିଲେ ବାବୁ ବୈଦ୍ୟନାଥ ପଣ୍ଡିତ ରାୟବାହାଦୂର । ବୀମ୍‌ସ ସାହେବ ମଧ୍ୟ ଏହି ସଭାରେ ଯୋଗ

ଦେଇ ପ୍ରାଚୀନ ସାହିତ୍ୟ ଉଦ୍ଧାର ଉପରେ ଗୁରୁତ୍ୱ ଦେଇଥିଲେ । ରାମଶଙ୍କର ରାୟଙ୍କ ଦ୍ୱାରା ସ୍ଥାପିତ ଉତ୍କଳ ସଭା (ତା.୨୬।୧।୧୮୭୮) ମଧ୍ୟ ଓଡ଼ିଆ ସାହିତ୍ୟର ସୃଷ୍ଟି ଓ ବିକାଶ ଦିଗରେ ଆଲୋକପାତ କରିଥିଲା । ଆଲୋଚନା ସଭା (୧୮୯୩) ଭକ୍ତକବି ମଧୁସୂଦନ ରାୟଙ୍କ ଦ୍ୱାରା ପ୍ରତିଷ୍ଠିତ । ଏହି ସଭା କଟକ ଟ୍ରେନିଂ ସ୍କୁଲରେ ଅନୁଷ୍ଠିତ ହୋଇଥିଲା । ଏହି ସଭାରେ ରାଧାନାଥ ରାୟ, ଫକୀର ମୋହନ ସେନାପତି, ଗଙ୍ଗାଧର ମେହେର, ଗୋବିନ୍ଦ ରଥ, ବିଶ୍ୱନାଥ କର ପ୍ରମୁଖ ସାହିତ୍ୟିକମାନେ ଯୋଗଦେଇ ସାହିତ୍ୟ ସଂପର୍କରେ ଆଲୋଚନା କରୁଥିଲେ ଓ ଜଣେ ଜଣେ ବିଦ୍ୱାନ ଲେଖକ କୌଣସି ଏକ ବିଷୟରେ ପ୍ରବନ୍ଧ ପାଠ କରୁଥିଲେ । ଏହି ଆଲୋଚନା ସଭା ପରବର୍ତ୍ତୀ ସମୟରେ ଅର୍ଥାତ୍ ୧୯୦୩ ମସିହା ବେଳକୁ 'ଉତ୍କଳ ସାହିତ୍ୟ ସମାଜ' ନାମରେ ନାମିତ ହେଲା । ଏହି ଅନୁଷ୍ଠାନ ଶହେ ବର୍ଷରୁ ଉର୍ଦ୍ଧ୍ୱକାଳ ଧରି ସାହିତ୍ୟ ସଂପର୍କରେ ନାନା ସଭା କରିଆସୁଅଛି ।

ଊନବିଂଶ ଶତାବ୍ଦୀରେ ଶେଷ ତିରିଶ ବର୍ଷ ମଧ୍ୟରେ ଯେଉଁସବୁ ସାହିତ୍ୟ ସଂପର୍କିତ ସଭା ହୋଇଥିଲା, ସେ ସବୁ ଦୁଇଟି ଦିଗରେ ଗୁରୁତ୍ୱ ଦେଇଥିଲେ । ପ୍ରଥମ ଦିଗଟି ହେଲା ମାତୃଭାଷା ପ୍ରତି ମମତ୍ୱ ବୃଦ୍ଧି ଓ ଦ୍ୱିତୀୟ ଦିଗଟି ହେଲା ଆଧୁନିକ ସାହିତ୍ୟର ବିବିଧ ରୂପ ବିଭବର ପରୀକ୍ଷା । ଏହା ଫଳରେ ଗଳ୍ପ, ଉପନ୍ୟାସ, ନାଟକ, ପ୍ରବନ୍ଧ, ସମାଲୋଚନା ଆଦି ପ୍ରକାଶ ପାଇବାକୁ ଲାଗିଲା । ପୁନଶ୍ଚ ସାହିତ୍ୟରେ ଅଶ୍ଳୀଳତାକୁ ବିରୋଧ କରି ନୀତିବାଦ ଉପରେ ଗୁରୁତ୍ୱ ପ୍ରଦାନ କରାଗଲା । ଊନବିଂଶ ଶତାବ୍ଦୀର ସାହିତ୍ୟ ସଂପର୍କିତ ସଭା ବିଂଶ ଶତାବ୍ଦୀ ଆରମ୍ଭରୁ ସାହିତ୍ୟର ବିକାଶ ଓ ପ୍ରସାର ପାଇଁ ଯେ ପ୍ରେରଣା ଦେଇଥିଲା : ଏକଥା କହିଲେ ସତ୍ୟର ଅପଳାପ ହେବନାହିଁ ।

**ଶିକ୍ଷା ଓ ପଠନ ସ୍ପୃହା ବୃଦ୍ଧି ପାଇଁ ସଭା**

୧୮୭୦ ମସିହା ପୂର୍ବରୁ ଓଡ଼ିଶାରେ ବିଦ୍ୟାଳୟ ପ୍ରତିଷ୍ଠା ଲାଭ କରିଥିଲେ ହେଁ ତାହାର ବ୍ୟାପ୍ତି ନ ଥିଲା । ୧୮୭୦ ମସିହା ପରେ ବିଦ୍ୟାଳୟର ବ୍ୟାପ୍ତି ଘଟିଲା । କଟକ କଲେଜ (୧୮୬୮) ପ୍ରତିଷ୍ଠା ଲାଭ କରି ଉଚ୍ଚଶିକ୍ଷା ପାଇଁ ଅନୁକୂଳ ବାତାବରଣ ସୃଷ୍ଟିକଲା । ଏହି କଲେଜ୧୮୭୯ ମସିହାରେ ରେଭେନ୍‌ସା କଲେଜ ରୂପେ ନାମିତ ହେଲା । ବିଭିନ୍ନ ଅନୁଷ୍ଠାନ ଦ୍ୱାରା ସଭାସମିତି କରାଯାଇ ଶିକ୍ଷାର ବିସ୍ତାର ପାଇଁ ଉଦ୍ୟମ କରାଗଲା । ଏପରିକି ବାଳିକାମାନଙ୍କୁ ଶିକ୍ଷା ଦେବାପାଇଁ ମଧ୍ୟ ସ୍କୁଲ ପ୍ରତିଷ୍ଠିତ ହେଲା ।ଓଡ଼ିଶା ଗ୍ରାଜୁଏଟ୍ ଏବଂ ଅଣ୍ଡର ଗ୍ରାଜୁଏଟ୍ ସଭା (ସ୍ଥାପିତ:୩.୩.୧୮୮୮), ଶିକ୍ଷା ସମିତି(୧୯.୧.୧୮୮୭.ଓଡ଼ିଆ ଓ ନବ ସଂବାଦ), ବାରିପଦା ରିଡ଼ିଂ କ୍ଲବ୍ (୧.୧.୧୮୯୯), ବିଦ୍ୟାର୍ଥୀ ବ୍ରାହ୍ମଣ ହିତୈଷିଣୀ ସଭା(୧.୨.୧୮୯୦), ରୂପଦେଇପୁର ବିଦୋନ୍ନତି ସମିତି (୧୮୯୦/୯୧), କଟକ ରିଡ଼ିଂ କ୍ଲବ୍ (୧.୧.୧୮୯୨), କଟକ ୟୁନାଇଟେଡ୍ ଫ୍ରେଣ୍ଡସ୍ ରିଡ଼ିଂ କ୍ଲବ୍ (୧.୧.୧୮୯୨), କଟକ କଲେଜ କାଉନ୍‌ସିଲ୍ (ସ୍ଥା ୧.୨.୧୮୯୨), ପୁରୀର ଜଗନ୍ନାଥ ସଂସ୍କୃତି ସମିତି (ତା୧୫।୨।୧୮୯୩), ବାଲେଶ୍ୱର ସଂସ୍କୃତ ସମିତି (ତା୪।୩।୧୮୯୩), କଟକ ଓଡ଼ିଶା ସଂସ୍କୃତ ସମିତି (ତା୨୮।୨।୧୮୯୩), ସିଦ୍ଧେଶ୍ୱରପୁର ଶିକ୍ଷାବୋଧିନୀ ସଭା (୧୮୯୪), ପୁରୀ ଲିଟେରାରୀ କ୍ଲବ ଓ ଜଗନ୍ନାଥ କଟେକ୍ ଲାଇବ୍ରେରୀ

(ସ୍ଥା.ଡିସେମ୍ବର ୧୮୯୪), ବାଲେଶ୍ୱର କଲ୍ଲା ସ୍କୁଲ ରିଡ଼ିଂ କ୍ଲବ (ତା୮।୮।୧୮୯୬), କୋଠପଦା ଶିକ୍ଷାବର୍ଦ୍ଧିନୀ ସଭା (ସ୍ଥା୨।୧।୧୮୯୭), ଅନୁଗୋଳ ଶିକ୍ଷା ବର୍ଦ୍ଧିନୀ ସଭା (ସ୍ଥା.୮।୩।୧୮୯୭), କେନ୍ଦ୍ରାପଡ଼ା ଡାଇମଣ୍ଡ କୁବୁଲି ପବ୍ଲିକ ଲାଇବ୍ରେରୀ (୨୩.୬.୧୮୯୭), ବାଲେଶ୍ୱର ସାହିତ୍ୟ ସୁଶିକ୍ଷା ପ୍ରଦର୍ଶନୀ ସଭା (ତା୯।୧।୧୮୯୮), ସାଧାରଣ ବିଦ୍ୟାଳୟ ନିର୍ମାଣ ସଭା, ହିନ୍ଦୁ ବାଳିକା ବିଦ୍ୟାଳୟ ସଭା (୫।୧୧।୧୮୮୧), ଶିକ୍ଷା ବିଧାୟିନୀ ସଭା (୩୦.୪.୧୮୮୧), କଟକ ଏକାଡେମୀ ପାରିତୋଷିକ ସଭା (ତା୭।୫।୧୮୮୧) ଆଦି ନାନା ସଭା ଅନୁଷ୍ଠିତ ହୋଇ ଓଡ଼ିଶାରେ ଶିକ୍ଷାର ବିକାଶ, ବିଦ୍ୟାଳୟ ପ୍ରତିଷ୍ଠା, ନାରୀ ଶିକ୍ଷାର ପ୍ରସାର ଓ ପଠନ ଅଭ୍ୟାସ ବୃଦ୍ଧି ଦିଗରେ ଉଦ୍ୟମ କରିଥିଲେ । କଟକ ଏକାଡେମୀ ପାରିତୋଷିକ ସଭା ଉତ୍କଳ ପ୍ରିଣ୍ଟିଂ କଂପାନି ହଲ୍‌ରେ ଅନୁଷ୍ଠିତ ହୋଇଥିଲା । ଏହି ସଭାରେ ସଭାପତି ହୋଇଥିଲେ ରେଭେନ୍‌ସା ସାହେବ । ସଂପାଦକ ପ୍ୟାରୀମୋହନ ଆଚାର୍ଯ୍ୟ ବ୍ୟକ୍ତିଗତ ଉଦ୍ୟମରେ ପ୍ରତିଷ୍ଠା ଲାଭ କରିଥିବା କଟକ ଏକାଡେମୀ ବିଷୟରେ ବିବରଣୀ ପ୍ରଦାନ କରିଥିଲେ । ସାଧାରଣ ବିଦ୍ୟାଳୟ ନିର୍ମାଣ ପାଇଁ କଟକ ପ୍ରିଣ୍ଟିଂ କମ୍ପାନୀଙ୍କ ଦୋ'ମହଲା ଗୃହରେ ଯେଉଁ ସଭା ହୋଇଥିଲା ରେଭେନ୍‌ସା ସାହେବ ସେଠାକୁ ଆସି ଉଦ୍‌ବୋଧନ ଦେଇଥିଲେ । ସେହି ସଭାରେ ଅମଲାମାନେ ଅଧିକ ସଂଖ୍ୟାରେ ଯୋଗ ଦେଇଥିଲେ । ଧନୀ ଓ ଜମିଦାରମାନେ ଆସିଲେ ନାହିଁ ।

ଏହିପରି ଊନବିଂଶ ଶତାବ୍ଦୀରେ ଓଡ଼ିଶାରେ କେତେକେତେ ସଭା ଅନୁଷ୍ଠିତ ହୋଇ ଶିକ୍ଷାର ବିକାଶ ଦିଗରେ ଗୁରୁତ୍ୱ ଦେଇଥିଲେ । ପଠନ ପ୍ରବୃତ୍ତିକୁ ବୃଦ୍ଧି କରିବା ଉପରେ ମଧ୍ୟ ପ୍ରାଧାନ୍ୟ ଦେଇଥିଲେ । ମାତୃଭାଷା ଶିକ୍ଷା ସହିତ ସଂସ୍କୃତ, ହିନ୍ଦୀ ଓ ଅନ୍ୟାନ୍ୟ ବିଷୟରେ ଶିକ୍ଷାପାଇଁ ସଭାମାନଙ୍କରେ ଦାବି ହେଉଥିଲା । ଶିକ୍ଷା ଫଳରେ ଓଡ଼ିଶାରେ ଏହି ସମୟରେ ନବଜାଗରଣ ବା ରେନେସାଁ ସୃଷ୍ଟି ହୋଇଥିବା ଲକ୍ଷ୍ୟ କରାଯାଏ ।

**ଦେଶ ଗଠନ ଓ ଦେଶମିଶ୍ରଣ ଉପରେ ସଭା**

ଊନବିଂଶ ଶତାବ୍ଦୀର ଶେଷ ତିରିଶ ବର୍ଷ ଭିତରେ ଯେତେବେଳେ ନବଶିକ୍ଷିତ ଗୋଷ୍ଠୀର ଆବିର୍ଭାବ ଘଟିଲା, ସେହି ଶିକ୍ଷିତବର୍ଗ ଅନୁଭବ କଲେ ଯେ ଓଡ଼ିଆ ବୋଲି ସ୍ୱତନ୍ତ୍ର ପ୍ରଦେଶ ନାହିଁ । ଏହାର ପଶ୍ଚିମାଞ୍ଚଳ ମଧ୍ୟ ପ୍ରଦେଶ ସହିତ ମିଶିଥିଲାବେଳେ ଦକ୍ଷିଣାଞ୍ଚଳ ମାନ୍ଦ୍ରାଜ ସହିତ ଓ ଉତ୍ତରାଞ୍ଚଳ ବଂଗଳା ସହିତ ମିଶିରହିଛି । ଫଳରେ ପଶ୍ଚିମାଞ୍ଚଳରେ ହିନ୍ଦୀଭାଷା ପ୍ରଭାବ ବିସ୍ତାର କରୁଛି । ଦକ୍ଷିଣରେ ତେଲଗୁ ଓ ଉତ୍ତରରେ ବଂଗଳା ଭାଷାର ପ୍ରଭାବ । ଓଡ଼ିଆ ଭାଷା ସଙ୍କୁଚିତ ହୋଇଆସୁଛି । ଭାଷା ବିଲୋପଜନିତ ସଂକଟ କାଳରେ ଶିକ୍ଷିତବର୍ଗ ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟ ପ୍ରତିଷ୍ଠା ପାଇଁ ଉଦ୍ୟମ କଲେ ଓ ଏହି ଉଦ୍ୟମରେ ବିଜୟୀ ହେଲେ । ଏଥିରେ 'ଉତ୍କଳ ଦୀପିକା'ଙ୍କ ନେତୃତ୍ୱ ସର୍ବାଦୌ ସ୍ମରଣୀୟ । ବାଲେଶ୍ୱରର ସଂବାଦବାହିକା ମଧ୍ୟ ପରେ ପରେ ଏହି ଭାଷା ସଂଗ୍ରାମରେ ଅବତୀର୍ଣ୍ଣ ହୋଇଛି । ଭାଷାର ସ୍ୱାତନ୍ତ୍ର୍ୟ ପ୍ରତିଷ୍ଠା ପରେ ଓଡ଼ିଶା ପ୍ରଦେଶର ଗଠନ ପାଇଁ ଉଦ୍ୟମ ହେଲା । ଯେଉଁ ଯେଉଁ ଅଂଚଳ ପ୍ରତିବେଶୀ ପ୍ରଦେଶମାନଙ୍କ ସହିତ ମିଶି କରି ଥିଲା, ସେସବୁକୁ ଓଡ଼ିଶା ସହିତ ମିଶେଇବାକୁ ଆନ୍ଦୋଳନ ଚାଲିଲା । ସଭାସମିତିମାନ ଏ ଦିଗରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ ।

ସମ୍ବଲପୁର ମଧ୍ୟପ୍ରଦେଶ ସହିତ ମିଶି କରି ଥିବାରୁ ସେଠାରେ ଲୋକଙ୍କ ଇଚ୍ଛା ବିରୋଧରେ ହିନ୍ଦୀଭାଷା ଚାଲୁଥିଲା । ତେଣୁ ସମ୍ବଲପୁରକୁ କଟକର ଅଧୀନ ହେବାପାଇଁ ୧୨।୧୧।୧୮୭୨ତାରିଖ ଦୀପିକାରେ ସଂବାଦ ପ୍ରକାଶ ପାଇଲା । ଓଡ଼ିଆ ଭାଷାଭାଷୀ ଅଂଚଳକୁ ଏକତ୍ର କରି ଗୋଟିଏ ଶାସନାଧୀନରେ ରଖିବାକୁ ସେତେବେଳେ ଦେଶ ମିଶ୍ରଣ କୁହାଯାଉଥିଲା । ୧୮୭୦ ମସିହା ବେଳକୁ ପ୍ରଥମେ ଗଂଜାମ ଲୋକଙ୍କ ଦ୍ୱାରା ଦେଶମିଶ୍ରଣ କଥା ସୃଷ୍ଟି ହୋଇଥିଲା । 'ଗଂଜାମ ଉତ୍କଳ ହିତବାଦିନୀ ସଭା' ୧୮୭୦ ମସିହା ବେଳକୁ ଆରମ୍ଭ ହୋଇ ଦେଶ ମିଶ୍ରଣର ପ୍ରଥମ ଧ୍ୱନି ସୃଷ୍ଟି କଲା । ଏହି ସଭାର ସେକ୍ରେଟାରୀ ଜାଟିଙ୍ଗୀ ରାଜା ଶ୍ରୀ ଭେଙ୍କଟେଶ୍ ଦେଓ ୧୮୭୯ ମସିହାରେ ସରକାରଙ୍କୁ ଏହି ସଭା ତରଫରୁ ଚିଠି ଲେଖାଯାଇଥିଲା । ଏହି ଚିଠିର ମର୍ମ ଥିଲା– ଓଡ଼ିଶାରେ ଓଡ଼ିଆ ଭାଷାରେ ଦରଖାସ୍ତ ଲେଖିବା, ସ୍କୁଲ୍‌ମାନଙ୍କରେ ତେଲେଙ୍ଗୀ ପରି ଓଡ଼ିଆ ଭାଷାରେ ପ୍ରଶ୍ନ କରିବା ଓ ପ୍ରତ୍ୟେକ ସ୍କୁଲ୍‌ରେ ଓଡ଼ିଆ ଭାଷା ପଢ଼ାଯିବା ଉପରେ ପ୍ରାଧାନ୍ୟ ଦେବା । ଏହିଠାରୁ ହିଁ ଓଡ଼ିଆ ଭାଷା ସୁରକ୍ଷାର ପ୍ରଶ୍ନ ବଳବତ୍ତର ହୋଇଉଠିଲା ।

୧୮୭୦ ମସିହା ସେପ୍‌ଟେମ୍ବର ମାସରେ ଗଂଜାମକୁ ଓଡ଼ିଶା ସହିତ ମିଶାଇବା ପାଇଁ ଘୁମୁସର ତାଲୁକ, ରସୁଲକୋଣ୍ଡା ମୁକାମରେ ସଭା ହୋଇଥିଲା । ଏହି ସଭାରେ ପାଲୁରୁ, ହୁମା, ଗଂଜା, ବିରୁଳି, ପୂର୍ବଖଣ୍ଡ, ଖଲିକୋଟ୍, ଆଠଗଡ଼, ସେରଗଡ଼, ସାନଖେମଣ୍ଡ, ବଡ଼ଖେମଣ୍ଡି, ଚିକିଟି, ମହୁରି, ଜରଡ଼ା, ସାତାଙ୍ଗି, କୁସରସିଂହ, ଜଳନ୍ତର, ମଂଜୁଷା, ତରଳା, ପାରଳା, ଟିକିଲି ପ୍ରଭୃତି ଅଂଚଳର ପ୍ରତିନିଧିମାନେ ଯୋଗଦେଇ ଦେଶମିଶ୍ରଣର ପ୍ରଥମ ସ୍ୱର ଉତ୍ତୋଳନ କରିଥିଲେ । ଗଞ୍ଜାମରୁ ହିଁ ଓଡ଼ିଆ ଆନ୍ଦୋଳନ ମୁଣ୍ଡ ଟେକିଉଠିଥିଲା ଓ କ୍ରମେ ଓଡ଼ିଶା ପ୍ରଦେଶ ଗଠନ ପାଇଁ ଗୋଟିଏ ବଳିଷ୍ଠ ଜାତୀୟ ମନୋଭାବ ପ୍ରକାଶ ପାଇବାକୁ ଲାଗିଲା । ୧୯୦୨ ମସିହାରେ ଓଡ଼ିଆ ଜାତୀୟ ସମିତି ଗଂଜାମ ଓ ବ୍ରହ୍ମପୁରଠାରେ ଆତ୍ମପ୍ରକାଶ କଲା । ରମ୍ଭାଠାରେ ଏକ ମହାଅଧିବେଶନ ହେଲା । ଏହି ସଭାରେ ମଧୁସୂଦନ ଦାସ ଯୋଗ ଦେଇ ଉତ୍କଳ ସମ୍ମିଳନୀର ସ୍ୱପ୍ନ ଦେଖିଥିଲେ । ୧୯୦୩ ମସିହା ଡିସେମ୍ବର ମାସ ୩୦-୩୧ତାରିଖରେ କଟକର ଇଦ୍‌ଗା ପଡ଼ିଆରେ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ ଅନୁଷ୍ଠିତ ହେଲା । ମୟୂରଭଂଜର ମହାରାଜା ଶ୍ରୀରାମଚନ୍ଦ୍ର ଭଂଜ ଏହି ସଭାରେ ସଭାପତିତ୍ୱ କରିଥିଲେ । ବିଂଶ ଶତାବ୍ଦୀର ପ୍ରଥମ ୩୦ ବର୍ଷ ଭିତରେ ପ୍ରତିବର୍ଷ ଉତ୍କଳ ସମ୍ମିଳନୀ ସଭା ଅନୁଷ୍ଠିତ ହୋଇ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ପାଇଁ ସକ୍ରିୟ ଉଦ୍ୟମ କରି ଆସିଥିଲା ଓ ଏହାର ପରିଣତି ହେଲା ୧୯୩୬ ଏପ୍ରିଲ ପହିଲାରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ । ୧୯୦୨ ମସିହାରେ ବାଲେଶ୍ୱରଠାରେ ଡିସେମ୍ବର ମାସରେ ବୈକୁଣ୍ଠନାଥ ଦେ ଓଡ଼ିଶାର ଏକତ୍ରିକରଣ ପାଇଁ ସରକାରଙ୍କୁ ଦରଖାସ୍ତ କରିଥିଲେ ଓ ସେଠାରେ ଗୋଟିଏ ସଭାରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ପ୍ରସ୍ତାବ ଗୃହୀତ ହୋଇଥିଲା । ୧୮୯୬ ମସିହାରେ ସମ୍ବଲପୁରରେ ସରକାରୀ ଆଦେଶକ୍ରମେ ହିନ୍ଦୀଭାଷା ପ୍ରଚଳନ ବିରୋଧରେ ସଭା ହୋଇ ସେଠାରେ ଓଡ଼ିଆ ଭାଷା ପ୍ରଚଳନ ପାଇଁ ଆନ୍ଦୋଳନ ହୋଇଥିଲା । ସେହି ସଭାକୁ ମଧ୍ୟ ମଧୁସୂଦନ ଦାସ ଯାଇଥିଲେ । ୧୮୯୨ ସାଲ ଜୁଲାଇ ମାସରେ ଐତିହାସିକ ଜୀ. ଟଏନବୀ ସାହେବ ଓଡ଼ିଶାରେ ବଙ୍ଗଳା ଲୋକଙ୍କୁ ନିଯୁକ୍ତି ଦେବା ବିଷୟରେ ପ୍ରତିକ୍ରିୟା ପ୍ରକାଶ କରିଥିଲେ । ଓଡ଼ିଶା କେବଳ ଓଡ଼ିଆମାନଙ୍କର

ବୋଲି ଗୋଟିଏ ଜାତୀୟ ଧ୍ୱନି ସୃଷ୍ଟି ହେଲା । ସଭାସମିତି ଫଳରେ ୧୮୭୧ରୁ ୧୯୦୦ ମସିହା ମଧ୍ୟରେ ଓଡ଼ିଆ ଓ ଓଡ଼ିଆତ୍ୱ ଉପରେ ଗୁରୁତ୍ୱ ପ୍ରକାଶ ପାଇଲା । ଗୋଟିଏ ସ୍ୱର ଝଙ୍କୃତ ହେଲା, ଓଡ଼ିଶା ମାଟିରେ ଯେ ନିଜର ରକ୍ତକୁ ମିଶାଇଦେବ, ଓଡ଼ିଶା କେବଳ ତା'ର ।" ଭଦ୍ରଖ ଦେଶ ହିତୈଷିଣୀ ସଭା, ବାଲେଶ୍ୱର ସଭା (୧୮୭୫) ମଧ୍ୟ ଓଡ଼ିଶାରେ ଏକତ୍ରୀକରଣ ପାଇଁ ଉଦ୍ୟମ କରିଥିଲେ ।

୧୯୦୩ ଏପ୍ରିଲ ମାସରେ ଉତ୍କଳ ସମ୍ମିଳନୀର ଯେଉଁ ପ୍ରାରମ୍ଭିକ ଉଦ୍ୟମ ହୋଇଥିଲା, ତାହା ଗଂଜାମ ସଭାକୁ ସମର୍ଥନ ଜଣାଇଥିଲା । ଗଂଜାମରେ ଯେଉଁ ଜାତୀୟ ସଭାସମିତି ହୋଇଥିଲା, ତାହା ସମିତିର କାର୍ଯ୍ୟ ଓଡ଼ିଆ ଭାଷାରେ ପ୍ରଚଳିତ ହେବ ବୋଲି ଘୋଷଣା କରିଥିଲେ । ଏହା ସହିତ ଓଡ଼ିଆ ସାହିତ୍ୟର ଉନ୍ନତି, ପ୍ରାଚୀନ ପୋଥି ପ୍ରକାଶ, ଜାତୀୟ ଉନ୍ନତି ସାଧନ, ବୃତ୍ତିଦାନ ଓ ବିଦ୍ୟାଳୟ ସ୍ଥାପନ ଆଦି କେତେକ କାର୍ଯ୍ୟକ୍ରମ ହାତକୁ ନେଇଥିଲେ । ଗଂଜାମ ଜାତୀୟ ସମିତିର ପରିଣତି ହେଲା ଉତ୍କଳ ସମ୍ମିଳନୀ । ପ୍ରଥମ ଅଧିବେଶନରେ 'ଉତ୍କଳ ସମ୍ମିଳନୀ' ଘୋଷଣା କରିଥିଲେ- "ଯଦିଚ ପୂର୍ବ ଘଟଣାରେ (ସମ୍ବଲପୁର ଭାଷା ବିଲୋପ) ଜାତୀୟ ଯୁଗ ପ୍ରଭାତର ଆଗାମୀ ସୂଚନା ଦେଖାଇଥିଲା, ବ୍ରହ୍ମପୁରର ଜାତୀୟ ସମ୍ମିଳନୀ ସତକୁ ସତ ସେହି ନବଯୁଗର ପ୍ରଭାତ ଉତ୍କଳବାସୀଙ୍କୁ ଦେଖାଇଲା । x x x ଆଜି ଯେଉଁ ଜାତୀୟ ଭାବ ଉତ୍କଳରେ ଦେଖାଦେଇଛି, ସେଥିନିମନ୍ତେ ଆମ୍ଭେମାନେ ସମ୍ବଲପୁର ଓ ଗଂଜାମବାସୀ ଭାଇମାନଙ୍କ ଠାରେ ଅନେକ ପରିମାଣରେ ଋଣୀ । ଦେଶ ଗଠନ ଓ ଦେଶ ମିଶ୍ରଣ ସଂପର୍କରେ ୧୮୭୦ ପରଠାରୁ ଦୀର୍ଘ ତିରିଶିବର୍ଷ ଧରି ଯେତେ ଯେତେ ସଭା ହୋଇଥିଲା, ସେସବୁର ଏକ ସମନ୍ୱିତ ମହାନ ଅନୁଷ୍ଠାନ ହେଲା 'ଉତ୍କଳ ସମ୍ମିଳନୀ' ଓ ଏହା ହେଲା ଉତ୍କଳର ଆଶା ଆକାଂକ୍ଷାକୁ ପୂର୍ଣ୍ଣ କରିବା ପାଇଁ ଏକ ଦୀପ୍ତିମନ୍ତ ଜାତୀୟ ଅନୁଷ୍ଠାନ- ଯେଉଁଠାରେ ରାଜା, ପ୍ରଜା, ଧନୀ, କୃଷକ ସମସ୍ତେ ମିଶି ଜାତି ଗଠନ ପାଇଁ ଆଗେଇ ଆସିଥିଲେ ।

**ଧର୍ମ ଓ ଅନ୍ୟାନ୍ୟ ସଭା**

ଉନବିଂଶ ଶତାବ୍ଦୀ ଓଡ଼ିଶାର ନବଜାଗରଣ ପର୍ବରେ ଭାଷାର ସ୍ୱାତନ୍ତ୍ର୍ୟ ଶିକ୍ଷା ଓ ଦେଶ ମିଶ୍ରଣକୁ ନେଇ ଯେ କେବଳ ସଭା ହୋଇଥିଲା ତାହା ନୁହେଁ; ତତ୍‌ସହିତ ଧର୍ମ, ସମାଜ-ସଂସ୍କାର, କୃଷିର ଉନ୍ନତି ରେଳପଥ ନିର୍ମାଣ ଇତ୍ୟାଦି, ନାନା କଥାକୁ ନେଇ ମଧ୍ୟ ସଭାସମିତି ଅନୁଷ୍ଠିତ ହୋଇଥିଲା । ଏପରିକି କରଣ ଓ ବ୍ରାହ୍ମଣ ଜାତି ସ୍ୱତନ୍ତ୍ର ଭାବରେ ସଭା କରି ସେମାନଙ୍କର ଉନ୍ନତି ବିଷୟରେ ଆଲୋଚନା କରିଥିଲେ ।

ବାଲେଶ୍ୱର 'ହରିଭକ୍ତି ପ୍ରଦାୟିନୀ ସଭା' ସଂପର୍କରେ ସମ୍ବାଦ ବାହିକାରେ ୩୦.୪.୧୮୮୫ ତାରିଖରେ ପ୍ରକାଶ ପାଇଥିଲା । ଏ ସଭା ବ୍ରାହ୍ମ ଓ ଖ୍ରୀଷ୍ଟିୟାନମାନଙ୍କ ସଭାର ପ୍ରତିକ୍ରିୟାରେ ହୋଇଥିଲା । ଶାସନ ଦାମୋଦରପୁର ସତ୍ୟଧର୍ମ ପ୍ରକାଶିକା ସଭା (୧୮୮୭), ବାମଣ୍ଡାର ସନାତନ ଧର୍ମରକ୍ଷିଣୀ ସଭା ଓ ଗୋରକ୍ଷିଣୀ ସଭା (୧୮୯୦), ପୁରୀ ଶ୍ରୀଜଗନ୍ନାଥ ସନାତନ ଧର୍ମରକ୍ଷଣୀ ସଭା (୧୮୯୧)ବୀର ହରେକୃଷ୍ଣପୁରର ସଦାଲୋଚନୀ ସଭା (୧୮୯୭), ପୁରୀର ଭଗବତ ସଂସଦ ସଭା (୧୮୭୦) ବୀରନରସିଂହପୁରର ଆର୍ଯ୍ୟନିଧି ପ୍ରଦୀପ ସଭା (୧୮୮୩), ଶ୍ରୀରାମଚନ୍ଦ୍ର ପୁରର 'ଉତ୍କଳ ଧର୍ମ ସୁଧାନିଧି

ସଭା (୧୮୮୫) ଆଦି ଆର୍ଯ୍ୟ ଓ ସନାତନ ଧର୍ମ ସଂପର୍କରେ ଆଲୋଚନା କରୁଥିଲେ । ଶ୍ରୀଜଗନ୍ନାଥ ଧର୍ମକୁ ନେଇ ମଧ୍ୟ କେତେକ ସଭା ଅନୁଷ୍ଠିତ ହୋଇଥିଲା । ଜଗନ୍ନାଥ ସେବିନୀ ସଭା (୧୮୭୪) ସଂପର୍କରେ ଉତ୍କଳ ହିତୈଷିଣୀ ତା ୧୬।୮।୭୪ରିଖ ସଂଖ୍ୟାରେ ଲେଖିଥିଲେ – ସଭାରେ କ୍ରମେ ଓଡ଼ିଶା ପ୍ଲାବିତ ହୋଇଅଛି ଓ ସଭା ସଂକ୍ରାମକ ରୋଗ ପ୍ରାଏ ବିଲାତି ଢଂଗୀରେ ଉତ୍କଳରେ ୬/୭ ବର୍ଷ ହେବ ପ୍ରବଳ ହୋଇଉଠିଅଛି । ସ୍କୁଲିୟମାନଙ୍କର ସଭା, ନବ୍ୟ ଯୁବାମାନଙ୍କର ସାମାଜିକ ଓ ରାଜନୈତିକ ବିଷୟରେ ସଭା, ପଣ୍ଡିତମାନଙ୍କର ଓ ନର୍ମାଲବାଲଙ୍କର ଉଦ୍ଦୀପନୀ ସଭା ବୃଦ୍ଧମାନଙ୍କର ଚତୁରଙ୍ଗ ଉଲ୍ଲାସିନୀ ସଭା ଆଦି କରି କେତେକ ସଭା ଏ ନଗରରେ ଶୋଭା ପାଉଅଛି । ତାହା ଆମ୍ଭେମାନେ କହି ନ ପାରୁ । ସଭାଗୁଡ଼ିକ କ୍ରମେ ଯେ ଆଦର୍ଶଚ୍ୟୁତ ହୋଇ ଲୋକଦେଖାଣିଆ ହୋଇଯାଉଥିଲା ସେ ବିଷୟରେ ଏଥିରୁ ଜଣାଯାଇଥାଏ ।

୧୮୭୦ ମସିହା ବେଳକୁ ଓଡ଼ିଶାରେ ବ୍ରାହ୍ମଧର୍ମ ପ୍ରତିଷ୍ଠାଲାଭ କଲା । ଏ ଧର୍ମ ଥିଲା ନଗର କେନ୍ଦ୍ରିକ । ନବ ଶିକ୍ଷିତ ବ୍ୟକ୍ତିମାନେ ଏ ଧର୍ମ ପ୍ରତି ଆକୃଷ୍ଟ ହୋଇ ପ୍ରାର୍ଥନା ସଭା କରୁଥିଲେ । ସଭାରେ ମଧ୍ୟ ବ୍ରାହ୍ମଧର୍ମ, ସମାଜ ସଂସ୍କାର, ବିଧବା ବିବାହ, ନାରୀଶିକ୍ଷା ଇତ୍ୟାଦି ସଂପର୍କରେ ଆଲୋଚନା କରୁଥିଲେ । ବ୍ରାହ୍ମସମାଜ ତରଫରୁ କଟକରେ ଗୋଟିଏ ବ୍ରାହ୍ମସଭା ଅନୁଷ୍ଠିତ ହୋଇଥିଲା । ଏହି ସଭା ସଂପର୍କରେ ଦୀପିକା ୫ମ ଭାଗ/୩ୟ ସଂଖ୍ୟା ୧୫।୧।୧୮୭୦ ତାରିଖରେ ଲେଖିଥିଲେ । କଟକ ଡିବେଟିଂ କ୍ଲବ ଥିଲା ବ୍ରାହ୍ମସଭାର ଆଦିପୀଠ । ଉତ୍କଳ ବ୍ରାହ୍ମ ସମାଜ ସ୍ଥାପିତ ହୋଇଥିଲା ତା ୧।୭।୧୮୬୯ରେ । ମଧୁସୂଦନ ରାଓ ତାହାର ସଂପାଦକ ଥିଲେ । ପ୍ୟାରୀମୋହନ ଆଚାର୍ଯ୍ୟ ଥିଲେ ତାଙ୍କର ସହଯୋଗୀ । ଏହି ସଭାରେ ବ୍ରାହ୍ମଧର୍ମର ବୈଶିଷ୍ଟ୍ୟ, ଉପନିଷଦ, ଏକେଶ୍ୱରବାଦ, ରାଜା ରାମମୋହନ ରାୟ, ମହର୍ଷି ଦେବେନ୍ଦ୍ରନାଥ ଠାକୁର ପ୍ରମୁଖଙ୍କ ବିଷୟରେ ଆଲୋଚନା କରାଯାଉଥିଲା । ନାରୀଶିକ୍ଷା ଓ ବିଧବା ବିବାହ ଉପରେ ଗୁରୁତ୍ୱ ଦିଆଯାଉଥିଲା । ବ୍ରାହ୍ମଧର୍ମ ପ୍ରତିଷ୍ଠା ଓ ସଭା ଫଳରେ ହିନ୍ଦୁମାନେ ହିନ୍ଦୁଧର୍ମର ସୁରକ୍ଷା ପାଇଁ ନାନା ସଭା କଲେ । କଟକରେ 'ଭଗବତ ସମାଜ' ଓ 'ଭଗବତ ଭକ୍ତି' ପ୍ରଦାୟିନୀ ସଭା' (୧୮୭୩) ଅନୁଷ୍ଠିତ ହେଲା । ସେତେବେଳେ ଏହି ସଭାର ବିବରଣୀ ଉତ୍କଳ ଦୀପିକା, ଉତ୍କଳ ପୁତ୍ର ଓ ଉତ୍କଳ ହିତୈଷିଣୀ ଇତ୍ୟାଦିରେ ପ୍ରକାଶ ପାଇଥିଲା । ଏ ସଭାର ଉଦ୍ଦେଶ୍ୟ ଥିଲା ଧର୍ମଭାବ ସୃଷ୍ଟି କରିବା ସହିତ ସାହିତ୍ୟର ଉନ୍ନତି କରିବା । ବାଲେଶ୍ୱରରେ ଗଢ଼ି ଉଠିଲା 'ହରିଭକ୍ତି ପ୍ରଦାୟିନୀ ସଭା' ।' ପୁରୀରେ 'ଆର୍ଯ୍ୟନିଧି ପ୍ରଦୀପ ସଭା·' ଅନୁଷ୍ଠିତ ହୋଇ ବାଲ୍ୟ ବିବାହକୁ ବିରୋଧ କରିବା ସହିତ ବିଧବା ବିବାହକୁ ସମର୍ଥନ ଜଣାଇଲା । ଦୟାନନ୍ଦ ସରସ୍ୱତୀଙ୍କ ଆର୍ଯ୍ୟସମାଜ (୧୮୭୫) ପରେ ଏ ଧରଣର ସଭା ବିଭିନ୍ନ ସ୍ଥାନରେ ହୋଇଥିଲା । ସାଧୁ ଅଘୋରନାଥ ଗୁପ୍ତ କଟକ ପ୍ରିଣ୍ଟିଂ କଂପାନୀ ପ୍ରେସରେ ମଧ୍ୟ ଧର୍ମ ସଂପର୍କରେ ସଭା କରିଥିଲେ । ବାମଣ୍ଡାର 'ସନାତନ ଧର୍ମ ରକ୍ଷିଣୀ ସଭା', ସନାତନ ହିନ୍ଦୁଧର୍ମର ସୁରକ୍ଷା ଓ ଗୋ ରକ୍ଷିଣୀ ଉପରେ ପ୍ରାଧାନ୍ୟ ଦେଲେ ।

ବ୍ରାହ୍ମ ଓ ଖ୍ରୀଷ୍ଟିୟାନ ସଭା ଓଡ଼ିଶାର ବିଭିନ୍ନ ସ୍ଥାନରେ ଅନୁଷ୍ଠିତ ହୋଇଥିଲା । କଟକରେ ଗଢ଼ି

ଉଠିଲା ଓଡ଼ିଶା ଖ୍ରୀଷ୍ଟିୟାନ ଆସୋସିଏସନ୍ (୧୮୯୬), କଲସଇ ଫଇଜି ଆମ, (୧୮୮୯/୯୦), ବାଲେଶ୍ୱର ମହମଡାନ ଆସୋସିଏସନ, ଓଡ଼ିଶା ଇସ୍‌ଲାମ ଆସୋସିଏସନ୍ (୧୮୭୫) ଆଦି ନାନା ସଭା ଓ ପ୍ରତ୍ୟେକ ସଭା ନିଜ ନିଜ ଧର୍ମର ସୁରକ୍ଷା ପାଇଁ ଉଦ୍ୟମ କରିଥିଲେ। ଧର୍ମସଭାକୁ ଛାଡ଼ିଦେଲେ ଅନ୍ୟାନ୍ୟ କେତେକ ସଭା ମଧ୍ୟ ସେତେବେଳେ ପ୍ରଭାବ ବିସ୍ତାର କରିଥିଲା । ସେ ସବୁ ସଭା ମଧ୍ୟରେ କଟକରେ ଭାରତ ବର୍ଷୀୟ ସଭାର୍ ଶାଖା ପ୍ରତିଷ୍ଠା ଲାଭ କରିଥିଲା । ସେହି ଶାଖା ଦୁଇଟି ଉଲ୍ଲାସିନୀ ସଭା ଓ କଟକ ସୋସାଇଟି ଦ୍ୱାରା ଅନୁଷ୍ଠିତ ହୋଇଥିଲା (୧୮୭୦) । କଟକରେ ମଧ୍ୟ 'ଏକ ଅଭିନବ ସାମାଜିକ ବୈଠକ' କରାଯାଇ ସେଥିରେ ଆମୋଦପ୍ରମୋଦ ଉପରେ ଗୁରୁତ୍ୱ ଦିଆଯାଇଥିଲା । ସେହି ସଭାରେ ଦେଶୀୟ ଓ ବିଦେଶୀୟ ଇଂରାଜୀ ହାକିମମାନେ ଏକତ୍ର ହେଉଥିଲେ । କଟକ ଉର୍ଦ୍ଦୁ ସ୍କୁଲରେ 'ଜ୍ଞାନଦାୟିନୀ ସଭା' ଛାତ୍ରମାନଙ୍କ ଦ୍ୱାରା ହୋଇଥିଲା । ସେଠାକୁ କୌଣସି ବଡ଼ଲୋକ ଗଲେ ନାହିଁ । କଟକ ହାଇସ୍କୁଲରେ ବାର୍ଷିକ ପାରିତୋଷିକ ଦାନ ସଭା (୧୮୬୯) ହୋଇଥିଲା । ଏହି ସଭାରେ ସଭାପତି ହୋଇଥିଲେ ରେଭେନ୍‌ସା ସାହେବ । ପାଦ୍ରୀ କେମ୍ବଲ ମଧ୍ୟ ଯୋଗ ଦେଇଥିଲେ । ଉତ୍କଳ ଭାଷାର ଉନ୍ନତି ପାଇଁ ଏହି ସଭାରେ ଆଲୋଚନା କରାଯାଇଥିଲା । ଓଡ଼ିଶା ମେଡିକାଲ ସ୍କୁଲରେ ୧୮୬୮ ମସିହା ଏପ୍ରିଲ ମାସ ୪ ତାରିଖ ଦିନ ଏକ ସଭା ରେଭେନ୍‌ସା ସାହେବଙ୍କ ସଭାପତିତ୍ୱରେ ହୋଇଥିଲା । ଚିକିତ୍ସା ବିଦ୍ୟାର ପ୍ରସାର ପାଇଁ ଏହି ସଭାରେ ମତ ପ୍ରକାଶ ପାଇଥିଲା । କଟକ କଲେଜରେ ତା୮ । ୩ । ୧୮୭୯ ମସିହାରେ ଏକ ସଭା ହୋଇ କଟକ କଲେଜକୁ ରେଭେନ୍‌ସା ସାହେବଙ୍କ ନାମରେ ନାମିତ କରାଯିବା ପାଇଁ ସର୍ବସମ୍ମତି କ୍ରମେ ଘୋଷଣା କରାଯାଇଥିଲା । ଏହିଠାରୁ କଟକ କଲେଜ ରେଭେନ୍‌ସା କଲେଜ ନାମରେ ଗୌରବ ଅର୍ଜନ କଲା । ମୟୁରଭଂଜ ମହାରାଜା ଏହି ସଭାରେ କଲେଜକୁ କୋଡ଼ିଏ ହଜାରଟଙ୍କା ଦାନ କରିଥିଲେ।

କଟକ ସୋସାଇଟି ଆନୁକୂଲ୍ୟରେ ୧୮୭୦ ମସିହା ଜୁଲାଇ ମାସରେ ପୁରୀର ରଥଯାତ୍ରା ସଂପର୍କରେ ଏକ ସଭା ହୋଇଥିଲା । ଏହି ସଭାରେ ଟି.ହାଲଟନ ସାହେବ ମାର୍ଜଫର୍ସନ ସାହେବ ଓ କାଳୀପଦ ବନ୍ଦୋପଧ୍ୟାୟ ପ୍ରମୁଖ ଯୋଗ ଦେଇଥିଲେ । ପୁରୀ ସ୍କୁଲ ଗୃହରେ ହାକିମ ଓ ସଂଭ୍ରାନ୍ତ ବ୍ୟକ୍ତିମାନଙ୍କୁ ନେଇ ଯାତ୍ରୀ ଟାକ୍ସ ସଂପର୍କରେ ୧୮୭୦ ମସିହା ଜୁଲାଇ ମାସରେ ମଧ୍ୟ ଏକ ସଭା ହୋଇଥିଲା । କଟକ ସୁହୃଦ ସମାଜ (ଡୀ.୩୧.୮.୧୮୬୮), ସଦାବର୍ତ୍ତମଠ ସଭା (ଡୀ.୧୧.୧୦.୧୮୬୯), ଢେଙ୍କାନାଳ ହିତୈଷିଣୀ ସଭା (ବା.ବା.୧୮.୭.୧୮୮୧), ଉତ୍‌କୋଚ ସଂହାରିଣୀ ଓ ସୁରାପାନ ନିବାରିଣୀ ସଭା (ଡୀ.୨୩.୦୮.୧୮୮୪), ସେବକ ସଭା (ଡୀ.୨୮.୮.୧୮୮୪), ମାଦକ ସେବନ ନିବାରିଣୀ ସଭା (ଡୀ. ତା ୩।୫।୧୮୭୯), ମେଳବର୍ଦ୍ଧିନୀ ସମାରୋହ ସଭା, ଡୀ.୧୮.୧୧.୧୮୭୪), ପ୍ରମୋଦ ମିଳନ ସଭା (୧୮୯୦) ଉତ୍କଳ ସମ୍ମିଳନୀ ସଭା (୧୮୮୯), ପ୍ରଥମ ସାଧାରଣ ଲାଇବ୍ରେରୀ ସଭା ୨୪।୪।୧୮୮୧), ବାଲିଜୁନୀ ହିତକାରିଣୀ ସଭା (୨୪.୫.୧୮୮୫), ମିଉଚୁଆଲ ଇମ୍ପ୍ରୁଭମେଣ୍ଟ ବା ପାରସ୍ପରିକ ଉନ୍ନତି ସଭା (୧୮୮୯), କାୟସ୍ଥ ସଭା (୧୮୮୯/୯୦), ବାଲେଶ୍ୱର ବି.ଦେଙ୍କ ସୋସିଆଲ ସଭା (ତା୧.୭.୧୮୯୫), ଅବ୍‌କର୍‌ଭର କ୍ଲବ(୧୮୯୬), ନୟାବଜାର ଷ୍ଟୁଡେଣ୍ଟ୍‌ସ ଆସୋସିଏସନ

କ୍ଲବ, (ତା୪।୧।୧୮୯୬), ଢେଙ୍କାନାଳ ମୋରାଲ କ୍ଲବ (ତା୫।୨।୯୫), କରଣମାନଙ୍କ ସଭା (ର୍ଦ୍ଦୀ.ତା୯.୧.୧୮୬୯), ଗଂଜାମ ଉତ୍କଳ ହିତବାଦିନୀ ସଭା (ତା୧।୧।୧୮୭୨), କଟକ ଶିକ୍ଷା କମିଟି, ଗ୍ରାଜୁଏଟ୍ ଏବଂ ଅଣ୍ଡର ଗ୍ରାଜୁଏଟ୍ ଆସୋସିଏସନ (୧୮୮୯ ନଭେମ୍ବର), ରାଜ ଦରବାରରେ ନୃତ୍ୟଗୀତ ଆସର ଜନିତ ସଭା (ଜାନୁଆରୀ ୧୮୬୯), କରଣ ସଭା (୧୮୭୭ ଅକ୍ଟୋବର) ଆଦି ନାନା ସଭା ଊନବିଂଶ ଶତାବ୍ଦୀରେ ଓଡ଼ିଶାରେ ହୋଇଥିଲା ।

୧୮୭୪ ସାଲରେ ଛୋଟଲାଟ ଟେମ୍ପଲ୍ ସାହେବ ଓଡ଼ିଶାକୁ ଆସିଥିଲେ । ତାଙ୍କୁ ସ୍ୱାଗତ କରିବା ପାଇଁ ବାଲେଶ୍ୱରରେ ଏକ ସଭାର ଆୟୋଜନ କରାଯାଇଥିଲା । ସେହି ସଭାରେ ନିବେଦନ କରାଯାଇଥିଲା ଯେ ଓଡ଼ିଶାର ବିଚ୍ଛିନ୍ନ ଅଂଚଳମାନଙ୍କ ସହିତ ସଂଯୋଗ ସ୍ଥାପନ ପାଇଁ ରେଳ ରାସ୍ତା ନିର୍ମାଣ କରାଯିବା ଆବଶ୍ୟକ । ପୁନଶ୍ଚ ଭାଷାସୂତ୍ରରେ ବିଚ୍ଛିନ୍ନ ଅଂଚଳମାନଙ୍କୁ ଓଡ଼ିଶା ସହିତ ମିଶାଯିବା ମଧ୍ୟ ଦରକାର। ଏହି ସଭାରେ ମୁଖ୍ୟ ଆଲୋଚନା ଥିଲା (କ) ରେଳରାସ୍ତା ନିର୍ମାଣ, (ଖ) ଓଡ଼ିଶା ସହିତ ଗଂଜାମର ମିଶ୍ରଣ, (ଗ) ଓଡ଼ିଶାରେ ଅଧିକ ବିଦ୍ୟାଳୟ ତଥା ପ୍ରତି ସବ୍‌ଡିଭିଜନରେ ସ୍କୁଲ ସ୍ଥାପନ, (ଘ) ଗଡ଼ଜାତରେ ସ୍କୁଲ ପ୍ରତିଷ୍ଠା, (ଙ) ଓଡ଼ିଶାରେ ବଂଗଳା ଭାଷା ଶିକ୍ଷାର ବ୍ୟବସ୍ଥା ।

ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଓଡ଼ିଶାରେ ଯେଉଁ ସବୁ ସଭା ହୋଇଥିଲା, ସେସବୁ ଓଡ଼ିଆ ଭାଷା ସୁରକ୍ଷା, ଦେଶ ମିଶ୍ରଣ ଓ ଓଡ଼ିଶାର ଏକତ୍ରୀକରଣ ଓଡ଼ିଆ ସାହିତ୍ୟର ଉନ୍ନତି, ପ୍ରାଚୀନ ସାହିତ୍ୟର ଉଦ୍ଧାର, ପାଠ୍ୟ ପୁସ୍ତକ ରଚନା, ହିନ୍ଦୁଧର୍ମର ପୁନରୁତ୍‌ଥାନ ଓ ସୁରକ୍ଷା, ବ୍ରାହ୍ମଧର୍ମର ଆଭିମୁଖ୍ୟ, ଖ୍ରୀଷ୍ଟିୟାନ ଓ ମୁସଲମାନମାନଙ୍କର ନିଜ ନିଜ ଧର୍ମ ରକ୍ଷା ପାଇଁ ଉଦ୍ୟମ, ଗୋ'ସଂପଦର ସୁରକ୍ଷା, ସାମାଜିକ କୁସଂସ୍କାର ବିଲୋପ, ମାଦକଦ୍ରବ୍ୟ ଓ ନିଶା ନିବାରଣ, ନାରୀଶିକ୍ଷା, ସ୍କୁଲ ପ୍ରତିଷ୍ଠା, ରେଳରାସ୍ତା ନିର୍ମାଣ, ବ୍ରାହ୍ମଣ ଓ କରଣ ଜାତିର ଉନ୍ନତି, ଛାତ୍ର ଓ ଯୁବକମାନଙ୍କର ସଂଗଠନ, ସଂଭ୍ରାନ୍ତ ବ୍ୟକ୍ତିମାନଙ୍କର ମିଳନ ଆଦିକୁ କେନ୍ଦ୍ର କରି ହୋଇଥିଲା । ସଭାଗୁଡ଼ିକ ସମାଜରେ ପ୍ରଭାବ ପକାଉଥିଲା । ଏପରିକି ସାହିତ୍ୟ ମଧ୍ୟକୁ ସଭାଗୁଡ଼ିକ ପ୍ରବେଶ କରିଯାଉଥିଲା । ଫକୀର ମୋହନ ସେନାପତି 'ପ୍ରାୟଶ୍ଚିତ୍ତ' ଉପନ୍ୟାସରେ ଦୁଇଟି ସଭା କଥା ଉଲ୍ଲେଖ କରିଅଛନ୍ତି । ଯଥା-- ଆଲୋଚନା ସଭା ଓ ଭୋଜି ସଭା । କଲେଜରେ ପଢୁଥିବା ଯୁବକମାନେ କିପରି ସେକାଳର ସଭାଦ୍ୱାରା ପ୍ରଭାବିତ ହୋଇଥିଲେ ଓ ମୁକ୍ତ ଚିନ୍ତା ପ୍ରକାଶ କରୁଥିଲେ, ତାହା ଏହାର ନିଦର୍ଶନ । ସେହିପରି ତାଙ୍କର 'ସଭ୍ୟ ଜମିଦାର' ଗଳ୍ପରେ କୁସଂସ୍କାର ବିମର୍ଦ୍ଦିନୀ ସଭା' ଓ ନାରୀ ସ୍ୱାଧୀନତା ବିବର୍ଦ୍ଧିନୀ ସଭା, ପାଠୋଇବୋହୂ ଗଳ୍ପରେ ଭକ୍ତିଦାୟିନୀ ସଭା ସେକାଳର ସଭାମାନଙ୍କୁ ମନେପକାଇ ଦିଏ । ସଭାସମିତି ଗୋଟିଏ ସଭ୍ୟ ଜାତିର ଆତ୍ମା ଓ ହୃଦୟର ସାକ୍ଷ୍ୟ । ସଭା ସ୍ୱେଚ୍ଛାଚାରୀ ଓ ଆତ୍ମକଳହ ଲିପ୍ତ ହେଲେ ତାହାର ମର୍ଯ୍ୟାଦା ରୁହେନାହିଁ । କୌଣସି ସଂକଳ୍ପ ନ ଥାଇ ସଭା ହେଲେ ତାହା ମଧ୍ୟ ବ୍ୟର୍ଥ ହୋଇଯାଏ, ଯାହା ଆଜିକାଲି ସଭାମାନଙ୍କରୁ ଲକ୍ଷ୍ୟ କରାଯାଏ । ଊନବିଂଶ ଶତାବ୍ଦୀ ଓଡ଼ିଶାର ସଭାସମିତି ଯେ ଜାତିର ନବଜାଗରଣ ପାଇଁ ଅଭିପ୍ରେତ ଥିଲା, ତାହା ପାଠକେ ଉପଲବ୍‌ଧି କରିପାରିବେ ।

ㅁㅁ

# ପୋଲାଭରମ୍ ପ୍ରକଳ୍ପର ବିରୋଧ ଅନ୍ତରାଳେ

ଇଂ ହରିଶ୍ ଚନ୍ଦ୍ର ବେହେରା

*ଗୋଦାବରୀ ନଦୀରେ ଆନ୍ଧ୍ର ସରକାରଙ୍କ ପକ୍ଷରୁ ନିର୍ମିତ ପୋଲାଭରମ୍ ପ୍ରକଳ୍ପ ସମ୍ପ୍ରତି ଓଡ଼ିଶା ସରକାରଙ୍କ ପାଇଁ ଏକ ଆହ୍ୱାନ ସଦୃଶ । କେନ୍ଦ୍ର ସରକାର ତଥା କେନ୍ଦ୍ର ଜଳ ଆୟୋଗଙ୍କୁ ହାତ କରି ଆନ୍ଧ୍ର ସରକାର ଅବିଚାରିତ, ଅନୈତିକ ଓ ଅନ୍ୟାୟଭାବେ ଏହି ପ୍ରକଳ୍ପ ଦ୍ୱାରା ଯେପରି ଓଡ଼ିଶାର ବ୍ୟାପକ ସ୍ଥଳଭାଗକୁ ବୁଡ଼ାଇ ସମ୍ପୂର୍ଣ୍ଣ ଧ୍ୱସ୍ତବିଧ୍ୱସ୍ତ କରିବାକୁ ଯାଉଛନ୍ତି, ସେ ବିଷୟରେ ଓଡ଼ିଶାର ବୁଦ୍ଧିଜୀବୀବର୍ଗ ସମ୍ବାଦପତ୍ରରେ ପୂର୍ବରୁ ସୂଚନା ପାଇଥିବେ । ତଥାପି ଏ ବିଷୟରେ ପ୍ରକୃତ ତଥ୍ୟ ଜାଣିବାକୁ 'ମୋ ଓଡ଼ିଶା'ର ଅନୁରୋଧରେ ଓଡ଼ିଶା ରାଜ୍ୟର ଜଳସମ୍ପଦ ବିଭାଗ ବରିଷ୍ଠ ସର୍ବୋଚ୍ଚ ଯନ୍ତ୍ରୀ ଇଞ୍ଜିନିୟର ହରୀଶ ଚନ୍ଦ୍ର ବେହେରାଙ୍କ ପ୍ରତିବେଦନ ଆପଣଙ୍କ ପାଇଁ ଉପସ୍ଥାପନ କରୁଛୁ....*

ଆନ୍ଧ୍ର ସରକାରଙ୍କ ଦ୍ୱାରା ନିର୍ମାଣାଧୀନ ପୋଲାଭରମ (ଇନ୍ଦିରା ସାଗର) ପ୍ରକଳ୍ପ ଏକ ବହୁମୁଖୀ ଜଳସେଚନ ପ୍ରକଳ୍ପ । ଏହା ଗୋଦାବରୀ ନଦୀରେ ପଶ୍ଚିମ ଗୋଦାବରୀ ଜିଲ୍ଲା ଅନ୍ତର୍ଗତ ପୋଲାଭରମ୍ ମଣ୍ଡଳର ରମାୟପେଟ୍ ଗ୍ରାମରେ କାର୍ଯ୍ୟକାରୀ ହେଉଛି । ଏହି ସ୍ଥାନ ରାଜମହେନ୍ଦ୍ରୀ ବ୍ୟାରେଜର ୪୨ କି.ମି. ଉପରମୁଣ୍ଡରେ ଅବସ୍ଥିତ । ଏଠାରେ ଉଲ୍ଲେଖନୀୟ ଯେ, ସାବେରୀ ନଦୀ ଓଡ଼ିଶା ଓ ଛତିଶଗଡ଼ ସୀମାରେ ପ୍ରବାହିତ ହେଉଛି । ଅନୁରୂପ ଭାବେ ସିଲେରୁ ନଦୀ ଓଡ଼ିଶା ଓ ଆନ୍ଧ୍ର ସୀମାରେ ପ୍ରବାହିତ । ଏହି ଦୁଇ ନଦୀ ଓଡ଼ିଶାର ମାଲକାନାଗିରି କିଲ୍ଲାର ମୋଟୁଠାରେ ମିଳିତ ହୋଇ ସାନ ଗୋଦାବରୀ ନାମରେ ନାମିତ ହୋଇ ଆନ୍ଧ୍ର ପ୍ରଦେଶ ସୀମାରେ କୋନାଭରମ୍ ଠାରେ ମୂଳ ଗୋଦାବରୀ ନଦୀରେ ମିଳିତ ହୋଇଛନ୍ତି । ପୋଲାଭରମ୍ ଏଇ ମିଳନ ସ୍ଥଳର ନିମ୍ନରେ ଅବସ୍ଥିତ ।

ଏହି ପ୍ରକଳ୍ପ ପ୍ରଥମେ ୧୯୪୧ ମସିହାରେ ପ୍ରସ୍ତାବିତ ହୋଇଥିଲା । ବିଭିନ୍ନ ବୈଷୟିକ କାରଣରୁ ଏହା ବିଳମ୍ବିତ ହେବାରେ ଲାଗିଲା । ୧୯୭୮ ମସିହା ଡିସେମ୍ବର ୧୫ର ଆନ୍ତଃରାଜ୍ୟ ଅଧିବେଶନରେ ଓଡ଼ିଶା ଓ ଆନ୍ଧ୍ର ଏକ ରାଜିନାମାରେ ଉପନୀତ ହୋଇଥିଲେ । ତଦନୁଯାୟୀ ଆନ୍ଧ୍ରପ୍ରଦେଶ ଏମିତି ଭାବେ ପୋଲାଭରମ୍ ପ୍ରକଳ୍ପ ନିର୍ମାଣ କରିବେ, ଯେମିତି ଓଡ଼ିଶା ସୀମାରେ ସର୍ବାଧିକ ବୁଡ଼ି ଅଞ୍ଚଳ ଜଳପଉନ ୧୫୦ ଫୁଟ ମଧ୍ୟରେ ସୀମିତ ରହିବ । ଏହି ସୀମା ମଧ୍ୟରେ ପଶ୍ଚାତ୍ ଜଳ ପ୍ରବାହ (Back water) ପ୍ରତିକ୍ରିୟା ମଧ୍ୟ ଅନ୍ତର୍ଭୁକ୍ତ । କେନ୍ଦ୍ରୀୟ ଜଳ ଆୟୋଗର ପରାମର୍ଶ କ୍ରମେ ପ୍ରକଳ୍ପକୁ ସମ୍ଭାବ୍ୟ ସର୍ବୋଚ୍ଚ ବନ୍ୟାଜଳ ପାଇଁ ଅଭିକଳ୍ପନା କରାଯିବ ।

ପୁନଶ୍ଚ ଅପ୍ରେଲ୍ ୨, ୧୯୮୦ରେ ଏକ ଦ୍ୱିତୀୟ ରାଜିନାମା ହେଲା । ଏହାନୁସାରେ ସେକେଣ୍ଡ ପ୍ରତି ୩୬ ଲକ୍ଷ ଘନଫୁଟ ବନ୍ୟାଜଳ ପାଇଁ ଉଦ୍‌ବୃତ ଜଳ ନିଷ୍କାସନ ନିର୍ଗମ ପଥ( Spillway)ର କ୍ଷମତା ଏବଂ ଏହି ବନ୍ୟାଜଳ ନିୟନ୍ତ୍ରଣ ପାଇଁ ଜଳଭଣ୍ଡାରର ପରିଚାଳନା ସୂଚୀ ସ୍ଥିର କରାଯାଇଥିଲା । ଓଡ଼ିଶା ଭିତରେ ୧୫୦ ଫୁଟ ଊର୍ଦ୍ଧ୍ୱରେ ଅବସ୍ଥିତ ନଦୀ ପାର୍ଶ୍ୱସ୍ଥ ଗ୍ରାମଗୁଡ଼ିକର ଜମି ଓ ବାସଗୃହ ସମୂହକୁ ନଦୀତଟ ବନ୍ଧ ଦ୍ୱାରା ସୁରକ୍ଷିତ କରାଯାଇ ତନ୍ମଧ୍ୟରେ ଯଥେଷ୍ଟ ନିଷ୍କାସନ (Drainage) ର ବ୍ୟବସ୍ଥା କରାଯିବ । ଏହି ଖର୍ଚ୍ଚ ସଂପୃକ୍ତ ପ୍ରକଳ୍ପ ବହନ କରିବ ।

ଉପରୋକ୍ତ ଦୁଇ ରାଜିନାମାକୁ ଦୃଷ୍ଟିରେ ରଖି ଗୋଦାବରୀ ଜଳବିବାଦ ଟ୍ରିବ୍ୟୁନାଲ (GWDT) ଅପ୍ରେଲ୍ ୧୯୮୦ ରେ ତାଙ୍କ ଚୂଡ଼ାନ୍ତ ରାୟର ଷଷ୍ଠ ଧାରାରେ ପରିପ୍ରକାଶ କଲେ ଯେ, କେନ୍ଦ୍ରୀୟ ଜଳ ଆୟୋଗ (CWC) ପ୍ରକଳ୍ପର ମଞ୍ଜୁରୀ ସମୟରେ ସର୍ବୋଚ୍ଚ ଜଳସ୍ତର (MWL / FRL) ୧୫୦ ଫୁଟ ମଧ୍ୟରେ ସୀମିତ ରଖି ନଦୀବନ୍ଧ ଅଭିକଳ୍ପନା (Design) ଓ ବନ୍ୟା ନିୟନ୍ତ୍ରଣର ଜଳଭଣ୍ଡାର ପରିଚାଳନା ସୂଚୀ (ଆଡ଼ିବନ୍ଧ ଓ ଜଳନିଷ୍କାସନ ସମେତ) ପ୍ରସ୍ତୁତ କରିବେ ଏବଂ ଏହି ପରିଚାଳନା ସୂଚୀରେ କୌଣସି ପରିବର୍ତ୍ତନ ହେଲେ ଭାଗିଦାରୀ ଅବବାହିକା ରାଜ୍ୟମାନଙ୍କ ସହ କେବଳ ବିଚାରବିମର୍ଶରେ ହିଁ କରିପାରିବେ ।

ତ୍ରିରାଜ୍ୟ ଚୁକ୍ତିନାମା ଆଧାରିତ ଉପରୋକ୍ତ ବୈଷୟିକ ନିୟମାବଳୀ ସାଂପ୍ରତିକ ପରିସ୍ଥିତିରେ କେତେଦୂର ସାମ୍ବିଧାନ ସମ୍ମତ, ପ୍ରଥମତଃ ବିବେଚନା କରାଯାଉ ।

- ପୋଲାଭରମ୍ ଉପରମୁଣ୍ଡରେ ପ୍ରସ୍ତାବିତ ଇଞ୍ଚାମ୍‌ପଲ୍ଲୀ ନଦୀବନ୍ଧ ଯୋଜନାର ପ୍ରାକ୍ ନିର୍ମାଣ ଭିତ୍ତିରେ ସେତେବେଳର ଅନୁସୃତ ଜଳତତ୍ତ୍ୱର ବୈଷୟିକ ଅନୁଧ୍ୟାନରୁ ସେକେଣ୍ଡ ପ୍ରତି ୩୬ ଲକ୍ଷ ଘନଫୁଟ ବନ୍ୟାଜଳ ପ୍ରବାହ ଅଭିକଳ୍ପନା କରାଯାଇଥିଲା । ତଦନୁସାରେ ସର୍ବୋଚ୍ଚ ଜଳସ୍ତର ୧୫୦ ଫୁଟରେ ସୀମିତ ରଖି ପ୍ରକଳ୍ପର ଉଦ୍‌ବୃତ୍ତ ଜଳ ନିଷ୍କାସନ ପଥର କ୍ଷମତା ତଥା ବନ୍ୟା ନିୟନ୍ତ୍ରଣ ପାଇଁ ଜଳଭଣ୍ଡାରର ପରିଚାଳନା ସୂଚୀ (Rule Curve) ପ୍ରସ୍ତୁତ କରାଯାଇଥିଲା । ଉକ୍ତ ପରିଚାଳନା ସୂଚୀର ବିଶେଷତ୍ୱ ହେଲା ଯେ ବନ୍ୟାଜଳ ପ୍ରବାହର ପରିମାଣ ପୂର୍ବାନୁମାନ ଦ୍ୱାରା ନିର୍ଦ୍ଧାରଣ କରି ତଦନୁଯାୟୀ ଜଳଭଣ୍ଡାରକୁ ନିର୍ଦ୍ଧାରିତ ସ୍ତରରେ ପୂର୍ବରୁ ଖାଲି କରି ରଖିବା । କିନ୍ତୁ ବର୍ତ୍ତମାନର ଆକଳିତ ସମ୍ଭାବ୍ୟ ବନ୍ୟାଜଳ ପ୍ରବାହ ୩୬ ଲକ୍ଷ ଘନଫୁଟ ପରିବର୍ତ୍ତେ ୫୦ ଲକ୍ଷକୁ ବୃଦ୍ଧି ପାଇଛି । ଜଳବାୟୁର ପରିବର୍ତ୍ତନ ତତ୍‌ଜନିତ ଅନିୟମିତ ପାଣିପାଗର ପୂର୍ବାନୁମାନ ଦ୍ୱାରା ବର୍ଷା ହେବାର ନିଶ୍ଚୟତା, ବର୍ଷା ବା ବନ୍ୟା ଜଳପ୍ରବାହର ପରିମାଣ ନିର୍ଦ୍ଧାରଣ କରି ସେହି ସମ୍ଭାବନା ଅନୁଯାୟୀ ଜଳଭଣ୍ଡାରକୁ ପୂର୍ବରୁ ଖାଲି କରି ରଖିବା ପଦ୍ଧତି ବାସ୍ତବରେ ଅଧୁନା ବୈଷୟିକ ଦୃଷ୍ଟିରୁ ବିଚାର୍ଯ୍ୟ ନୁହେଁ । ଏହି ପରିପ୍ରେକ୍ଷୀରେ ଏତିକି ସୂଚାଇ ଦିଆଯାଇପାରେ କି ଯେତେବେଳେ ଜଳଭଣ୍ଡାରରେ ସର୍ବୋଚ୍ଚ ଜଳସ୍ତର ଥିବ, ଠିକ୍ ସେତିକିବେଳେ ସମ୍ଭାବ୍ୟ ସର୍ବୋଚ୍ଚ ବନ୍ୟାଜଳ ପ୍ରବାହ ଯେଉଁ ସଙ୍କଟକାଳୀନ ଦୃଶ୍ୟପଟ ସୃଷ୍ଟି କରିବ, ସେହି ଭିତ୍ତିରେ ନଦୀବନ୍ଧର ନିର୍ମାଣଶୈଳୀ କେବଳ ବୈଷୟିକ ଅନୁସିଦ୍ଧାନ୍ତ ଯୋଗ୍ୟ ।


SUBMERGENCE OF ORISSA TERRITORY DUE TO BACK WATER EFFECT OF POLAVARAM PROJECT
N
S
NOT TO SCALE
CHHATISHGARH
POTTERU AYACUT AREA
BALIMELA DAM
ORISSA
KONTA
ANDHARA PRADESH
SABARI RIVER
GODAVARI BASIN
Reference
River
Contour-150 (FRL)
Contour-194.50
Contour-208
State-Boundary
DUMMUGUDEM
GODAVARI RIVER
GODAVARI RIVER
POLAVARAM
Note
1. Submergence level 194.50 ft. for 36 lacs flood
(as per tentative calculation)
2. Area of Submergence in Orissa
(as per tentative estimate 2600 Ha. (6424.72Acre)
Note
Submergence level 208 ft.at Orissa territory for 48 lacs cusecs
as per flood studies of Prof. Sivaji Rao Ex Prof. of Andhra University
and area of submergence in Orissa is 4000 Ha(9884.18 Acre)

- ଓଡ଼ିଶା ଓ ଛତିଶଗଡ଼ ଅଞ୍ଚଳରେ ୧୫୦ ଫୁଟ ଊର୍ଦ୍ଧ୍ୱରେ ଥିବା ନଦୀତଟ ସଂଲଗ୍ନ ଜମି ଓ ଗ୍ରାମଗୁଡ଼ିକୁ ବନ୍ୟା ଦାଉରୁ ରକ୍ଷା କରିବାକୁ ନଦୀତଟ ବନ୍ଧ, ସ୍ଲୁଇସ୍ ତଥା ଜଳ ନିଷ୍କାସନ, ବନ୍ୟା ପରିଚାଳନା ଇତିହାସରେ ଅସ୍ଥାୟୀ ଏବଂ ସମ୍ପୂର୍ଣ୍ଣ ସୁରକ୍ଷାରହିତ ବ୍ୟବସ୍ଥା, ଯଦ୍ୱାରା ପଡ଼ୋଶୀ ରାଜ୍ୟରେ ଜଳପ୍ଲାବନ ତଥା ନାଳ ଅବରୁଦ୍ଧ ଆଦି ସମସ୍ୟା ସୃଷ୍ଟି କରି ବିବାଦର ସୂତ୍ରପାତ କରିବ। ସେହିପରି ସ୍ଲୁଇସ୍‌ଗୁଡ଼ିକର କାର୍ଯ୍ୟକାରିତା ଉପରେ ଅନେକ ପ୍ରଶ୍ନବାଚୀ ସୃଷ୍ଟି କରିବ। କାରଣ ସମୟାନୁକ୍ରମେ ପଟୁମାଟିର ଆସ୍ତରଣରେ ନଦୀ ଶଯ୍ୟା ଉନ୍ନୀତ ହୋଇ ଜଳ ନଦୀ ଭିତରକୁ ପ୍ରବେଶ କରିବା ପରିବର୍ତ୍ତେ ବାହାରକୁ ପ୍ରବାହିତ ହେବ। ଏତଦ୍‌ବ୍ୟତୀତ ତଟବନ୍ଧଗୁଡ଼ିକର ଉଚ୍ଚତା କ୍ରମଶଃ ବୃଦ୍ଧି ଘଟି ବୃହତ୍ ଆକାର ଧାରଣ କରିବ ଏବଂ ଆକସ୍ମିକ ଘାଇ ହୋଇ ବ୍ୟାପକ ଅଞ୍ଚଳ ଜଳମଗ୍ନ ହେବ। ପୁନଶ୍ଚ ଏଠାରେ ଉଲ୍ଲେଖନୀୟ ଯେ ଆନ୍ତର୍ଜାତୀୟ ସ୍ତରରେ ବୃହତ୍ ଜଳଭଣ୍ଡାର ନିର୍ମାଣ କ୍ଷେତ୍ରରେ ମିଳିତ ନଦୀଗୁଡ଼ିକରେ ସମାନ୍ତରାଳ ତଟ ବନ୍ଧ ବ୍ୟବସ୍ଥା ବିରଳ। ଅତଏବ ଉକ୍ତ ଅବସ୍ଥା ଏକ ଭୁଲ୍ ଚିନ୍ତାଧାରା।

ବିଗତ ତିନି ଦଶନ୍ଧି ମଧ୍ୟରେ ମାଲକାନଗିରି ଜିଲ୍ଲାର ଆଦିବାସୀ ଅଧ୍ୟୁଷିତ ଅଞ୍ଚଳର ସାମାଜିକ ଓ ଅର୍ଥନୈତିକ ଅବସ୍ଥାରେ ଘୋର ପରିବର୍ତ୍ତନ ଘଟିଛି। ମାନବ ବିକାଶ ପରିମାପକ ଦୃଶ୍ୟପଟରେ ମାନବ ବିକାଶ ସୂଚାଙ୍କ ଜାତୀୟ ସ୍ତରରେ ଅତି ନିମ୍ନରେ। ଅପର ପକ୍ଷରେ ନକ୍ସଲ୍‌ପ୍ରବଣ ଉପାନ୍ତ ଅଞ୍ଚଳରେ ବ୍ୟାପକ ଭୂ-ଭାଗ ଅହେତୁକ ବନ୍ୟାଯୋଗୁଁ ଜଳମଗ୍ନ ହେବା ସହିତ ବାସ୍ତୁହରାମାନଙ୍କର ଦୁର୍ଦ୍ଦଶା ଏହି ମାନବ ବିକାଶ ସୂଚାଙ୍କକୁ ସମୂଳେ ଧ୍ୱଂସ କରିଦେବ।

- ଚୁକ୍ତିନାମା ସମୟରେ ଦେଶର ପ୍ରଚଳିତ ପରିବେଶ ଆଇନ ଅଲଗା ଥିଲା। ୧୯୮୦ର ଜଙ୍ଗଲ (ସଂରକ୍ଷଣ) ଆଇନ୍, ୧୯୮୬ର ପରିବେଶ ସୁରକ୍ଷା ଆଇନ, ସର୍ବୋପରି ଆଦିବାସୀ ଅଞ୍ଚଳରେ ୧୯୯୬ ମସିହା ପେସା (Panchayat's Extension to the Scheduled Area) ଆଇନର ନୂତନ ପ୍ରଚଳନ ଆନ୍ତଃରାଜ୍ୟ ଚୁକ୍ତିନାମାର ପରିସରକୁ ଆସି ନ ଥିଲା। ଏଣୁ ଉପରୋକ୍ତ ବିବାଦୀୟ ସାମ୍ବିଧାନିକ ପ୍ରଶ୍ନସମୂହକୁ ସମୀକ୍ଷା କଲେ ତ୍ରିରାଜ୍ୟ ଚୁକ୍ତିନାମାର ଅକ୍ଷୁଣ୍ଣତା କେତେ ଦୂର ବଜାୟ ରହିଛି, ତାହା ବେଶ୍ ଉପଲବ୍‌ଧି କରିହେଉଛି।

ଘଟଣାକ୍ରମେ ପରବର୍ତ୍ତୀ କାଳରେ ବିରୋଧାଭାସ ସୃଷ୍ଟି ହେଲା। ତଥାକଥିତ ବୈଷୟିକ ଅନୁସିଦ୍ଧାନ୍ତ ଭିତ୍ତିରେ ପ୍ରକଳ୍ପ କାର୍ଯ୍ୟକାରୀ କରିବା ଲକ୍ଷ୍ୟରେ ୧୯୯୬ ମସିହା ଫେବୃଆରୀ ୨ ତାରିଖର ଆନ୍ତରାଜ୍ୟ ବୈଠକରେ ଆନ୍ଧ୍ର ସରକାର ଓଡ଼ିଶାକୁ ଜଣାଇଲେ ଯେ ପଶ୍ଚାତ ଜଳ ପ୍ରବାହ ପ୍ରତିକ୍ରିୟା ହେତୁ ସର୍ବୋଚ୍ଚ ଜଳପତନ ପୂର୍ବ ନିର୍ଦ୍ଧାରିତ ୧୫୦ ଫୁଟରୁ ୧୮୨ ଫୁଟକୁ ଉନ୍ନୀତ ହେବ। ଯଦ୍ୱାରା ଓଡ଼ିଶାର ସାତଟିଗ୍ରାମ ଓ ଏକହଜାର ୨୬ ହେକ୍ଟର ଜମି ପ୍ରଭାବିତ ହେବ । ପୁନଶ୍ଚ ୧୯୯୯ ମସିହା ଜୁନ୍ ୪ ତାରିଖରେ ଜଣାଇଲେ ଯେ, ପଶ୍ଚାତ୍ ଜଳପ୍ରବାହ ପତନ ୧୬୯.୮୫ ଫୁଟକୁ ଉଠି ଓଡ଼ିଶାର ୧୦ଟି ଗ୍ରାମ ଏବଂ ୨୧୧୯.୩୮ ହେକ୍ଟର ରାଜସ୍ୱ ଓ ଜଙ୍ଗଲ ଜମି କ୍ଷତିଗ୍ରସ୍ତ ହେବ। ସେହିପରି ଅଗଷ୍ଟ ୨୦୦୦ ଓ ଅପ୍ରେଲ୍

୨୦୦୧ରେ ପରିପ୍ରକାଶ କଲେ ଯେ, ୧୫୦ ଫୁଟ ଜଳପତ୍ତନରେ ୧୦ଟି ଗ୍ରାମ ଓ ୫୪୫. ୮୯ ହେକ୍ଟର ଜମି ୧୦୦୨ଟି ପରିବାର, ୧୦୨.୧୬ ହେକ୍ଟର ଜଙ୍ଗଲ ଜମି ପ୍ରଭାବିତ ହେବ । ଆନ୍ଧ୍ରପ୍ରଦେଶ ବାରମ୍ବାର ଏକ ଅସଙ୍ଗତିମୂଳକ ମତ ବ୍ୟକ୍ତ କରୁଥିବାରୁ ଓଡ଼ିଶା ସରକାରଙ୍କ ପକ୍ଷରୁ ଆଶଙ୍କା ପ୍ରକାଶ ପାଇଲା । ଫଳରେ କେନ୍ଦ୍ର ଆୟୋଗଙ୍କ ସ୍ତରରେ ଏକ ଉଚ୍ଚ କ୍ଷମତାସଂପନ୍ନ କମିଟି ଗଠନ କରାଯାଇଥିଲା । ୨୦୦୦ ଅଗଷ୍ଟ ୧୧ ତାରିଖ ପ୍ରଥମ ବୈଠକରେ କମିଟି କହିଲେ ଯେ ଆନ୍ଧ୍ର ପଶ୍ଚାତ୍ ଜଳ ପ୍ରବାହ ହିସାବର ସବିଶେଷ ତଥ୍ୟ ଓଡ଼ିଶାକୁ ଦେବ; କିନ୍ତୁ ପରିତାପର ବିଷୟ ଯେ, ତୃତୀୟ ବୈଠକ ୨୦୦୧ ମଇ ୨୫ ତାରିଖରେ ଅନୁଷ୍ଠିତ ହେଲା ବେଳକୁ ଏହି ତଥ୍ୟସମୂହ ଓଡ଼ିଶାକୁ ମିଳି ନ ଥିଲା ।

ଏହି ବିବାଦ କ୍ରମଶଃ ବୃଦ୍ଧି ପାଇବାରୁ ଭାରତ ସରକାରଙ୍କ ଜଳସଂପଦ ବିଭାଗ ୨୦୦୬ ମସିହା ଫେବୃୟାରୀ ୭ ତରିଖରେ ଏକ ଆନ୍ତଃରାଜ୍ୟ ବୈଠକ ଡାକିଲେ । ଏଥିରେ ଆନ୍ଧ୍ର ପକ୍ଷରୁ କୁହାଗଲା ଯେ ପରିବର୍ତ୍ତିତ ପ୍ରକଳ୍ପ ରିପୋର୍ଟ କେନ୍ଦ୍ରୀୟ ଜଳ ଆୟୋଗକୁ ୨୦୦୫ ରୁ ଦିଆଯାଇଛି । ଓଡ଼ିଶା ପକ୍ଷରୁ କୁହାଗଲା ଯେ, ୧୯୭୮ ରେ ରାଜିନାମାରେ FRL ୧୫୦ ଫୁଟ ବୋଲି ଉଲ୍ଲେଖ ନାହିଁ । କେବଳ କୁହାଯାଇଛି ଯେ, ବୁଡ଼ି ଅଞ୍ଚଳର ଜଳପତ୍ତନ ପଶ୍ଚାତ୍ ଜଳପ୍ରବାହ ସମେତ ୧୫୦ ଫୁଟ ହେବ । ପୁନଶ୍ଚ ୧୯୮୦ ଚୁକ୍ତିରେ ବନ୍ୟାଜଳ ପ୍ରବାହ ସେକେଣ୍ଡ୍ ପ୍ରତି ୩୬ ଲକ୍ଷ ଘନଫୁଟରେ ସୀମିତ ଥିଲା । ମାତ୍ର ବନ୍ୟା ଜଳ ପରିମାଣର ଆକଳନ କେତେ ହେବ, ସେ ପର୍ଯ୍ୟନ୍ତ ଜଣାପଡ଼ି ନଥିଲା । ଭାରତ ସରକାରଙ୍କ ପକ୍ଷରୁ କୁହାଗଲା ଯେ, ଓଡ଼ିଶା ଓ ଛତିଶଗଡ଼ର କେତେକ ଅଞ୍ଚଳ ବୁଡୁଛି ଏବଂ ପ୍ରଭାବିତ ହେଉଛି, ତାହାର ସଠିକ୍ ଆକଳନ କେନ୍ଦ୍ରୀୟ ଜଳ ଆୟୋଗ (CWC) ଶୀଘ୍ର ଚୂଡ଼ାନ୍ତ କରିବ ଏବଂ ଏଥିରେ ସଂପୃକ୍ତ ପ୍ରଭାବିତ ରାଜ୍ୟସମୂହକୁ ଅନ୍ତର୍ଭୁକ୍ତ କରିବାକୁ ହେବ । ଏହି ଅବସ୍ଥାରେ କେନ୍ଦ୍ର ସରକାରଙ୍କର ପରିବେଶ ଓ ଜଙ୍ଗଲ ମନ୍ତ୍ରଣାଳୟ ଓଡ଼ିଶାର ବିନା ସହମତିରେ, କେନ୍ଦ୍ର ଜଳ ଆୟୋଗର ବିନା ଅନୁମୋଦନରେ, 'ପେସା' ଆଇନକୁ ଉଲ୍ଲଂଘନ କରି ଓଡ଼ିଶାର ସମ୍ପୃକ୍ତ ଅଞ୍ଚଳରେ ଜନ ଶୁଣାଣି ନ କରି, ଭ୍ରମାତ୍ମକ ତଥ୍ୟକୁ ଆଧାର କରି ୨୫.୧୦.୨୦୦୫ରେ ପରିବେଶ ଅନୁମୋଦନ ନିର୍ଦ୍ଦେଶନାମା ଦେଇଦେଲେ । ଏହି ପରିପ୍ରେକ୍ଷୀରେ ଶ୍ରୀଯୁକ୍ତ ଲକ୍ଷ୍ମଣ ମୁଣ୍ଡାଙ୍କ ଏକ ଜନସ୍ୱାର୍ଥ ମାମଲାକୁ ବିଚାର କରି ଓଡ଼ିଶାର ମାନ୍ୟବର ଉଚ୍ଚ ନ୍ୟାୟାଳୟ ମଧ୍ୟବର୍ତ୍ତୀକାଳୀନ ନିର୍ଦ୍ଦେଶନାମାରେ ବ୍ୟକ୍ତ କଲେ ଯେ, ଓଡ଼ିଶା ସୀମାରେ କୌଣସି ଜମି, ଗ୍ରାମ କିମ୍ବା ଅଞ୍ଚଳ ନ ବୁଡ଼ାଇ ଆନ୍ଧ୍ର ସରକାର ଇନ୍ଦିରା ସାଗର (ପୋଲାଭରମ୍) ବହୁମୁଖୀ ପ୍ରକଳ୍ପ କାର୍ଯ୍ୟକାରୀ କରିପାରିବେ, ଯାହାକି ପରବର୍ତ୍ତୀ ସମୟରେ ଉପରୋକ୍ତ ପରିବେଶ ସର୍ତ୍ତ ଭାବରେ ଅନ୍ତର୍ଭୁକ୍ତ କରାଯାଇଛି । ଇତ୍ୟବସରରେ ଭାରତ ସରକାରଙ୍କ ପରିବେଶ ଅନୁମୋଦନ ନିର୍ଦ୍ଦେଶନାମାର ପ୍ରତିବାଦରେ କେନ୍ଦ୍ରୀୟ ଜଳ ଆୟୋଗର ପୂର୍ବତନ ମୁଖ୍ୟମନ୍ତ୍ରୀ ଶ୍ରୀ ଆର୍.ବିଦ୍ୟାସାଗର ରାଓ ମାନ୍ୟବର ସର୍ବୋଚ୍ଚ ନ୍ୟାୟାଳୟ ଦ୍ୱାରା ଗଠିତ କେନ୍ଦ୍ରୀୟ କ୍ଷମତା ସଂପନ୍ନ କମିଟିରେ ଏକ ପିଟିସନ ଦାଖଲ କରିଥିଲେ । ଓଡ଼ିଶା ସରକାରଙ୍କ ପକ୍ଷରୁ ମଧ୍ୟ ଅନୁରୂପ ଭାବେ ୨୦୦୬ ଜୁନ୍ ୨୬ ତାରିଖ ଓ ଜୁଲାଇ ୧୨ ତାରିଖରେ ସତ୍ୟପାଠ ମାଧ୍ୟମରେ

ତ୍ରିରାଜ୍ୟ ଚୁକ୍ତିନାମାର ବୈଷୟିକ ଅନୁସିଦ୍ଧାନ୍ତ କ୍ଷୁର୍ଣ୍ଣତାର ଯୁକ୍ତିଯୁକ୍ତତା, ନୂତନ ପ୍ରଚଳିତ ଜଙ୍ଗଲ ଓ ପରିବେଶ ତଥା ପେସା (PESA) ଆଇନର ଉଲ୍ଲଂଘନ ଉତ୍ଥାପନ ପୂର୍ବକ ପୋଲାଭରମ୍ ପ୍ରକଳ୍ପକୁ ବିରୋଧ କରିଥିଲେ।

ପୁନଶ୍ଚ ଜାତୀୟ ନଦୀ ସଂଯୋଗୀକରଣ ଯୋଜନାରେ ମହାନଦୀ-ଗୋଦାବରୀ, ପୋଲାଭରମ୍ - କ୍ରିଷ୍ଣା ନଦୀ ସଂଯୋଗ ପ୍ରସ୍ତାବଦ୍ୱଇଟିକୁ ଓଡ଼ିଶା ସରକାର ମଧ୍ୟ ବିରୋଧ କରିଥିଲେ। ସର୍ବୋପରି ଓଡ଼ିଶାର ମାନ୍ୟବର ମୁଖ୍ୟମନ୍ତ୍ରୀ ସାଂପ୍ରତିକ ବୈଷୟିକ, ସାମାଜିକ ଓ ଅର୍ଥନୈତିକ ଅବସ୍ଥାର ପରିବର୍ତ୍ତନଜନିତ ଆଧାରରେ ମାଲ୍କାନାଗିରିର ନକ୍ସଲପ୍ରବଣ ଉପାନ୍ତ ଅଞ୍ଚଳ ଯେପରି ନ ବୁଡ଼ିବ, ସେଥିପାଇଁ ପୋଲାଭରମ୍ ବହୁମୁଖୀ ପ୍ରକଳ୍ପର ପୁନଶ୍ଚ ସମୀକ୍ଷା କରିବା ପାଇଁ ବାରମ୍ବାର ଆନ୍ଧ୍ର ସରକାରଙ୍କୁ ଅନୁରୋଧ କରିଥିଲେ।

କ୍ରମଶଃ ସମସ୍ୟାର ସମାଧାନ ପାଇଁ କେନ୍ଦ୍ରୀୟ ଜଳ ଆୟୋଗଙ୍କ ଅଧ୍ୟକ୍ଷତାରେ ୨୦୦୬ ମସିହା ସେପ୍ଟେମ୍ବର ୨୮ ତାରିଖରେ ତ୍ରିରାଜ୍ୟ ପଦାଧିକାରୀମାନଙ୍କର ଏକ ବୈଠକରେ ସଂଶୋଧିତ ପ୍ରକଳ୍ପରେ ପୂର୍ବ ନିର୍ଦ୍ଧାରିତ ଅଭିକଳ୍ପିତ ବନ୍ୟାଜଳ ସେକେଣ୍ଡ୍ ପ୍ରତି ୩୬ ଲକ୍ଷ ଘନଫୁଟରୁ ୫୦ ଲକ୍ଷ ଘନଫୁଟକୁ (ସମ୍ଭାବ୍ୟ ବନ୍ୟାଜଳ) ବୃଦ୍ଧି ହେବ ବୋଲି ଆଲୋଚନା ହୋଇଥିଲା। ଯାହାଦ୍ୱାରା ଜଳସ୍ତର, ବୁଡ଼ି ଅଞ୍ଚଳ ଓ ପ୍ରକଳ୍ପର ରୂପରେଖ ନିଶ୍ଚିତ ଭାବରେ ପରିବର୍ତ୍ତନ ହେବ ବୋଲି ଆଲୋଚନା ହୋଇଥିଲା। ଓଡ଼ିଶା ସମେତ ସଂପୃକ୍ତ ରାଜ୍ୟର ସହମତି ଭିତ୍ତିରେ ପ୍ରକଳ୍ପର ରୂପରେଖ କେନ୍ଦ୍ରୀୟ ଜଳ ଆୟୋଗ ଅନୁଧ୍ୟାନ କରି ଚୂଡ଼ାନ୍ତ କରିବା ପରେ ଉଭୟ ରାଜ୍ୟର ମିଳିତ ଉଦ୍ୟମରେ ନଦୀଶଯ୍ୟାର ପରିମିତ (X-Section) ଓ ପଶ୍ଚାତ୍ ଜଳ ପ୍ରବାହ ଦ୍ୱାରା ବୁଡ଼ି ଅଞ୍ଚଳର ଆକଳନ ପାଇଁ ନିଷ୍ପତ୍ତି ହୋଇଥିଲା। ଉପରୋକ୍ତ ଆଲୋଚନା ନେଇ କୌଣସି ସମାଧାନ ନ ହେବାଯୋଗୁଁ ୬ ଦିନ ପରେ ଅକ୍ଟୋବର ୪ ତାରିଖରେ କେନ୍ଦ୍ର ସରକାର ମୁଖ୍ୟମନ୍ତ୍ରୀ ସ୍ତରରେ ବୈଠକ ଆହ୍ୱାନ କରିଥିଲେ। କୌଣସି ଯଥାର୍ଥତା ନ ଥିବାରୁ ରାଜ୍ୟ ସରକାର ଏହି ବୈଠକରେ ଯୋଗ ଦେଇ ନ ଥିଲେ ଏବଂ ଉକ୍ତ ପ୍ରସଙ୍ଗରେ ରାଜ୍ୟର ମାନ୍ୟବର ମୁଖ୍ୟମନ୍ତ୍ରୀ ମାନ୍ୟବର ପ୍ରଧାନମନ୍ତ୍ରୀଙ୍କୁ ୨୦୦୬ ଅକ୍ଟୋବର ୩ ତାରିଖରେ ପତ୍ର ଲେଖି ସମସ୍ତ ବିଷୟ ଅବଗତ କରାଇଥିଲେ; କିନ୍ତୁ କେନ୍ଦ୍ରୀୟ ଜଳ ଆୟୋଗ ଚୂଡ଼ାନ୍ତ ନିଷ୍ପତ୍ତି ନେବାରେ ଅହେତୁକ ବିଳମ୍ବ କରିବାକୁ ଲାଗିଲେ। ଫଳରେ ଏଥିପାଇଁ ଓଡ଼ିଶା ପକ୍ଷରୁ ଅଧିକରୁ ଅଧିକତର ସନ୍ଦେହ ଘନୀଭୂତ ହେବାକୁ ଲାଗିଲା।

ବାସ୍ତବରେ ବିବାଦ ତୁଟିଲା ନାହିଁ, ବରଂ ସମୟାନୁକ୍ରମେ ବୃଦ୍ଧି ପାଇବାରେ ଲାଗିଲା। ଏ ସଂପର୍କରେ ପୃଷ୍ଠଭୂମିର ଯଥାର୍ଥତାକୁ ଦୃଷ୍ଟିରେ ରଖି ଓଡ଼ିଶାର ବିରୋଧ ସଂକ୍ଷେପରେ ନିମ୍ନରେ ଅବତାରଣା କରାଯାଇଛି।

କେନ୍ଦ୍ରୀୟ ଜଳ ଆୟୋଗଙ୍କ ପ୍ରକଳ୍ପ ମଞ୍ଜୁରୀ ନ ପାଇ ଭାରତ ସରକାରଙ୍କ ଜଳ ଓ ପରିବେଶ ବିଭାଗ ଏହାକୁ ଆଶ୍ଚର୍ଯ୍ୟକନକ ଭାବେ ଅକ୍ଟୋବର ୨୫, ୨୦୦୫ରେ ମଞ୍ଜୁରୀ ଦେଇଥିଲେ। ତା'ଠାରୁ ଆହୁରି ପୂର୍ବରୁ ଅତି ତରବରିଆ ଭାବେ ଆନ୍ଧ୍ର ମୁଖ୍ୟମନ୍ତ୍ରୀ ମହୋଦୟ ନଭେମ୍ବର ୮, ୨୦୦୪ରେ ପ୍ରକଳ୍ପର ଭିତ୍ତିପ୍ରସ୍ତର ସ୍ଥାପନ କରିଥିଲେ ଏବଂ ୨୦୦୪-୦୫ ଆର୍ଥିକ ବର୍ଷରେ ୩୦୦ କୋଟି ଟଙ୍କା ରାଜ୍ୟ ବଜେଟ୍‌ରେ

ସଂଯୋଜିତ କରି ନିର୍ମାଣ କାର୍ଯ୍ୟ ତା. ୨୩.୦୩.୨୦୦୫ରୁ ଆରମ୍ଭ କରିଦେଲେ । ଏ ସଂପର୍କରେ ଓଡ଼ିଶାର ବିରୋଧକୁ ଆନ୍ଧ୍ର ସରକାର କର୍ଣ୍ଣପାତ କରି ନ ଥିଲେ ।

ତଥାକଥିତ ନଦୀ ତଟ ବନ୍ଧ, ସ୍ଲୁଇସ୍ ତଥା ଜଳ ନିଷ୍କାସନ ଏକ ଅସ୍ଥାୟୀ ଏବଂ ସଂପୂର୍ଣ୍ଣ ସୁରକ୍ଷାରହିତ ବ୍ୟବସ୍ଥା ବୋଲି ଏହାର ଯଥେଷ୍ଟ ତଥ୍ୟଭିତ୍ତିକ ଯୁକ୍ତି ଉଦାହରଣ ମାଧ୍ୟମରେ ଓଡ଼ିଶା ସରକାର ଉପସ୍ଥାପନ କରି ସ୍ପଷ୍ଟ ଭାବରେ ପ୍ରକାଶ କରିଥିଲେ ଯେ ଏଇ ନଦୀ ତଟ ବନ୍ଧ ଦ୍ୱାରା ଓଡ଼ିଶାର ଜଳମଗ୍ନତାକୁ ରୋକାଯାଇ ପାରିବ ନାହିଁ ; କିନ୍ତୁ ପରିତାପର ବିଷୟ ଯେ, କେନ୍ଦ୍ରୀୟ ଜଳ ଆୟୋଗ ଏହି ତଟ ବନ୍ଧ ଦ୍ୱାରା ଜଳମଗ୍ନତା ଏବଂ ବିସ୍ଥାପନ ସଂପୂର୍ଣ୍ଣ ଏଡ଼ାଇ ଦିଆଯାଇପାରିବ ବୋଲି ମତପ୍ରକାଶ କଲେ । ଏହି ଭ୍ରମାତ୍ମକ ଚିନ୍ତାଧାରା ଆଳରେ କେନ୍ଦ୍ରୀୟ ଆଦିବାସୀ ମନ୍ତ୍ରଣାଳୟ ବିସ୍ଥାପନ ଓ ପୁନର୍ବାସ କାର୍ଯ୍ୟ ସଂପାଦନା ଶୈଳୀକୁ ସ୍ୱୀକୃତି ପ୍ରଦାନ କଲେ । ଏଠାରେ ସ୍ମରଣ କରାଯାଇପାରେ ଯେ, ଠିକ୍ ଏହିପରି ଏକ ଚିନ୍ତାଧାରାରେ କୋଶି ବ୍ୟାରେଜ୍ ପ୍ରକଳ୍ପ ଏବଂ ତା'ର ତଟବନ୍ଧର ଦୁଃଖଦ କାହାଣୀ ସଂଯୋଜିତ ।

ପୋଲାଭରମ୍ ପ୍ରକଳ୍ପ ଯଦି ଏଭଳି ନିର୍ମାଣ କରାଯାଏ ଓ ତତ୍‌ଜନିତ ବନ୍ୟାଜଳ ପ୍ରବାହ ସେକେଣ୍ଡ ପ୍ରତି ୫୦ ଲକ୍ଷ ଘନ ଫୁଟ ବିଚାରକୁ ନିଆଯାଏ, ତେବେ ଓଡ଼ିଶାର ୪୦୦୦ ହେକ୍ଟରରୁ ଅଧିକ ଜମି ପଶ୍ଚାତ୍ ଜଳପ୍ରବାହ ପ୍ରତିକ୍ରିୟା ଦ୍ୱାରା ୨୦୮ ଫୁଟ ତଳକୁ ବୁଡ଼ିଯିବ । ଏହା ମଧ୍ୟ ମୁଖ୍ୟ ନଦୀବନ୍ଧ ପାଇଁ ବିପଦ ସୃଷ୍ଟି କରିବ ।

ସର୍ବୋପରି ୨୦୦୯ ଜାନୁୟାରୀ ୨୦ ତାରିଖରେ କେନ୍ଦ୍ରୀୟ ଜଳ ଆୟୋଗ ଦ୍ୱାରା ଅବୈଧାନିକ ଭାବେ ପ୍ରକଳ୍ପର ବୈଷୟିକ ଅନୁମୋଦନ ଏକ ଅହେତୁକ ଅନୁକମ୍ପାର ଜ୍ୱଳନ୍ତ ନିଦର୍ଶନ । ସେ ସମ୍ବନ୍ଧୀୟ ତଥ୍ୟ ନିମ୍ନରେ ପ୍ରକାଶ କରାଗଲା ।

ଓଡ଼ିଶା ଏକ ଭାଗିଦାରୀ ଅବବାହିକା ରାଜ୍ୟ ଏବଂ ପୋଲାଭରମ୍ ପ୍ରକଳ୍ପ ଗୋଦାବରୀ ଜଳ ବିବାଦ ଟ୍ରିବୁନାଲର ଏକ ଅଂଶବିଶେଷ ସତ୍ତ୍ୱେ ଓଡ଼ିଶା ସରକାରଙ୍କୁ ବୈଷୟିକ ଉପଦେଷ୍ଟା କମିଟି ବୈଠକକୁ ଆମନ୍ତ୍ରିତ କରାଯାଇନାହିଁ ।

ପରିବେଶ ମନ୍ତ୍ରଣାଳୟର ଅତିରିକ୍ତ ନିର୍ଦ୍ଦେଶକଙ୍କ ପତ୍ର ଅନୁସାରେ ଇନ୍ଦିରା ସାଗର (ପୋଲାଭରମ୍) ବହୁମୁଖୀ ପ୍ରକଳ୍ପକୁ ଆନ୍ଧ୍ରପ୍ରଦେଶ ଦ୍ୱାରା ପରିବେଶ ସମ୍ପର୍କିତ ରିପୋର୍ଟର ତଥ୍ୟାବଳୀକୁ ନଦୀ ଉପତ୍ୟକା ଓ ଜଳବିଦ୍ୟୁତ୍ ଯୋଜନା ପାଇଁ ଗଠିତ ପ୍ରବୀଣ ମାନନିରୂପଣ କମିଟି (EAC) ପରୀକ୍ଷା କରି ୨୦୦୫ ଅକ୍ଟୋବର ୨୫ ତାରିଖରେ ପରିବେଶ ମଞ୍ଜୁରୀ ଦେଇଥିଲେ; କିନ୍ତୁ ସେଥିରେ ନଦୀ ତଟବନ୍ଧ ନିର୍ମାଣ ସଂପର୍କିତ ତଥ୍ୟ ନ ଥିଲା କି ତାହା ବିଚାରକୁ ନିଆଯାଇ ନ ଥିଲା । ଏଣୁ ଓଡ଼ିଶା ଓ ଛତିଶଗଡ଼ର କୌଣସି ଅଞ୍ଚଳ ବୁଡ଼ି ନ ଯିବା ପାଇଁ ତଟ ବନ୍ଧର ଆବଶ୍ୟକତା ଦୃଷ୍ଟିରୁ ପରିବେଶ ମଞ୍ଜୁରୀର ସର୍ତ୍ତାବଳୀ (୬) ଅନୁସାରେ ପ୍ରକଳ୍ପର ପରିସର ପରିବର୍ତ୍ତନ ପାଇଁ ପୁନଶ୍ଚ ମଞ୍ଜୁରୀ ଆବଶ୍ୟକ । କେନ୍ଦ୍ରୀୟ ଜଳ ଆୟୋଗଙ୍କ

ବୈଷୟିକ ଉପଦେଷ୍ଟା କମିଟିରେ ପରିବେଶ ମନ୍ତ୍ରଣାଳୟ ପକ୍ଷରୁ ଏହି ପ୍ରଶ୍ନ ଉଠିଥିଲା । ସେହିପରି ଆଦିବାସୀ ମନ୍ତ୍ରଣାଳୟ ପକ୍ଷରୁ ନିର୍ଦ୍ଧାରିତ ଆଦିବାସୀ ପରିବାର ଓ ଜନସଂଖ୍ୟାର ପରିବର୍ତ୍ତନ ନ ଘଟି ବିସ୍ଥାପନ ଓ ପୁନଃର୍ବାସ ମଞ୍ଜୁରୀ ପାଇଁ ପ୍ରଶ୍ନ ଉଠିଥିଲା ; କିନ୍ତୁ ବୈଷୟିକ ଉପଦେଷ୍ଟା କମିଟିରେ ଆନ୍ଧ୍ର ପ୍ରତିନିଧିଙ୍କର ପ୍ରତିଶ୍ରୁତି ଥିଲା ଯେ ନଦୀତଟ ସୁରକ୍ଷା ବନ୍ଧ , ସ୍ଲୁଇସ୍ ଓ ଜଳନିଷ୍କାସନ ବ୍ୟବସ୍ଥା ଦ୍ୱାରା ଓଡ଼ିଶା ଓ ଛତିଶଗଡ଼ର କୌଣସି ଅଞ୍ଚଳ ଜଳମଗ୍ନ ହେବନାହିଁ ବା ତଜ୍ଜନିତ ବିସ୍ଥାପନ ହେବନାହିଁ , ନିର୍ଦ୍ଧାରିତ ଆଦିବାସୀ ପରିବାର ଓ ଜନସଂଖ୍ୟାର ପରିବର୍ତ୍ତନ ଘଟିବ ନାହିଁ , କେବଳ ଓଡ଼ିଶା ଓ ଛତିଶଗଡ଼ର ୩ ପ୍ରତିଶତ ଅଞ୍ଚଳ ଜଳମଗ୍ନ ହେବ ଏବଂ ପ୍ରକଳ୍ପର ପରିସର ଅପରିବର୍ତ୍ତିତ ରହିବ । ଏଇପରି ବିଭ୍ରାନ୍ତିମୂଳକ ପ୍ରତିଶ୍ରୁତିରେ କେନ୍ଦ୍ର ସରକାର ଭାସିଯାଇଛନ୍ତି ।

ଏତଦ୍‌ବ୍ୟତୀତ ସ୍ୱୟଂ ଜଳ ଆୟୋଗଙ୍କ ଦ୍ୱାରା ପ୍ରକାଶିତ ସମ୍ଭାବ୍ୟ ସର୍ବୋଚ୍ଚ ବୃଷ୍ଟିପାତ (PMP) ଆକଳନ ପଦ୍ଧତି ସମ୍ବଳିତ ମାନଚିତ୍ର ଓ ସାରଣୀକୁ ଉପେକ୍ଷା କରି କମ୍ ବୃଷ୍ଟିପାତ ଜନିତ ଝଡ଼ (Storm value) ଭିତ୍ତିରେ ସମୁଦାୟ ୨୦,୪୦୦ ବର୍ଗ କି.ମି. ଜଳ ଗ୍ରହଣ କ୍ଷେତ୍ରର ସମ୍ଭାବ୍ୟ ସର୍ବୋଚ୍ଚ ବନ୍ୟାଜଳ ପ୍ରବାହ ୫୦ ଲକ୍ଷ ଘନଫୁଟ ନିର୍ଦ୍ଧାରଣ କରାଯାଇଛି । ଏହି ପରିପ୍ରେକ୍ଷୀରେ ଓଡ଼ିଶାର ତଥ୍ୟଭିତ୍ତିକ ଆକଳନ ପଦ୍ଧତିର ସମୀକ୍ଷା କରାଯାଇନାହିଁ । ଜଳସେଚନ ଓ ବହୁମୁଖୀ ପ୍ରକଳ୍ପର ମାର୍ଗଦର୍ଶୀ (Guide line) ବିସ୍ତୃତ ପ୍ରକଳ୍ପ ରିପୋର୍ଟରେ ପୋଲାଭରମ୍ ପ୍ରକଳ୍ପର ସଠିକ୍ ରୂପରେଖ ଓ ଅଭିକଳ୍ପନା ଉଲ୍ଲିଖିତ ହୋଇନାହିଁ । ପୂର୍ବ ନିର୍ଦ୍ଧାରିତ ୩୬ ଲକ୍ଷ ଘନଫୁଟ ବନ୍ୟାଜଳ କ୍ଷମତାବିଶିଷ୍ଟ ଜଳ ନିର୍ଗମ ପଥର ଦୈର୍ଘ୍ୟ ଅପରିବର୍ତ୍ତିତ ରଖି ତାହାର ନିର୍ମାଣ କାର୍ଯ୍ୟ ତ୍ୱରାନ୍ୱିତ କରାଯାଇଛି । ପୁନଶ୍ଚ ତଥାକଥିତ ୫୦ ଲକ୍ଷ ଘନଫୁଟ ବନ୍ୟାଜଳ ନିୟନ୍ତ୍ରଣ ପାଇଁ ଜଳଭଣ୍ଡାରର ପରିବର୍ତ୍ତନ ଅନିବାର୍ଯ୍ୟ ଥିବା ସତ୍ତ୍ୱେ ତାହା ସ୍ୱିକୃତ ହୋଇନାହିଁ । ଏପରିକି ମାନ୍ୟବର ସର୍ବୋଚ୍ଚ ନ୍ୟାୟାଳୟରେ ସମସ୍ତ ମାମଲା ବିଚାରାଧୀନ ଥିଲା ବେଳେ ପ୍ରକଳ୍ପ ଅନୁମୋଦନର କୌଣସି ନିର୍ଦ୍ଦେଶନାମା ନ ଥାଇ କେନ୍ଦ୍ରୀୟ ଜଳ ଆୟୋଗଙ୍କ ଏତାଦୃଶ ତ୍ରୁଟିପୂର୍ଣ୍ଣ ପ୍ରକଳ୍ପ ଅନୁମୋଦନ ବାସ୍ତବରେ ନିନ୍ଦନୀୟ । ଉକ୍ତ ପ୍ରକଳ୍ପର ନିର୍ମାଣୋତ୍ତର ଲାଭ ଆନ୍ଧ୍ରକୁ ମିଳିପାରେ; କିନ୍ତୁ ଓଡ଼ିଶା ଓ ଛତିଶଗଡ଼ ରାଜ୍ୟବାସୀଙ୍କ ଦୁଃଖ ଦୁର୍ଦ୍ଦଶା ବୃଦ୍ଧିପାଇବ । ତଥାପି କ୍ରମାଗତ ଭାବେ ଆନ୍ଧ୍ର ସରକାର ଓ ଭାରତ ସରକାରଙ୍କ ଅବୈଧାନିକ କାର୍ଯ୍ୟଧାରାରେ ମର୍ମାହତ ହୋଇ ଓଡ଼ିଶାବାସୀଙ୍କ ସ୍ୱାର୍ଥ ସୁରକ୍ଷା ଦୃଷ୍ଟିରୁ ରାଜ୍ୟ ସରକାର ସମ୍ବିଧାନର ୧୩୧ ଧାରା ଅନୁଯାୟୀ ମାନ୍ୟବର ସର୍ବୋଚ୍ଚ ନ୍ୟାୟାଳୟରେ ସମୟାନୁକ୍ରମିକ ପିଟିସନ୍ ମାଧ୍ୟମରେ ପ୍ରାର୍ଥନା କରିଛନ୍ତି ଯେ, ପୋଲାଭରମ୍ (ଇନ୍ଦିରା ସାଗର) ପ୍ରକଳ୍ପର ପରିବେଶ ଅନୁମତି, ବିସ୍ଥାପନ ଓ ପୁନର୍ବାସ ଜନିତ ଅନୁମତି ତଥା ସର୍ବୋପରି ଜଳ ଆୟୋଗଙ୍କ ବୈଷୟିକ ଅନୁମୋଦନକୁ ରଦ୍ଦ କରାଯାଉ । ପ୍ରକଳ୍ପର ନିର୍ମାଣ କାର୍ଯ୍ୟକୁ ସ୍ଥାୟୀ ଭାବରେ ବନ୍ଦ ରଖି ଏହାର ଏକ ବିକଳ୍ପ ରୂପରେଖ ପ୍ରସ୍ତୁତ କରାଯାଉ, ଯାହାଦ୍ୱାରା ଓଡ଼ିଶାର କୌଣସି ଅଞ୍ଚଳ ଆଦୌ ଜଳମଗ୍ନ ହେବନାହିଁ ।

*ସର୍ବୋଚ୍ଚ ଯନ୍ତ୍ରୀ, ଜଳସମ୍ପଦ ବିଭାଗ, ଓଡ଼ିଶା*



# ଓଡ଼ିଆ ଜାତି ଓ ବୃହତ୍ ଝାଡ଼ଖଣ୍ଡ

ଡକ୍ଟର ଗୁରୁପ୍ରସାଦ ମହାନ୍ତି

*କେବଳ ଜଣେ ଦକ୍ଷ ପ୍ରଶାସକ ନୁହନ୍ତି, ଆମ ରାଜ୍ୟର ଜଣେ ଆଗ ଧାଡ଼ିର ସାହିତ୍ୟସାଧକ, ସମାଜସେବୀ, ଦରଦୀ ବ୍ୟକ୍ତି ଭାବେ ଡକ୍ଟର ଗୁରୁପ୍ରସାଦ ମହାନ୍ତି ବହୁ ବୁଦ୍ଧିଜୀବୀଙ୍କ ଶ୍ରଦ୍ଧା ଓ ସମ୍ମାନର ଅଧିକାରୀ । ମଧୁବାବୁଙ୍କ ମାନସସନ୍ତାନ ଉତ୍କଳ ସମ୍ମିଳନୀ କର୍ପୂର ଉଡ଼ିଯାଇ କନାଖଣ୍ଡକ ନିଜର ପରିଚିତି ରଖିଲା ଭଳି ଅତ୍ୟନ୍ତ ନିଷ୍କ୍ରିୟ ହୋଇ ଆସୁଥିବା ବେଳେ ବିଂଶ ଶତାବ୍ଦୀର ଶେଷ ଦଶକରେ ଯେଉଁ କତିପୟ ଦୃଢ଼ ସଂକଳ୍ପନିଷ୍ଠ ବ୍ୟକ୍ତିତ୍ୱ ନିଜର ସତ୍ୟନିଷ୍ଠ ଉଦ୍ୟମ ଦ୍ୱାରା ଏହାର ପ୍ରଭାବକୁ ସମଗ୍ର ଓଡ଼ିଶାରେ ବ୍ୟାପକ କରିପାରିଥିଲେ, ଡକ୍ଟର ମହାନ୍ତି ସେମାନଙ୍କ ମଧ୍ୟରେ ଅନ୍ୟତମ । ଆମ ଅନୁରୋଧରେ 'ମୋ ଓଡ଼ିଶା' ୨୦୦୯ ସଂକଳନରେ ପଢ଼ନ୍ତୁ ତାଙ୍କ ଲେଖନୀରୁ "ଓଡ଼ିଆ ଜାତି ଓ ବୃହତ୍ ଝାଡ଼ଖଣ୍ଡ"....*

ଶ୍ରୀଚୈତନ୍ୟ ଦେବଙ୍କର ପଟ୍ଟଶିଷ୍ୟ ରୂପ ଗୋସ୍ୱାମୀ ଓ ସନାତନ ଗୋସ୍ୱାମୀ ଯେତେବେଳେ ବୃନ୍ଦାବନରେ ରହି କୃଷ୍ଣଲୀଳାର ରହସ୍ୟଜଡ଼ିତ ସ୍ଥାନମାନଙ୍କୁ ଆବିଷ୍କାର କରି ସେସବୁର ମହାତ୍ମ୍ୟ ପ୍ରକାଶ ପାଇଁ ସାଧନାରତ ଥିଲେ, ସେତେବେଳେ ରୂପ ଗୋସ୍ୱାମୀଙ୍କ ଶିଷ୍ୟ ଶ୍ୟାମାନନ୍ଦ ପ୍ରଭୁ ଗୁରୁଦେବଙ୍କ ଆଦେଶରେ ଦେଶର ବିଭିନ୍ନ ଅଞ୍ଚଳରେ ବୈଷ୍ଣବ ଧର୍ମ ପ୍ରଚାର ଲାଗି ଚେଷ୍ଟିତ ଥିଲେ । ସେ କାଳର ଉତ୍କଳଖଣ୍ଡ ଥିଲା ତନ୍ତ୍ର ସାଧନାର ମୁଖ୍ୟ କେନ୍ଦ୍ର । ବିଭିନ୍ନ ସ୍ଥାନରେ ଶକ୍ତି ଆରାଧନା କରାଯାଇ ତନ୍ତ୍ର ସାଧନା ଲାଗି ପଶୁ,ପକ୍ଷୀ ଓ ମନୁଷ୍ୟ ବଳି ଦିଆଯିବାର ଅମାନୁଷିକ ବର୍ବରତା ଜାରି ରହିଥିଲା । ତେଣୁ ଶ୍ୟାମନନ୍ଦ ପ୍ରଭୁ ଉତ୍କଳଖଣ୍ଡରେ ବୈଷ୍ଣବଧର୍ମ ପ୍ରଚାର କରି ଜୀବହିଂସା ବଦଳରେ କୃଷ୍ଣ ପ୍ରେମର ପ୍ରସାର କରିବାକୁ ପ୍ରଥମେ ଆସି ଆଜିର ଝାଡ଼ଖଣ୍ଡ ରାଜ୍ୟ ଅନ୍ତର୍ଗତ ଘାଟଶିଳା ଅଞ୍ଚଳରେ ପହଞ୍ଚିଲେ। ସେ କାଳର ଉତ୍କଳଖଣ୍ଡ କହିଲେ ସିଂହଭୂମି, ମାନଭୂମି, ଅବିଭକ୍ତ ମେଦିନୀପୁର ଜିଲ୍ଲା, ମୟୂରଭଞ୍ଜ , ବାଲେଶ୍ୱର, କଟକ ଓ ପୁରୀ ଆଦି ଅଞ୍ଚଳକୁ ବୁଝାଉଥିଲା । ଘାଟଶିଳାଠାରେ ଅବସ୍ଥାନ କାଳରେ ସେ ନିଜ ହାତରେ ରୋଷେଇ କରି ପ୍ରଭୁଙ୍କୁ ନୈବେଦ୍ୟ ଦେବା ପାଇଁ ଜଣେ ଭକ୍ତଙ୍କ ଠାରୁ ଚାଉଳ ପରିବା ନେଇ ଅମଣିହା ପ୍ରସ୍ତୁତ କଲାବେଳେ ସେହି ଭକ୍ତଙ୍କ ପରିବାରରେ କେହି ଜଣେ ବ୍ୟକ୍ତି ସାଧୁଙ୍କର ସାଧନା ଶକ୍ତି ପରୀକ୍ଷା କରିବାକୁ ପରିବା ସହିତ କେତେଖଣ୍ଡ ବାଲିଗରଡ଼ା ମିଶାଇ ଦେଇଥିଲେ। ମାତ୍ର ଶ୍ରୀ ସନାତନ ଗୋସ୍ୱାମୀ ସେସବୁ ପରିବା ମାଟି ହାଣ୍ଡିରେ ସିଦ୍ଧ କରିବା ପରେ ଠାକୁରଙ୍କୁ ସମର୍ପଣ କରି ପ୍ରସାଦ ବିତରଣ କଲା ବେଳେ ଦେଖାଗଲା ଯେ ସେହି ବାଲିଗରଡ଼ା ମଧ୍ୟ ସିଝିଯାଇ ଭୋଜ୍ୟ ସାମଗ୍ରୀରେ ପରିଣତ ହୋଇଯାଇଛି । ତେଣୁ ଏହି ଶିଳା କେତେଖଣ୍ଡ ପ୍ରସାଦ ସହିତ ଘାଣ୍ଟି ହୋଇଯିବାରୁ ସେ ସ୍ଥାନର ନାମ 'ଘାଣ୍ଟଶିଳା' ରଖାଯାଇଥିଲା । ପରବର୍ତ୍ତୀକାଳରେ ଏହାକୁ 'ଘାଟଶିଳା' କୁହାଯାଉଛି ।

ସେ କାଳର ଉତ୍କଳଖଣ୍ଡ ଆଜି ଭାଗ ଭାଗ ହୋଇ ଝାଡ଼ଖଣ୍ଡ ଓ ପଶ୍ଚିମବଙ୍ଗ ସହିତ ମିଶି ରହିଛି । ମେଦିନୀପୁର, ମାନଭୂମି ବା ଧଳଭୂମି ଅଞ୍ଚଳର ଓଡ଼ିଆମାନେ ସମ୍ପୂର୍ଣ୍ଣଭାବେ ନିଜର ମାତୃଭାଷା ହରାଇ ବଙ୍ଗଳା ଭାଷାକୁ ଆଦରି ନେଇଛନ୍ତି । ଝାଡ଼ଖଣ୍ଡରେ ସହସ୍ରାଧିକ ଓଡ଼ିଆଗ୍ରାମ ରହିଥିବା ସ୍ଥଳେ ବିହାର ସରକାର ସେଠାରେ ହିନ୍ଦୀ ଭାଷାକୁ ବାଧ୍ୟତାମୂଳକ କରିଦେଇ ଓଡ଼ିଆ ଭାଷାର ମୂଳୋତ୍ପାଟନ ଲାଗି ସମସ୍ତ ବ୍ୟବସ୍ଥା କରିଥିଲେ । ତେବେ ଊନବିଂଶ ଶତାବ୍ଦୀରେ ମଧୁବାବୁଙ୍କ ପରି ଯୋଗଜନ୍ମା ସୁପୁରୁଷ ଏସବୁ ଅଞ୍ଚଳକୁ ମିଶାଇ ଓଡ଼ିଆମାନଙ୍କ ଲାଗି ଏକ ସ୍ୱତନ୍ତ୍ର ରାଜ୍ୟ ଦାବି କରିବା ଫଳରେ ବହୁ ବିରୋଧ ଓ ପ୍ରତିରୋଧ ସତ୍ତ୍ୱେ ୧୯୩୬ ମସିହା ଏପ୍ରିଲ୍ ପହିଲା ଦିନ ଆଜିର ଓଡ଼ିଶା ଗଠିତ ହେଲା ।

ଯେତେବେଳେ ସ୍ୱତନ୍ତ୍ର ଓଡ଼ିଆ ରାଜ୍ୟ ଲାଗି ଆନ୍ଦୋଳନ ଚାଲିଥିଲା, ସେତିକିବେଳେ ଛୋଟନାଗପୁର ଡିଭିଜନରେ ଥିବା ଖ୍ରୀଷ୍ଟିୟାନ୍ ମିଶନାରୀମାନେ ସେ ଅଞ୍ଚଳର ଆଦିବାସୀମାନଙ୍କ ପାଇଁ ଏକ ସ୍ୱତନ୍ତ୍ର ରାଜ୍ୟ ଗଠନ ଲାଗି ବହୁ ଆଦିବାସୀ ନେତାଙ୍କୁ ପ୍ରବର୍ତ୍ତାଉଥିଲେ । ଫଳରେ ଆଦିବାସୀମାନେ 'ଆବାବୋଡ଼ିଶମ୍' ବା ଆଦିବାସୀ ଦେଶ ଦାବି ଉଠାଇଲେ । ପ୍ରସ୍ତାବିତ ଓଡ଼ିଶାର ସୀମା ନିର୍ଦ୍ଧାରଣ ଲାଗି 'ଓଡୋନେଲ କମିଟି' ଯେତେବେଳେ ଜାମସେଦପୁର ଆସିଲେ ସେତେବେଳେ ସିଂହଭୂମର ଓଡ଼ିଆମାନେ ପ୍ରବଳ ଉତ୍ସାହ ଓ ଉଦ୍ଦୀପନା ମଧ୍ୟରେ ସାକ୍ଷ୍ୟ ଦେବା ପାଇଁ ପ୍ରସ୍ତୁତ ହେଲେ; ମାତ୍ର ବିହାରୀ ନେତୃବୃନ୍ଦ ଏହାର ବିରୋଧାଚରଣ କରିବାପାଇଁ ଆଦିବାସୀମାନଙ୍କୁ ପ୍ରବର୍ତ୍ତାଇଲେ । ଜାମସେଦପୁରବାସୀ ଓଡ଼ିଆମାନେ ବହୁସଂଖ୍ୟାରେ ଓଡୋନେଲ୍ କମିଟିକୁ ଭେଟି ଓଡ଼ିଆ ରାଜ୍ୟ ସୃଷ୍ଟି ସପକ୍ଷରେ ସାକ୍ଷ୍ୟପ୍ରମାଣ ଦେବା ପରେ ଚାଇଁବସାଠାରେ ପରବର୍ତ୍ତୀ ସାକ୍ଷ୍ୟ ଗ୍ରହଣର ବ୍ୟବସ୍ଥା ହେଲା । ଓଡୋନେଲ୍ କମିଟି ସେଠାରେ ପହଞ୍ଚିବା ମାତ୍ରେ ଆଦିବାସୀମାନେ ଓଡ଼ିଶା ଗଠନ ବିରୋଧରେ ବିକ୍ଷୋଭ କଲେ । ତେଣୁ ତତ୍କାଳୀନ ସିଂହଭୂମି କିଲ୍ଲା (ଆଜିର ପୂର୍ବ ସିଂହଭୂମ, ପଶ୍ଚିମ ସିଂହଭୂମ ଓ ଷଢ଼େଇକଳା-ଖରସୁଆଁ) ଓଡ଼ିଶା ସହିତ ମିଶିବା ସପକ୍ଷରେ କମିଶନ୍ କୌଣସି ନିଷ୍ପତ୍ତି ନେଇପାରିଲେ ନାହିଁ । ତଥାପି ୧୯୨୦ ମସିହାରେ ଚକ୍ରଧରପୁରଠାରେ ଉତ୍କଳ ସମ୍ମିଳନୀର ଷୋଡ଼ଶ ଅଧିବେଶନ ଅନୁଷ୍ଠିତ ହେବାପରେ ସିଂହଭୂମି କିଲ୍ଲା ଉତ୍କଳ କଂଗ୍ରେସ କମିଟି ସେ ଅଞ୍ଚଳର ସ୍ୱାଧୀନତା ସଂଗ୍ରାମ ଦାୟିତ୍ୱ ନେଇ କାର୍ଯ୍ୟ ଆରମ୍ଭ କଲେ । ସ୍ୱାଧୀନତା ହାସଲ ହେବା ପର୍ଯ୍ୟନ୍ତ ସିଂହଭୂମି, ମାନଭୂମି ଓ ଧଳଭୂମି ଅଞ୍ଚଳରେ ଆନ୍ଦୋଳନ ଦାୟିତ୍ୱରେ ଥିଲେ "ସିଂହଭୂମି କିଲ୍ଲା ଉତ୍କଳ କଂଗ୍ରେସ" ।

ସ୍ୱାଧୀନତା ପ୍ରାପ୍ତି ପରେ ଯେତେବେଳେ ଜୟପାଳ ସିଂ ଝାଡ଼ଖଣ୍ଡ ପ୍ରଦେଶ ଦାବି କଲେ, ସେଥିପ୍ରତି କେନ୍ଦ୍ର ସରକାର କୌଣସି ଗୁରୁତ୍ୱ ଦେଲେନାହିଁ । ସିଂହଭୂମିର ବହୁ ଆଦିବାସୀ ନେତା - ସିନ୍ଧୁ ହେମ୍ବ୍ରମ୍, ମୁକୁନ୍ଦରାମ ତନ୍ତୀ, ଅଙ୍କୁରା ହୋ ଓ ସାସିରାମ ହାଁସଦା ପ୍ରଭୃତି ଓଡ଼ିଶା ସହିତ ମିଶି ରହିବା ପାଇଁ ଯେତେବେଳେ ସ୍ୱର ଉତ୍ତୋଳନ କଲେ । ମାତ୍ର ବିହାରୀ ନେତାମାନଙ୍କ ପ୍ରୋତ୍ସାହନରେ ଜୟପାଳ ସିଂ ବିହାର ସହିତ ମିଶିବା ଲାଗି ଦାବି କଲେ । ସେତେବେଳେ ଦିଲ୍ଲୀ ଦରବାରରେ ବିହାରୀ ନେତା ବାବୁ ରାଜେନ୍ଦ୍ର ପ୍ରସାଦ ଦେଶର ପ୍ରଥମ ରାଷ୍ଟ୍ରପତି ଭାବେ ଅଖଣ୍ଡ କ୍ଷମତାଶାଳୀ ଥିଲେ । ପ୍ରଧାନମନ୍ତ୍ରୀ ଜବାହରଲାଲ୍ ନେହରୁ ମଧ୍ୟ ରାଜେନ୍ଦ୍ରବାବୁଙ୍କର କୌଣସି କଥାକୁ ତଳେ ପକାଇପାରୁ ନ ଥିଲେ । ବିହାର ମୁଖ୍ୟମନ୍ତ୍ରୀ ଶ୍ରୀକୃଷ୍ଣ ସିହ୍ନାଙ୍କ ତୁଳନାରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହରେକୃଷ୍ଣ ମହତାବଙ୍କର ଦିଲ୍ଲୀ ଦରବାରରେ ଓଜନଦାର

ପ୍ରତିପତ୍ତି ନ ଥିଲା । ବିହାରୀ ନେତାମାନଙ୍କ ପ୍ରରୋଚନାରେ ଜୟପାଳ ସିଂ ମୟୁରଭଞ୍ଜ ଆଦିବାସୀମାନଙ୍କୁ ଝାଡ଼ଖଣ୍ଡରେ ମିଶିବାଲାଗି ଉସୁକାଇଥିଲେ । ତାଙ୍କର ଘନିଷ୍ଠ ସହଯୋଗୀ ଥିଲେ ସୁନାରାମ୍ ସୋରେନ୍ । ସେ ମହାଶୟ ମୟୁରଭଞ୍ଜ ଜିଲାକୁ ଓଡ଼ିଶାଠାରୁ ଅଲଗା ରଖିବା ପାଇଁ ପ୍ରଜାମଣ୍ଡଳ ଗଠନ କଲେ । ଏହି ପ୍ରଜାମଣ୍ଡଳ ଜରିଆରେ ଦେଶୀୟ ରାଜ୍ୟ ମୟୁରଭଞ୍ଜକୁ ଓଡ଼ିଶାରେ ନ ମିଶାଇ ବିହାର ସହିତ ମିଶାଇବା ଲାଗି ଷଡ଼ଯନ୍ତ୍ର ଚାଲିଲା । ତେଣୁ ଗଡ଼ଜାତ ମିଶ୍ରଣ ସମୟରେ ପ୍ରଜାମଣ୍ଡଳଙ୍କ ବିନା ପରାମର୍ଶରେ ମୟୁରଭଞ୍ଜ ରାଜା ଓଡ଼ିଶା ସହିତ ମିଶିବାପାଇଁ ରାଜି ନ ହୋଇ ସମୟ ମାଗିଲେ । ଫଳରେ ଯାତାୟତ ସଂଯୋଗର ଅଭାବ ଦର୍ଶାଇ ଚତୁର ଶ୍ରୀକୃଷ୍ଣ ସିହ୍ନା ଷଢ଼େଇକଳା ଓ ଖରସୁଆଁ ରାଜ୍ୟଦୁଇଟିକୁ ବିହାର ରାଜ୍ୟର ଶାସନାଧୀନ କରି ରଖିବାରେ ସମର୍ଥ ହେଲେ ।

ଏହାର ଚାରି ଦଶନ୍ଧି ପରେ ଝାଡ଼ଖଣ୍ଡରେ ଶିବୁ ସୋରେନ୍‌ଙ୍କ ନେତୃତ୍ୱର ଆଭାସ ମିଳିଲା । ସେ ଝାଡ଼ଖଣ୍ଡ ଦଳକୁ "ଝାଡ଼ଖଣ୍ଡ ମୁକ୍ତି ମୋର୍ଚ୍ଚା" ନାମରେ ନାମିତ କରି ସକ୍ରିୟ କରାଇଲେ ଓ ତାଙ୍କର ଲକ୍ଷ୍ୟ ହେଲା, ଓଡ଼ିଶା ବଙ୍ଗ ଓ ବିହାର ରାଜ୍ୟରେ ଥିବା ସମସ୍ତ ଆଦିବାସୀ ଅଞ୍ଚଳକୁ ଏକତ୍ର କରି ବୃହତ୍ ଝାଡ଼ଖଣ୍ଡ ଗଠନ କରିବା । ତାଙ୍କର ଏହି କଳ୍ପିତ ମାନଚିତ୍ରରେ ପଶ୍ଚିମବଙ୍ଗର ପୁରୁଲିଆ, ବାଙ୍କୁଡ଼ା ଓ ଅବିଭକ୍ତ ମେଦିନୀପୁର ଜିଲ୍ଲା ସହିତ ଓଡ଼ିଶାର ମୟୁରଭଞ୍ଜ, ସୁନ୍ଦରଗଡ଼ ଓ କେନ୍ଦୁଝର ସ୍ଥାନ ପାଇଛି । ବିଗତ ୨୦ ବର୍ଷ ଭିତରେ ଏହି ତିନି ଜିଲ୍ଲାରେ ଝାଡ଼ଖଣ୍ଡ ମୁକ୍ତିମୋର୍ଚ୍ଚା ଦଳ ସକ୍ରିୟ ସକ୍ରିୟ ହୋଇପାରିଛି ।

୨୦୦୦ ମସିହାରେ ଝାଡ଼ଖଣ୍ଡ ରାଜ୍ୟ ସୃଷ୍ଟି ହେଲା; ମାତ୍ର ଶିବୁଙ୍କର କଳଙ୍କିତ ବ୍ୟକ୍ତିତ୍ୱ ଯୋଗୁଁ ସେ ଏହି ରାଜ୍ୟର ଅପ୍ରତିଦ୍ୱନ୍ଦ୍ୱୀ ନେତା ଭାବେ ସ୍ୱୀକୃତ ହୋଇପାରିଲେ ନାହିଁ । ଦୁଇ ଦୁଇଟା ନିର୍ବାଚନରେ ତାଙ୍କ ଦଳ ଝାଡ଼ଖଣ୍ଡ ବିଧାନସଭାରେ ସଂଖ୍ୟାଗରିଷ୍ଠତା ହାସଲ କରିପାରିଲାନାହିଁ । ହେଲେ ଓଡ଼ିଶାର ମୟୁରଭଞ୍ଜ, କେନ୍ଦୁଝର ଓ ସୁନ୍ଦରଗଡ଼ ଜିଲ୍ଲାରେ କେ. ଏମ୍.ଏମ୍. ଦଳ ବିଗତ କୋଡ଼ିଏ ବର୍ଷ ମଧ୍ୟରେ ଯଥେଷ୍ଟ ପ୍ରସାର ଲାଭ କରିଛି । ଫଳରେ ସେହି ଦଳର ପାଞ୍ଚସାତ ଜଣ ବିଧାୟକ ଓ ଜଣେ ସାଂସଦ ନିର୍ବାଚିତ ହୋଇ ଶିବୁ ସୋରେନ୍‌ଙ୍କ ହାତମୁଠାକୁ ଟାଣ କରିଛନ୍ତି ।

ଓଡ଼ିଶାର ଆଦିବାସୀମାନେ ଅତ୍ୟନ୍ତ ଶାନ୍ତ ଓ ନିରୀହ ସ୍ୱଭାବର ହୋଇଥିବାରୁ ସେମାନଙ୍କୁ ରାଜ୍ୟ ସରକାରଙ୍କ ବିରୋଧରେ ଉସ୍‌କେଇବା ପାଇଁ ଦୀର୍ଘ ତିନି ଦଶନ୍ଧି ଧରି ଚଳାଇଥିବା ଅଭିଯାନରେ ଶିବୁ ସୋରେନ୍‌ଙ୍କ ଦଳ ସକ୍ଷମ ହୋଇପାରିଛନ୍ତି । ସରକାର ବିରୋଧି ଆନ୍ଦୋଳନରେ ସ୍ଥାନୀୟ ଆଦିବାସୀମାନେ ଯୋଗ ନ ଦେଲେ ଶିବୁ ସୋରେନ୍ ଝାଡ଼ଖଣ୍ଡ ରାଜ୍ୟରୁ ଗୁଣ୍ଡାମାନଙ୍କୁ ପଠାଇ ତାଙ୍କର ଲକ୍ଷ୍ୟ ସାଧନ ଲାଗି ବ୍ୟବସ୍ଥା କରନ୍ତି । ଦୁଇବର୍ଷ ତଳେ ଯେଉଁ କଳିଙ୍ଗ ନଗର ହତ୍ୟାକାଣ୍ଡ ଘଟିଗଲା, ସେଥିରେ କେ.ଏମ୍.ଏମ୍. ଦଳର ପ୍ରଚ୍ଛନ୍ନ ହାତ ଥିଲା । ଟାଟା କମ୍ପାନୀ ପକ୍ଷରୁ ଓଡ଼ିଶାରେ ଏକ ଇସ୍ପାତ କାରଖାନା ସ୍ଥାପନ କାର୍ଯ୍ୟରେ ବ୍ୟାଘାତ ସୃଷ୍ଟି କରିବା ପାଇଁ ଶିବୁ ସୋରେନ୍ ଯେଉଁ ଚକ୍ରାନ୍ତ କରିଥିଲେ, ତାହା ଓଡ଼ିଶାର ଶିଳ୍ପାୟନ ପ୍ରକ୍ରିୟାରେ ବାଧା ସୃଷ୍ଟି କରିବା ସହିତ ଆଦିବାସୀମାନଙ୍କୁ ସରକାର ବିରୋଧି କରାଇବା ଲାଗି ଉଦ୍ଦିଷ୍ଟ ଥିଲା । ସେଥିଲାଗି ଶିବୁ ଜାମ୍‌ସେଦପୁରରୁ ଭଡ଼ାଟିଆ ଗୁଣ୍ଡାମାନଙ୍କୁ କଳିଙ୍ଗ ନଗରକୁ ପଠାଇଥିଲେ । ସେମାନଙ୍କ ମଧ୍ୟରୁ ଚାରିଜଣ ଲୋକ ପୋଲିସ୍ ଗୁଳିରେ ପ୍ରାଣ ହରାଇବା ଯୋଗୁଁ କେ.ଏମ୍.ଏମ୍. ଦଳ ଝାଡ଼ଖଣ୍ଡ ବନ୍ଦ ଡାକରା ଦେଇଥିଲା ।

ଯୋଗକୁ ସେଦିନ ଓଡ଼ିଶା ଗଣଶିକ୍ଷା ବିଭାଗର ଅତିରିକ୍ତ ସଚିବ ଓ ଓଡ଼ିଶା ଟେକ୍ସଟ୍‌ବୁକ୍ ପ୍ରେସ୍‌ର ନିର୍ଦ୍ଦେଶକଙ୍କ ସହିତ ମୁଁ (ଲେଖକ) ରାଞ୍ଚିରେ ଥିଲି । ଝାଡ଼ଖଣ୍ଡ ସଚିବାଳୟର କେତେକଣ କର୍ମଚାରୀଙ୍କୁ ଏହି ବନ୍ଦର କାରଣ ପଚାରିବାରେ ସେମାନେ କହିଲେ, 'ଝାଡ଼ଖଣ୍ଡର ଚାରିପାଞ୍ଚଜଣ ଆଦିବାସୀ କଳିଙ୍ଗନଗର ହତ୍ୟାକାଣ୍ଡରେ ସହିଦ ହୋଇଛନ୍ତି ।'

ଗତ ୨୦୦୫ ମସିହା ଅକ୍ଟୋବର ମାସରେ ରାଉରକେଲାଠାରେ ଆଦ୍ୟ ଓଡ଼ିଶା ଗଠନ ଶତବାର୍ଷିକୀ ପାଳନ ଅବସରରେ ସୁନ୍ଦରଗଡ଼ ଜିଲା ଆଦିବାସୀ ନେତା ଜର୍ଜ ତିର୍କୀ ଭାଷଣ ଛଳରେ କହିଲେ," ଓଡ଼ିଶାରେ ଜନ୍ମଲାଭ କରି ଏ ଯାବତ୍ ଆମେ ଓଡ଼ିଆ ହୋଇପାରିଲୁ ନାହିଁ । ଭଲଭାବେ ଓଡ଼ିଆ ପଢ଼ିପାରିବା କିମ୍ବା ଲେଖିପାରିବା ଆମ ପକ୍ଷରେ ସମ୍ଭବ ହେଲାନାହିଁ ।"

ଏପରିସ୍ଥଳେ ଝାଡ଼ଖଣ୍ଡ ରାଜ୍ୟର ଶିବୁ ସୋରେନ୍ ଓଡ଼ିଶାର ଆଦିବାସୀବହୁଳ ଜିଲାମାନଙ୍କରେ ପଶି ଆମର ଆଦିବାସୀ ଭାଇଭଉଣୀଙ୍କୁ ନିଜର କରିବାରେ ଲାଗିଛନ୍ତି । ହଜାର ହଜାର ବର୍ଷ ତଳେ ଶବରରାଜ ବିଶ୍ୱବସୁଙ୍କ ଇଷ୍ଟଦେବତା ନୀଳମାଧବଙ୍କୁ ଅପହରଣ କରି ଶଙ୍ଖ କ୍ଷେତ୍ରରେ ଶ୍ରୀଜଗନ୍ନାଥ ରୂପେ ପୂଜା କରିବାର ଯେଉଁ ବିଧିବ୍ୟବସ୍ଥା ହେଲା, ତହିଁରେ ଆଦିବାସୀ ସଂସ୍କୃତିକୁ ପ୍ରାଧାନ୍ୟ ଦିଆଯାଇଛି । ଶବର ବଂଶଜ ଦଇତାପତିମାନେ ଜଗନ୍ନାଥ ସଂସ୍କୃତିର ମୁଖ୍ୟ ଅଂଶୀଦାର ହୋଇଛନ୍ତି, ମାତ୍ର ଏ ରାଜ୍ୟର ଆଦିବାସୀମାନଙ୍କୁ ଓଡ଼ିଆ ଜାତିର ମୁଖ୍ୟ ସ୍ରୋତରୁ ଏ ପର୍ଯ୍ୟନ୍ତ ଦୂରେଇ ରଖାଯାଇଛି । ଓଡ଼ିଶାରେ ସରକାର ପରେ ସରକାର ଗଠିତ ହେଉଛି । ଆଦିବାସୀବହୁଳ ଅଞ୍ଚଳମାନଙ୍କରେ ରାସ୍ତାଘାଟ ବା କୃଷି ବିକାଶ ଦିଗରେ ଓଡ଼ିଶା ସରକାର ଉଚିତ୍ ଧ୍ୟାନ ଦେବା ସଙ୍ଗେ ସଙ୍ଗେ ଯଦି ଓଡ଼ିଶା ଓ ବିଚ୍ଛିନ୍ନାଞ୍ଚଳର ଶିକ୍ଷାଦିଗରେ ଅଧିକ ପ୍ରାଧାନ୍ୟ ଦିଅନ୍ତେ, ତେବେ ଛାତ୍ରଛାତ୍ରୀମାନେ ଓଡ଼ିଆ ଶିକ୍ଷାଲାଭ କରି ଏ ଜାତିର ମୁଖ୍ୟ ସ୍ରୋତରେ ସାମିଲ ହୋଇପାରନ୍ତେ । ଏବେ ଓଡ଼ିଶାର ଉପକୂଳବର୍ତ୍ତୀ ପିଲାମାନଙ୍କର ମଧ୍ୟ ଓଡ଼ିଆ ଶିକ୍ଷାପ୍ରତି ପ୍ରାଧାନ୍ୟ ଦିଆଯାଉନାହିଁ । ନିମ୍ନ ପ୍ରାଥମିକ ସ୍ତରରୁ ବର୍ଣ୍ଣବୋଧ ଉଠାଇ ଦେଇ ଆମର ତଥାକଥିତ ଶିକ୍ଷାବିତ୍‌ମାନେ ସର୍ବଶିକ୍ଷା ଅଭିଯାନ ଜରିଆରେ ଯେଉଳି ବିକୃତ ଓଡ଼ିଆ ପାଠ୍ୟପୁସ୍ତକ ଚଳାଇବାର ପ୍ରୟାସ କରିଛନ୍ତି, ତାହା ସମଗ୍ର ଓଡ଼ିଶାରୁ ଓଡ଼ିଆ ଭାଷାକୁ ନିର୍ମୂଳ କରିବା ଦିଗରେ ପଥ ପରିଷ୍କାର କରିଦେବ । ଏପରିସ୍ଥଳେ ଆଦିବାସୀବହୁଳ ଜିଲାମାନଙ୍କ ବିଷୟରେ ଚିନ୍ତା କଲେ କେବଳ ହତାଶ ହେବାକୁ ପଡ଼େ ।

ଏସବୁର ଫାଇଦା ଉଠାଇ ଶିବୁ ସୋରେନ୍‌ଙ୍କ ଝାଡ଼ଖଣ୍ଡ ମୁକ୍ତିମୋର୍ଚ୍ଚା ଓଡ଼ିଶାରେ ପ୍ରଭାବ ବିସ୍ତାର କରିବାକୁ ସଂଗ୍ରାମରତ ଅଛି । ମୟୂରଭଞ୍ଜ ଜିଲ୍ଲାରେ ସୁଦାମ ମାରାଣ୍ଡିଙ୍କ ପରି ଏବେ ସୁନ୍ଦରଗଡ଼ ଓ କେନ୍ଦୁଝର ଜିଲ୍ଲାରେ ମଧ୍ୟ କେ.ଏମ୍.ଏମ୍. ସାଂସଦ ସୃଷ୍ଟି କରିବାରେ ଏହି ଦଳ ପ୍ରୟାସ କରୁଛି । ସେସବୁ ଜିଲ୍ଲାରେ ଅଧିକରୁ ଅଧିକ ବିଧାନସଭା ଆସନ ଦଖଲ କରିବାରେ ସମର୍ଥ ହେବା ପରେ ଶିବୁ ସୋରେନ୍‌ଙ୍କ ବୃହତ୍ ଝାଡ଼ଖଣ୍ଡ ଗଠନ ସ୍ୱପ୍ନ ବାସ୍ତବରେ ପରିଣତ ହେବ । ନେଡ଼ିଗୁଡ଼ କହୁଣୀକୁ ବୋହିଯିବା ପୂର୍ବରୁ ରାଜ୍ୟ ସରକାରଙ୍କ ସମେତ ସମସ୍ତ ସ୍ୱାଭିମାନୀ ଓଡ଼ିଆ ଏ ଦିଗରେ ଚିନ୍ତା କରିବା ନିମନ୍ତେ ଜରୁରୀ ମନେହୁଏ ।

*କେନ୍ଦ୍ରୀୟ ଉପଦେଷ୍ଟା ତଥା କଟକ ଜିଲ୍ଲା ଉତ୍କଳ ସମ୍ମିଳନୀ ଶାଖା ସଭାପତ*



# ଚାଲ ନୂଆ ଯୁଗ ସହ ତାଳ ମିଳାଇ






# ନବରତ୍ନ

ଡି.ଏ.ପି. ଓ ଅନ୍ୟ କମ୍ପ୍ଲେକ୍ସ ସାର

With best compliments from PPL Paradeep Phosphates Limited

# ଓଡ଼ିଶାରେ କୃଷି ବିକାଶର ନୂତନ ସମ୍ଭାବନା

ଡ. ଅରବିନ୍ଦ କୁମାର ପାଢ଼ୀ

*ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ, ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟ ଓ ଦିଲ୍ଲୀସ୍ଥ ଭାରତୀୟ କୃଷି ଗବେଷଣା ଅନୁଷ୍ଠାନରୁ ଜଣେ କୃତୀ କୃଷି ବିଜ୍ଞାନୀ ଭାବେ ସର୍ବୋଚ୍ଚ ଉପାଧି ସହିତ ଡକ୍ଟରେଟ୍ (ପି.ଏଚ୍‌ଡି.) ଲାଭ କରିଥିବା ଭାରତୀୟ ପ୍ରଶାସନିକ ସେବା ଅଧିକାରୀ ଡକ୍ଟର ଅରବିନ୍ଦ କୁମାର ପାଢ଼ୀ ଜଣେ କର୍ତ୍ତବ୍ୟନିଷ୍ଠ ଯୁବ ପ୍ରଶାସକ ଭାବେ ଓଡ଼ିଶାର ପାଞ୍ଚଟି ଜିଲ୍ଲାର ଜିଲ୍ଲାପାଳ ଦାୟିତ୍ୱରେ ଥିଲା ବେଳେ ନିଜର ପ୍ରତ୍ୟୁତ୍ପନ୍ନମତିତା ଯୋଗୁଁ ଅନେକ ସମସ୍ୟାର ସଫଳ ସମାଧାନ କରି ସରକାର ଓ ଜନସାଧାରଣଙ୍କ ଦ୍ୱାରା ଉଚ୍ଚ ପ୍ରଶଂସିତ ହୋଇପାରିଛନ୍ତି। ବର୍ତ୍ତମାନ ସେ କୃଷି ବିଭାଗର ନିର୍ଦ୍ଦେଶକ ଅଛନ୍ତି। ଚାଳିଶ ବର୍ଷ ବୟସ୍କ ଏହି ଯୁବ ପ୍ରଶାସକଙ୍କ ଲେଖନୀରୁ କେତେକ ସମୟରେ ରାଜ୍ୟର ସମସ୍ୟା ଉପରେ ନାନା ମୂଲ୍ୟବାନ୍ ପ୍ରବନ୍ଧାବଳୀ ଦୈନିକ ସମ୍ବାଦପତ୍ର ଓ ପତ୍ରିକାଦିରେ ପ୍ରକାଶ ପାଇଥାଏ। ୨୦୦୯ 'ମୋ ଓଡ଼ିଶା' ସାରସ୍ୱତ ସଂକଳନରେ ପ୍ରଥମ କରି ଆମେ ଉପସ୍ଥାପନ କରୁଛୁ ତାଙ୍କର 'ଓଡ଼ିଶାରେ କୃଷି ବିକାଶର ନୂତନ ସମ୍ଭାବନା'....*

ଓଡ଼ିଶାର ପ୍ରାକୃତିକ ସମ୍ବଳର ସର୍ବାଧିକ ଅଂଶ ହେଉଛି ଜମି । ରାଜ୍ୟର ଅର୍ଦ୍ଧାଧିକ ଜନସଂଖ୍ୟା କୃଷି କାର୍ଯ୍ୟରେ ନିୟୋଜିତ ଥା'ନ୍ତି। ତେଣୁ ଅର୍ଥନୈତିକ ପ୍ରଗତି, ଜୀବିକାନିର୍ବାହ ପରିବେଶଗତ କାର୍ଯ୍ୟ ତଥା ଯେକୌଣସି ଯୋଜନାରେ କୃଷି ମୌଳିକ ଆଧାର ଭାବେ କାର୍ଯ୍ୟ କରିଥାଏ। ୨୦୦୪-୦୫ ବର୍ଷର ସ୍ଥିର ମୂଲ୍ୟ (୧୯୯୯-୨୦୦୦) ରେ ମୋଟ ରାଜ୍ୟ ଘରୋଇ ଉତ୍ପାଦ (ଜିଏସ୍‌ଡିପି)କୁ କୃଷି ଓ ପଶୁପାଳନର ଅବଦାନ ହେଉଛି ୨୨.୧୮ ପ୍ରତିଶତ। କୃଷି ରାଜ୍ୟରେ ଅର୍ଥନୈତିକ ଅଭିବୃଦ୍ଧି, ଘରୋଇ ପୁଞ୍ଜି ନିବେଶ ପାଇଁ ସୁଯୋଗ ସୃଷ୍ଟି କୃଷିଭିତ୍ତିକ ଶିଳ୍ପ ପାଇଁ ଏକ ମୁଖ୍ୟ ପରିଚାଳକ ଭାବେ କାର୍ଯ୍ୟ କରିଥାଏ। ଗ୍ରାମାଞ୍ଚଳରେ ବସବାସ କରୁଥିବା ଅଧିକାଂଶ ଲୋକଙ୍କର ଏହା ଆୟର ମୁଖ୍ୟ ଉତ୍ସ ହୋଇଥିବାରୁ ରାଜ୍ୟରେ କୃଷି ଉତ୍ପାଦନ, ଖାଦ୍ୟ ନିରାପତ୍ତା ସୃଷ୍ଟି କରିବାରେ ମୁଖ୍ୟ ଭୂମିକା ଗ୍ରହଣ କରିଥାଏ। ବୟନ ଶିଳ୍ପ, ପ୍ରକ୍ରିୟାକରଣ ଖାଦ୍ୟ ଭଳି କୃଷିଭିତ୍ତିକ ଶିଳ୍ପ ପାଇଁ କୃଷି ହେଉଛି କଞ୍ଚାମାଲର ଏକ ମୁଖ୍ୟ ଉତ୍ସ। ଅଧିକନ୍ତୁ କୃଷିକ୍ଷେତ୍ର ପୁଞ୍ଜି ସୃଷ୍ଟିକାରୀ ଯନ୍ତ୍ରପାତି (ଟ୍ରାକ୍ଟର, ପମ୍ପସେଟ୍ ଓ ଅନ୍ୟାନ୍ୟ କୃଷି ଉପକରଣ) କୃଷି ସାମଗ୍ରୀ (ରାସାୟନିକ ସାର, କୀଟନାଶକ ଓ ଖାଉଟି ଦ୍ରବ୍ୟ) ପାଇଁ ବଜାର ବ୍ୟବସ୍ଥା ସୃଷ୍ଟି କରିଥାଏ।

ବିଗତ ପାଞ୍ଚ ଦଶନ୍ଧି ମଧ୍ୟରେ ରାଜ୍ୟ କୃଷି ଅଭିବୃଦ୍ଧି ଓ ପ୍ରଗତି ବିଭିନ୍ନ ପର୍ଯ୍ୟାୟ ଦେଇ ଗତି କରିଛି। ପ୍ରଗତି ପଥରେ କେତେକ ଅସୁବିଧା ଯୋଗୁଁ କିଛି ସ୍ଥିତାବସ୍ଥା ସହିତ ଏହାର ଉଜ୍ଜ୍ୱଳ ଦିଗ ସମ୍ବନ୍ଧରେ

ଅନୁଭୂତି ଲାଭ କରାଯାଇଛି । ରାଜ୍ୟ କୃଷିରେ ଦେଖାଦେଇଥିବା ମୁଖ୍ୟ ପ୍ରତିବନ୍ଧକଗୁଡ଼ିକ ହେଲା— ଖାଦ୍ୟାଭାବ, ସମ୍ବଳ ଉପଲବ୍ଧତାରେ ଅସୁବିଧା, ସମ୍ବଳର ଅନୁପଯୁକ୍ତ ବଣ୍ଟନ, ପୁରାତନ ଚାଷ ପଦ୍ଧତି, କୃଷକଙ୍କ ଦୁର୍ବଳ ସାମାଜିକ-ଅର୍ଥନୈତିକ ଅବସ୍ଥା ଓ ପ୍ରାକୃତିକ ବିପର୍ଯ୍ୟୟ ଇତ୍ୟାଦି ।

ଆମ ରାଜ୍ୟର ମୋଟ ଭୌଗୋଳିକ କ୍ଷେତ୍ରଫଳ ହେଉଛି ୧୫୫.୭୧ ଲକ୍ଷ ହେକ୍ଟର । ନେଟ୍ ଚାଷ କରାଯାଉଥିବା ଜମି ୫୬.୨୪ ଲକ୍ଷ ହେକ୍ଟର ଓ ରାଜ୍ୟରେ ଫସଲର ସଘନତା ହେଉଛି ପ୍ରାୟ ୧୬୦ ପ୍ରତିଶତ ।

**ରାଜ୍ୟ ଫସଲର ପ୍ରକାର ଭେଦ:**

ସମଗ୍ର ରାଜ୍ୟରେ ୧୦ଟି ବିଭିନ୍ନ କୃଷି ଜଳବାୟୁ ମଣ୍ଡଳ ରହିଛି । ଆଞ୍ଚଳିକ ଭିତ୍ତିରେ କୃଷି ଜଳବାୟୁ ଅନୁଯାୟୀ ବିବିଧ ଫସଲ ଚାଷ କରଯାଇଥାଏ । ଧାନ, ଗହମ, ମକା, ବାଜରା, ଯଅ, ଡାଲିଜାତୀୟ ଫସଲ ମୁଖ୍ୟ ଖାଦ୍ୟଶସ୍ୟ ଭାବେ ଚାଷ କରାଯାଉଅଛି । ଏହି ଫସଲଗୁଡ଼ିକ ରାଜ୍ୟ ଖାଦ୍ୟ ଅର୍ଥନୀତିର ମେରୁଦଣ୍ଡ । ସେହିପରି ତୈଳବୀଜ ଫସଲ ଭାବେ ଚିନାବାଦାମ, ରାଶି, ଅଳସୀ, ସୋରିଷ, ସୂର୍ଯ୍ୟମୁଖୀ, କୁସୁମୀ, ଜଡ଼ା ଆଦି ଚାଷ କରାଯାଉଥିବା ବେଳେ କପା ଓ ଝୋଟ ମୁଖ୍ୟ ତନ୍ତୁ ଜାତୀୟ ଫସଲ । ଏତଦ୍‌ବ୍ୟତୀତ ଆଖୁ, କାଜୁ, ନଡ଼ିଆ ମଧ୍ୟ ସଫଳ ଭାବେ ଚାଷ କରାଯାଉଅଛି । ମୁଖ୍ୟ ଉଦ୍ୟାନ କୃଷି ଫସଲ ଭାବେ ଫଳ, ପନିପରିବା, ଆଳୁ, ବିଭିନ୍ନ ଆଳଙ୍କାରିକ ଫସଲ ଓ ଔଷଧୀୟ ବୃକ୍ଷ ଚାଷ କରାଯାଇଥାଏ ।

ଷଷ୍ଠ ଦଶକର ଶେଷାର୍ଦ୍ଧ ପର୍ଯ୍ୟନ୍ତ ରାଜ୍ୟ କୃଷି ମୁଖ୍ୟତଃ ପାରମ୍ପରିକ ଥିଲା । ଏହି ସମୟରେ ସବୁଜ ବିପ୍ଳବ ଆରମ୍ଭ ହେବା ସହିତ ବୈଜ୍ଞାନିକ କୃଷି ପଦ୍ଧତିର ଉନ୍ମେଷ ଘଟିଥିଲା । ଅଧିକ ଅମଳକ୍ଷମ ବିହନ, ରାସାୟନିକ ସାର, ଉନ୍ନତ କୃଷି ଯନ୍ତ୍ରପାତି ଓ ଜଳସେଚନ ବ୍ୟବସ୍ଥାର ବିନିଯୋଗ କରାଯାଇ ଓଡ଼ିଶା ସମେତ ସମଗ୍ର ଭାରତବର୍ଷରେ କୃଷି ଉତ୍ପାଦନରେ ନାଟକୀୟ ପରିବର୍ତ୍ତନ ସଂଘଟିତ ହୋଇଛି । ସବୁଜ ବିପ୍ଳବ (୧୯୬୫-୬୬) ଠାରୁ ୨୦ ବର୍ଷ (୧୯୮୫-୮୬) ମଧ୍ୟରେ ବାର୍ଷିକ ପାଞ୍ଚ ପ୍ରତିଶତ ଖାଦ୍ୟଶସ୍ୟ ଉତ୍ପାଦନ ବୃଦ୍ଧି ପାଇଛି । ଅଶୀ ଦଶକରୁ ବର୍ତ୍ତମାନ ସମୟ ପର୍ଯ୍ୟନ୍ତ ପ୍ରାୟ ୨୫ ବର୍ଷ ମଧ୍ୟରେ କୃଷି ପ୍ରଗତିର ବିଭିନ୍ନ ଉପାଦାନ ସମ୍ବନ୍ଧୀୟ ସୂଚନା ନିମ୍ନପ୍ରଦତ୍ତ ସାରଣୀରେ ପ୍ରଦାନ କରାଯାଇଛି ।

ରାଜ୍ୟରେ ସାମଗ୍ରିକ ବିକାଶ ପାଇଁ କୃଷି ମୁଖ୍ୟ ଆୟୁଧ ହୋଇଥିବାରୁ କୃଷିକୁ ଶିଳ୍ପର ମାନ୍ୟତା ଦେବା ଉଦ୍ଦେଶ୍ୟରେ ରାଜ୍ୟ ସରକାର ୧୯୯୬ ମସିହାରେ କୃଷି ନୀତି ଘୋଷଣା କରି ଏକ ବୈପ୍ଳବିକ ପଦକ୍ଷେପ ନେଇଥିଲେ ।

## ପଞ୍ଚବାର୍ଷିକ ଯୋଜନା ଅନୁଯାୟୀ ଲକ୍ଷ୍ୟ ହାସଲ

| ଯୋଜନା ସମୟ | ଖାଦ୍ୟଶସ୍ୟ ଉତ୍ପାଦନ (୦୦୦ ମେଟ୍ରିକ୍ ଟନ୍) | ସାର ବିନିଯୋଗ ହେକ୍ଟର ପ୍ରତି କି.ଗ୍ରା | ସମ୍ଭାବ୍ୟ ଜଳସେଚନ ବ୍ୟବସ୍ଥା (୦୦୦ ହେକ୍ଟର) ଖରିଫ୍ | ରବି |
|---|---|---|---|---|
| ୧୯୮୦-୮୧ରୁ ୧୯୮୪-୮୫ (ଷଷ୍ଠ ଯୋଜନା) | ୨୮୮୧୧.୪୬ | ୧୧ | ୧୩୬୬.୦୯ | ୫୪୬.୩୬ |
| ୧୯୮୫-୮୬ରୁ ୧୯୮୯-୯୦ (ସପ୍ତମ ଯୋଜନା) | ୩୩୩୬୯.୮୯ | ୧୯ | ୧୯୨୫.୨୧ | ୯୯୨.୬୬ |
| ୧୯୯୨-୯୩ରୁ ୧୯୯୬-୯୭ (ଅଷ୍ଟମ ଯୋଜନା) | ୩୬୩୬୯.୧୬ | ୨୫ | ୨୨୬୩.୩୧ | ୧୦୯୪.୫୬ |
| ୧୯୯୭-୯୮ରୁ ୨୦୦୧-୦୨ (ନବମ ଯୋଜନା) | ୩୩୭୨୨.୬୧ | ୪୦ | ୨୫୪୧.୨୬ | ୧୧୧୬.୬୩ |
| ୨୦୦୨-୦୩ରୁ ୨୦୦୬-୦୭ (ଦଶମ ଯୋଜନା) | ୩୫୮୮୮.୪୧ | ୪୩ | ୨୬୨୧.୫୦ | ୧୩୧୮.୫୨ |
| ୨୦୦୭-୦୮ରୁ ୨୦୧୧-୧୨ (ଏକାଦଶ ଯୋଜନା) | ୫୨୯୧୬.୦୦ (ଧାର୍ଯ୍ୟ ଲକ୍ଷ୍ୟ) | ୧୦୦ (ଧାର୍ଯ୍ୟ ଲକ୍ଷ୍ୟ) | | - |
| ୨୦୦୭-୦୮ ବର୍ଷ (ଲକ୍ଷ୍ୟ ହାସଲ) | ୯୨୫୪.୪୪ | ୫୩ | ୨୬୬୩.୨୩ | ୧୩୧୮.୫୨ |
| ୨୦୦୮-୦୯ବର୍ଷ (ପ୍ରୋଭିଜନାଲ୍) | ୯୩୬୩.୫୮ | ୬୨ | ୨୮୧୦.୬୩ | ୧୩୪୨.୦୨ |

୧୯୯୬ ମସିହାର କୃଷିନୀତିର କାର୍ଯ୍ୟକାରିତା ପାଇଁ କୃଷି ପ୍ରୋତ୍ସାହନ ଓ ପୁଞ୍ଜି ଲଗାଣ ନିଗମ (ଆପିକଲ) ଗଠନ କରାଯାଇ କୃଷିରେ ଉଦ୍ୟୋଗୀକରଣକୁ ପ୍ରୋତ୍ସାହିତ କରାଯାଇଛି । ବ୍ୟାବସାୟିକ ଓ

ରପ୍ତାନୀଭିତ୍ତିକ କୃଷି ସମ୍ବନ୍ଧୀୟ ସୂଚନା ପ୍ରଦାନ କରିବା ସହିତ ବ୍ୟାଙ୍କ ଯୋଗ୍ୟ ପ୍ରକଳ୍ପ ପ୍ରସ୍ତୁତି, ଉଦ୍ୟୋଗ ଚିହ୍ନଟ କରି ସେମାନଙ୍କୁ ମାର୍ଗଦର୍ଶନ ଓ ତାଲିମ ପ୍ରଦାନ କରାଯାଉଛି । କୃଷି ଶିଳ୍ପ ଓ ଖାଦ୍ୟ ପ୍ରକ୍ରିୟାକରଣ ଶିଳ୍ପ ପାଇଁ ଏହା ମଧ୍ୟ ପ୍ରୋତ୍ସାହନ ପ୍ରଦାନ କରିବାରେ ଏକ ପ୍ରମୁଖ ସଂସ୍ଥା ଭାବେ କାର୍ଯ୍ୟ କରୁଛି । ପ୍ରତ୍ୟେକ ଜିଲ୍ଲା କୃଷି କାର୍ଯ୍ୟାଳୟରେ କୃଷି ସହାୟକ କେନ୍ଦ୍ର କାର୍ଯ୍ୟ କରୁଅଛି ।

**ଖାଦ୍ୟ ନିରାପତ୍ତା:**

ସରକାର ସଂକଳ୍ପବଦ୍ଧ ରହିଛନ୍ତି ଯେ, ରାଜ୍ୟରେ କେହି ଅନାହାର, ପୁଷ୍ଟିସାର ଅଭାବ ତଥା ଦାରିଦ୍ର୍ୟର କଷାଘାତରେ ମୃତ୍ୟୁ ବରଣ କରିବେ ନାହିଁ; ବରଂ ସମସ୍ତଙ୍କ ପାଇଁ ଖାଦ୍ୟସାର ସମ୍ବଳିତ ଏକ ସୁଷମ ଆହାର ଉପଲବ୍ଧ ହେବା ଆବଶ୍ୟକ । ଏ ଉଦ୍ଦେଶ୍ୟରେ ୧୯୯୬ ମସିହାରେ ରୋମ୍ ଠାରେ ଆୟୋଜିତ ବିଶ୍ୱ ଖାଦ୍ୟ ଶିଖର ସମ୍ମିଳନୀର କାର୍ଯ୍ୟ ଯୋଜନାରେ ଖାଦ୍ୟ ନିରାପତ୍ତାର ସଂଜ୍ଞା ନିରୂପଣ କରି କୁହାଯାଇଛି — "ଯେତେବେଳେ ସମସ୍ତ ଜନସାଧାରଣ ସବୁ ସମୟରେ ସୁସ୍ଥସବଳ ଜୀବନଯାପନ ପାଇଁ ଆବଶ୍ୟକ ପୁଷ୍ଟିକର ଖାଦ୍ୟ ସହଜ ଓ ସୁଲଭ ମୂଲ୍ୟରେ ହାତପାଆନ୍ତାରେ ପାଇପାରିବେ, ସେତେବେଳେ ଆମେ ଜାଣିବା ଯେ, ଖାଦ୍ୟ ନିରାପତ୍ତା ରହିଛି ।" ଏହା ବିଶ୍ୱ, ଦେଶ ଓ ସର୍ବୋପରି ଆମ ରାଜ୍ୟ ପାଇଁ ମଧ୍ୟ ପ୍ରଯୁଜ୍ୟ ଅଟେ । ଆମ ରାଜ୍ୟ ପରିପ୍ରେକ୍ଷୀରେ ଖାଦ୍ୟ ନିରାପତ୍ତା କେବଳ ପର୍ଯ୍ୟାପ୍ତ ଖାଦ୍ୟଶସ୍ୟ ଉତ୍ପାଦନ ଉପରେ ନିର୍ଭର କରି ନ ଥାଏ ବରଂ ଜନସାଧାରଣଙ୍କ ପାଇଁ ଆବଶ୍ୟକ ଖାଦ୍ୟ ଚାହିଦା ଉପରେ ନିର୍ଭର କରେ । ପ୍ରତ୍ୟେକ ବ୍ୟକ୍ତିର ଖାଦ୍ୟ କ୍ରୟ ଶକ୍ତି ରହିବା ଏକାନ୍ତ ଆବଶ୍ୟକ । ଏପରି ଦେଖାଯାଏ ଯେ, ସ୍ୱଳ୍ପ ଆୟକାରୀ ବ୍ୟକ୍ତି ଖାଦ୍ୟଶସ୍ୟ ଯୋଗାଣର ଅଭାବ ସମୟରେ ଅସୁବିଧାରେ ପଡ଼ିଥା'ନ୍ତି । ଏ କ୍ଷେତ୍ରରେ ଏଭଳି ବ୍ୟକ୍ତିମାନଙ୍କ ପାଇଁ ରିହାତି ମୂଲ୍ୟରେ ଖାଦ୍ୟଶସ୍ୟ ଯୋଗାଣ ଓ କର୍ମନିଯୁକ୍ତିର ସୁଯୋଗ ସୃଷ୍ଟି ପାଇଁ ସରକାରୀ ହସ୍ତକ୍ଷେପ ଏକାନ୍ତ ଆବଶ୍ୟକ । ଉଦ୍ଦିଷ୍ଟ ଗୋଷ୍ଠୀମାନଙ୍କ ପ୍ରତି ସ୍ୱତନ୍ତ୍ର ଦୃଷ୍ଟି ଦେବାରେ କୌଣସି ତ୍ରୁଟି ରହିବା ଅନୁଚିତ ।

ରାଜ୍ୟରେ ଖାଦ୍ୟାଭାବ ଦୂର କରିବାରେ କୃଷିର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ସେଥିପାଇଁ ଦରିଦ୍ର ଲୋକମାନଙ୍କର ଜୀବିକା ନିର୍ବାହକୁ ସୁହାଇଲା ଭଳି କୃଷିନୀତି ନିର୍ଦ୍ଧାରିତ କରାଯାଇଛି । କୃଷିକୌଶଳ ଏଭଳି ହେବା ଆବଶ୍ୟକ, ଯଦ୍ୱାରା ସ୍ୱଳ୍ପ ଆୟକାରୀ ଗରିବ ଚାଷୀ ଏହାକୁ ଗ୍ରହଣ କରି ନିଜ କାର୍ଯ୍ୟକ୍ଷେତ୍ରରେ ଲଗାଇ ପାରିବେ । ଏଥିସହିତ କୃଷି ଉତ୍ପାଦକତା ବୃଦ୍ଧିର ହାର ଜନସଂଖ୍ୟା ବୃଦ୍ଧି ହାର ସହିତ ତାଳ ଦେଇ ବଢ଼ିବା ଆବଶ୍ୟକ । ଆଗାମୀ ଦିନରେ ଏକ ଦୀର୍ଘମିଆଦି ଖାଦ୍ୟ ନିରାପତ୍ତା ହାସଲ କରିବା ପାଇଁ ବିଭିନ୍ନ ରଣନୀତି ଗ୍ରହଣ କରାଯାଇଛି ।

**ରାଜ୍ୟ କୃଷିନୀତି ୨୦୦୮**

ପାରମ୍ପରିକ କୃଷି ପଦ୍ଧତି, ସ୍ୱଳ୍ପ ପୁଞ୍ଜି ନିବେଶ, ସୀମିତ ଜଳସେଚନ ବ୍ୟବସ୍ଥା, ଜଳ ବ୍ୟବହାର ଦକ୍ଷତା, ଜମିର କ୍ଷୁଦ୍ର ଆକାର ଯୋଗୁଁ ରାଜ୍ୟ କୃଷିରେ ସ୍ୱଳ୍ପ ଉତ୍ପାଦକତା ପରିଲକ୍ଷିତ ହେଉଛି । ସାମ୍ପ୍ରତିକ

ପରିସ୍ଥିତିରେ କୃଷି ଉନ୍ନୟନ ଯୋଜନା, ସ୍ୱୟଂ ସଂପୂର୍ଣ୍ଣ ଏବଂ ଉତ୍ତମ ସଂସ୍ଥାଯୁକ୍ତ ଓ କୃଷକ ସମାଜର ସାମଗ୍ରିକ ହିତ ପାଇଁ କାର୍ଯ୍ୟ କରିବା ଆବଶ୍ୟକ। ଏଣୁ ଏହି ପରିପ୍ରେକ୍ଷୀରେ ସରକାର ଏକ ଦୂରଦୃଷ୍ଟିସମ୍ପନ୍ନ, ନୂତନ କୃଷିନୀତି ପ୍ରଣୟନ କରିଛନ୍ତି। ଏହା ବିଭିନ୍ନ ପରିସ୍ଥିତିରେ ମୁକାବିଲା କରିବା ସହ ଉନ୍ନୟନର ସମ୍ଭାବ୍ୟ କ୍ଷେତ୍ର ଚିହ୍ନଟ କରି ଅନ୍ତତଃପକ୍ଷେ ଆଗାମୀ ଦଶବର୍ଷ ପାଇଁ କୃଷି ଉନ୍ନୟନର ଏକ ସ୍ପଷ୍ଟ କାର୍ଯ୍ୟସୂଚୀ ନିର୍ଦ୍ଧାରଣ କରିବ। ବର୍ତ୍ତମାନର ଜୀବନଧାରଣ କୃଷିକୁ ଲାଭଜନକ ବ୍ୟାବସାୟିକ କୃଷିରେ ରୂପାନ୍ତରିତ କରାଗଲେ ଲୋକେ ଏହାକୁ ଏକ ବୃତ୍ତି ଭାବେ ଗ୍ରହଣ କରିପାରିବେ। ଏହାଦ୍ୱାରା ନିରନ୍ତର କୃଷି ଉନ୍ନୟନକୁ ପ୍ରୋତ୍ସାହିତ କରାଯାଇପାରିବ। ଶୁଷ୍କାଞ୍ଚଳ କୃଷି ସମେତ ଉଦ୍ୟାନ ଫସଲ ଚାଷ, ଆଧୁନିକ ସମନ୍ୱିତ କୃଷି ପ୍ରଣାଳୀ ଓ ଲୋକମାନଙ୍କ ଭାଗିଦାରୀରେ ଜଳ ବ୍ୟବହାରର ଦକ୍ଷତା ବୃଦ୍ଧି ପାଇଁ ଗୁରୁତ୍ୱ ଦିଆଯିବା ସଙ୍ଗେ ସଙ୍ଗେ ଏଥିପାଇଁ କୃଷକମାନଙ୍କୁ ପ୍ରୋତ୍ସାହିତ କରାଯିବ। ଅମଳ ପରବର୍ତ୍ତୀ ପରିଚାଳନା, କୃଷିଜାତ ସାମଗ୍ରୀର ବିପଣନ, ପ୍ରକ୍ରିୟାକରଣ ଓ ମୂଲ୍ୟଯୁକ୍ତ ଦ୍ରବ୍ୟ ପ୍ରସ୍ତୁତି ପାଇଁ ଉଭୟ ଘରୋଇ, ସରକାରୀ ଓ ଘରୋଇ-ସରକାରୀ ଭାଗିଦାରୀ (ପି.ପି.ପି) ଦ୍ୱାରା କୃଷି କ୍ଷେତ୍ରରେ ଦୀର୍ଘମିଆଦି ପୁଞ୍ଜିନିବେଶ ବୃଦ୍ଧିର ସୁବିଧା କରାଯିବ। ଚୁକ୍ତିଭିତ୍ତିକ କୃଷି ଓ ଚକଡ଼ା କୃଷିକୁ ଉତ୍ସାହିତ କରିବା, କ୍ଷୁଦ୍ର ଓ ନାମମାତ୍ର ଚାଷୀଙ୍କ ପାଇଁ ଋଣ ବ୍ୟବସ୍ଥା ଓ ରାଜ୍ୟରେ ପ୍ରତିଯୋଗିତା ସୁଯୋଗ ଥିବା କୃଷି ଉତ୍ପାଦିତ ଦ୍ରବ୍ୟଗୁଡ଼ିକର ଉପଯୁକ୍ତ ବିପଣନ ସଂଯୋଗର ସୁବିଧା କରାଯିବ। କ୍ଷେତ୍ର ସଂପ୍ରସାରଣ ବ୍ୟବସ୍ଥାର ପୁନର୍ଗଠନ କରି କୃଷି ସଂପ୍ରସାରଣ କଳର ଭୂମିକା ଓ ଦାୟିତ୍ୱର ପୁନଃ ସଂଜ୍ଞା ନିରୂପଣ କରିବା ଏହି କୃଷିନୀତିର ମୁଖ୍ୟ ଦିଗ ହେବ।

**କୃଷି ପ୍ରକ୍ରିୟାକରଣ:**

ବିଶେଷତଃ ଉଦ୍ୟାନ କୃଷିଜାତ ଦ୍ରବ୍ୟ ଉତ୍ପାଦନ କରାଯାଉଥିବା ଅଞ୍ଚଳରେ ଏହାର କ୍ଷତିକୁ ହ୍ରାସ କରିବା, ମୂଲ୍ୟଯୁକ୍ତ ଦ୍ରବ୍ୟର ଦରବୃଦ୍ଧି, ଚାଷ କ୍ଷେତ ବାହାରେ ଗ୍ରାମାଞ୍ଚଳରେ ନିଯୁକ୍ତି ସୃଷ୍ଟି ପାଇଁ ପ୍ରକ୍ରିୟାକରଣ କେନ୍ଦ୍ର ସ୍ଥାପନକୁ ଉତ୍ସାହିତ କରାଯିବ। କୃଷି ପ୍ରକ୍ରିୟାକରଣ ଶିଳ୍ପ ସ୍ଥାପନକୁ ଉତ୍ସାହିତ କରିବା ପାଇଁ ଉତ୍ପାଦନକାରୀ ସମବାୟ ଓ ନିଗମ କ୍ଷେତ୍ର ମଧ୍ୟରେ ସହଯୋଗ ରକ୍ଷା କରାଯିବ। ଖାଦ୍ୟ ଓ ପ୍ରକ୍ରିୟାକରଣ ଶିଳ୍ପର ଦ୍ରୁତ ଉନ୍ନୟନ ପାଇଁ ବୈଷୟିକ ଜ୍ଞାନ, ଅର୍ଥନୀତି, ପରିବେଶ ଓ ସମାଜ ମଧ୍ୟରେ ଏକ ଆପୋଷ ସଂଯୋଗକୁ ପ୍ରୋତ୍ସାହିତ କରାଯିବ। ଖାଦ୍ୟ ନିରାପତ୍ତା ଓ ଗୁଣାତ୍ମକ ମାନ ଉପରେ ଗୁରୁତ୍ୱ ଦେଇ ଘରୋଇ ଓ ରପ୍ତାନୀ ବଜାର ପାଇଁ ମୂଲ୍ୟଯୁକ୍ତ କୃଷିଜାତ ଦ୍ରବ୍ୟ ଉତ୍ପାଦନ ନିମନ୍ତେ ଏକ ଦୃଢ଼ ଭିତ୍ତିଭୂମି ପ୍ରସ୍ତୁତ କରାଯିବ।

**ଜୈବିକ କୃଷି**

ବିଗତ ଶତାବ୍ଦୀର ଷଷ୍ଠ ଦଶକ ମଧ୍ୟଭାଗରେ ଉତ୍ପାଦନ ବୃଦ୍ଧିର ରାସାୟନିକ ଦିଗ ଉପରେ ଗୁରୁତ୍ୱ ଦିଆଯାଇଥିବାରୁ ଏହା ଧାରାବାହିକ କୃଷି ଅଭିବୃଦ୍ଧି ନିମନ୍ତେ ଆବଶ୍ୟକ ପ୍ରାକୃତିକ ସମ୍ବଳକୁ ହ୍ରାସ କରିଛି। ପୂର୍ବାନୁମୋଦିତ ଜ୍ଞାନକୌଶଳ ଜୈବ ଗଠନକୁ ବିଶୃଙ୍ଖଳିତ କରି ପରିବେଶର ସନ୍ତୁଳନ ଉପରେ କୁପ୍ରଭାବ ପକାଇଛି। ଏହି ବିଶୃଙ୍ଖଳିତ ପ୍ରାକୃତିକ ସମ୍ବଳ ଭିତ୍ତି ସନ୍ତୁଳନର ପୁନରୁଦ୍ଧାର ନ ହେବା ପର୍ଯ୍ୟନ୍ତ ବର୍ତ୍ତମାନ

ପ୍ରତିଯୋଗିତାରେ ଧାରାବାହିକ କୃଷି ଅଭିବୃଦ୍ଧି ସମ୍ଭବ ହୋଇପାରିବ ନାହିଁ । ଜୈବିକ ପଦ୍ଧତି ଅବଲମ୍ବନରେ ମାଟିର ସ୍ୱାସ୍ଥ୍ୟ ଓ ଉର୍ବରତା ରକ୍ଷା କରିବା ଏକାନ୍ତ ଜରୁରୀ । ଏଥିପାଇଁ ବିଶେଷଭାବେ କେତେକ ନୀତିଗତ ପଦକ୍ଷେପ ଗ୍ରହଣ କରାଯିବ ।

- ଜୈବିକ ଉପାୟରେ ଅମଳ କରାଯାଇଥିବା ଓ ଏଥିପାଇଁ ପ୍ରମାଣପତ୍ର ପାଇଥିବା ଚାଷୀମାନଙ୍କୁ ଜୈବିକ କୃଷି ପାଇଁ ଉପଯୁକ୍ତ ପ୍ରୋତ୍ସାହନ ଦିଆଯିବ ।

- ଉତ୍ପାଦକତା ବୃଦ୍ଧି ଓ ବିଭିନ୍ନ କୃଷି ପରିସ୍ଥିତିରେ ଉପଯୁକ୍ତ ଅଣରାସାୟନିକ ସାର ବ୍ୟବହାର ପାଇଁ ପଦକ୍ଷେପ ନିଆଯିବ । ଏଥିପାଇଁ ଗବେଷଣା ଓ ସଂପ୍ରସାରଣ କାର୍ଯ୍ୟକ୍ରମ ଉପରେ ଗୁରୁତ୍ୱ ଦିଆଯିବ ।

- ବିଦ୍ୟାଳୟ ପାଠ୍ୟକ୍ରମରେ ଜୈବିକ କୃଷିକୁ ଏକ ବିଷୟ ଭାବେ ଅନ୍ତର୍ଭୁକ୍ତ କରାଯିବ । ରାଜ୍ୟ କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟର ସ୍ନାତକ ଓ ସ୍ନାତକୋତ୍ତର ଶିକ୍ଷାରେ ଏହାକୁ ଏକ ବାଧ୍ୟତାମୂଳକ ବିଷୟ ଭାବେ ସ୍ଥାନିତ କରାଯିବ । ପ୍ରତ୍ୟେକ କୃଷି ଜଳବାୟୁ ମଣ୍ଡଳ ପାଇଁ ଜୈବିକ କୃଷିପଦ୍ଧତି ଚିହ୍ନଟ କରାଯିବ ।

- ଜୈବିକ ବିହନ ବ୍ୟାଙ୍କ ଖୋଲାଯିବ ।

- ଉତ୍ପାଦିତ ଦ୍ରବ୍ୟର ପ୍ରମାଣିକରଣ ସୁବିଧା ପାଇଁ ଜୈବିକ କୃଷକ ସଂଘକୁ ପ୍ରୋତ୍ସାହିତ କରାଯିବା ସଙ୍ଗେ ସଙ୍ଗେ ଜୈବିକ ଦ୍ରବ୍ୟର ପ୍ରମାଣିକରଣ ପାଇଁ ଏକ ସ୍ୱତନ୍ତ୍ର ସଂସ୍ଥା ପ୍ରତିଷ୍ଠା କରାଯିବ ।

**ଚିରପୋଷ୍ୟମାନ କୃଷି:**

ଚିରପୋଷ୍ୟମାନ ବା ପ୍ରତିପାଳନ କୃଷି (ଧାରଣକ୍ଷମ କୃଷି) ର ଅର୍ଥ ହେଉଛି ବ୍ୟାପକ । ଏପରି କୃଷି ନିଶ୍ଚିତ ଭାବେ ସମ୍ବଳ ସଂରକ୍ଷକ, ସମାଜ ସମର୍ଥକ, ବ୍ୟାବସାୟିକ ଦୃଷ୍ଟିକୋଣରୁ ପ୍ରତିଦ୍ୱନ୍ଦ୍ୱିତାମୂଳକ ଓ ପରିବେଶୀୟ ଦୃଷ୍ଟିକୋଣରୁ ସୁଦୃଢ଼ । ଏହି ପଦ୍ଧତି ଅନୁସରଣ ବେଳେ ଅମଳ ହାର, ଲାଭ, ମୃତ୍ତିକାର ସ୍ୱାସ୍ଥ୍ୟ ଓ କୃଷି ପରିସଂସ୍ଥାର ସ୍ଥିରତାକୁ ବିଚାର କରାଯାଏ । ଅଧିକ ଅମଳ ଓ  ଅଧିକ ଲାଭ ଥାଇ ମଧ୍ୟ କୃଷି ପରିସଂସ୍ଥା ସୁରକ୍ଷିତ ହୋଇ ନ ରହିଲେ, କୃଷି ପ୍ରତିପାଳକ ହୋଇ ନ ଥାଏ । ପ୍ରତିପାଳନ କୃଷିର ତିନୋଟି ମୁଖ୍ୟ ଲକ୍ଷ୍ୟ ହେଲା - ପରିବେଶର ସ୍ୱାସ୍ଥ୍ୟରକ୍ଷା, ଅର୍ଥନୈତିକ ଲାଭ ଓ ସାମାଜିକ-ଅର୍ଥନୈତିକ ସାମ୍ୟ । ଏହାର ମୌଳିକ ନୀତି ହେଲା — ଆମେ ସାମ୍ପ୍ରତିକ ଆବଶ୍ୟକତା ପୂରଣ କରିବା ସହିତ ପରିବେଶ ଓ କୃଷି ପଦ୍ଧତିକୁ ଏପରି ପରିଚାଳନା କରିବା, ଯଦ୍ୱାରା ଏହା ଆଗାମୀ ପିଢ଼ିଙ୍କର ଆବଶ୍ୟକତା ମଧ୍ୟ ପୂରଣ କରିପାରିବ ।

**ପ୍ରତିପାଳନ କୃଷି ପଦ୍ଧତି**

ପ୍ରତିପାଳନ କୃଷିର ଗୁରୁତ୍ୱ ଉଭୟ ମାନବସମ୍ବଳ ଓ ପ୍ରାକୃତିକ ସମ୍ବଳ ଉପରେ ରହିବା ଆବଶ୍ୟକ । ଏହି କୃଷିକୌଶଳ ସର୍ବଦା ସ୍ଥଳାକୃତି, ମୃତ୍ତିକାର ଧର୍ମ, ଜଳବାୟୁ, ଫସଲର ରୋଗ, ପୋକ, ସ୍ଥାନୀୟ

ଅଞ୍ଚଳରେ ମିଳୁଥିବା କୃଷି ସାମଗ୍ରୀ ଏବଂ ଚାଷୀର ଲକ୍ଷ୍ୟ ଉପରେ ନିର୍ଭର କରେ। ଏହା ସତ୍ତ୍ୱେ କେତେକ ସାଧାରଣ ନୀତି ଓ ପଦ୍ଧତି ଗ୍ରହଣ କରିବାକୁ ପଡ଼ିବ।

**(କ) ଉପଯୁକ୍ତ ଫସଲ ଓ କିସମ ନିର୍ବାଚନ**

ଫସଲ ପାଇଁ ସ୍ଥାନ ନିରୂପଣ କଲାବେଳେ ମାଟିର କିସମ, ଗଭୀରତା, ପୂର୍ବ ଫସଲର ଇତିହାସ, ଜଳବାୟୁ, ସ୍ଥଳାକୃତି ଇତ୍ୟାଦି ବିଚାରକୁ ନିଆଯିବା ଆବଶ୍ୟକ।

**(ଖ) କୃଷି ବିବିଧିକରଣ**

ଏକକାଳୀନ ବହୁ କିସମର ଫସଲ ଚାଷ କଲା ବେଳେ ଚାଷୀର କ୍ଷତିଭୟ ସଙ୍କୁଚିତ ହୁଏ ଏବଂ ବଜାର ଦରରେ ହ୍ରାସ-ବୃଦ୍ଧି ଘଟିଲେ ମଧ୍ୟ ଚାଷୀକୁ ବିଶେଷ କ୍ଷତି ସହିବାକୁ ପଡ଼େନାହିଁ। ଫସଲ ପର୍ଯ୍ୟାୟ ଅନୁସରଣ ଓ ଆବରଣୀ ଫସଲ ଚାଷ ଦ୍ୱାରା ମୃତ୍ତିକାର ସ୍ୱାସ୍ଥ୍ୟରକ୍ଷା ହେବା ସହିତ ଫସଲର ରୋଗପୋକ ଆକ୍ରମଣ କମିଯାଏ। ମିଶ୍ରିତ କୃଷି ପଦ୍ଧତିରେ କ୍ଷେତ୍ର ଫସଲ, ଉଦ୍ୟାନ ଫସଲ ଓ ପଶୁପକ୍ଷୀ ପାଳନ ଗୁରୁତ୍ୱପୂର୍ଣ୍ଣ ଉପାଦାନ। ଏଥିପାଇଁ କେତେକ ଦିଗ ପ୍ରତି ଦୃଷ୍ଟି ଦେବାକୁ ପଡ଼ିବ। ସେଗୁଡ଼ିକ ହେଲା—

- ପ୍ରାକୃତିକ ଜୈବିକ ଚକ୍ର ଓ ନିୟନ୍ତ୍ରଣର ସମନ୍ୱୟ
- ପ୍ରାକୃତିକ ସମ୍ବଳ ଓ ମୃତ୍ତିକାର ଉର୍ବରତା ସଂରକ୍ଷଣ ଓ ପୁନଃ ବ୍ୟବହାର।
- କୃଷି କ୍ଷେତ୍ରରୁ ମିଳୁଥିବା ସମ୍ବଳର ସୁପରିଚାଳନା
- ନବୀକରଣ ଅଯୋଗ୍ୟ ସମ୍ବଳଗୁଡ଼ିକର ସୀମିତ ବ୍ୟବହାର।
- କୃଷି ଆୟ ବୃଦ୍ଧି ପାଇଁ ପଦକ୍ଷେପ।
- ଚାଷର କୁପ୍ରଭାବ, ସ୍ୱାସ୍ଥ୍ୟ, ନିରାପତ୍ତା, ଫସଲ, ପ୍ରାଣୀ, ଜଳ ଓ ପରିବେଶ ଉପରେ ନ ପଡ଼ିବା ପାଇଁ ଉପଯୁକ୍ତ ବ୍ୟବସ୍ଥା ଗ୍ରହଣ କରିବାକୁ ହେବ।

**ଜଳ ପରିଚାଳନା:**

ବର୍ଷାଜଳ ଓ ସେଚ ଜଳ ମିଳୁଥିବା ପରିମାଣକୁ ବିଚାର କରି ଫସଲ ଚାଷ କରାଯିବା ଆବଶ୍ୟକ। ପ୍ରତ୍ୟେକ ବିନ୍ଦୁ ଜଳକୁ ବିନିଯୋଗ କରିବାକୁ ହେଲେ ଜଳ ସଞ୍ଚୟ, ଉତ୍ତମ ଚାଷକୌଶଳ ଏବଂ ଫସଲ ବିବିଧକରଣ ଉପରେ ଗୁରୁତ୍ୱ ଦିଆଯିବା ଆବଶ୍ୟକ। ଭାସ୍ପୋତ୍ସର୍ଜନ ପ୍ରକ୍ରିୟାରେ ଯେଉଁ ବାୟୋମାସ୍ ଉତ୍ପାଦନ କରାଯାଏ, ତାହା ପରବର୍ତ୍ତୀ ସମୟରେ ଦାନାରେ ରୂପାନ୍ତରିତ କରାଯାଏ। ଏହି ପ୍ରକ୍ରିୟାରେ ଜଳ ବିନିଯୋଗ ଦକ୍ଷତା ହାସଲ କରାଯାଇପାରିଲେ କମ୍ ଜଳରୁ ଅଧିକ ଅମଳ ମିଳିପାରିବ।

ଜଳବାୟୁକୁ ଦୃଷ୍ଟିରେ ରଖି ଫସଲବୁଣା ବା ରୁଆ କରିବା ସହିତ ଘାସ, ଖାଦ୍ୟସାର ଏବଂ ପୋକ ରୋଗ ପରିଚାଳନା କରିପାରିଲେ ଜଳ ବିନିଯୋଗ ଦକ୍ଷତା ବୃଦ୍ଧି ପାଇବ। ମୃତ୍ତିକା-ଜଳ-ଫସଲ ମଧ୍ୟରେ ଥିବା ନିବିଡ଼ ସମ୍ପର୍କକୁ ଅନୁଧ୍ୟାନ କରି ଜଳ ପରିଚାଳନା ହେବା ଆବଶ୍ୟକ। ସେହିପରି ବର୍ଷା ଜଳ

ପରିଚାଳନା ପାଇଁ ଉପଯୁକ୍ତ ଚାଷକୌଶଳ, ସ୍ୱସ୍ଥାନ ଜଳ ସଂରକ୍ଷଣ, ବର୍ଷାଜଳ ଅମଳ, ଜୀବନ ରକ୍ଷାକାରୀ ଜଳସେଚନ ଇତ୍ୟାଦି ଅବଲମ୍ବନ କରାଯାଇପାରିବ । ଆମକୁ ସର୍ବଦା ମନେ ରଖିବାକୁ ହେବ, 'ଜଳ ବିହୁନେ ସୃଷ୍ଟି ନାଶ, ଜଳ ବହୁଳେ ସୃଷ୍ଟି ନାଶ ।'

**ବିଶ୍ୱ ବାଣିଜ୍ୟ ସଂଗଠନ**

ବଜାର ଚାହିଦା ପୂରଣ ପାଇଁ ସାମ୍ପ୍ରତିକ ପରିସ୍ଥିତିରେ ଉତ୍ପାଦନ ପରିମାଣ ଅପେକ୍ଷା ଉତ୍ପାଦିତ ଦ୍ରବ୍ୟର ଗୁଣମାନ ଅଧିକ ଗୁରୁତ୍ୱପୂର୍ଣ୍ଣ । ସ୍ଥାନୀୟ ବଜାର ସହିତ ଜାତୀୟ ବଜାରଗୁଡ଼ିକ ସଂଯୁକ୍ତ ହେବାର ଆବଶ୍ୟକତା ରହିଛି । ବିଶ୍ୱ ବାଣିଜ୍ୟ ସଂଗଠନ ଏହି ପ୍ରକ୍ରିୟାକୁ ତ୍ୱରାନ୍ୱିତ କରି ବିଶ୍ୱ ବଜାର ସହିତ ସଂଯୋଗ କରି ଦେଶ, ତଥା ରାଜ୍ୟ ତଥା କୃଷକମାନଙ୍କ ମଙ୍ଗଳ ପାଇଁ ପ୍ରୟାସ କରୁଛି । ୧୯୯୫ ଜାନୁଆରୀଠାରୁ ବିଶ୍ୱ ବାଣିଜ୍ୟ ସଂଗଠନ କାର୍ଯ୍ୟାରମ୍ଭ କରିଛି । ଏହାର ମୁଖ୍ୟ ଉଦ୍ଦେଶ୍ୟ ହେଉଛି, ଆନ୍ତର୍ଜାତିକ ବାଣିଜ୍ୟ କ୍ଷେତ୍ରରେ ଜଗତୀକରଣ ଓ ଉଦାରୀକରଣ ସହିତ ଆଗୁଆ ସୂଚନା ପ୍ରଦାନ କରିବା । କୃଷି ବୁଝାମଣାର ପ୍ରଭାବ ଉଭୟ ଦେଶ ଓ ରାଜ୍ୟ ଉପରେ ପଡୁଅଛି । ସେଗୁଡ଼ିକ ହେଲା—

**(କ) ଖାଦ୍ୟ ନିରାପତ୍ତା**

ମୁକ୍ତ ବିଶ୍ୱ ବାଣିଜ୍ୟରୁ ଲାଭବାନ ହେବା ପାଇଁ ବହୁ ଚାଷୀ ଅର୍ଥକାରୀ ଫସଲ ଚାଷ କରିବା ପାଇଁ ମନ ବଳେଇଲେଣି । କେତେକ ରାଜ୍ୟ ଠିକା ଚାଷ ପାଇଁ ଆଇନ ପ୍ରଣୟନ କଲେଣି । ଏହାଦ୍ୱାରା ଚାଷୀର ବ୍ୟକ୍ତିଗତ ସ୍ତରରେ ଆର୍ଥିକ କ୍ଷମତା ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ କ୍ରୟ ଶକ୍ତି ମଧ୍ୟ ବୃଦ୍ଧି ପାଇବ, ଯାହାକି ଖାଦ୍ୟ ନିରାପତ୍ତାକୁ ସୁନିଶ୍ଚିତ କରାଇବ ।

**(ଖ) ରପ୍ତାନି ସୁଯୋଗ**

ସାମୁଦ୍ରିକ ଦ୍ରବ୍ୟ, କାଜୁ, ବାସୁମତୀ ଚାଉଳ, ଫୁଲ, ମସଲା, ଡାଲି, ଦୁଗ୍ଧ, ଅଣ୍ଡା ଓ ପ୍ରକ୍ରିୟାକୃତ ଫଳଜାତ ଦ୍ରବ୍ୟର ରପ୍ତାନି ବୃଦ୍ଧି ପାଉଛି । ଏଣୁ ବିଶ୍ୱ ବଜାରର ଚାହିଦାକୁ ଦୃଷ୍ଟିରେ ରଖି ଆମକୁ ରପ୍ତାନୀଯୋଗ୍ୟ କୃଷି ପାଇଁ ଧ୍ୟାନ ଦେବାକୁ ପଡ଼ିବ । ତେବେ ଏହାଦ୍ୱାରା ରାଜ୍ୟରେ ଖାଦ୍ୟ ନିରାପତ୍ତା ଯେପରି ନଷ୍ଟ ନ ହୁଏ, ସେଥିପାଇଁ ସତର୍କତା ଅବଲମ୍ବନ କରିବାକୁ ପଡ଼ିବ ।

**(ଗ) ବଜାର ପ୍ରବେଶ**

କୃଷି କ୍ଷେତ୍ରରେ ଅଧିକ ପୁଞ୍ଜିନିବେଶ ପାଇଁ ରିହାତି ଯଥେଷ୍ଟ ବୃଦ୍ଧି କରିବା ଆବଶ୍ୟକ । ବଜାର ପ୍ରବେଶ ସୁଯୋଗ ୩ ରୁ ୫ ପ୍ରତିଶତ ଥିବାରୁ ଆମର କୃଷିଦ୍ରବ୍ୟ ପ୍ରତିଦ୍ୱନ୍ଦ୍ୱିତାମୂଳକ ଓ ଉଚ୍ଚଗୁଣମାନର ହେବା ଜରୁରୀ ।

**(ଘ) କୃଷି ଅଭିବୃଦ୍ଧି**

ଆମ ରାଜ୍ୟରେ କୃଷି ଶ୍ରମିକ ଶସ୍ତାରେ ମିଳୁଥିଲେ ମଧ୍ୟ ସେମାନଙ୍କ ଦକ୍ଷତା ବୃଦ୍ଧି ଅଭାବରୁ ଚାଷ ଖର୍ଚ୍ଚ ବଢ଼ିଯାଉଛି । ଅଧିକ ଉତ୍ପାଦନ ଓ ଗୁଣାତ୍ମକ ମାନ ବୃଦ୍ଧି ସହିତ ଚାଷ ଖର୍ଚ୍ଚକୁ ହ୍ରାସ କରିପାରିଲେ, ଆମ ଚାଷୀମାନେ ବିଶ୍ୱ ବଜାରରେ ଅଧିକ ସଫଳ ପ୍ରତିଦ୍ୱନ୍ଦ୍ୱୀ ହୋଇପାରିବେ । ଠିକା ଚାଷର ବହୁ ସୁଯୋଗ

ରହିଛି । ଆମର ଚାଷୀମାନେ ଏସବୁ ଶିକ୍ଷାଲାଭ କରିପାରିଲେ କୃଷି ଉତ୍ପାଦନ ଓ କର୍ମନିଯୁକ୍ତି ବୃଦ୍ଧି ପାଇବ ।

### (ଙ) ମୂଲ୍ୟ ସଂଯୋଗ ଓ ପ୍ରକ୍ରିୟାକରଣ

କୃଷିଜାତ ଦ୍ରବ୍ୟର ମୂଲ୍ୟ ସଂଯୋଗ ଓ ପ୍ରକ୍ରିୟାକରଣ ଦ୍ୱାରା ଅଧିକ ରପ୍ତାନି ସୁଯୋଗ ସୃଷ୍ଟି ହେବ । ଏଥିପାଇଁ ସରକାରୀ ସ୍ତରରେ ଅଧିକ ପ୍ରୋତ୍ସାହନ ଓ ପୁଞ୍ଜିନିବେଶ କରାଗଲେ ଆମ ରାଜ୍ୟର ଶିକ୍ଷିତ ବେକାର ଯୁବକଯୁବତୀ କୃଷିଉଦ୍ୟୋଗ ମାଧ୍ୟମରେ କର୍ମନିଯୁକ୍ତି ପାଇବା ସହ ଚାଷୀମାନେ ଅଧିକ ଲାଭବାନ ହୋଇପାରିବେ ।

### (ଚ) ଜୈବିକ କୃଷି

ରାଜ୍ୟରେ ବିଭିନ୍ନ ଅଞ୍ଚଳର ଗରିବ ଚାଷୀ ବିନା ସାର ଓ କୀଟନାଶକ ପ୍ରୟୋଗରେ ଫସଲ ଉତ୍ପାଦନ କରୁଛନ୍ତି । ଏଣୁ ଜୈବିକ ଚାଷକୁ ଉତ୍ସାହିତ କରିବା ସହିତ ନିର୍ଦ୍ଧାରିତ ସଂସ୍ଥା ଦ୍ୱାରା ଜୈବିକ ପ୍ରମାଣୀକରଣ କରିପାରିଲେ ଏହି ଦ୍ରବ୍ୟଗୁଡ଼ିକ ଅଧିକ ମୂଲ୍ୟରେ ବିଦେଶକୁ ରପ୍ତାନି କରାଯାଇପାରିବ ।

### ଜୈବ ପ୍ରଯୁକ୍ତି ବିଦ୍ୟାର ଉପଯୋଗ

ଜୈବ ପ୍ରଯୁକ୍ତି ଭଳି ନୂତନ କୃଷି ପଦ୍ଧତିର ପ୍ରୟୋଗ ଦ୍ୱାରା ଭବିଷ୍ୟତର ଖାଦ୍ୟ ଓ ପୁଷ୍ଟିହୀନ ସମସ୍ୟାର ସମାଧାନ କରାଯାଇପାରିବ । ମୁଖ୍ୟ ଫସଲର ମୁଖ୍ୟ ରୋଗପୋକ ପ୍ରତିରୋଧୀ ଓ ସହଣୀ ବିହନ କିସମ ମାଧ୍ୟମରେ ଉଦ୍ଭିଦ ସୁରକ୍ଷା ବ୍ୟବସ୍ଥା ଗ୍ରହଣ କରାଯିବା ଦ୍ୱାରା ପରିବେଶ ସୁରକ୍ଷିତ ରହିବା ସହିତ ଉତ୍ପାଦନ ବୃଦ୍ଧି କରାଯାଇପାରିବ । ଏହି ଉଦ୍ଦେଶ୍ୟରେ ଅବଶ୍ୟ ବିଶ୍ୱସ୍ତରୀୟ କୃଷି ଗବେଷଣା ଆରମ୍ଭ କରାଯାଇଛି । ଆନୁବଂଶୀୟ ବିପ୍ଳବ (Gene Revolution) ମାଧ୍ୟମରେ ଚିର ସବୁଜ ବିପ୍ଳବ (Ever-Green Revolution)ର ସଫଳତା ହାସଲ କରିବା ପାଇଁ ବୈଜ୍ଞାନିକମାନେ ଚିନ୍ତା କରୁଛନ୍ତି ।

### କୃଷିର ସୂଚନା ପ୍ରଯୁକ୍ତି ବିଦ୍ୟା

ସଂପ୍ରତି କୃଷକମାନଙ୍କର ସମସ୍ୟା ସମାଧାନ ପାଇଁ କିଷାନ କଲ୍ ସେଣ୍ଟର (କେ.ସି.ସି.) ର ସୁବିଧା ଉପଯୋଗ ହେଉଛି । ଆଗାମୀ ଦିନରେ ଏହାକୁ ସୁସଂଗଠିତ କରାଗଲେ କୃଷକମାନେ ଏଥିରେ ବିଶେଷ ଭାବେ ଉପକୃତ ହୋଇପାରିବେ । କୃଷି ଓ ଆନୁଷଙ୍ଗିକ କାର୍ଯ୍ୟର ଉନ୍ନୟନ ପାଇଁ ବୈଷୟିକ ଜ୍ଞାନ ଓ ବ୍ୟାବସାୟିକ ସୂଚନା, ଇଣ୍ଟରନେଟ୍ ଓ ଅନ୍ୟ ଇଲେକ୍ଟ୍ରୋନିକ୍ ମାଧ୍ୟମରେ କମ୍ ଖର୍ଚ୍ଚରେ ଫଳପ୍ରଦ ଭାବେ ପ୍ରସାର କରାଯାଇପାରିବ । ଇଣ୍ଟରନେଟ୍ ପୋର୍ଟାଲ ମାଧ୍ୟମରେ କୃଷକ ଓ ସମ୍ପୃକ୍ତ ବ୍ୟକ୍ତିଙ୍କ ମଧ୍ୟରେ ପାରସ୍ପରିକ ଯୋଗାଯୋଗ ସୃଷ୍ଟି କରାଯିବ । କୃଷିଜାତ ଦ୍ରବ୍ୟର ଅନ୍‌ଲାଇନ୍ କ୍ରୟବିକ୍ରୟ ପାଇଁ ଇ-କମର୍ସ ସୁବିଧା ସୃଷ୍ଟି କରାଯିବ । ଏହାଦ୍ୱାରା କୃଷକମାନଙ୍କ ବିକ୍ରିବଟା ଖର୍ଚ୍ଚ କମିବା ସହିତ ସେମାନେ ଉପଯୁକ୍ତ ମୂଲ୍ୟ ମଧ୍ୟ ପାଇପାରିବେ ।

### କୃଷି ପାଣିପାଗ ସୂଚନା

ପରିବର୍ତ୍ତିତ ଜଳବାୟୁ ପରିସ୍ଥିତି ରାଜ୍ୟରେ କୃଷକମାନଙ୍କର ସାମାଜିକ ଓ ଅର୍ଥନୈତିକ ଅବସ୍ଥା ଉପରେ ସୁଦୂରପ୍ରସାରୀ ପ୍ରଭାବ ପକାଇବ । ବିଶେଷତଃ କ୍ଷୁଦ୍ର ଓ ନାମମାତ୍ର ଚାଷୀମାନଙ୍କ ଉପରେ କୁପ୍ରଭାବ

ଅଧିକ ହେବ । ଏଥିପାଇଁ ସ୍ୱଳ୍ପ ଅବଧି ପାଣିପାଗର ପୂର୍ବାନୁମାନ ଉପରେ ଗୁରୁତ୍ୱ ପ୍ରଦାନ କରାଯିବ । ଏହି ପରିବର୍ତ୍ତିତ ପାଣିପାଗର କୃଷି ସମ୍ଭାବନା ପାଇଁ କୃଷି ଗବେଷଣାର ଆଭିମୁଖ୍ୟ ମଧ୍ୟ ପରିବର୍ତ୍ତିତ ହେବା ଆବଶ୍ୟକ ।

**ବିଭିନ୍ନ ଫସଲର ଉତ୍ପାଦିକତା ବୃଦ୍ଧି**

ଅଧିକ ଉତ୍ପାଦନ ଓ ଉତ୍ପାଦିକତା ଦ୍ୱାରା ଧାର୍ଯ୍ୟ ଲକ୍ଷ୍ୟ ହାସଲ କରିହୁଏ । ଆମ ରାଜ୍ୟରେ ଅଧିକାଂଶ ଫସଲର ଉତ୍ପାଦିକତା, ଜାତୀୟ ହାରଠାରୁ କମ୍ ରହିଛି । ଏହାକୁ ବୃଦ୍ଧି କରାଯାଇ ପାରିଲେ, ବର୍ଦ୍ଧିଷ୍ଣୁ ଜନସଂଖ୍ୟା ପାଇଁ ଆବଶ୍ୟକ ଖାଦ୍ୟ ଓ ଅନ୍ୟାନ୍ୟ ଉପାଦାନ ଯୋଗାଇ ହେବ । ଏଥିପାଇଁ ଉନ୍ନତ କୃଷି ଜ୍ଞାନକୌଶଳର ଉପଯୋଗ କରିବା ଦରକାର । ଏହା ବ୍ୟତୀତ ଫସଲ ବିବିଧିକରଣକୁ ପ୍ରୋତ୍ସାହିତ କରି ଧାନରୁ ଅଣଧାନ ଓ ସ୍ୱଳ୍ପ ଅର୍ଥକାରୀ ଫସଲରୁ ଅଧିକ ଅର୍ଥକରୀ ଫସଲ ଚାଷ କରିବା ଦ୍ୱାରା ଚାଷୀ ଅଧିକ ଲାଭବାନ୍ ହେବାର ସମ୍ଭାବନା ଥାଏ ।

ଅର୍ଥକାରୀ ଫସଲ ଚାଷ ଆଜିର ଆହ୍ୱାନ । ଏଥିପାଇଁ ଆଖୁ, କପା, ପନିପରିବା, ଫଳ ଓ ଫୁଲ ଚାଷ କରାଯାଇପାରିଲେ ଚାଷୀ ଅଧିକ ଲାଭବାନ ହୋଇପାରିବ । ଶୀତସହଣୀ ଶକ୍ତି ଥିବା ପନିପରିବା, ଅଦିନିଆ ପନିପରିବା ଚାଷ କରିବା ଦ୍ୱାରା ଚାଷୀକୁ ଅଧିକ ଲାଭ ମିଳିଥାଏ । କାରଣ ସଅଳ ଗୁଣାତ୍ମକ ମାନ ଥିବା ଫସଲ ଉତ୍ପାଦିତ ହେଉଥିବାରୁ ଏହାର ବଜାର ଚାହିଦା ଅଧିକ ରହେ ।

ଧାନ ରାଜ୍ୟର ମୁଖ୍ୟ ଫସଲ । ଏହା ଖରିଫ ଓ ରବି ଋତୁରେ ସଫଳତାର ସହିତ ଚାଷ କରାଯାଏ । ସଘନ ପଦ୍ଧତିରେ ଧାନ ଚାଷ (ଶ୍ରୀ) କରାଗଲେ ସ୍ୱଳ୍ପ ବିହନ ଆବଶ୍ୟକତା ସହିତ ଅଧିକ ଅମଳ ମିଳିଥାଏ । ଏଥିପାଇଁ ଉନ୍ନତ ଜ୍ଞାନକୌଶଳ ହସ୍ତାନ୍ତରର ଆବଶ୍ୟକତା ରହିଛି । ସଂପ୍ରତି ରାଜ୍ୟରେ କାର୍ଯ୍ୟକାରୀ ହେଉଥିବା ଜାତୀୟ ଖାଦ୍ୟ ନିରାପତ୍ତା ମିଶନ ଓ ରାଷ୍ଟ୍ରୀୟ କୃଷି ବିକାଶ ଯୋଜନାରେ ବ୍ୟାପକ ସୁବିଧା ସୁଯୋଗର ବ୍ୟବସ୍ଥା ରହିଛି । ଏହି କାର୍ଯ୍ୟକ୍ରମର ସଫଳତା ଆଗାମୀ ଦିନର କୃଷିକୁ ନିଶ୍ଚିତ ଭାବରେ ପ୍ରଭାବିତ କରିବ । ଏହାଦ୍ୱାରା କୃଷିରେ ଅମଳ ବୃଦ୍ଧି ହେବା ସହିତ ରାଜ୍ୟ କୃଷି ଚିତ୍ରପଟରେ ନାଟକୀୟ ପରିବର୍ତ୍ତନ ହାସଲ କରାଯାଇପାରିବ ।

କୃଷି ପାଇଁ ଆବାଶ୍ୟକ ହେଉଥିବା ପ୍ରାକୃତିକ ସମ୍ବଳରେ ଆମ ରାଜ୍ୟ ପରିପୂର୍ଣ୍ଣ । ଓଡ଼ିଶାର କୃଷକ ଖୁବ୍ ପରିଶ୍ରମୀ ଓ କୁଶଳୀ । କୃଷି ବିକାଶ ପାଇଁ ରାଜ୍ୟରେ ଯଥେଷ୍ଟ ସୁଯୋଗ ଓ ସମ୍ଭାବନା ରହିଛି । ବିଭିନ୍ନ ପ୍ରାକୃତିକ ଦୁର୍ବିପାକ ସତ୍ତ୍ୱେ ଆମେ ରେକର୍ଡ ପରିମାଣର ଖାଦ୍ୟଶସ୍ୟ ଉତ୍ପାଦନ କରିବାରେ ସକ୍ଷମ ହୋଇପାରିଛୁ । ତଥାପି ଆମକୁ ଆହୁରି ଆଗକୁ ଯିବାକୁ ପଡ଼ିବ । କାରଣ ଗତି ହିଁ ପ୍ରଗତିର ଲକ୍ଷଣ । ଏଥିପାଇଁ ଏ ଦିଗରେ କୃଷି ସଂପୃକ୍ତ ସମସ୍ତ ଭାଗୀଦାରଙ୍କ ଆନ୍ତରିକ ନିଷ୍ଠା, ସାଧନା ଓ ସହଯୋଗ ରହିଲେ 'ଦ୍ୱିତୀୟ ସବୁଜ ବିପ୍ଳବ'ର ଅଭିଳଷିତ ଲକ୍ଷ୍ୟ ହାସଲ ହୋଇପାରିବ ।

*କୃଷି ନିର୍ଦ୍ଦେଶକ, ଓଡ଼ିଶା, ଭୁବନେଶ୍ୱର,*

# ଆମ ରାଜନୀତିରେ ହାଇକମାଣ୍ଡ ବ୍ୟବସ୍ଥା ପ୍ରାଦେଶିକ ବିକାଶର ସହାୟକ ନୁହେଁ

ଶ୍ରୀ ସହଦେବ ସାହୁ

*ଆମ ରାଜ୍ୟର ପୂର୍ବତନ ମୁଖ୍ୟ ଶାସନ ସଚିବ ଶ୍ରୀ ସହଦେବ ସାହୁ କେବଳ ଜଣେ କୂଟନୀତିଜ୍ଞ ନୁହନ୍ତି; ଜଣେ ଗବେଷକ, ସଂଗ୍ରାହକ, ସାହିତ୍ୟିକ ଓ ସମାଜସେବୀ ଭାବେ 'ସର୍ବଜନାଦୃତ'। ଓଡ଼ିଶାର ଶାସନ, ସାମାଜିକ ଅଭିବୃଦ୍ଧିରେ ତାଙ୍କର ଅବଦାନ ଅନସ୍ୱୀକାର୍ଯ୍ୟ। ୨୦୦୮ "ମୋ ଓଡ଼ିଶା"ର ସାରସ୍ୱତ ସଂକଳନଟିକୁ ତାଙ୍କ ଲେଖାଟି ଅତ୍ୟନ୍ତ ରୁଚିବନ୍ତ କରିଥିଲା। ଏଥରକ ୨୦୦୯ 'ମୋ ଓଡ଼ିଶା'ର ଏହି ସାରସ୍ୱତ ସଂକଳନରେ ଆପଣମାନେ ପଢ଼ନ୍ତୁ ଶ୍ରୀ ସାହୁଙ୍କର ସାମ୍ପ୍ରତିକ ରାଜନୀତିକ ବାୟୁମଣ୍ଡଳ ସମ୍ପର୍କରେ ଏକ ବିଶ୍ଳେଷଣାତ୍ମକ ପ୍ରତିବେଦନ.....*

ରାଜନୈତିକ ଦଳର ହାଇକମାଣ୍ଡ ବ୍ୟବସ୍ଥା କମ୍ୟୁନିଷ୍ଟ ଶାସନର କେନ୍ଦ୍ରସର୍ବସ୍ୱ ସରକାର ଭଳି। ଏହା ପ୍ରାଦେଶିକ ବିକାଶରେ ସହାୟକ ହୁଏ ନାହିଁ। ଲୋକେ ଜାଣନ୍ତି, ହାଇକମାଣ୍ଡଙ୍କ ପ୍ରତି ଆନୁଗତ୍ୟ ପ୍ରଦେଶ ବା ଦେଶବାସୀଙ୍କ ପ୍ରତି କର୍ତ୍ତବ୍ୟଠାରୁ ବେଶୀ ମୂଲ୍ୟବାନ। ପ୍ରଦେଶରେ ସମସ୍ତ ପ୍ରକାର ଦାୟିତ୍ୱନିର୍ବାହର ମାପକାଠି ହେଉଛି ହାଇକମାଣ୍ଡ (ସର୍ବନିୟନ୍ତା)ଙ୍କ ନିକଟରେ ସମର୍ପଣର ଗାଢ଼ତା।

ହାଇକମାଣ୍ଡ ଯାହାକୁ ଚାହିବେ, ସେ ହିଁ ରାଜ୍ୟର ମୁଖ୍ୟମନ୍ତ୍ରୀ ହେବେ – ଏ ହେଉଛି ସବୁ ଜାତୀୟ ଦଳର ଏକ ପରିପ୍ରକାଶ। ଏହାକୁ ଆଇନର ମୁଦ ଦେବା ଲାଗି ଦିଲ୍ଲୀରୁ ହାଇକମାଣ୍ଡଙ୍କ ପ୍ରତିନିଧି ଦଳର ରାଜ୍ୟଶାଖାର ମୁଖ୍ୟ କାର୍ଯ୍ୟାଳୟକୁ ଆସନ୍ତି, ବିଧାୟକ ଦଳର ନେତା ନିର୍ବାଚନରେ ପର୍ଯ୍ୟବେକ୍ଷକ ହେବାକୁ। ପ୍ରକୃତରେ ସେ ହାଇକମାଣ୍ଡଙ୍କ ତୁଣ୍ଡନିସୃତ ବ୍ୟକ୍ତିକୁ ସମସ୍ତେ ଯେପରି ସମର୍ଥନ କରିବେ, ତାହାର ବନ୍ଦୋବସ୍ତ କରାନ୍ତି। ଦିଲ୍ଲୀ ପ୍ରତିନିଧି ଯାହା ଆଡ଼କୁ ଢଳିବେ, ତା'ର ବେଶି ଭୋଟ ହେବ, ନ ହେଲେ ସେ ଯାଇ ହାଇକମାଣ୍ଡକୁ ଖଟମିଛ କହି ଭୋଟ ଦେଇ ନ ଥିବା ଲୋକକୁ ଦଳବିରୋଧୀ ପୋଷାକ ପିନ୍ଧାଇ ପାରନ୍ତି। ଦରକାର ପଡ଼ିଲେ ସେ ସଂଖ୍ୟାଧିକ ଭୋଟ (ସମର୍ଥନ) ତିଆରି କରନ୍ତି। ନିଭୃତରେ ଜଣ ଜଣ କରି ବିଧାୟକମାନଙ୍କୁ ସାକ୍ଷାତ ପାଇଁ ଡାକନ୍ତି, ଯାହାର ମତ ମିଳେ ନାହିଁ, ତାକୁ କହନ୍ତି, "ଜାଣିଛନ୍ତି ? ସମସ୍ତେ ତ ସମୁକଙ୍କୁ ସମର୍ଥନ କରୁଛନ୍ତି, ଆପଣ କ'ଣ ଅମୁକ କଥା କହୁଛନ୍ତି ? ଆପଣ କ'ଣ ନିଜ ମତରେ ଅଟଳ ? ଯଦି ଏ କଥା ପ୍ରଘଟ ହୋଇଯାଏ ଆପଣ ହାଇକମାଣ୍ଡଙ୍କ ଅମାନ୍ୟକାରୀ ତାଲିକାରେ ରହିଯିବେ। ଫଳ କ'ଣ ହେବ ଆପଣ ତ ଜାଣନ୍ତି !" ହାଇକମାଣ୍ଡଙ୍କ ଦୂତ ଏହି ପ୍ରକାରେ ମନୋନୀତ ବ୍ୟକ୍ତିକୁ ବିଧାନସଭାର ନେତା ବନାଇ ଦିଅନ୍ତି। ହାଇକମାଣ୍ଡଙ୍କଦ୍ୱାରା ନିର୍ବାଚନୀ ଟିକଟରୁ ବଞ୍ଚିତ ହୋଇଥିବା ବ୍ୟକ୍ତି ବି ଏହିଭଳି ମୁଖ୍ୟମନ୍ତ୍ରୀ ହୋଇପାରେ ଯଦି ହାଇକମାଣ୍ଡଙ୍କୁ ଦୂତ ଜଣକ ବୁଝାଇ ଦେଇପାରେ।

ଏଥିଲାଗି ହାଇକମାଣ୍ଡଙ୍କ ଆସ୍ଥାଭାଜନ ଦୂତକୁ ଆଗରୁ ଧରମ ଭାଇ କରିନେବା ସହିତ ତାଙ୍କ ଘରୋଇ ସଚିବ ଭଳି ପାଖଲୋକଙ୍କୁ ଯଥେଷ୍ଟ ହାତଗୁଞ୍ଜା ଦିଆଯାଇଥାଏ । ସେହିଭଳି ପୁଞ୍ଜିନିବେଶ କରିଥିବା ମୁଖ୍ୟମନ୍ତ୍ରୀଙ୍କ ଭ୍ରଷ୍ଟାଚାର ଓ ଅନୈତିକ କାରବାର ହାଇକମାଣ୍ଡଙ୍କ ଅନୁଗ୍ରହରେ ଥିବା ପର୍ଯ୍ୟନ୍ତ ବଢ଼ି ବଢ଼ି ଚାଲେ । ତାଙ୍କୁ ଭ୍ରଷ୍ଟାଚାରୀ ହେବାକୁ ପ୍ରଶୟ ଦିଆଯାଏ । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଲେ ବୈମାତୃକ ଭାବର ଶିକାର ହେବନାହିଁ ବୋଲି ଉତ୍କଳ ସମ୍ମିଳନୀର ଯେଉଁ ନେତାମାନେ ଭାବିଥିଲେ, ସେମାନେ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିବେ ଯେ ଗଣତନ୍ତ୍ର ଶାସନରେ ଓଡ଼ିଶାର ନେତାମାନେ ହାଇକମାଣ୍ଡଙ୍କ ଗୋଡ଼ାଣିଆ ହେବେ ।

ଜାତୀୟ ଦଳର କେହି ମୁଖ୍ୟମନ୍ତ୍ରୀ ହେଲେ ତାଙ୍କ ସାମର୍ଥ୍ୟର ବିଶେଷ ପରିଚାୟକ ହେଉଛି, ସେ ଜାତୀୟ ଦଳର ଦିଲ୍ଲୀ ଭଣ୍ଡାରରେ କେତେ କୋଟି ଟଙ୍କା ଭର୍ତ୍ତି କରିପାରିବେ । ତେଣୁ ଅଖିଳ ଭାରତୀୟ ଦଳର ମୁଖ୍ୟମନ୍ତ୍ରୀଙ୍କ ମୁଖ୍ୟ କାମ ହେଲା କୋଟି କୋଟି ଟଙ୍କା ଦିଲ୍ଲୀକୁ ପଠାଇବା, ଆଗାମୀ ନିର୍ବାଚନରେ ଦଳର ଯେପରି କିଛି ଅଭାବ ନ ଘଟେ ।

ରାଜ୍ୟର ସ୍ୱାର୍ଥ-ରକ୍ଷା ଦଳର ନେତାଙ୍କ ସ୍ୱାର୍ଥ-ରକ୍ଷାଠାରୁ ଊର୍ଦ୍ଧ୍ୱରେ ରହିବା କଥା । ଦଳର ନେତା ଯଦି ରାଜ୍ୟର ନୁହନ୍ତି, ସେ ବା ଦଳର ସ୍ୱାର୍ଥକୁ ଉଚ୍ଚତର ନ ଦେଖିବେ କାହିଁକି ? ଏପରିକି ଦଳରେ ତାଙ୍କର ନିଜ ଚିନ୍ତା ରାଜ୍ୟ ଚିନ୍ତାଠାରୁ ଊର୍ଦ୍ଧ୍ୱକୁ ଉଠେ । ଫଳରେ ରାଜ୍ୟବିଧାନସଭା ନିର୍ବାଚନ ମଣ୍ଡଳୀରୁ ଉତ୍ତର ପ୍ରଦେଶ ବା ଦିଲ୍ଲୀର ଲୋକ ଏବଂ ଲୋକସଭା ପାଇଁ ବ୍ରହ୍ମପୁର ନିର୍ବାଚନ ମଣ୍ଡଳୀରୁ ଅଣଓଡ଼ିଶାଲୋକ ଓଡ଼ିଶାର ପ୍ରତିନିଧିତ୍ୱ କରିବେ ବୋଲି ଜାତୀୟ ଦଳ କହିଲେ କେହି ପାଟି ଫିଟାନ୍ତି ନାହିଁ । ସେମାନେ ରାଜ୍ୟ ପାଇଁ ଉଦ୍ଦିଷ୍ଟ ସାଂସଦଙ୍କ ବାତ୍ସଲ୍ୟ ମମତାର ପାଣ୍ଠି, ଏମ୍‌ପି ଲାଡ୍ (ଲୋକାଲ୍ ଏରିଆ ଡେଭଲେପ୍‌ମେଣ୍ଟ ଫଣ୍ଡ– ଲାଡ୍‌ର ଆକ୍ଷରିକ ଅର୍ଥ ବତ୍ସ) । ରାଜ୍ୟରେ ଖର୍ଚ୍ଚ ହେଉଛି କି ଆଉ କେଉଁଠି, ହିସାବ ରଖୁଛି କିଏ ? ରାଜ୍ୟ ବାହାର ଲୋକ ରାଜ୍ୟର ପ୍ରତିନିଧିତ୍ୱ କଲେ ତାହା ହୁଏ, 'ଓଡ଼ିଶା ଗରିବ କାହିଁକି' ପ୍ରଶ୍ନର ଯାବତୀୟ ଉତ୍ତର ଭିତରୁ ଏହା ତୃତୀୟ ।

ଓଡ଼ିଶାର ନେତାଙ୍କ ନାଁ କହି ଶତ୍ରୁତା ହାସଲ କରିବାଠାରୁ ମହାରାଷ୍ଟ୍ରର ଆଇନାରେ ସେମାନଙ୍କୁ ଦେଖାଇବା ଉଚିତ ହେବ । ମହାରାଷ୍ଟ୍ରରେ ଯେତେ ନାମୀ ନେତା ଅଛନ୍ତି– ଶରଦ ପାୱାର, ଛଗନ ଭୁଜବଳ, ନାରାୟଣ ରାଣେ, ରାଜ ଥାକରେ, ବିଳାସରାଓ ଦେଶମୁଖ– ସମସ୍ତେ ଦୁଧ ମହୁରେ ନୁହଁ, ଟଙ୍କାରେ ଭାସୁଛନ୍ତି । ସେମାନଙ୍କ ଭୂସମ୍ପତ୍ତି ଅମାପ ମାପ । ସେମାନଙ୍କ ପିଲାଝିଲା କୋଟି କୋଟି ଟଙ୍କାର ଯେଉଁ କାରବାର କରନ୍ତି, ତାହା ଆରମ୍ଭ ହେବା ପାଇଁ ଦରକାରୀ ମୂଳଧନ ତ ସେମାନେ ଯୋଗାଇଛନ୍ତି । ପ୍ରାର୍ଥୀମାନଙ୍କ ଆଫିଡେଭିଟ (ସତ୍ୟପାଠ) ରେ ସେମାନଙ୍କ ସମ୍ପତ୍ତି ତାଲିକା ମିଳେନାହିଁ , ଲୋକମୁଖରୁ ଶୁଣିବାକୁ ମିଳେ । ଓଡ଼ିଶାରେ ସେହିପରି ଉଦାହରଣ ଆପଣମାନେ ଖୋଜନ୍ତୁ । ଘରୋଇକରଣ ହାୱା ଆସିବା ପୂର୍ବରୁ ସେମାନେ ସରକାରକୁ ପାରିବାରିକ କରିଥିଲେ । ଏହି ପ୍ରାକ୍‌ଅମ୍ବାନୀ କୁବେରମାନେ

ଘରୋଇକରଣ ଦ୍ୱାରା ବେଶ୍ ଲାଭ ଉଠାଇଛନ୍ତି ଓ ଏବେ ବି ଉଠାଇଛନ୍ତି । ଗଣତନ୍ତ୍ର ଲୋକଙ୍କୁ ଶାସନ ଆଣିଦେଲା, ରାଜଶାସନ ଉଠିଗଲାରୁ ଲୋକେ ଆଶ୍ୱସ୍ତ ହେଲେ, କିନ୍ତୁ ରାଜନୀତି ବଂଶର ଉଦୟ ହେଲା । ରାଜା ପରିବାରର ବଡ଼ପୁଅ ସିନା ଗାଦୀକୁ ଆସୁଥିଲା, ରାଜନୀତି ପରିବାରରେ ପ୍ରତ୍ୟେକ ସଭ୍ୟ ଶାସନ କରୁଛନ୍ତି, କେତେକ ଅଣସାମ୍ବିଧାନିକ ଶକ୍ତିର କେନ୍ଦ୍ର ହୋଇ ବେଶି ଫାଇଦା ନେଉଛନ୍ତି, ଦେଶଟାକୁ ନିଜ ପାରିବାରିକ ମାହାଲ ଭାବୁଛନ୍ତି । ରାଜ୍ୟ ଗରିବ ହୋଇ ରହିବାର ଏ ଗୋଟିଏ କାରଣ । ଭାରତରେ ଗାନ୍ଧୀ ସାଙ୍ଗିଆ ଯେମିତ ରାଜନୀତି ଡୋର ଧରିଛି ଓଡ଼ିଶାରେ ପଟ୍ଟନାୟକ ସାଙ୍ଗିଆ ସେମିତି । ପ୍ରଭେଦ ଏତିକି ଯେ ଗାନ୍ଧୀ ପରିବାର ସ୍ଥାବର ସମ୍ପତ୍ତି ଉପରେ ସେତେ ଜୋର ଦିଅନ୍ତି ନାହିଁ, ପଟ୍ଟନାୟକ ପରିବାର ଉଭୟ ସ୍ଥାବର ଅସ୍ଥାବର ସମ୍ପତ୍ତି ଉପରେ ନଜର ରଖନ୍ତି । ରାଜ୍ୟର ବିକାଶ ଧାରାରେ ପାରିବାରିକ ଶାସନ ଗୋଟାଏ ଆଡ଼ିବନ୍ଧ । ପରିବାରର ଭଲ ପାଇଁ ଆଞ୍ଚଳିକ ବୈଷମ୍ୟ ବଢ଼େ, ଗୋଟିଏ ଗୋଟିଏ ଇଲାକାରେ ବେଶୀ ବିକାଶ ଘଟେ ।

ଆଗାମୀ ନିର୍ବାଚନରେ ଦଳର ଯେପରି କିଛି ଅଭାବ ନ ଘଟେ । କେବଳ ସରକାରୀ ତହବିଲରୁ ତ ଏତେ ନେଇ ହେବ ନାହିଁ, କି ସୁଇସ୍ ବେଙ୍କ୍‌ରେ ସିଧା ସଳଖ ପଇଠ କରିହେବ ନାହିଁ । କାମ ହାସଲ କରିବାକୁ ଆସିଥିବା ଧନାଢ୍ୟଙ୍କଠାରୁ ସିଆଡ଼େ ସିଆଡ଼େ କିଛି ଜମା କରାଇ ନେବା ଦରକାର । ଯିଏ ଦେଲା ସିଏ ତ କିଛି ଚାହିଁବ ? ରାଜ୍ୟ ଟିକସ ହରାଇଲା କହି କୁମ୍ଭୀର କାନ୍ଦଣା କରିବା ସାର ହେବ । ଏହାର ହିସାବ କେତେ ଦେବା ? କ୍ଲିନର କମ୍ପାନୀ ଖଣିଜ ନିଗମରୁ କିଛି କୋଟି ନେଇଯାଉ, ସିଏ ତ କିଛି ଫରେନ୍ ବେଙ୍କରେ ରଖିବ, ଓଡ଼ିଆ ଲୋକେ କିଛି ଦେଲେ ଚାରିଆଡ଼େ ଫୁସ୍ ଫୁସ୍ ହୋଇ କଥାଟାକୁ ପ୍ରଚାର କରିଦେବେ । ତେଣୁ ଓଡ଼ିଶାର ସମ୍ବଳ ଶୋଷଣ କରି ଅଣଓଡ଼ିଆଏ କୁବେର ହେବେ । ଏଭଳି ମନୋଭାବ ହିଁ ଓଡ଼ିଶା ଗରିବ କାହିଁକି ପ୍ରଶ୍ନର ଯାବତୀୟ ଉତ୍ତର ଭିତରୁ ଚତୁର୍ଥ ।

ନେତା ବା ମୁଖ୍ୟମନ୍ତ୍ରୀଙ୍କ ଏଭଳି କାମରେ ପାଖଲୋକ ବୋଲାଉଥିବା ଅଫିସରମାନେ ସାହାଯ୍ୟ କରନ୍ତି । ମନେ ରଖିବା କଥା ଯେ ଏ ଅଫିସରମାନେ ସାହାଯ୍ୟ ନ କଲେ ମନ୍ତ୍ରୀ ସହଜରେ (ସହଜରେ କାହିଁକି, ଆଦୌ) ପଇସା ମାରି ପାରିବେ ନାହିଁ । ପୁଣି ସାହାଯ୍ୟ ନ କଲେ ଅଫିସର ବି ପାଖଲୋକ ହୋଇ ରହିପାରିବେ ନାହିଁ । ସେଇଥିପାଇଁ ମନ୍ତ୍ରୀ ବୋଲକରା ଅଫିସରଙ୍କୁ ହାତବାରିସି କରନ୍ତି । ଏପରିକି ପୋଲିସ୍ ଓ ଗୋଇନ୍ଦା ମୁଖ୍ୟ ବି ମେରିଟ୍ ଉପରେ ଯେତେ ନ ହୁଅନ୍ତି, ତା'ଠାରୁ ବେଶି ହୁଅନ୍ତି ନେତାଙ୍କ ପ୍ରତି ଆନୁଗତ୍ୟ (କମିଟ୍‌ମେଣ୍ଟ୍) ଭିତ୍ତିରେ ବା ତୋଷାମୋଦ ପରିମାଣ ଉପରେ । ସେମାନେ ଯେ କୌଣସି କାମ କଲା ବେଳେ ନେତାଙ୍କ ମୁହଁକୁ ଚାହିଁ ରହନ୍ତି, ନିଜେ ନିଷ୍ପତ୍ତି ନିଅନ୍ତି ନାହିଁ । ଦେଶଟା ରସାତଳକୁ ଗଲେ ବି ଚିନ୍ତା ନାହିଁ, ଲୋକେ ଛି ଛାକର କଲେ ବି ଚିନ୍ତା ନାହିଁ । କେତେ ଜଣ ସାମ୍ବାଦିକ ତ ଦେଣନେଣ ପ୍ରକ୍ରିୟାର ପ୍ରଶଂସା କରିବେ । ଅନ୍ୟ ପ୍ରତିଯୋଗୀମାନଙ୍କୁ ନିକମା, ଅକର୍ମା ବା ଅପାରଗ ଆଖ୍ୟା ଦେଇ ସମ୍ବାଦ ପ୍ରସାର କରାଇ ପାରିବେ, ଯାହା ଫଳରେ ସେହି ଅଧିକାରୀଙ୍କୁ ଅବସର ପରେ ଲାଟସାହେବ କି ସେମିତି ଗୋଟିଏ ମର୍ଯ୍ୟାଦା-ସମ୍ପନ୍ନ ପଦ ମିଳିଯିବ ।

ରାଜ୍ୟରେ କୌଣସି ଚିଟ୍‌ଫଣ୍ଡ (ଏ ଚିଟ୍ ଶବ୍ଦ ବଜାର୍‌ରେ ସିନା ଟୁକୁରା, କାମରେ ଠକାମି) ନେତାଙ୍କ ବିନା ସହଯୋଗରେ ଚାଲେ ନାହିଁ, ଚାଲିଲେ ପୋଲିସ୍ ଧରିବ । ଥରେ ଚିଟ୍‌ଫଣ୍ଡ କରୁଥିବା ବ୍ୟକ୍ତି ଲୋକଙ୍କୁ ଭୁଆଁ ବୁଲେଇ ଛାଡ଼ି ଚାଲିଗଲେ, ତାହାର କୋଠାବାଡ଼ି ନେତାଙ୍କ ଯେଉଁ ସମ୍ପର୍କୀୟ ସେଥିରେ ସମ୍ପୃକ୍ତ ଥାଆନ୍ତି, ତାଙ୍କର ହୋଇଯାଏ । ବେନାମୀ ଓ ବେୱାରସ୍ ସମ୍ପତ୍ତିର ମାଲିକ ଶାସକ ଦଳର ଜୁଆଁଇ, ଶାଳକ ବା ପ୍ରେମିକା ହୁଅନ୍ତି । ନେତାମାନେ ବିଲ୍‌ଡର୍‌ମାନଙ୍କ, ମାଫିଆମାନଙ୍କ ପିଠି ଆଉଁସନ୍ତି, ବିଲ୍‌ଡର୍‌ମାନେ ଗରିବ ବା ନିରୀହ ଲୋକର ଜମି ମାରି ନେବାରେ, ସେହି ଅସତ୍ ଧନକୁ ଧଳା କରିବା ଲାଗି ଉଚ୍ଚଶିକ୍ଷା ଅନୁଷ୍ଠାନ ଗଢ଼ିବାରେ ଓ ତହିଁରୁ ପ୍ରତି ଛାତ୍ରଛାତ୍ରୀଠାରୁ କଳାଧନ ଆଦାୟ କରିବାରେ ଏହି ନେତାମାନେ ହିଁ ସାହାଯ୍ୟ କରନ୍ତି । ଏପରିକି ଅସତ୍ ଧନରେ, ଜବରଦଖଲ ସରକାରୀ ଜମିରେ ଚିକିତ୍ସା ଅନୁଷ୍ଠାନମାନ ବସାଇ ଯୋଗ୍ୟତା ନ ଥିବା ଚିକିତ୍ସକ ରଖି ରୋଗୀଙ୍କୁ ଶୋଷିବାରେ ମାଫିଆମାନଙ୍କୁ ଏହି ନେତାମାନେ ସାହାଯ୍ୟ କରନ୍ତି । ସରକାରୀ କର୍ମଚାରୀଙ୍କ ବଦଳିକୁ ଏକ ବ୍ୟବସାୟ କରନ୍ତି, ଏପରିକି ଭ୍ରଷ୍ଟାଚାର ସୁବିଧା ପାଉ ନ ଥିବା ଶିକ୍ଷକମାନେ ଲାଞ୍ଚଦିଆ ବଦଳିର ଶିକାର ହେଉଛନ୍ତି । ଓଡ଼ିଶା ଗରିବ କାହିଁକି ପ୍ରଶ୍ନର ଯାବତୀୟ ଉତ୍ତରରୁ ଏ ପଞ୍ଚମ ।

ହାଇକମାଣ୍ଡଙ୍କ ବଂଶ ବା ସମ୍ପର୍କୀୟମାନଙ୍କୁ ସାମିଲ କରି ବା ସେମାନଙ୍କ ନାଁରେ ସଂସ୍ଥା କରି (ଏହାକୁ ଆପଣ ଏନ୍‌ଜିଓ କହିବେ) ସରକାରୀ ସଂସ୍ଥାମାନଙ୍କରୁ କୋଟି କୋଟି (ନ ହେଲେ ଲକ୍ଷ ଲକ୍ଷ) ଟଙ୍କା ଆଦାୟ କରିପାରିବେ, ଭବିଷ୍ୟତକୁ ଗୋଲାପୀ କରିପାରିବେ । ଯେମିତି ଦିଲ୍ଲୀରେ ରାଜୀବ ଗାନ୍ଧୀ ଫାଉଣ୍ଡେସନ୍ ବା ମୁମ୍ବାଇରେ ଆନ୍ତୁଲେଙ୍କ ଇନ୍ଦିରା ଗାନ୍ଧୀ ଫାଉଣ୍ଡେସନ୍ । ଏ ସବୁ ସଂସ୍ଥାର ମାଲିକମାନେ ଲାଭପ୍ରଦ କର୍ମ (ଅଫିସ୍ ଅଫ୍ ପ୍ରଫିଟ୍) ଚଳାଉଥିଲେ ବି ଦେଶର ନିର୍ଣ୍ଣାୟକ ନେତା ହୋଇପାରିବେ । ସରକାରୀ ତହବିଲରେ କଣା କରନ୍ତି ଏହିମାନେ । ଏ ଭଳି କାର୍ଯ୍ୟ କେତେକଙ୍କୁ ଧନୀ କରି ବିକାଶର ତଣ୍ଟି ଚିପି ଦିଏ ନାହିଁ କି?

ସମ୍ପତ୍ତି ସମ୍ପର୍କୀୟ କୌଣସି ବଦମାସୀ ପୋଲିସ୍‌ର ସାହାଯ୍ୟ ବିନା ଘଟୁ ନାହିଁ, ଟଙ୍କା ଯାହାର ଆଇନ୍ ତାହାର ।

ଏସବୁ ଧନ ଅଣ୍ଡରୱାର୍ଲ୍‌ଡ଼କୁ ବା ଆତ୍ମଗୋପନକାରୀ ଅପରାଧୀମାନଙ୍କ ହାତକୁ ଯାଏ, ସେମାନେ ଆହୁରି ବେଶି ବଟି ଆଦାୟ କରିବା (ଏକ୍ସଟର୍ସନ୍) ପାଇଁ ଉତ୍ସାହିତ ହୁଅନ୍ତି । ନେତାଙ୍କ ବାହୁଛାୟା ତଳେ କେତେ ନରହତ୍ୟାକାରୀ, କେତେ ପଣବନ୍ଦୀକାରୀ, କେତେ ଡକାୟତ ଦଳ ଲୁଚି ରହୁଛନ୍ତି ତାହା ସାଧାରଣ ଲୋକେ ଜାଣନ୍ତି କିନ୍ତୁ ଆମ ଗୋଇନ୍ଦା ବିଭାଗ, ପୋଲିସ୍, ମନ୍ତ୍ରୀମାନେ ଜାଣନ୍ତି ନାହିଁର ଅଭିନୟ କରନ୍ତି । ଯେ ପର୍ଯ୍ୟନ୍ତ ଏ ଅଭିନୟ ଚାଲିଥିବ, ସେ ପର୍ଯ୍ୟନ୍ତ ସାଧାରଣ ଲୋକର ଧନଜୀବନ ସୁରକ୍ଷିତ ନୁହେଁ । ଆମ ଲୋକେ ଏବେ ବୁଦ୍ଧିମାନ ଯେ ଚନ୍ଦ୍ରରେ ଆମ ଯାନ ଓହ୍ଲାଇଲାଣି, ଅଥଚ ରାଜନେତାମାନେ ଆମଠୁ ଭାରତୀୟତା ଛଡ଼ାଇ ନେଲେଣି । ମୁଁ ହିନ୍ଦୁ, ମୁସଲମାନ ବା ଖ୍ରିଷ୍ଟିୟାନ୍ ଅଥବା ପାଣ, ଅନଗ୍ରସର ବା ଦଳିତ, ଅଥବା କଂଗ୍ରେସ୍, ବିଜେପି ବା କମ୍ୟୁନିଷ୍ଟ; କିନ୍ତୁ ମୁଁ ଭାରତୀୟ ନୁହେଁ । ଓଡ଼ିଶା ଗରିବ କାହିଁକି ପ୍ରଶ୍ନର ଯାବତୀୟ ଉତ୍ତରରୁ ଏ ହେଉଛି ଷଷ୍ଠ ।

ଭୋଟ୍ ବାଟେ କେହି ବିରୋଧୀ ନ ଆସୁ ସେଥିପାଇଁ ଶାସକଦଳ ଯେତେ ବ୍ୟସ୍ତ ହୁଏ ନୋଟ୍ ବାଟେ ଆସୁଥିବା ଲୋକକୁ ରୋକିବା ଲାଗି ସେତେ ବ୍ୟସ୍ତ ହୁଏ ନାହିଁ । ଭଦ୍ରକ ଓ କେନ୍ଦ୍ରାପଡ଼ାର ସମୁଦ୍ର ତଟବର୍ତ୍ତୀ ଇଲାକାରେ ବାଙ୍ଗାଲାଦେଶୀମାନେ ଗାଁ ବସାଉଥିବାରେ ସରକାରୀ ଅଧିକାରୀମାନଙ୍କ ଆପତ୍ତିକୁ ତତ୍କାଳୀନ ମନ୍ତ୍ରୀମାନେ କିପରି ଉଡ଼ାଇ ଦେଉଥିଲେ, ସେମାନଙ୍କୁ ରେସନ୍ କାର୍ଡ୍ ଓ ରାସ୍ତାଘାଟର ସୁବିଧା କରୁଥିଲେ ତାହା କହିବା ବାହୁଲ୍ୟ ମାତ୍ର । ଆମ ଦେଶର ବାସ୍ତବତା ଯେ ସ୍ଥାନୀୟ ପୋଲିସ୍ କୌଣସି ପ୍ରକାର ସଶସ୍ତ୍ର ଆକ୍ରମଣର ମୁକାବିଲା କରିପାରିବ ନାହିଁ । ସନ୍ତ୍ରାସବାଦ କଥା ଛାଡ଼ । ଅନ୍ୟ ଦେଶରେ ପୋଲିସ୍ ବାହାର ସାହାଯ୍ୟ ମାଗେ, ଚାରିଆଡୁ ଯିବା ଆସିବା ବନ୍ଦ କରିଦିଏ(ସିଲ୍ ବା ନିବୁକ କରିଦିଏ); କିନ୍ତୁ ଭାରତରେ ଏସବୁ କାମ କରିବା ପାଇଁ ସ୍ଥାନୀୟ ପୋଲିସ୍‌କୁ ସରକାରୀ ଅର୍ଥାତ୍ ମନ୍ତ୍ରୀଙ୍କ ଆଦେଶ ଦରକାର । ଜାତି ବା ସାମ୍ପ୍ରଦାୟିକ ଦଙ୍ଗା ଲାଗି ଜିଲ୍ଲାପାଳ ଓ ଆରକ୍ଷୀ ଅଧୀକ୍ଷକ ଦାୟୀ ବୋଲି ସରକାରୀ ଆଦେଶ ଅଛି; କିନ୍ତୁ ଏମାନେ ତ ଶାସକ ଦଳର ବୋଲକରା ନ ହେଲେ ଜିଲ୍ଲାରେ ରହିପାରିବେ ନାହିଁ । ତେଣୁ ସ୍ଥାନୀୟ ପୋଲିସ୍ ସାମ୍ପ୍ରଦାୟିକ ଦଙ୍ଗା ରୋକିବାକୁ ଚେଷ୍ଟା କରେ ନାହିଁ, ଉପରର ଆଦେଶ ବା ଇଙ୍ଗିତକୁ ଅପେକ୍ଷା କରେ । କନ୍‌ଷ୍ଟେବଲ୍‌ମାନେ ଅର୍ଦ୍ଧଶିକ୍ଷିତ । ଅଧିକାଂଶ ଚିହ୍ନା ପରିଚୟ ବା ଲାଞ୍ଚରେ ନିଯୁକ୍ତ । ଆମ ରାଜ୍ୟରେ ତ ଜଣେ ମୁଖ୍ୟମନ୍ତ୍ରୀ ଡିଏସ୍‌ପି ରାଙ୍କ୍‌ରେ ପ୍ରତ୍ୟକ୍ଷ ନିଯୁକ୍ତି ବନ୍ଦ କରିଦେଲେ, ଆଜିଯାଏ ସେ ଆଦେଶ କୌଣସି ମୁଖ୍ୟମନ୍ତ୍ରୀ ବଦଳାଇ ପାରୁନାହାନ୍ତି— କାଳେ କନ୍‌ଷ୍ଟେବଲ୍‌ମାନେ ଦଳକୁ ନିର୍ବଳ କରିଦେବେ, ପ୍ରଶାସନ ଦୁର୍ବଳ ହେଲେ ଦଳର ଦାଦାମାନେ ପ୍ରୋଟେକ୍ସନ୍ ମନି (ରକ୍ଷା-ଧନ) ଆଦାୟ କରିପାରିବେ । ପୁଣି ଏପରି ନିଯୁକ୍ତ କନ୍‌ଷ୍ଟେବଲ୍ ବା ସେମାନଙ୍କ ଭିତରୁ ଉପରକୁ ଉଠିଥିବା ଇନିସିପେକ୍ଟର ପହରା ଦେଲା ବେଳେ (ରାଉଣ୍ଡ କଲାବେଳେ) ରାସ୍ତାକଡ଼ ଚାହା ଦୋକାନରୁ ମାଗଣାରେ ଚାହା ପିଇବା, ଭିକାରିକୁ ଘଉଡ଼ାଇବା ପାଇଁ ଦୋକାନୀଠାରୁ କିଛି ହାତପୂରା ନେବା, ହାଟରୁ ମାଗଣା କୁକୁଡ଼ା ବା ପରିବା ଉଠାଇବା ପହରାର ଅଙ୍ଗ ଭାବିନିଏ । ତାକୁ ଧରିବା ସହଜ ନୁହେଁ, କାହାର ଅଭିଯୋଗ ଉପରେ ଧରିଲେ ପ୍ରମାଣ ବା ସାକ୍ଷୀ ଦେବାକୁ ଲୋକ ନ ଥିବେ, କିମ୍ବା ଏତେ ବିଳମ୍ବରେ ସାକ୍ଷୀକୁ କୋର୍ଟ୍‌କୁ ଡକାଯିବ ଯେ ସାକ୍ଷୀ ତାହାର ନିର୍ଭିକତା ହରାଇ ସାରିଥିବ । ଓଡ଼ିଶା ଗରିବ କାହିଁକି ପ୍ରଶ୍ନର ଏମିତି କେତେ ଉତ୍ତର ଅଛି, ସେଗୁଡ଼ିକୁ ବାଜେ ବୋଲି ଭାବନ୍ତୁ ନାହିଁ ।

ମାଓବାଦୀମାନେ ରାଜ୍ୟ ପ୍ରଗତି ଘଣ୍ଟାର କଣ୍ଟାକୁ ପଛାଇ ଦେଉଛନ୍ତି ବୋଲି କହୁଥିବା ନେତାଏ ନିଦବାଉଳାରେ କହୁଛନ୍ତି । ପୋଲିସ୍ ଭଲ ଅସ୍ତ୍ର, ଭଲ ଟ୍ରେନିଂ ଓ ଭଲ ଦରମା ଦରକାର କରୁଛି । ପୋଲିସ୍‌କୁ ସବୁ ଦଳ ହାତବାରିସି କରି ରଖିବାକୁ ଚାହୁଁଛି । ଶାସକ ଦଳ ବଦଳିଲେ ପୋଲିସ୍ ଓ ପ୍ରଶାସନିକ କର୍ମଚାରୀ ବଦଳି ହୁଅନ୍ତି, କଣେଇ ଦେବାକୁ ଯେ କର୍ତ୍ତବ୍ୟ ନୁହେଁ, ଆନୁଗତ୍ୟ ହିଁ ମେରିଟ୍‌ର ଆଧାର । ଏ ଯାବତ୍ ଜାତୀୟ ସ୍ତରର ପୋଲିସ୍‌ବାହିନୀ ତିଆରି ହେଲାନାହିଁ କି ଅପରାଧ ଧରୁଥିବା ପୋଲିସ୍ ଅଧିକାରୀମାନଙ୍କୁ ରାଜନେତାମାନଙ୍କ ପ୍ରଭାବରୁ ମୁକ୍ତ ରଖାଗଲା ନାହିଁ । ଲ ଆଣ୍ଡ୍ ଅର୍ଡର୍ ବ୍ୟବସ୍ଥା କ୍ରାଇମ୍ କଣ୍ଟ୍ରୋଲ୍ ବ୍ୟବସ୍ଥାରୁ ଭିନ୍ନ ହେବା କଥା, ପୂର୍ବଟି ଏକ ନିୟନ୍ତ୍ରଣମୁକ୍ତ ସଂସ୍ଥା (ଇଣ୍ଡିପେଣ୍ଡେଣ୍ଟ୍ ଅଥରିଟି) ଓ ପରଟି ମନ୍ତ୍ରୀମଣ୍ଡଳ

ଅଧୀନ ହେଲେ ହିଁ ପୋଲିସ୍ ଅପରାଧ ନିୟନ୍ତ୍ରଣ କରିପାରିବ । ଭାରତୀୟମାନେ ଟାଳଟୁଳ କରିବାରେ ବା ନିଷ୍ପତ୍ତି ନ ନେବାରେ ଓସ୍ତାଦ । ଏ ମୋର କାମ ନୁହେଁ, ତା'ର କାମ, ଏମିତି କହିବା ଆମର ସ୍ୱଭାବ । ଏହା ହିଁ ବିକାଶର କାଳ । ମୁମ୍ବାଇ ସନ୍ତ୍ରାସବାଦୀ ଘଟନାରେ ରାଜ୍ୟର ଘରୋଇ ବିଭାଗ ଅପ୍ରସ୍ତୁତ, ବିଭାଗୀୟ ଅଫିସର୍ କେନ୍ଦ୍ର ସରକାରଙ୍କ ସାହାଯ୍ୟ ପ୍ରାର୍ଥନା କରିପାରିବେ ନାହିଁ, ଏଥିଲାଗି ମୁଖ୍ୟମନ୍ତ୍ରୀଙ୍କ ଆଦେଶ ଦରକାର । ମୁଖ୍ୟମନ୍ତ୍ର ବିଳାସରାଓ ଦେଶମୁଖ ୧୦୦୦ କି.ମି ଦୂରରେ କେରଳରେ ଥିଲେ । କଲ୍ ପାଇବାର ଦେଢ଼ଘଣ୍ଟା ପର୍ଯ୍ୟନ୍ତ କିଛି କଲେନାହି । ଶେଷରେ ୧୧ଟା ରାତିରେ ପଟିଲ୍‌ଙ୍କୁ ଫୋନ୍ କଲେ । ପଟିଲ୍‌ଙ୍କ ପାଖରେ, ଏ ବିଷୟରେ ସୁରାକ୍ ବି ନ ଥିଲା । ସେ ପଚାରିଲେ କେତେ କମାଣ୍ଡୋ ଦରକାର ? ଦେଶମୁଖ କହିଲେ ୧୦ଟା ସନ୍ତ୍ରାସବାଦୀଙ୍କୁ ୨୦୦ ଯଥେଷ୍ଟ । ସେ ଜାଣି ନ ଥିଲେ ଯେ ଏକୁଟିଆ ତାଜ ହୋଟେଲ୍‌ର ମହୁଫେଣା ଭଳି ୫୬୫ କୋଠରୀ ଅଛି, ନିମିଷକରେ ପ୍ରତି କୋଠରୀରେ ତଲାସିବାକୁ ୫୦୦ ପାଖାପାଖି କମାଣ୍ଡୋ ଦରକାର । ତାକ୍ ତ ଗୋଟିଏ ମାତ୍ର ଯୁଦ୍ଧକ୍ଷେତ୍ର । ଆଉ ତିନୋଟି ଯୁଦ୍ଧକ୍ଷେତ୍ର —ଓବରାଇ ହୋଟେଲ୍, ନରିମାନ୍ ହାଉସ୍ ଓ ଛତ୍ରପତି ଶିବାଜୀ ରେଲ୍‌ୱେ ଷ୍ଟେସନ୍ । ଏତେ ଗୁଡ଼ାଏ ଯୁଦ୍ଧକ୍ଷେତ୍ର ପାଇଁ ଅନ୍ୟୂନ ୫୦୦ କମାଣ୍ଡୋ ଦରକାର । ମୁମ୍ବାଇରେ ନରହତ୍ୟା ଖବର ପାଇଲା ପରେ ବି ଏନ୍‌ଏସ୍‌ଜି କମାଣ୍ଡୋମାନଙ୍କୁ ସାଙ୍ଗେ ସାଙ୍ଗେ ପଠାଯାଇ ପାରିଲା ନାହିଁ । ସାଧାରଣ ଭୋଟ ସମୟରେ ସରକାର ଯାହା ତାହା ଗାଡ଼ିକୁ ଅକ୍ତିଆରରେ (କମାଣ୍ଡିୟର) ନିଅନ୍ତି । ଦିଲ୍ଲୀ ବିମାନ ବନ୍ଦରରେ ଥିବା ଗୋଟିଏ କି ଦୁଇଟି ବିମାନକୁ କ'ଣ କମାଣ୍ଡିୟର କରି ହୋଇ ନ ଥା'ନ୍ତା ? ୨୦୦ କିଲୋମିଟର ଦୂରରେ ଚଣ୍ଡିଗଡ଼ ବିମାନ ବନ୍ଦରରେ ଥିବା ପୁରୁଣା ଓ ମନ୍ଥର ଗତିର ଇଲୁଇସିନ୍ ୨-୭୬ ବିମାନଟିଏ (ହଁ ଗୋଟିଏ) ମଗାଗଲା । ସେ ବି ରାତି ଦୁଇଟା ପୂର୍ବରୁ ଦିଲ୍ଲୀରେ ପହଞ୍ଚିଲା ନାହିଁ । ତେଣୁ ମୁମ୍ବାଇ କେନ୍ଦ୍ରରେ ପହଞ୍ଚିଲା ବେଳକୁ ଆକ୍ରମଣ ୧୦ ଘଣ୍ଟା ଧରି ଚାଲିଲାଣି । ମୁମ୍ବାଇରେ ପହଞ୍ଚି ଏନ୍‌ଏସ୍‌ଜି ମାନେ ଯେଉଁଠିକି ଯିବେ ତାହାର ନକ୍‌ସା ପୋଲିସ୍‌ଠାରୁ ପାଇଲେ ନାହିଁ (ଅଥଚ ସନ୍ତ୍ରାସବାଦୀମାନେ ଅନ୍ଧିସନ୍ଧି ଜାଣିଥିଲେ) । ସରକାର କିଛି ଜାଣିବା ପୂର୍ବରୁ ଟିଭି ଓ ସମ୍ବାଦପତ୍ର ପ୍ରତିନିଧିମାନେ ପହଞ୍ଚିଯାଉଛନ୍ତି । ଚଳତ୍ ସମ୍ବାଦରୁ ମାଓ ବା ସନ୍ତ୍ରାସବାଦୀମାନେ ଆଗେ ଜାଣନ୍ତି ଓ ପ୍ରତିରୋଧର ବ୍ୟବସ୍ଥା କରନ୍ତି । ଏ ପବ୍ଲିସିଟି ନା ଶତ୍ରୁକୁ ସୁରାକ ଦେବାର ଉପାୟ ? କେହି ପୋଲିସ୍ ଅଧିକାରୀ ଯୁଦ୍ଧକ୍ଷେତ୍ରରୁ ଲୋକଙ୍କୁ ଓ ମିଡ଼ିଆକୁ ଦୂରେଇ ରଖିପାରିଲେ ନାହିଁ ? ନିଆଁ ଲାଗିଲେ ଆମ ପୋଲିସ୍ ତ ଲୋକଙ୍କୁ ଚାରିପାଖ ଫାଙ୍କା ରଖେ । ଟିଭି କ୍ୟାମେରା ଓ ଖବରକାଗଜର ଇଲେକ୍‌ଟ୍ରୋନିକ୍ ସଂସ୍କରଣରେ ପ୍ରତି ମୁହୂର୍ତ୍ତର ଘଟନା ପ୍ରଚାର କରିବା କ'ଣ ଅସଂଯତ ସାଂବାଦିକତା ନୁହେଁ? ଏ ଅଭ୍ୟାସ ତ ନଳ କୂଅରେ ଗଳି ପଡ଼ିଥିବା ପିଲାର ଉଦ୍ଧାର କାର୍ଯ୍ୟର ଧାରାବାହିକ ବିବରଣୀରୁ ଆସିଛି, ମିଡ଼ିଆ ତା'ର କର୍ତ୍ତବ୍ୟ ଓ ଅଧିକାର ଭିତରେ ସାମଞ୍ଜସ୍ୟ ରଖିପାରୁନାହିଁ । ତା' ଉପରେ ପୁଣି ଅଛି ଶସ୍ତା ଲୋକପ୍ରିୟତା, ଯେମିତି ଦିନେ ଆମ ରାଜ୍ୟର ମୁଖ୍ୟମନ୍ତ୍ରୀ ବିଜୁବାବୁ ଆଦେଶ ଦେଲେ ଯେ ତାଙ୍କ ଅନୁମତି ବିନା ପୋଲିସ୍ ବନ୍ଧୁକ ଉଠାଇ ପାରିବ ନାହିଁ । ତା' ହେଲେ ବନ୍ଧୁକ କିଣୁଛ କାହିଁକି ଏବଂ ମାଓବାଦୀମାନେ ପୋଲିସ୍ ହତ୍ୟା କଲେ ପୋଲିସ୍‌ର ପରିବାରକୁ ୧୦ ଲକ୍ଷ ଯାଏ ଅନୁକମ୍ପା ରାଶି ଦେଉଛ କାହିଁକି ? ଯେ ପର୍ଯ୍ୟନ୍ତ କୌଣସି

ନେତା ମାଓବାଦୀଙ୍କ ହାତରେ ନ ମରିଛନ୍ତି ସେ ପର୍ଯ୍ୟନ୍ତ ମାଓବାଦୀଙ୍କ ବିରୋଧରେ କାର୍ଯ୍ୟାନୁଷ୍ଠାନ ହେବ ନାହିଁ । ରାଜୀବ ଗାନ୍ଧୀ ନ ମରିଥିଲେ ଏବେ ବି ଭାରତରୁ ଏଲ୍‌ଟିଟିଇକୁ ଅସ୍ତ୍ରଶସ୍ତ୍ର ଯାଉଥା'ନ୍ତା । ସୋନିଆ ଗାନ୍ଧୀ ଓ ତାଙ୍କ ପରିବାରର ସୁରକ୍ଷା ଲାଗି କୋଟି କୋଟି ଟଙ୍କା ଖର୍ଚ୍ଚ । ସଂସଦ ଉପରେ ଆକ୍ରମଣ ପରେ କେତେ ଯେ ଖର୍ଚ୍ଚ ନ ହେଉଛି ସାଂସଦମାନଙ୍କୁ ରକ୍ଷା କରିବାରେ ! ପୋଲିସ୍ ଓ ସାମରିକ ବାହିନୀର ଆଧୁନିକୀକରଣରେ ସେତିକି ଖର୍ଚ୍ଚ ହେଲେ ସାଧାରଣ ନାଗରିକର ସୁରକ୍ଷା କେତେ ବଢ଼ି ନ ଯା'ନ୍ତା । ସୁରକ୍ଷା ବଢ଼ିଲେ ରାଜ୍ୟର ବିକାଶଧାରା ବି ଅବ୍ୟାହତ ରହନ୍ତା । ଦେଶର ଶୃଙ୍ଖଳା ଓ ବିକାଶ ଚିନ୍ତା ଅପେକ୍ଷା ନିଜର ରକ୍ଷା ଚିନ୍ତା ଓ ନିଜ ପରିବାରର ଅଭିବୃଦ୍ଧି ଚିନ୍ତା ହିଁ ଗଣତନ୍ତ୍ରର ପରିପନ୍ଥୀ ସାଜିଛି । ନେତାମାନେ ବି ଭିନ୍ନ ଭିନ୍ନ ନାମରେ ନିଜର ଘରୋଇ ବାହିନୀ ରଖିଲେଣି, ଭୋଟ ବାକ୍ସ ଦଖଲରେ ତାହା ସାହାଯ୍ୟ କରୁଛି । ବିଦ୍ରୋହପ୍ରବଣ ବିଧାୟକମାନଙ୍କୁ ଗୋଟିଏ ଜାଗାରେ ଖୁଆଡ଼ରେ ରଖିବାରେ କଳାଟଙ୍କା ଯେତିକି ସାହାଯ୍ୟ କରୁଛି, ନେତାମାନଙ୍କର ପ୍ରାଇଭେଟ ଆର୍ମି ସେତିକି ସାହାଯ୍ୟ କରୁଛି । ଏଥିରେ ଖର୍ଚ୍ଚ ତ ପରୋକ୍ଷରେ ରାଜ୍ୟର ବିକାଶକୁ ଧିମେଇ ଦେଉଛି ।

ଯେ ପର୍ଯ୍ୟନ୍ତ ନେତାମାନଙ୍କ ପରିବାର ସୁରକ୍ଷା ବଳୟରେ ଅଛନ୍ତି, ଆମ୍ ଆଦ୍‌ମୀ ଯେତେ ମରନ୍ତୁ ପଛେ ନେତାମାନଙ୍କ ଚିନ୍ତା ନାହିଁ । ପ୍ରତିଥର ସନ୍ତ୍ରାସବାଦ ଆକ୍ରମଣ ହେଲେ ବା ବେଆଇନ ପାକିସ୍ତାନୀ ବା ବାଙ୍ଗ୍‌ଲାଦେଶୀ ଦେଶ ଭିତରେ ପଶିଗଲେ ସେମାନେ ଗତାନୁଗତିକ ପନ୍ଥାରେ ଲୋକଙ୍କୁ ଉପଦେଶ ଦେଉଥିବେ; 'ଶାନ୍ତ ରୁହ, ଏ ଆମର ପରମ୍ପରା । ଆମ ଲୋକଙ୍କ ସହନଶୀଳତା ପୃଥିବୀରେ ଅତୁଳନୀୟ । ଆମ ପାଖରୁ କେହି ବର୍ତ୍ତିବେ ନାହିଁ, ନୋ ବଡି ଉଡ୍ ବି ସ୍ପେଆର୍ଡ୍ ।' ସନ୍ତ୍ରାସବାଦୀମାନେ ବାରମ୍ବାର ନରହତ୍ୟା କରୁଥିବେ, ସମୟ ପ୍ରବାହ ଓ ଲୋକଙ୍କ ଜୀବିକାନିର୍ବାହର ତାଡ଼ନା ଲୋମହର୍ଷଣ ଘଟନାକୁ ଲୋକମନରୁ ଲିଭାଇ ଦେଉଥିବ, ଅଥଚ ଆମ ଘଟନାର ସୁରାକ ପାଇ ବି କାର୍ଯ୍ୟାନୁଷ୍ଠାନ କରିବାରେ ହେଳା କରିଥିବା ମନ୍ତ୍ରୀମାନେ ପରେ କହିବେ– 'ଓଃ, ଓଡ଼ିଶାର ଲୋକଙ୍କ ପୁନରୁତ୍‌ଥାନବୋଧକୁ ଧନ୍ୟବାଦ । ଭାରତୀୟମାନଙ୍କ ବାଉନ୍‌ସ ବାକ୍ କରିବାର ସାମର୍ଥ୍ୟକୁ ଧନ୍ୟବାଦ ଦେବା କଥା ।' ନେତାମାନେ କ'ଣ ଭାବୁଛନ୍ତି ହତ୍ୟାକାଣ୍ଡ ପରେ ଲୋକେ ନିଆଁ ଲଗାଇଥା'ନ୍ତେ ନା କାମଦାମ ଛାଡ଼ି ଖାଲି ଲୁହ ଗଡ଼ାଉଥା'ନ୍ତେ ? ଆମ ମିଡ଼ିଆ ଆଉ ମନ୍ତ୍ରୀମାନେ ଏକା ସ୍ୱରରେ କହିହେଲେ, 'ଲୋକଙ୍କ ଦମ୍ ଅଛି । କାରଣ ସେମାନେ ସରକାରଙ୍କ ଅପାରଗତା ସତ୍ତ୍ୱେ ବଞ୍ଚି ରହିଛନ୍ତି ।' ଏ ହେଲା ଗଣତନ୍ତ୍ର, ଏ ହେଲା ମୁକ୍ତ ସାମ୍ବାଦିକତା । ଡିମୋକ୍ରାସି ୱିଥ୍ ଏ ଫ୍ରି ପ୍ରେସ୍ । ଓଡ଼ିଆମାନେ ମେରୁଦଣ୍ଡବିହୀନ ପ୍ରାଣୀ, "ଧୈର୍ଯ୍ୟ ଧର, ଶାନ୍ତ ରୁହ (ମେଣ୍ଟେନ୍ କାମ୍)" କହୁଥିବା ରାଜନେତାମାନେ ଧୁରନ୍ଧର ।

ଏ ସବୁ ମୂଳରେ ଆମ ଭାରତୀୟ ବୁଦ୍ଧିଜୀବୀ ନେତାମାନଙ୍କ ଘରଭଙ୍ଗା ନୀତି, ଜାତି ଓ ଧର୍ମ ଭିତ୍ତିରେ ବିଭାଜନ ନୀତି । ଓଡ଼ିଶାର ନେତାଏ ସର୍ବଭାରତୀୟ ଚିନ୍ତାଧାରାରେ ଏତେ ଉଦ୍‌ବୁଦ୍ଧ ଯେ ଓଡ଼ିଶା କଥା ଚିନ୍ତା କରିବା ପୂର୍ବରୁ ଭାରତ କଥା ଭାବନ୍ତି । ଭାରତର ବୁଦ୍ଧିଜୀବିମାନେ ଭାରତ କଥା ଭାବିବା

ପୂର୍ବରୁ ବିଶ୍ୱ କଥା ଭାବନ୍ତି । ଏମାନେ ହିନ୍ଦୁମାନ ସେମାନଙ୍କ କୁସଂସ୍କାର ପାଇଁ ଗାଳି ଦିଅନ୍ତି; କିନ୍ତୁ ଜାମ୍ମୁକାଶ୍ମୀରର କାଶ୍ମୀର ଅଞ୍ଚଳରେ ବିଚ୍ଛିନ୍ନତାବାଦୀମାନେ ପଣ୍ଡିତମାନଙ୍କୁ, ଉତ୍ତରପୂର୍ବ ପ୍ରାନ୍ତରେ ଖ୍ରୀଷ୍ଟିୟାନ୍‌ମାନେ ବା ପଡ଼ୋଶୀ ରାଷ୍ଟ୍ର ବାଙ୍ଗଲାଦେଶରେ ଇସ୍‌ଲାମୀମାନେ— ହିନ୍ଦୁମାନଙ୍କୁ ନିଶ୍ଚିହ୍ନ କରିବାରେ ଲାଗିଲେ ବି ପଦିଏ ପ୍ରତିବାଦ କରନ୍ତି ନାହିଁ । ଭିତରେ ଭିତରେ ହିନ୍ଦୁ ହୋଇଥିଲେ ବି ଉପରେ ବିଶ୍ୱପ୍ରେମୀ ଦେଖାଉଥିବା ଏହିମାନେ କହନ୍ତି, 'ଆଇନ୍‌କୁ ତା' ବାଟରେ ଚାଲିବାକୁ ଦିଅ, ତହିଁରେ ହସ୍ତକ୍ଷେପ କରନାହିଁ ।' କିନ୍ତୁ ଆଇନ୍‌କୁ ଠିକ୍ ବାଟରେ ଚଳାଇବାର ଲୋକ କିଏ ? ଆମେ ଗଢ଼ିଥିବା ଅନୁଷ୍ଠାନମାନ, ଆମେ ତିଆରି କରିଥିବା ପ୍ରକ୍ରିୟାମାନ, ବ୍ୟର୍ଥ ହେଉଛି । କାରଣ ଜଣେ ଦି ଜଣ ତ୍ୟାଗ କରିବାକୁ, ଲଢ଼େଇ କରିବାକୁ ପ୍ରସ୍ତୁତ ତ ବାକି ୯୮ କି ୯୯ ଜଣ ଅସାଧୁମାନଙ୍କ ନେତୃତ୍ୱକୁ ମାନିନେଉଛନ୍ତି, ସେମାନଙ୍କ ବୋଲକରା ହେଉଛନ୍ତି । ଆଦର୍ଶ ବା ଉଦାହରଣ ହେଲା ଭଳି ନେତା ନାହାନ୍ତି । ଯେଉଁ ନେତାମାନେ ଆହୁରି ଅଧିକ ସ୍ୱାର୍ଥୀ ନେତାଙ୍କୁ ତୋଷାମଦ କରନ୍ତି ସେମାନଙ୍କ ପାଇଁ କେତେଟା କନ୍‌ଷ୍ଟେବଲ୍ ବା ସବ୍‌ଇନ୍‌ସ୍ପେକ୍ଟର ଜୀବନ ଦେବେ ? ବଡ଼ ବୋଲାଉଥିବା ରାଷ୍ଟ୍ରରେ ଜାତୀୟତା ବୋଧରେ ଅନୁପ୍ରାଣିତ କରିପାରୁଥିବା ନେତା ପ୍ରତି ସ୍ତରରେ ଥାଆନ୍ତି ଥାକ ଥାକ ହୋଇ । ଗୋଟିଏ ସଂକଟ କାଳ ପଡ଼ିଲେ ସମ୍ପୃକ୍ତ ସ୍ତରର କେତେକ ବ୍ୟକ୍ତି ବିଶେଷର ବୀରତ୍ୱ ବା ଉଦ୍‌ବୋଧନ ବା ସାହସ ଉପରେ ସେ ସଂକଟଟା କଟିଯାଏ । ଯେଉଁ ସମାଜର ସବୁ ଖୋପରେ ଅନୁପ୍ରାଣିତ କରିପାରୁଥିବା ବ୍ୟକ୍ତି ନାହାନ୍ତି, ସେ ସମାଜ ବଡ଼ ହୋଇ ପାରିବ ନାହିଁ, ସେ ଦେଶ ବଡ଼ ହୋଇ ପାରିବ ନାହିଁ । ଆମ ନେତାମାନେ ବ୍ୟବସ୍ଥା ଓ ସଂଗଠନଗୁଡ଼ିକୁ ଏପରି ଦୁର୍ବଳ କରିଛନ୍ତି ଯେ ଲୋକଙ୍କ ଭିତରେ ସବୁଦିନିଆ ଉତ୍କର୍ଷ ଦିଶୁନାହିଁ । ନେତାଙ୍କ ପିଲାଏ ଉପରକୁ ନ ଉଠିଲେ ଆଉ କାହା ପିଲାଏ ଉପରକୁ ଉଠିବା ଉଚିତ୍ ନୁହେଁ— ଏ ଧାରଣା ଉପୁଜିଛି । ଏହି ତ ନକ୍ସଲପନ୍ଥୀଙ୍କ ଜନ୍ମର କାରଣ । ଦେଶ ଅର୍ଥନୈତିକ ବା ସାମାଜିକ ବିକାଶ ଯେତେ ଦରକାର କରୁନାହିଁ ତା' ଠାରୁ ବେଶି ଦରକାର କରୁଛି ରାଜନୈତିକ ସଂସ୍କାର ବା ନିର୍ମଳତା ।

*ଡି-୩, ବି.ଜେ.ବି.ନଗର, ଭୁବନେଶ୍ୱର-୭୫୧୦୧୪*



# ପାରାଦ୍ୱୀପ ଓ ପର୍ଯ୍ୟଟନ

ଶ୍ରୀ ପ୍ରଭାତ କୁମାର ନନ୍ଦ

*ଓଡ଼ିଶାର ଲୁପ୍ତ ବନ୍ଦର ସଭ୍ୟତା ଓଡ଼ିଆ ଜାତିର ଇତିହାସ ହୋଇଯାଇଥିଲା ବେଳେ ତାହାର ପୁନର୍ବିନ୍ୟାସ ପାଇଁ ପ୍ରବାଦ ପୁରୁଷ ସ୍ୱର୍ଗତ ବିଜୁପଟ୍ଟନାୟକ ସମସ୍ତ ପ୍ରତିବନ୍ଧକକୁ ଭ୍ରୂକ୍ଷେପ ନ କରି ଓଡ଼ିଶା ସମୃଦ୍ଧିର ଦ୍ୱାର ରୂପେ ପାରାଦୀପ ବନ୍ଦର ନିର୍ମାଣ କରାଇଥିଲେ । ଏହା ବର୍ତ୍ତମାନ ଓଡ଼ିଶାର ଗର୍ବ ଓ ଗୌରବ ରୂପେ ଉଭା ହୋଇଥିଲେ ମଧ୍ୟ ଓଡ଼ିଶାର ଚାରିକୋଟି ଅଧିବାସୀଙ୍କ ମଧ୍ୟରୁ ଶତକଡ଼ା ୯୦ ଭାଗରୁ ଅଧିକ ବ୍ୟକ୍ତି ଏ ସମ୍ପର୍କରେ ବିଶେଷ ଖବର ରଖିନାହାନ୍ତି । ପାରାଦୀପ ବନ୍ଦର ନ୍ୟାସର ସୁଯୋଗ୍ୟ ସଚିବ ଶ୍ରୀ ପ୍ରଭାତ କୁମାର ନନ୍ଦ କେବଳ ଦକ୍ଷ ପ୍ରଶାସକ ନୁହନ୍ତି, ଜଣେ ସୁସାହିତ୍ୟିକ ଓ ଭକ୍ତ ସାହିତ୍ୟର ପ୍ରବକ୍ତା ଭାବେ ସମଗ୍ର ଓଡ଼ିଶାରେ ପ୍ରଶଂସିତ । ଆମର ଅନୁରୋଧ ରକ୍ଷା କରି ଶ୍ରୀଯୁକ୍ତ ନନ୍ଦ 'ମୋ ଓଡ଼ିଶା'ର ଦ୍ୱିତୀୟବର୍ଷରେ ପାରାଦ୍ୱୀପ ବନ୍ଦର ସମ୍ପର୍କରେ ସବିଶେଷ ତଥ୍ୟ ଓ ଚିତ୍ର ସହିତ ମୂଲ୍ୟବାନ ପ୍ରବନ୍ଧ ପ୍ରଦାନ କରି ଆମ୍ଭମାନଙ୍କୁ ଗୌରବାନ୍ୱିତ କରିଥିଲେ । ଏହି ସଂଖ୍ୟାରେ ଆପଣମାନଙ୍କ ପାଇଁ ଶ୍ରୀ ନନ୍ଦ ଉପସ୍ଥାପନ କରିଛନ୍ତି "ପାରାଦୀପ ଓ ପର୍ଯ୍ୟଟନ ... ।"*

ମାନବ ନିଜର ଜ୍ଞାନ ବର୍ଦ୍ଧନ କରିବା ସହ ମନୋରଞ୍ଜନ ନିମିତ୍ତ ଯେଉଁ କେତେକ ସାଧନ ରହିଛି, ତନ୍ମଧ୍ୟରୁ ପର୍ଯ୍ୟଟନ ହିଁ ଶ୍ରେଷ୍ଠ । ବିଜ୍ଞବ୍ୟକ୍ତିମାନଙ୍କ ଦୃଷ୍ଟିରେ ମାନବ ନିଜର ଗୃହର ପରିଧିରୁ ବାହାରକୁ ଗଲେ ହିଁ ସାମାଜିକ ଶିକ୍ଷାଲାଭ କରିପାରିବ । ସମଗ୍ର ବିଶ୍ୱରେ ପର୍ଯ୍ୟଟନର ବିଶେଷ ଭୂମିକା ରହିଛି । ଅଧୁନା ସମଗ୍ର ବିଶ୍ୱରେ ପର୍ଯ୍ୟଟନ କେବଳ ଯାତ୍ରାରେ ସୀମିତ ନ ରହି, ବୃହତ ଶିଳ୍ପରେ ପରିଣତ ହୋଇଛି ।

ଓଡ଼ିଶାର ବିଭିନ୍ନ ପର୍ଯ୍ୟଟନ କ୍ଷେତ୍ର ମଧ୍ୟରୁ ପାରାଦ୍ୱୀପ ଉଚ୍ଚସ୍ତରୀୟ ମାନ୍ୟତା ଲାଭ କରି ଅଗ୍ରଗାମୀ ହୋଇଛି । ପର୍ଯ୍ୟଟନବିତ୍‌ମାନେ ପର୍ଯ୍ୟଟନକୁ ବିଭିନ୍ନ ଭାଗରେ ବିଭକ୍ତ କରିଛନ୍ତି । ଯଥା –

୧) ଧାର୍ମିକ, ୨) ପ୍ରାକୃତିକ, ୩) ରାଜନୈତିକ, ୪) ଶିଳ୍ପକଳା,

୫) ଶିଳ୍ପ ଏବଂ ମନୋରଞ୍ଜନ, ୬) ସାଂସ୍କୃତିକ

ଓଡ଼ିଶାରେ ଏହି ସମସ୍ତ ପ୍ରକାର ପର୍ଯ୍ୟଟନର ଭିତ୍ତିଭୂମି ରହିଛି । ପାରାଦ୍ୱୀପରେ ବିଶେଷ ଭାବରେ ଧାର୍ମିକ, ପ୍ରାକୃତିକ, ଶିଳ୍ପଭିତ୍ତିକ, ସାଂସ୍କୃତିକ ଓ ମନୋରଞ୍ଜନଧର୍ମୀ ପର୍ଯ୍ୟଟନର ସୁଯୋଗ ରହିଛି ।

ଆଧୁନିକ ପାରାଦ୍ୱୀପ ସହର ସୃଷ୍ଟି ହେବା ପୂର୍ବରୁ ଏହି ଅଞ୍ଚଳର ନାମ ପାରାଦ୍ୱୀପ ଥିଲା । ଘନ ବନାନୀ ମଧ୍ୟରେ କଳିଙ୍ଗ ସାଗର ଓ ମହାନଦୀର ସଙ୍ଗମ ସ୍ଥଳରେ ତପସ୍ୱୀ ପରାଶର ତପ କରିଥିଲେ ଓ ଏହିଠାରେ କୈବର୍ତ୍ତ କନ୍ୟା ମତ୍ସ୍ୟଗନ୍ଧାଙ୍କ ସହିତ ତାଙ୍କର ସଂପର୍କ ହୋଇଥିଲା । ପ୍ରସିଦ୍ଧ ପୁରାଣକାର ବ୍ୟାସଦେବ ପାରାଦ୍ୱୀପରେ ଜନ୍ମଗ୍ରହଣ କରିଥିଲେ । ଏବେ ସୁଦ୍ଧା ପରାଶର ମୁନିଙ୍କ ଆଶ୍ରମର ଅବଶେଷ ବନ୍ଦର ନଗରୀରେ ରହିଅଛି ।

ପୌରାଣିକ ଦୃଷ୍ଟିରୁ ପର୍ଯ୍ୟଟନର ମାନ୍ୟତା କେବଳ ଖ୍ରୀଷ୍ଟପୂର୍ବ ସମୟରେ ନୁହେଁ, ତାହାପରେ ମଧ୍ୟ ପାରାଦ୍ୱୀପ ପରେ ବିକଶିତ ହୋଇଛି। ପାରାଦ୍ୱୀପ ଉପକଣ୍ଠରେ ଥିବା ପ୍ରସିଦ୍ଧ ଧର୍ମକ୍ଷେତ୍ର ଉଦୟବଟ ସନ୍ଥ ରାଜୀବ ଲୋଚନ ଦାସଙ୍କ ଦ୍ୱାରା ବିସ୍ତୃତ ଭାବରେ ବର୍ଣ୍ଣିତ ହୋଇଛି। ସ୍ୱର୍ଗର ଦେବତାମାନେ ପ୍ରତିଦିନ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବାପାଇଁ ସ୍ୱର୍ଗରୁ ଉଦୟବଟରେ ପହଞ୍ଚି ଶ୍ରୀକ୍ଷେତ୍ରକୁ ଯାତ୍ରା କରନ୍ତି ବୋଲି ଜନଶ୍ରୁତି ରହିଛି। ପାରାଦ୍ୱୀପ ଗଡ଼ରେ ଅବସ୍ଥିତ ଲୋକନାଥ ମନ୍ଦିର ବୌଦ୍ଧ ଓ ଶୈବ ଚେତନାର ମିଳିତ ପର୍ଯ୍ୟଟନ ସ୍ଥଳ। ଏକ ହସ୍ତୀର ଆକାର ରୂପକ ମନ୍ଦିର ନିର୍ମାଣ ବହୁ ପର୍ଯ୍ୟଟକଙ୍କୁ ଆକର୍ଷିତ କରିଥାଏ। ବୌଦ୍ଧଧର୍ମର ଅବଲୋକିତେଶ୍ୱର ମୂର୍ତ୍ତିକୁ ଶିବ ଭାବରେ ଏହି ମନ୍ଦିରରେ ଆରାଧନା କରାଯାଏ। ପାରାଦ୍ୱୀପଗଡ଼ ନିକଟ ଅମୁହାଁ ଦେଉଳର ତାପର୍ଯ୍ୟ ପଞ୍ଚସଖାଙ୍କ ରଚିତ ମାଳିକାରେ ସୂଚିତ ହୋଇଛି। ଏହି ମନ୍ଦିରରେ ବାରହାତ ଲମ୍ବ ଖଡ୍ଗ ଲୁକ୍କାୟିତ ଭାବରେ ରହିଥିବାର ବିଶ୍ୱାସ ସ୍ଥାନୀୟ ଜନତାଙ୍କ ଚିତ୍ତରେ ରହିଛି ଓ କଲ୍‌କୀ ଅବତାର ଧାରଣ ବେଳେ ଶ୍ରୀଜଗନ୍ନାଥ ଏହି ଖଡ୍ଗକୁ ବ୍ୟବହାର କରିବେ ବୋଲି ଦୃଢ଼ ମତ ରହିଛି। ସ୍ୱାଧୀନତା ସଂଗ୍ରାମ ବେଳେ କୁଜଙ୍ଗ ରାଜଜେମା ରତ୍ନମାଳୀ ଜେମାଙ୍କ ନେତୃତ୍ୱରେ ଏହି ମନ୍ଦିରକୁ ହରିଜନମାନେ ପ୍ରବେଶ କରି ଆରାଧନା କରିଥିଲେ।

ପାରାଦ୍ୱୀପ ସହରର ମଧୁବନ ଠାରେ ପ୍ରସିଦ୍ଧ କଲ୍‌କୀ ଅବତାରୀ ଜଗନ୍ନାଥ ମନ୍ଦିର ରହିଛି। ଶ୍ରୀ ଜଗନ୍ନାଥଙ୍କର ସର୍ବଧର୍ମ ସମନ୍ୱୟ ସ୍ତମ୍ଭ ରହିଛି। ଏହି ସ୍ତମ୍ଭର ଊର୍ଦ୍ଧ୍ୱରେ ସନାତନ ଧର୍ମ, ଇସଲାମ୍ ଧର୍ମ, ଜୋରେଷ୍ଟିଆନ୍ ଧର୍ମ, ଖ୍ରୀଷ୍ଟଧର୍ମ ଓ ବୌଦ୍ଧଧର୍ମର ଚିହ୍ନ ରହିଛି। ଏହି ମନ୍ଦିରରେ ଯେକୌଣସି ଧର୍ମର ବ୍ୟକ୍ତି ନିର୍ବିଘ୍ନରେ ମନ୍ଦିର ମଧ୍ୟକୁ ପ୍ରବେଶ କରି ଶ୍ରୀ ଜଗନ୍ନାଥ, ଶ୍ରୀ ବଳଭଦ୍ର, ଶ୍ରୀ ସୁଭଦ୍ରା ଓ ଶ୍ରୀ ସୁଦର୍ଶନଙ୍କର ପୂଜା-ଅର୍ଚ୍ଚନା କରିପାରିବେ।

ଶ୍ରୀକ୍ଷେତ୍ରରେ ମନ୍ଦିର ମଧ୍ୟକୁ ପ୍ରବେଶ କରିବାର ସୁଯୋଗ ପାଉ ନ ଥିବା ବିଦେଶୀ ନାବିକମାନେ ଏହି ମନ୍ଦିରରେ ପ୍ରବେଶ କରି ଚତୁର୍ଦ୍ଧାମୂରତିଙ୍କର ଦର୍ଶନ ଲାଭ କରିବାର ସୁଯୋଗ ପାଇ ଆସୁଛନ୍ତି। ଜଗତର ନାଥ ଜଗନ୍ନାଥଙ୍କର ନାମର ସାର୍ଥକତା ପାରାଦ୍ୱୀପ ଜଗନ୍ନାଥ ମନ୍ଦିରରେ ପ୍ରମାଣିତ ହୋଇଛି।

ପାରାଦ୍ୱୀପ ଜଗନ୍ନାଥ ମନ୍ଦିର ମଧ୍ୟରେ କଲ୍‌କୀ ଓ ଅନନ୍ତଙ୍କର ସ୍ୱତନ୍ତ୍ର ମନ୍ଦିର ରହିଛି। ଏହି ମନ୍ଦିରର ଶିଖର ଦେଶରେ ନୀଳଧବଳ ପତାକା ସ୍ଥାନ ପାଇଛି। ମାଳିକାକାରଙ୍କ ରଚନା ଅନୁଯାୟୀ ଯେବେ କଲ୍‌କୀ ମନ୍ଦିରରେ ନୀଳଧବଳ ପତାକା ଶୋଭା ପାଇବ, ସେହି ସମୟରୁ ଜଗନ୍ନାଥ ମହାପ୍ରଭୁ କଲ୍‌କୀ ଅବତାର ଗ୍ରହଣ କରି ମ୍ଳେଚ୍ଛ ସଂହାର କରିବେ।

ପାରାଦ୍ୱୀପ ନିକଟରେ ତଥା ପଚାଶ କି.ମି. ପରିଧି ମଧ୍ୟରେ ପ୍ରସିଦ୍ଧ ରାମଚଣ୍ଡୀ ମନ୍ଦିର, ଶାରଳା ମନ୍ଦିର, ବଳଦେବଜୀଉ ମନ୍ଦିର, ଗୋରଖନାଥ, ଗୋଜବାୟଣୀ, ଓଳାଶୁଣୀ, ବୌଦ୍ଧକୀର୍ତ୍ତି, ଲଳିତଗିରି, ରତ୍ନଗିରି ରହିଅଛି। ଏହି ସମସ୍ତ ଧାର୍ମିକସ୍ଥଳ ପରିଦର୍ଶନ କରିବା ପାଇଁ ପ୍ରତ୍ୟେକ ଦିନ ସହସ୍ରାଧିକ ଯାତ୍ରୀ ପରିଭ୍ରମଣ କରିଥା'ନ୍ତି।

ପ୍ରାକୃତିକ ପର୍ଯ୍ୟଟନ ଦୃଷ୍ଟିରୁ ପାରାଦ୍ୱୀପ ଅଞ୍ଚଳରେ ତୁଳନା ନାହିଁ। ପାରାଦ୍ୱୀପଠାରେ ମଧୁବନଠାରୁ ଜଟାଧାରୀ ମୁହାଣ ପର୍ଯ୍ୟନ୍ତ ଦଶ କି.ମି. ବ୍ୟାପୀ ବିସ୍ତୃତ ବେଳାଭୂମି ରହିଛି। ଏହି ବେଳାଭୂମିର ପ୍ରସ୍ଥ ଅଧ କି.ମି.ଠାରୁ ଅଧିକ। ସମଗ୍ର ଭାରତବର୍ଷରେ ଏତେ ବିସ୍ତୃତ ବେଳାଭୂମି ନାହିଁ। ବଙ୍ଗୋପସାଗର ଓ ମହାନଦୀର

ସଙ୍ଗମସ୍ଥଳକୁ ପ୍ରାକୃତିକ ଦୃଶ୍ୟାବଳୀର ଗନ୍ତାଘର କହିଲେ ଅତ୍ୟୁକ୍ତି ହେବନାହିଁ । ଏହି ସ୍ଥଳରେ ରମଣୀୟ ସୂର୍ଯ୍ୟୋଦୟ ଓ ସନ୍ଧ୍ୟା ସମୟରେ ଓଡ଼ିଶାର ସର୍ବପ୍ରାଚୀନ ବତୀଘରର ଆଲୋକ ପର୍ଯ୍ୟଟକମାନଙ୍କୁ ଆକର୍ଷିତ କରିଆସୁଛି । ପାରାଦ୍ୱୀପ ବନ୍ଦର କର୍ତ୍ତୃପକ୍ଷ ନିକଟରେ 'ମନ୍ନଦ' ଉଦ୍ୟାନ ନାମକ ଉନ୍ନତ ପର୍ଯ୍ୟଟନସ୍ଥଳୀ ସୃଷ୍ଟି କରି ଅଗଣିତ ପର୍ଯ୍ୟଟକମାନଙ୍କୁ ଜଳ, ଆଲୋକ, ରନ୍ଧନସ୍ଥଳ ଓ ବିଶ୍ରାମର ସୁବିଧାସୁଯୋଗ ଯୋଗାଇ ଦେଇଛନ୍ତି । ମନ୍ନଦ ଉଦ୍ୟାନରେ ମହିଳାମାନଙ୍କ ଦ୍ୱାରା ପରିଚାଳିତ ଭୋଜନାଳୟ ପର୍ଯ୍ୟଟକମାନଙ୍କ ଦ୍ୱାରା ଆଦୃତ ହୋଇପାରିଛି ।

ପାରାଦ୍ୱୀପଠାରେ ମହାନଦୀ ନିକଟରେ ସୁନ୍ଦର ଲୁଣା ଜଙ୍ଗଲ ଜାତୀୟ ବିଭିନ୍ନ ବୃକ୍ଷ ପର୍ଯ୍ୟଟକଙ୍କୁ ଆମୋଦିତ କରିଥାଏ । ବିଶେଷତଃ ବିଭିନ୍ନ ରଙ୍ଗର ପୁଷ୍ପରାଜି ସେହି ବନସ୍ଥଳିକୁ ଅଧିକ ଉପାଣିତ କରିଥାଏ । ଧ୍ୱଂସ ପାଇ ଯାଉଥିବା ଲୁଣା ଜଙ୍ଗଲ ଜାତୀୟ ବୃକ୍ଷରାଜିକୁ ସଂରକ୍ଷିତ କରିବାରେ ପାରାଦ୍ୱୀପ ବନ୍ଦର କର୍ତ୍ତୃପକ୍ଷ ବଳିଷ୍ଠ ପଦକ୍ଷେପ ନେଇଛନ୍ତି । ପାରାଦ୍ୱୀପର ମଧୁବନ ଠାରେ ୧୯୯୯ ମସିହା ମହାବାତ୍ୟାରେ ଜୀବନ ହରାଇଥିବା ବ୍ୟକ୍ତିଙ୍କର ସ୍ମୃତିରେ ପ୍ରତିଷ୍ଠିତ ସ୍ମୃତି ଉଦ୍ୟାନ ଏକ ରମଣୀୟ ସ୍ଥଳୀ । ଏହି ଉଦ୍ୟାନରେ ସ୍ଥାନ ପାଇଥିବା ସ୍ଥଳ, ଜଳ ଓ ବାୟୁର ସମନ୍ୱୟରୂପୀ ପ୍ରସ୍ତର ମୂର୍ତ୍ତି ପର୍ଯ୍ୟଟକମାନଙ୍କୁ ବିମୋହିତ କରେ ।



ଶିଳ୍ପକଳା ପର୍ଯ୍ୟଟନ ଦୃଷ୍ଟିରୁ ପାରାଦ୍ୱୀପ ବନ୍ଦର ଏକ ଉନ୍ନତ ପର୍ଯ୍ୟଟନସ୍ଥଳୀ । ପାରାଦ୍ୱୀପର ଉପକଣ୍ଠରେ ଅଠରବାଙ୍କି ପ୍ରବେଶ ପଥରେ ପ୍ରସ୍ତରନିର୍ମିତ ମୁଖଶାଳା ବିଭିନ୍ନ କାରୁକାର୍ଯ୍ୟରେ ଶ୍ରୀମଣ୍ଡିତ ହୋଇଛି । ବନ୍ଦରର ନିଷିଦ୍ଧାଞ୍ଚଳର ତୃତୀୟ ପ୍ରବେଶ ପଥ ପ୍ରସ୍ତର ନିର୍ମିତ ଦୁର୍ଗର ରୂପରେଖ ବହନ କରୁଛି । ଏହା ବ୍ୟତୀତ ଅଠରବାଙ୍କିର ସ୍ୱର୍ଗତ ବିଜୁ ପଟ୍ଟନାୟକଙ୍କ ପ୍ରତିମୂର୍ତ୍ତି, ବଡ଼ପଡ଼ିଆ ନିକଟସ୍ଥ ସ୍ୱର୍ଗତ ପଣ୍ଡିତ ଜବାହରଲାଲ ନେହରୁ, ସ୍ୱର୍ଗତ ସୁବାଷ ବୋଷ ଓ ଭୀମରାଓ ଆମ୍ବେଦକରଙ୍କ ପ୍ରତିମୂର୍ତ୍ତି ପର୍ଯ୍ୟଟକମାନଙ୍କୁ ବହୁ ଭାବରେ ଆକର୍ଷିତ କରିଆସୁଅଛି । ପାରାଦ୍ୱୀପ ତପୋବନ ଅଞ୍ଚଳ ନିକଟରେ ସୁଶୋଭିତ ବୋଇତର ପ୍ରସ୍ତର ନିର୍ମିତ ମୂର୍ତ୍ତି ଉପେନ୍ଦ୍ର ଭଞ୍ଜଙ୍କ ରଚନାର "ବୋଇତ ଲାଗିଲା ଯାଇ ସିଂହଳ ଦ୍ୱୀପରେ" ର ସ୍ମୃତିଚାରଣ କରେ ।

ଆଧୁନିକ ଶିଳ୍ପ କଳାର ନମୁନାସଦୃଶ ଜାହାଜ ଲଙ୍ଗର ଆକୃତିର ପ୍ରଶାସନିକ ଭବନ ଓଡ଼ିଶାର ସର୍ବପ୍ରଥମ ଛଅ ମହଲା ବିଶିଷ୍ଟ ବାସଭବନ ଓ ମନୋରମ ଜବାହର ଅତିଥି ଭବନ ପର୍ଯ୍ୟଟକମାନଙ୍କୁ ଆନନ୍ଦ ପ୍ରଦାନ କରିଥାଏ । ବିଶେଷତଃ ଜବାହର ଅତିଥି ଭବନ ସମ୍ମୁଖରେ ନିର୍ମିତ ସମୁଦ୍ର କୂଳରେ ମହୋଦଧି ମଣ୍ଡପ ପର୍ଯ୍ୟଟକମାନଙ୍କର ଅନ୍ୟତମ ଆକର୍ଷଣ ସ୍ଥଳୀ । ଏଠାରୁ ସୁଦୂର ସମୁଦ୍ର ମଧ୍ୟରେ

ଅପେକ୍ଷାରତ ଜାହାଜ ଓ ମାଛଧରା ନୌକାଗୁଡ଼ିକର ଦୃଶ୍ୟ ଉପଭୋଗ କରାଯାଇଥାଏ । ବିଶେଷତଃ ରାତ୍ରି କାଳରେ ସମୁଦ୍ର ମଧ୍ୟରେ ବନ୍ଦର ମଧ୍ୟକୁ ପ୍ରବେଶ କରିବା ନିମିତ୍ତ ଅପେକ୍ଷା କରି ରହିଥିବା ଜାହାଜଗୁଡ଼ିକର ଆଲୋକମାଳାର ଦୃଶ୍ୟ ଅତି ମନୋରମ ।

ପାରାଦ୍ୱୀପ ବନ୍ଦରର ଉତ୍ତର-ପୂର୍ବ ଦିଗରେ ସାତ କିଲୋମିଟର ବ୍ୟାପୀ ଲହଡ଼ି ରୋକା ପଥର ବନ୍ଧ ପୌରାଣିକ ଯୁଗର ସେତୁବନ୍ଧ ନିର୍ମାଣର ସ୍ମୃତିକୁ ଉଜ୍ଜୀବିତ କରେ । ବିଶେଷତଃ ପ୍ରଶସ୍ତ ଲହଡ଼ିରୋକା ବନ୍ଧ ଉପରୁ ସମୁଦ୍ରର ଉଚ୍ଚ ଲହଡ଼ିଗୁଡ଼ିକୁ ନିରୀକ୍ଷଣ କରିବାର ଆନନ୍ଦ ଅନୁଭବ ନ କଲେ ପ୍ରକାଶ କରିହେବ ନାହିଁ । ମହାନଦୀ ଓ ବଙ୍ଗୋପସାଗରର ସଙ୍ଗମ ସ୍ଥଳରେ ତିନି ରଙ୍ଗର ଜଳରାଶିକୁ ନିରୀକ୍ଷଣ କରିବାର ସୁଯୋଗ ପାରାଦ୍ୱୀପରେ ରହିଛି ।

ଆଧୁନିକ ଯୁଗରେ ଶିଳ୍ପ ପର୍ଯ୍ୟଟନର ପ୍ରାଧାନ୍ୟ ଅଧିକ ହୋଇଛି । ପାରାଦ୍ୱୀପ ସହରର ଶିଳ୍ପଭିତ୍ତିକ ପର୍ଯ୍ୟଟନକୁ ତିନୋଟି ଭାଗରେ ବିଭକ୍ତ କରାଯାଇପାରେ, ଯଥା –

୧. ବନ୍ଦରରେ ବୃହତ ଜାହାଜ ପରିଦର୍ଶନ

୨. ବୃହତ ସାର କାରଖାନା ପରିଦର୍ଶନ

୩. ଜାହାଜଭିତ୍ତିକ ଶିଳ୍ପ ପରିଦର୍ଶନ

ଓଡ଼ିଶା, ବିହାର, ମଧ୍ୟପ୍ରଦେଶର କୌଣସି ବ୍ୟକ୍ତି ବୃହତ୍ତ ଜାହାଜକୁ ନିକଟରୁ ଦେଖିବାକୁ ଚାହିଁଲେ ନିକଟତମ ପାରାଦ୍ୱୀପ ବନ୍ଦରକୁ ଆସିବାକୁ ହେବ । ସାରା ଭାରତର ଅନ୍ୟ ବନ୍ଦରକୁ ଯେଉଁ ବୃହତ୍‌କାୟ ଜାହାଜଗୁଡ଼ିକ ପ୍ରବେଶ କରିପାରିବ ନାହିଁ, ସେସବୁ ଜାହାଜ ପାରାଦ୍ୱୀପ ବନ୍ଦରର ଅଧିକ ପ୍ରାକୃତିକ ଗଭୀରତା ଯୋଗୁ ସହଜରେ ପ୍ରବେଶ କରିପାରିବ । ଜାହାଜ ପରିଦର୍ଶନ ତଥା ବନ୍ଦରାଞ୍ଚଳର ଲୌହପଥର ଉତ୍ତୋଳନ ଯନ୍ତ୍ର, କୋଇଲା ଉତ୍ତୋଳନ ଯନ୍ତ୍ର, ରେଳଡବା ଓଲଟାଉଥିବା ଯନ୍ତ୍ର ପ୍ରଭୃତି କେବଳ ପାରାଦ୍ୱୀପରେ ହିଁ ଦେଖିବାର ସୁଯୋଗ ପର୍ଯ୍ୟଟକମାନେ ପାଇଥା'ନ୍ତି । ପର୍ଯ୍ୟଟକମାନଙ୍କର ସୁବିଧା ନିମିତ୍ତ ପାରାଦ୍ୱୀପ ବନ୍ଦର କର୍ତ୍ତୃପକ୍ଷଙ୍କ ଦ୍ୱାରା 'ପାରାଦ୍ୱୀପ ଦର୍ଶନ' ନାମକ ବସ୍ ଚଳାଚଳର ବ୍ୟବସ୍ଥା ଚତୁର୍ଥ ନିଷିଦ୍ଧାଞ୍ଚଳ ପ୍ରବେଶ ଦ୍ୱାର ନିକଟରେ କରାଯାଇଛି ।

ପାରାଦ୍ୱୀପ ବନ୍ଦରରେ ଚଉଦଟି ଜାହାଜ ଆଶ୍ରୟସ୍ଥଳ ଥିବାବେଳେ କୋଡ଼ିଏଟି ଜାହାଜ ଏକ ସମୟରେ ବନ୍ଦର ମଧ୍ୟରେ ଆଶ୍ରୟ ନେଇପାରିବେ । ଏଭଳି ଦୃଶ୍ୟ ଭାରତର ଅନ୍ୟ ବନ୍ଦର ଗୁଡ଼ିକରେ ବିରଳ । ଭାରତର ଅନ୍ୟ ବନ୍ଦରରେ ପୃଥକ୍ ସ୍ଥଳରେ ଜାହାଜ ଆଶ୍ରୟ ସ୍ଥଳ ଥିବାବଳେ ପାରାଦ୍ୱୀପରେ ଗୋଟିଏ ଅଞ୍ଚଳରେ କ୍ରମାଗତ ସମସ୍ତ ଜାହାଜର ଆଶ୍ରୟସ୍ଥଳ ରହିଛି ।

ପାରାଦୀପ ମଧୁବନର ସମୁଦ୍ର କୂଳରେ ନିର୍ମିତ ବତୀଘର, ସମୁଦ୍ର ମଧ୍ୟରେ ଜାହାଜଗୁଡ଼ିକୁ ବନ୍ଦରର ଅବସ୍ଥିତି ସଂପର୍କରେ ସୂଚନା ଦେଇଥାଏ । ଜାହାଜଗୁଡ଼ିକର ବନ୍ଦର ମଧ୍ୟକୁ ପ୍ରବେଶ ଓ ପ୍ରସ୍ଥାନର ଦୃଶ୍ୟ ଚିତ୍ତାକର୍ଷକ । ବନ୍ଦରର ଉଚ୍ଚଶକ୍ତି ସମ୍ପନ୍ନ ପୋତଦ୍ୱାରା ବୃହତକାୟ ଜାହାଜକୁ ନିୟନ୍ତ୍ରଣ କରାଯାଇ, ସଠିକ୍ ସାମୁଦ୍ରିକ ପଥରେ ଚଳାଇ ନେବାର ଦୃଶ୍ୟ ଶିକ୍ଷାପ୍ରଦ ଓ ଚିତ୍ତାକର୍ଷକ ।

ବନ୍ଦର ନିକଟରେ ଭାରତୀୟ କୃଷକ ସାର ସମବାୟ ସଂସ୍ଥା (ଇଫ୍‌କୋ) ଓ ପାରାଦ୍ୱୀପ ସାର କାରଖାନା ସଂସ୍ଥା (ପିପିଏଲ୍‌) ଆମ ଦେଶର ଅନ୍ୟତମ ବୃହତ୍ ସାର ଉତ୍ପାଦନକାରୀ ସଂସ୍ଥା। ପର୍ଯ୍ୟଟକମାନେ ପୂର୍ବରୁ ଅନୁମତି ନେଇ ଏହି ବୃହତ ଶିଳ୍ପାଞ୍ଚଳକୁ ଭ୍ରମଣ କରି ସାର ଉତ୍ପାଦନର ପଦ୍ଧତି ଜାଣିପାରୁଛନ୍ତି। ସାର ଉତ୍ପାଦନ ଶିଳ୍ପ ବ୍ୟତୀତ, ଖାଇବା ତେଲ ବିଶୋଧନ କେନ୍ଦ୍ର, କାରଗିଲ୍ ସଂସ୍ଥା ଦ୍ୱାରା ପାରାଦ୍ୱୀପରେ ପ୍ରତିଷ୍ଠିତ ହୋଇଛି। ଏହା ବ୍ୟତୀତ ତୈଳ ଗଚ୍ଛିତ କରି ରଖିବା ନିମିତ୍ତ ବୃହତ ସଂଗ୍ରହ ପରିସର ପର୍ଯ୍ୟଟକମାନଙ୍କୁ ପ୍ରମୋଦିତ କରିଥାଏ। ପାରାଦ୍ୱୀପର ତୈଳ ବିଶୋଧନାଗାରର ନିର୍ମାଣ କାର୍ଯ୍ୟ ଶେଷ ହେଲେ ବହୁ ବନ୍ଦରଭିତ୍ତିକ ଶିଳ୍ପ ପରିଦର୍ଶନ କରିବାର ସୁଯୋଗ ପର୍ଯ୍ୟଟକମାନେ ଲାଭ କରିବେ।

ସମଗ୍ର ଓଡ଼ିଶାରେ ପାରାଦ୍ୱୀପ ବୃହତ୍ତମ ମନୋରଞ୍ଜନ ସ୍ଥଳ। ଏଠାରେ କଣ୍ଟିଇନ୍ ଆଣ୍ଡ ସୁଟ୍‌ସ, ଗୋଲ୍‌ଡେନ୍ ଆଙ୍କର, ହୋଟେଲ୍ ଆରିଷ୍ଟୋକେଟ୍, ପାରାଦ୍ୱୀପ ଇଣ୍ଟର ନ୍ୟାସନାଲ୍, ଜବାହର ଅତିଥି ଭବନ ପର୍ଯ୍ୟଟକମାନଙ୍କର ରହଣି ନିମିତ୍ତ ରହିଛି। ଏହା ବ୍ୟତୀତ ପାରାଦ୍ୱୀପ ଉପକଣ୍ଠରେ ଶ୍ରୀପାର୍ ଇନ୍ ହୋଟେଲ୍, ଶ୍ରୀ ରେସିଡେନ୍‌ସିରେ ପର୍ଯ୍ୟଟନମାନଙ୍କର ଆନନ୍ଦମୟ ରହଣି ସହିତ ବିଭିନ୍ନ ମନୋରଞ୍ଜନର ବ୍ୟବସ୍ଥା ରହିଛି। ଏହା ବ୍ୟତୀତ ପର୍ଯ୍ୟଟକମାନଙ୍କର ଅବସ୍ଥାନ ନିର୍ମିତ ରାଜ୍ୟ ସରକାରଙ୍କର ପାନ୍ଥନିବାସ ଓ ଭ୍ରାମ୍ୟମାଣ ଅତିଥି ଭବନ ରହିଛି। ପାରାଦ୍ୱୀପ ବନ୍ଦର କର୍ତ୍ତୃପକ୍ଷଙ୍କ ଦ୍ୱାରା ନିର୍ମିତ ନୌବାଣିଜ୍ୟିକ ସଂଗ୍ରହାଳୟ ଏକ ଯୁଗାନ୍ତକାରୀ ପଦକ୍ଷେପ। ମଧୁବନରେ ଅବସ୍ଥିତ ଏହି ନୌବାଣିଜ୍ୟିକ ସଂଗ୍ରହାଳୟରେ ସାତଟି ବୃହତ ପ୍ରକୋଷ୍ଠରେ ପ୍ରାଚୀନ ଓ ଆଧୁନିକ ନୌବାଣିଜ୍ୟକୁ ଭିତ୍ତିକରି ବହୁ ଦର୍ଶନୀୟ ପଦାର୍ଥ, ଚିତ୍ର ଓ ଶିଳ୍ପକଳା ରହିଛି। ବିଶେଷତଃ କଳିଙ୍ଗ ସାଧବମାନଙ୍କର ପ୍ରାଚୀନ ହଂସମୁଖୀ ଓ ବ୍ୟାଘ୍ରମୁଖୀ ବୃହତ ବୋଇତର ପ୍ରତିକୃତି ଓ ବିଭିନ୍ନ ବୋଇତର ଚିତ୍ର ଦର୍ଶକମାନଙ୍କୁ ବହୁଭାବରେ ଆକର୍ଷିତ କରିଥାଏ। ଉତ୍କଳର ସମସ୍ତ ପ୍ରାଚୀନ





ବନ୍ଦରର ଅବସ୍ଥିତି ଓ ଇତିହାସ ସଂପର୍କରେ ସୂଚନା ଏହି ସଂଗ୍ରାହଳୟର ସ୍ଥାନ ଲାଭ କରିଛି । ଆଧୁନିକ ପାରାଦ୍ୱୀପ ବନ୍ଦରର ଅବସ୍ଥିତି, ବିଭିନ୍ନ ଯନ୍ତ୍ରପାତିର ନମୁନା ଓ ବିଭିନ୍ନ ପଣ୍ୟଦ୍ରବ୍ୟ ପ୍ରଦର୍ଶନ ଏହି ସଂଗ୍ରହାଳୟର ମୁଖ୍ୟ ଆକର୍ଷଣ । ଏହା ବ୍ୟତୀତ ଭାରତୀୟ ନୌବାହିନୀର ଗୋଟିଏ ପ୍ରକୋଷ୍ଠ ଓ ଭାରତୀୟ ତଟରକ୍ଷୀ ବାହିନୀର ଗୋଟିଏ ପ୍ରକୋଷ୍ଠରେ ବହୁ ଅତ୍ୟାଧୁନିକ ନୌ-ସମର ଯନ୍ତ୍ରପାତି, ଚିତ୍ର ଓ ପୋଷାକ ସ୍ଥାନ ପାଇଛି ।



ସମୁଦ୍ର ତଟରେ ଥିବା ବତୀଘର ନିକଟରେ ଜଳଜୀବ ସଂଗ୍ରହାଳୟ ପାରାଦ୍ୱୀପ ବନ୍ଦର କର୍ତ୍ତୃପକ୍ଷଙ୍କ ଅନ୍ୟତମ ପର୍ଯ୍ୟଟନ ଭିତ୍ତିକ ଉପହାର । ଏହି ସଂଗ୍ରହାଳୟରେ ଅଠେଇଶଟି ଜଳଜୀବ ପ୍ରକୋଷ୍ଠରେ ବିଶ୍ୱର ସୁନିର୍ବାଚିତ ଲବଣ ଜଳ ଓ ମଧୁର ଜଳର ମତ୍ସ୍ୟ ଓ ଜଳଜୀବନକୁ ସଂଗ୍ରହ କରି ରଖାଯାଇଛି । ଅଧୁନା ସମଗ୍ର ଭାରତରେ ପାରାଦ୍ୱୀପ ଜଳଜୀବ ସଂଗ୍ରହାଳୟ ହିଁ ସର୍ବବୃହତ୍ ସଂଗ୍ରାହଳୟ । ପ୍ରତିଦିନ ସହସ୍ରାଧିକ ପର୍ଯ୍ୟଟକ ବିସ୍ତୃତ ବେଳାଭୂମିର ଆନନ୍ଦ ନେବା ସହିତ ଜଳଜୀବ ସଂଗ୍ରହାଳୟକୁ ପରିଦର୍ଶନ କରି ଆନନ୍ଦ ଓ ଜ୍ଞାନଲାଭ କରୁଛନ୍ତି ।

ସାଂସ୍କୃତିକ ପର୍ଯ୍ୟଟନ ଦୃଷ୍ଟିରୁ ପାରାଦ୍ୱୀପର ତୁଳନା ନାହିଁ । ପ୍ରତ୍ୟେକ ବର୍ଷ ବିଶ୍ୱକର୍ମା ପୂଜା ଅବସରରେ ଲକ୍ଷାଧିକ ଲୋକ ସପ୍ତାହବ୍ୟାପୀ ବିଶ୍ୱକର୍ମା ପୂଜା ଅବଲୋକନ କରିବା ପାଇଁ ପାରାଦ୍ୱୀପ ଆସିଥାନ୍ତି । ଉନ୍ନତ ଆଲୋକସଜା, ମଣ୍ଡସଜା ଓ ମଞ୍ଚକଳା ଦୃଷ୍ଟିରୁ ଓଡ଼ିଶାର ଅନ୍ୟତମ ଉନ୍ନତ ଯାତ୍ରାଭାବରେ ଏହାକୁ ଗ୍ରହଣ କରାଯାଏ । ପ୍ରତ୍ୟେକ ବର୍ଷ କାର୍ତ୍ତିକ ପୂର୍ଣ୍ଣମୀ ଦିନ ବନ୍ଦର କର୍ତ୍ତୃପକ୍ଷଙ୍କ ଦ୍ୱାରା ବୋଇତବନ୍ଦାଣ ଉତ୍ସବ ପାଳନ କରାଯାଇଥାଏ । ଏକ ସୁଶୋଭିତ ସାଧବମଣ୍ଡିତ ବୋଇତର ବନ୍ଦାଣ ଓ ସାଗରବକ୍ଷରେ ନୌଚାଳନା ଉତ୍କଳର ନୌବାଣିଜ୍ୟିକ ପ୍ରସିଦ୍ଧିର ସ୍ମୃତିଚାରଣ କରିଥାଏ । ପାରାଦ୍ୱୀପ ବେଳାଭୂମିରେ ରାଜ୍ୟ ସରକାରଙ୍କ ଦ୍ୱାରା ପ୍ରତ୍ୟେକ ବର୍ଷ ଆୟୋଜିତ ସପ୍ତାହବ୍ୟାପୀ କଳିଙ୍ଗ ବାଲିଯାତ୍ରା ମହୋତ୍ସବ ଅତି ରମଣୀୟ । ସୁଦୀର୍ଘ ବେଳାଭୂମିର ବିଜୁ ମଇଦାନରେ ଏହି ଯାତ୍ରା, କେବଳ ବାଣିଜ୍ୟ ଦୃଷ୍ଟିରୁ ନୁହେଁ, ସଙ୍ଗୀତ ଓ ନୃତ୍ୟକଳା ଦୃଷ୍ଟିରୁ ପ୍ରସିଦ୍ଧି ଲାଭ କରିଛି । ବହୁ ସ୍ୱନାମଧନ୍ୟ ରାଜ୍ୟସ୍ତରୀୟ ଶିଳ୍ପୀମାନେ ଲୋକକଳା ଓ ଆଧୁନିକ କଳା ପ୍ରଦର୍ଶନ କରିବାର ସୁଯୋଗ ହିଁ କଳିଙ୍ଗ ବାଲିଯାତ୍ରାରେ ଲାଭ କରିଥାନ୍ତି । ବିଭିନ୍ନ ଦିବସରେ ନିମନ୍ତ୍ରିତ ବାଗ୍ମୀମାନଙ୍କର ନୌବାଣିଜ୍ୟିକ ବିଷୟରେ ସୁ-ଚିନ୍ତିତ ବକ୍ତବ୍ୟ ଜ୍ଞାନପିପାସୁମାନଙ୍କୁ ଆମୋଦିତ କରିଥାଏ ।

ପ୍ରତ୍ୟେକ ବର୍ଷ ଏପ୍ରିଲ ମାସ ୫ ତାରିଖରେ ଜାତୀୟ ନୌବାଣିଜ୍ୟ ଦିବସ ପାରାଦ୍ୱୀପ ବନ୍ଦରରେ ପାଳନ କରାଯାଇ ନାବିକମାନଙ୍କ ମଧ୍ୟରେ ନୌଚାଳନା, ସନ୍ତରଣ ତଥା ନୌପରିଚାଳନା ସମ୍ପର୍କୀୟ ବିଭିନ୍ନ ପ୍ରତିଯୋଗିତା ଆୟୋଜିତ ହୋଇଥାଏ ।

ପାରାଦ୍ୱୀପର ପ୍ରସିଦ୍ଧ ରଥଯାତ୍ରା ଏକ ସ୍ୱତନ୍ତ୍ର ଭୂମିକା ଗ୍ରହଣ କରିଆସିଛି । ପାରାଦ୍ୱୀପ ଜଗନ୍ନାଥ ମନ୍ଦିରର କଳ୍କୀ ଅବତାରୀ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର, ଶ୍ରୀସୁଭଦ୍ରା ଓ ଶ୍ରୀ ସୁଦର୍ଶନ ରଥାରୁଢ଼ ହେବା ପରେ ଓଡ଼ିଶାର ବିଭିନ୍ନ ଢଗଢମାଳି ଓ ସଙ୍ଗୀତର ତାଳେ ତାଳେ ରଥ ଚାଳିତ ହୋଇଥା'ନ୍ତି । ପାରାଦ୍ୱୀପ ରଥଯାତ୍ରାରେ ଡାହୁକମାନେ ଅଶ୍ଳୀଳ ବୋଲି ବ୍ୟବହାର କରନ୍ତି ନାହିଁ ଓ ପାରାଦ୍ୱୀପ ଜଗନ୍ନାଥ ସମାଜର ଅନୁରୋଧକ୍ରମେ ଶ୍ରୀକ୍ଷେତ୍ରର ଘୋଷଯାତ୍ରାରୁ ଅଶ୍ଳୀଳ ବୋଲିକୁ ବର୍ଜନ କରାଯାଇଛି । ଏହାହିଁ ଜାତୀୟ ସାଂସ୍କୃତିକ କ୍ଷେତ୍ରରେ ପାରାଦ୍ୱୀପର ଅନ୍ୟତମ ସଂସ୍କାରମୂଳକ ପଦକ୍ଷେପ । ପାରାଦ୍ୱୀପ ଜଗନ୍ନାଥ ସମାଜ ଓ ପାରାଦ୍ୱୀପ ସାକ୍ଷରତା ସମିତି ପକ୍ଷରୁ ଢଗଢମାଳି ଉପରେ ଆଧାରିତ 'ବୋଲି ପୁସ୍ତକ' ଭାରତର ସମସ୍ତ ଜଗନ୍ନାଥ ମନ୍ଦିରକୁ ଯୋଗାଇ ଦିଆଯାଇଛି ।

ପ୍ରତ୍ୟେକ ବର୍ଷ ତିନିଦିନ ଧରି ରଜ ଉତ୍ସବ ପାରାଦ୍ୱୀପରେ ପାରମ୍ପରିକ ଶୈଳୀରେ ଅନୁଷ୍ଠିତ ହୋଇଥାଏ । ଡୁଡୁ, ବୋହୂଚୋରୀ, ପଶାଖେଳ, ରଜଗୀତ, ରଜବେଶ, କୌତୁକ କଥା ପ୍ରଭୃତି ପ୍ରତିଯୋଗିତା ଆୟୋଜନ କରାଯାଇ ଦର୍ଶକମାନଙ୍କୁ ଆକର୍ଷିତ କରାଯାଉଛି । ପାରାଦ୍ୱୀପର ସାମୂହିକ କୁମାର ପୂର୍ଣ୍ଣମୀ ଉତ୍ସବ ପାଳନ ଅନ୍ୟତମ ପର୍ଯ୍ୟଟନଭିତ୍ତିକ ସଫଳତା । ପାରାଦ୍ୱୀପର କୁମାରୀମାନେ ଏକତ୍ର ହୋଇ ଚନ୍ଦ୍ରଙ୍କର ପୂଜା କରିବାର ଦୃଶ୍ୟ ଅତି ମନୋରମ । ସାମୂହିକ "କୁମାର ପୁନେଇଁ ଜହ୍ନଲୋ ଫୁଲ ବଉଳ ବେଣୀ" ର ମୂର୍ଚ୍ଛନା ସମସ୍ତ ଦର୍ଶକଙ୍କ ମାନସରେ ସାଂସ୍କୃତିକ ଝଙ୍କାର ସୃଷ୍ଟି କରିଥାଏ । ଅନେକଙ୍କ ମତରେ ପାରାଦ୍ୱୀପ ସହର ପ୍ରତିଷ୍ଠା ଦୃଷ୍ଟିରୁ ଶିଳ୍ପ ଅପେକ୍ଷା ଅଧିକ ସଂସ୍କୃତିଆଧାରିତ ।

ସାମଗ୍ରିକ ଭାବରେ ଅନୁଶୀଳନ କଲେ ଧାର୍ମିକ, ପ୍ରାକୃତିକ, ଶିଳ୍ପଭିତ୍ତିକ, ଶିଳ୍ପକଳା, ମନୋରଞ୍ଜନ ଓ ସାଂସ୍କୃତିକ ପର୍ଯ୍ୟଟନ ଦୃଷ୍ଟିରୁ ପାରାଦ୍ୱୀପ ଏକ ଉନ୍ନତ ପର୍ଯ୍ୟଟନସ୍ଥଳ । କଟକ ଓ ଭୁବନେଶ୍ୱରରୁ ପ୍ରାୟ ଏକ ଶହ କିଲୋମିଟର ଦୂରରେ ଅବସ୍ଥିତ ହୋଇଥିବାରୁ ଯେ କୌଣସି ପର୍ଯ୍ୟଟକ ପ୍ରାତଃକାଳରେ ପାରାଦ୍ୱୀପ ପରିଦର୍ଶନ କରି ସନ୍ଧ୍ୟାକାଳରେ ପ୍ରତ୍ୟାବର୍ତ୍ତନ କରିପାରିବେ । ବିଶେଷତଃ ଡିସେମ୍ବର ମାସ ଶେଷ ଓ ଜାନୁୟାରୀ ମାସରେ ପର୍ଯ୍ୟଟକମାନଙ୍କର ବହୁସଂଖ୍ୟାରେ ପାରାଦ୍ୱୀପକୁ ଆଗମନ ଲକ୍ଷ୍ୟ କରାଯାଇଥାଏ । ଉଭୟ ସଡ଼କ ଓ ରେଳପଥରେ ପାରାଦ୍ୱୀପ ଉନ୍ନତ ଭାବରେ ସଂଯୁକ୍ତ ।

ପାରାଦ୍ୱୀପ ପ୍ରକୃତିର କନ୍ୟା ଓ କଳିଙ୍ଗର ରାଜଜେମା କହିଲେ ଅତ୍ୟୁକ୍ତି ହେବନାହିଁ । ପର୍ଯ୍ୟଟନର ଗୁରୁତ୍ୱ ଦୃଷ୍ଟିରୁ ଭବିଷ୍ୟତରେ ପାରାଦ୍ୱୀପ ଓଡ଼ିଶାର ଶ୍ରେଷ୍ଠ ପର୍ଯ୍ୟଟନ ନଗରୀ ହେବ, ଏଥିରେ ଦ୍ୱିମତ ପୋଷଣ କରିବାର ଅବକାଶ ନାହିଁ । ସାମଗ୍ରିକ ଭାବେ ପାରାଦ୍ୱୀପ ଆଧୁନିକ ଓ ପାରମ୍ପରିକ ଚେତନା ଦୃଷ୍ଟିରୁ ପ୍ରସିଦ୍ଧ ପର୍ଯ୍ୟଟନସ୍ଥଳ ।

"ଜୟ ମା' କଳିଙ୍ଗ ଭାରତୀ" ।

*ସଚିବ, ପାରାଦ୍ୱୀପ ବନ୍ଦର ନ୍ୟାସ, ପାରାଦ୍ୱୀପ*

# ବନ୍ଦେ ଉତ୍କଳ ଜନନୀ !

କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର

ବନ୍ଦେ ଉତ୍କଳ ଜନନୀ
ଚାରୁ ହାସମୟୀ, ଚାରୁ ଭାଷମୟୀ, ଜନନୀ, ଜନନୀ, ଜନନୀ,

ପୂତ ପୟୋଧି-ବିଧୌତ-ଶରୀରା
ତାଳ-ତମାଳ-ସୁଶୋଭିତ-ତୀରା,
ଶୁଭ୍ର ତଟିନୀ କୂଳ-ଶୀକର ସମୀରା
ଜନନୀ, ଜନନୀ, ଜନନୀ।
ଘନ ଘନ ବନଭୂମି ରାଜିତ ଅଙ୍ଗେ,
ନୀଳ ଭୂଧରମାଳା ସାଜେ ତରଙ୍ଗେ,
କଳ କଳ ମୁଖରିତ ଚାରୁ ବିହଙ୍ଗେ
ଜନନୀ, ଜନନୀ, ଜନନୀ।
ସୁନ୍ଦର ଶାଳି-ସୁଶୋଭିତ-କ୍ଷେତ୍ରା
ଜ୍ଞାନ-ବିଜ୍ଞାନ-ପ୍ରଦର୍ଶିତ-ନେତ୍ରା,
ଯୋଗୀଋଷିଗଣ-ଉଟଜ-ପବିତ୍ରା
ଜନନୀ, ଜନନୀ, ଜନନୀ।
ସୁନ୍ଦର ମନ୍ଦିର-ମଣ୍ଡିତ ଦେଶା
ଚାରୁ କଳାବଳି-ଶୋଭିତ-ବେଶା,
ପୁଣ୍ୟ ତୀର୍ଥଚୟ-ପୂର୍ଣ୍ଣ-ପ୍ରଦେଶା
ଜନନୀ, ଜନନୀ, ଜନନୀ।
ଉତ୍କଳ ସୁରବର-ଦର୍ପିତ-ଗେହା,
ଅରିକୁଳ-ଶୋଣିତ-ଚର୍ଚ୍ଚିତ ଦେହା
ବିଶ୍ୱ ଭୂମଣ୍ଡଳ-କୃତବର ସ୍ନେହା
ଜନନୀ, ଜନନୀ, ଜନନୀ।
କବିକୁଳ ମୌଳି ସୁନନ୍ଦନ-ବନ୍ଦ୍ୟା,
ଭୁବନ ବିଘୋଷିତ-କୀର୍ତ୍ତି ଅନିନ୍ଦ୍ୟା,
ଧନ୍ୟେ, ପୁଣ୍ୟେ, ଚିର ଶରଣ୍ୟେ
ଜନନୀ, ଜନନୀ, ଜନନୀ।



# RESTORING NATURE

## *Coal is our Business ...*
## *Environment is our concern*

- **Planted 4.71 Million Trees.**
- **30 Nos. of decoaled sumps for Water Harvesting**
- **989 Fixed Sprinklers, 92 Automatic sprinklers along 22.26 kms in mines.**
- **Continuous water sprinkling through Tankers.**

**1st Company to introduce Surface Miners for Clean Mining.**




**महानदी कोलफील्ड्स लिमिटेड**

जागृति विहार, सम्बलपुर - 768020

**Our Priorities:**

**Safety & Reliability Production-Productive Profit Dispatch**